# ଶିକ୍ଷା ସମସ୍ୟା ଓ ବିଦ୍ୟାଳୟ ସଂଗଠନ

ଅଧ୍ୟାପକ ଘନଶ୍ୟାମ ପାଇକରାୟ

ଓଡ଼ିଶା ରାଜ୍ୟ ପାଠ୍ୟପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା
ଭୁବନେଶ୍ୱର

# ଭାରତର ଶିକ୍ଷା-ସମସ୍ୟା
# ଓ
# ବିଦ୍ୟାଳୟ-ସଂଗଠନ

( ଇଣ୍ଟରମିଡ଼ିଏଟ୍ ଶ୍ରେଣୀ ନିମନ୍ତେ )

ଲେଖକ

ଶ୍ରୀ ଘନଶ୍ୟାମ ପାଇକରାୟ, ଏମ୍. ଏ. ( ଉତ୍କଳ ),
ଏମ୍. ଏଡ୍. (ଦିଲ୍ଲୀ), ଡିପ୍-ଇନ୍-ରିସର୍ଚ୍ଚ ମେଥଡ଼ୋଲଜି
ଅଧ୍ୟାପକ, ଆଞ୍ଚଳିକ ଶିକ୍ଷା-ମହାବିଦ୍ୟାଳୟ, ଭୁବନେଶ୍ୱର

୧୯୮୧




ପ୍ରକାଶକ

ଓଡ଼ିଶା-ରାଜ୍ୟ-ପାଠ୍ୟପୁସ୍ତକ-ପ୍ରଣୟନ-ଓ-ପ୍ରକାଶନ-ସଂସ୍ଥା
ଭୁବନେଶ୍ୱର

# PROBLEM OF EDUCATION & SCHOOL ORGANISATION

FOR INTERMEDIATE STUDENTS

Published under the scheme of production of books and literature in Regional Languages at the University level sponsored by the Government of India in the Ministry of Education and Social Welfare (Department of Education), New Delhi.

*Written by* :

**SRI GHANASHYAM PAIKARAY,**
Lecturer in Education, M.A. (Utkal), M.Ed. (Delhi)
Regional College of Education,
Bhubaneswar.

*Reviewed by* :

**Prof. Bholanath Misra,**
Rtd. Prof. of Education.

**First Edition—1973/1000 Copies**
**Second Print—1976/2000 ,,**
**Third Print—1981/2000 ,,**

*Published by* :

**ORISSA STATE BUREAU OF TEXT BOOK PREPARATION AND PRODUCTION,**
**Bhubaneśwar, Orissa.**



Paper used for printing of this book was made available by the Govt. of Orissa at ~~concessional rate~~

**Publication No.—23**

*Printed at* :

**Sathi Printing Press,**
Oriya Bazar, Cuttack.

[redacted]

# ତୃତୀୟ ସଂସ୍କରଣର ମୁଖବନ୍ଧ

"ଶିକ୍ଷା ସମସ୍ୟା ଓ ବିଦ୍ୟାଳୟ ସଂଗଠନ" ଗ୍ରନ୍ଥର ତୃତୀୟ ସଂସ୍କରଣ ହେବା ଦ୍ୱାରା 'ରାଜ୍ୟ ପାଠ୍ୟପୁସ୍ତକ ପ୍ରଣୟନ-ଓ-ପ୍ରକାଶନ-ସଂସ୍ଥା'ର ଜନପ୍ରିୟତା ପରିଲକ୍ଷିତ ହେବା ସଙ୍ଗେ ସଙ୍ଗେ ଓଡ଼ିଆ ଭାଷାରେ ପ୍ରଣୀତ ପୁସ୍ତକ ଯେ ମହାବିଦ୍ୟାଳୟମାନଙ୍କର ଛାତ୍ରଛାତ୍ରୀ ତଥା ଅଧ୍ୟାପକ ଅଧ୍ୟାପିକାଙ୍କ ହୃଦୟରେ ସ୍ଥାନ ପାଇଛି, ଏହା ସ୍ୱତଃ ପରିସ୍ଫୁଟ ହୁଏ । ଦେଶ ଓ ଜାତି ପକ୍ଷରେ ନିଶ୍ଚିତ ଭାବରେ ଏହା ଏକ ଶୁଭ ସୂଚନା । ତେଣୁ ପାଠକ-ପାଠିକା ଲେଖକ ଓ ଲେଖିକା ତଥା ଏହି ପୁସ୍ତକ ପ୍ରଣୟନ ଓ ପ୍ରକାଶନ ସହ ସଂପୃକ୍ତ ସମସ୍ତ ବ୍ୟକ୍ତିବିଶେଷଙ୍କୁ ମୁଁ ସଂସ୍ଥା ତରଫରୁ ଆନ୍ତରିକ ଧନ୍ୟବାଦ ଜଣାଉଛି ।

ଭୁବନେଶ୍ୱର
ତା ୨୮।୨।୮୯

ସଙ୍କର୍ଷଣ ମହାପାତ୍ର
ନିର୍ଦ୍ଦେଶକ

# ଉପୋଦ୍‌ଘାତ

ଓଡ଼ିଶା ରାଜ୍ୟ ପାଠ୍ୟପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା ଓଡ଼ିଶା ସରକାରଙ୍କ ଆନୁକୂଲ୍ୟରେ ୧୯୬୦ ମସିହା ମାର୍ଚ୍ଚ ୧୧ ତାରିଖରେ ସ୍ଥାପିତ ହୋଇଅଛି । ଏହି ସଂସ୍ଥା ପ୍ରତିଷ୍ଠାର ଉଦ୍ଦେଶ୍ୟ—

୧ । ସାଧାରଣ ଭାବେ ଶିକ୍ଷା ପ୍ରସାରରେ ସହାୟତା ଦାନ ଓ ଏହାର ସମୁନ୍ନତି ବିଧାନ ।

୨ । ଓଡ଼ିଆ ଭାଷାରେ ପାଠ୍ୟପୁସ୍ତକ ଶିକ୍ଷକମାନଙ୍କ ନିମନ୍ତେ ନିର୍ଦ୍ଦେଶକ ପୁସ୍ତିକା, ଛାତ୍ରମାନଙ୍କ ପାଇଁ ସହାୟକ ବହି, ଶିକ୍ଷାନୁଷ୍ଠାନଗୁଡ଼ିକରେ ଶିକ୍ଷାଦାନ ଓ ବିଦ୍ୟା ଚର୍ଚ୍ଚାର ପ୍ରସାର ଉପଯୋଗୀ ଶିକ୍ଷା ସମ୍ପର୍କିତ ସାହିତ୍ୟ ଓ ଉଚ୍ଚ ଶିକ୍ଷା ନିମନ୍ତେ ଆବଶ୍ୟକ ପୁସ୍ତକ ପ୍ରଣୟନ ।

୩ । ଓଡ଼ିଆରେ ପାଠ୍ୟପୁସ୍ତକ ରଚନାରେ ଜ୍ଞାନୀ, ଅଭିଜ୍ଞ ଓ ପ୍ରବୀଣ ଲେଖକମାନଙ୍କୁ ଉତ୍ସାହଦାନ ସରକାର ଅଥବା ଅନ୍ୟାନ୍ୟ ଉପଯୁକ୍ତ କର୍ତ୍ତୃପକ୍ଷଙ୍କ ଦ୍ୱାରା ଶିକ୍ଷାର ବିଭିନ୍ନ ସ୍ତର ଓ ପାଠ୍ୟକ୍ରମ ନିମନ୍ତେ ନିର୍ଦ୍ଧାରିତ ବିଭିନ୍ନ ବିଷୟରେ ପ୍ରାମାଣିକ ବହିର ଓଡ଼ିଆରେ ଅନୁବାଦ ସରକାର ବା ଅନ୍ୟାନ୍ୟ କର୍ତ୍ତୃପକ୍ଷଙ୍କୁ ଆବେଦନ କରି ଏ ପୁସ୍ତକଗୁଡ଼ିକ ନିମନ୍ତେ ସେମାନଙ୍କ ଅନୁମୋଦନ ଲାଭ ।

୪ । ପାଠ୍ୟପୁସ୍ତକ ପ୍ରଣୟନ ସମ୍ପର୍କରେ ଗବେଷଣା ବ୍ୟବସ୍ଥା ଓ ଏଥି ନିମନ୍ତେ ସହାୟତା, ଶିକ୍ଷାର ବିଭିନ୍ନ ପଦ୍ଧତି ସମ୍ପର୍କିତ ସାହିତ୍ୟର ଗବେଷଣା, ଶିକ୍ଷା ବ୍ୟାପାରରେ ସହାୟତା, ସାଧାରଣ ଶିକ୍ଷାଗତ ମାନବୃଦ୍ଧିରେ ସହଯୋଗ ।

୫ । ସାଧାରଣ ଶିକ୍ଷାଗତ ମାନର ଉନ୍ନତିବିଧାନ ଉଦ୍ଦେଶ୍ୟରେ ପାଠ୍ୟକ୍ରମ ଓ ଶିକ୍ଷାକ୍ରମ ବିଷୟରେ ସରକାର ଓ ଉପଯୁକ୍ତ କର୍ତ୍ତୃପକ୍ଷଙ୍କୁ ପ୍ରସ୍ତାବ ଓ ସୁପାରିଶ, ଏହାର ସୁଚିନ୍ତିତ ପରିକଳ୍ପନା ଓ ଉନ୍ନତି ବିଧାନ ।

୬ । ଗ୍ରନ୍ଥାଗାର ସ୍ଥାପନ ଓ ସଂରକ୍ଷଣପୂର୍ବକ ସାଧାରଣ ଭାବେ ଗବେଷଣାରେ ସହାୟତା ଏବଂ ବିଶେଷ ଭାବେ ଶିକ୍ଷାକ୍ରମ, ପାଠ୍ୟକ୍ରମ ଓ ପାଠ୍ୟପୁସ୍ତକ ପ୍ରଣୟନ ସମ୍ପର୍କରେ ସହଯୋଗଦାନ ।

୭ । ଭାରତ ସରକାର ବା ଓଡ଼ିଶା ସରକାରଙ୍କ ଅନୁକୂଲ୍ୟରେ ଲାଭ କରାଯାଉଥିବା ଦାନପତ୍ରଗୁଡ଼ିକର ସଂରକ୍ଷଣ, ଉପଯୋଗ ଓ ସନ୍ତୋଷଜନକ ହିସାବ ରକ୍ଷା ।

୮ । ପୁସ୍ତକଗୁଡ଼ିକର ଅବାଧ ଯୋଗାଣ ସମ୍ପର୍କରେ ଯେ କୌଣସି ଯୋଜନା କାର୍ଯ୍ୟକାରୀ କରିବା ।

ସଂସ୍ଥା ତରଫରୁ ମୁଁ ଏହି ପୁସ୍ତକର ଲେଖକ ଶ୍ରୀ ଘନଶ୍ୟାମ ପାଇକରାୟ, ଅଧ୍ୟକ୍ଷ ସମୀକ୍ଷକ ଭୋଳାନାଥ ମିଶ୍ର ଓ ଭାଷା ସଂଶୋଧକ ଅଧ୍ୟାପକ ଶରତଚନ୍ଦ୍ର ପ୍ରଧାନଙ୍କୁ ହାର୍ଦ୍ଦିକ କୃତଜ୍ଞତା ଜ୍ଞାପନ କରୁଛି । ଓଡ଼ିଶାର ଅଧ୍ୟାପକ ଓ ଅଧ୍ୟାପିକାବୃନ୍ଦ କଲେଜ ସ୍ତରରେ ଓଡ଼ିଆରେ ଶିକ୍ଷାଦାନ କଲେ ଏବଂ ଛାତ୍ରଛାତ୍ରୀମାନେ ପରୀକ୍ଷାରେ ସେମାନଙ୍କ ଉତ୍ତର ଓଡ଼ିଆରେ ଲେଖିବାରେ ବ୍ରତୀ ରହିଲେ ଆମ ସଂସ୍ଥା ଦ୍ୱାରା ପ୍ରକାଶିତ ଉପାଦେୟ ପୁସ୍ତକଗୁଡ଼ିକର ସଦୁପଯୋଗ ହେବ ଓ ଏହି ସଂସ୍ଥା ପ୍ରତିଷ୍ଠାର ମହତ୍ ଉଦ୍ଦେଶ୍ୟ ସାଧିତ ହେବ ।

ଗଦାଧର ମିଶ୍ର
ନିର୍ଦ୍ଦେଶକ
ଓଡ଼ିଶା ରାଜ୍ୟ ପାଠ୍ୟପୁସ୍ତକ ପ୍ରଣୟନ
ଓ ପ୍ରକାଶନ ସଂସ୍ଥା

ଭୁବନେଶ୍ୱର
ତା ୨୫ । ୩ । ୭୭

# ପ୍ରସ୍ତାବନା

ବିଶ୍ୱବିଦ୍ୟାଳୟ ସ୍ତରରେ ମାତୃଭାଷା ମାଧ୍ୟମରେ ଶିକ୍ଷାଦାନ ବ୍ୟବସ୍ଥା ଭାରତ ସରକାରଙ୍କ ଜାତୀୟ ଶିକ୍ଷା କାର୍ଯ୍ୟକ୍ରମରେ ମୌଳିକଭାବେ ଗୃହୀତ ହୋଇଅଛି । ତଦନୁଯାୟୀ "ଓଡ଼ିଶା ରାଜ୍ୟ ପାଠ୍ୟପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା" ଗଠନ କରାଯାଇଅଛି । ଏହାର ଆନୁକୂଲ୍ୟରେ ବିଭିନ୍ନ ବିଷୟରେ ଆମେ ଅଦ୍ୟାବଧି କେତେଖଣ୍ଡି ପାଠ୍ୟପୁସ୍ତକ ପ୍ରକାଶ କଲୁଣି ।

ବର୍ତ୍ତମାନ ପ୍ରକାଶ ପାଉଥିବା "ଶିକ୍ଷା ସମସ୍ୟା ଓ ବିଦ୍ୟାଳୟ ସଂଗଠନ" ପୁସ୍ତକଟି ଓଡ଼ିଶାର ତିନୋଟି ବିଶ୍ୱବିଦ୍ୟାଳୟର ଇଣ୍ଟରମିଡ଼ିଏଟ୍, ପ୍ରାକ୍-ବିଶ୍ୱବିଦ୍ୟାଳୟ ଓ ପ୍ରଥମ ବାର୍ଷିକ ପାଠ୍ୟକ୍ରମ ଅନୁସରଣ ପୂର୍ବକ ଲେଖାଯାଇଅଛି । ପୁସ୍ତକଟିକୁ ଆଞ୍ଚଳିକ ଶିକ୍ଷା ମହାବିଦ୍ୟାଳୟ ଅଧ୍ୟାପକ ଶ୍ରୀ ଘନଶ୍ୟାମ ପାଇକରାୟ ରଚନା କରିଛନ୍ତି ଓ ସମସ୍ତ ପାଣ୍ଡୁଲିପିଟିକୁ ପାଠକର ସମ୍ବଲପୁର ପ୍ରଶିକ୍ଷଣ ମହାବିଦ୍ୟାଳୟର ଅଧ୍ୟକ୍ଷ ଶ୍ରୀ ଭୋଳାନାଥ ମିଶ୍ର ସମୀକ୍ଷା କରିଛନ୍ତି । ଏହି ସଂସ୍ଥାର ଭାଷାବିଶେଷଜ୍ଞ ଅଧ୍ୟାପକ ଶରତଚନ୍ଦ୍ର ପ୍ରଧାନ ପୁସ୍ତକଟିର ଭାଷାଗତ ସମୀକ୍ଷା କରିଛନ୍ତି ଏବଂ ପ୍ରକାଶନ ସହଯୋଗୀ ଶ୍ରୀ ଯତୀନ୍ଦ୍ରନାଥ ପଟ୍ଟନାୟକ ଏ ପୁସ୍ତକ ପ୍ରକାଶନରେ ସହାୟତା କରିଛନ୍ତି । ଏ ପରିପ୍ରେକ୍ଷୀରେ ଆମେ ସମସ୍ତଙ୍କୁ ସଂସ୍ଥା ତରଫରୁ ଧନ୍ୟବାଦ ଜଣାଉଛୁ ।

ପରିଶେଷରେ ଆମର ଆଶା ଓ ବିଶ୍ୱାସ ଯେ, ଏ ପୁସ୍ତକଟି ଛାତ୍ର ତଥା ଅଧ୍ୟାପକ ମହଲରେ ଆଦୃତ ହେବ ।

ଭୁବନେଶ୍ୱର
ତା ୧୨ । ୩ । ୭୩

ବ୍ରଜବନ୍ଧୁ ମିଶ୍ର
ନିର୍ଦ୍ଦେଶକ

# ଭୂମିକା

"ଆମର ମାନସିକ ଦାସତ୍ୱହେତୁ ଆମେ ଭାବୁଛୁ ଯେ ଆମେ ଇଂରାଜୀ ବ୍ୟତୀତ ଚଳିପାରିବୁ ନାହିଁ । ଅନ୍ତତଃ ମୁଁ ଏହି ପରାଜୟ—ମନୋଭାବରେ ଭାଗୀ ହୋଇପାରିବି ନାହିଁ ।

—ମହାତ୍ମାଗାନ୍ଧୀ

ବିଳମ୍ବରେ ହେଲେ ମଧ୍ୟ ଜାତିର ଜନକ ମହାତ୍ମା ଗାନ୍ଧୀଙ୍କର ଉପର୍ଯ୍ୟୁକ୍ତ ଉକ୍ତିର ତାତ୍ପର୍ଯ୍ୟ ଯେ ଆମେ ହୃଦୟଙ୍ଗମ କରିବାକୁ ସମର୍ଥ ହୋଇଅଛୁ, ତାହାର ଏକ ଜ୍ୱଳନ୍ତ ନିଦର୍ଶନ ହେଉଛି, ବିଶ୍ୱବିଦ୍ୟାଳୟ ସ୍ତରରେ ମାତୃଭାଷାର ଶିକ୍ଷାଦାନ ପାଇଁ ପାଠ୍ୟପୁସ୍ତକ ପ୍ରଣୟନ କରିବାର ଆନ୍ତରିକ ପ୍ରଚେଷ୍ଟା । ଏଥିପାଇଁ 'ଓଡ଼ିଶା ରାଜ୍ୟ ପାଠ୍ୟପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା''ର ସାଧୁ ଉଦ୍ୟମରେ ସହଯୋଗ କରିବା ପାଇଁ ମୋତେ ଯେଉଁ ସୁଯୋଗ ଦିଆଯାଇଅଛି ସେଥିପାଇଁ ମୁଁ ଏହି ସଂସ୍ଥା ବିଶେଷତଃ ସଂସ୍ଥାର ନିର୍ଦ୍ଦେଶକଙ୍କ ନିକଟରେ କୃତଜ୍ଞ । ସମ୍ବଲପୁର ପ୍ରଶିକ୍ଷଣ ମହାବିଦ୍ୟାଳୟର ଅଧ୍ୟକ୍ଷ ଶ୍ରୀଯୁକ୍ତ ଭୋଳାନାଥ ମିଶ୍ର ଏହି ପୁସ୍ତକର ପାଣ୍ଡୁଲିପି ସମୀକ୍ଷା କରି ବହୁ ମୂଲ୍ୟବାନ ପରାମର୍ଶ ଦେଇଥିବାରୁ, ଲେଖକ ସେ ମହାଶୟଙ୍କ ନିକଟରେ କୃତଜ୍ଞତା ଜ୍ଞାପନ କରୁଅଛି ।

ଯେ କୌଣସି ସମସ୍ୟା ଦେଖାଗଲେ ସମାଧାନର ପନ୍ଥା ନିର୍ଣ୍ଣୟ କରିବାକୁ ଚେଷ୍ଟା କରାଯାଏ । ଶିକ୍ଷାକ୍ଷେତ୍ରରେ ଦେଖାଦେଇଥିବା ସମସ୍ୟାଗୁଡ଼ିକ ସମ୍ବନ୍ଧରେ ବିଭାଗୀୟ କର୍ତ୍ତୃପକ୍ଷ ତଥା ଶିକ୍ଷାବିତ୍‌ଗଣ ଯେ ସଚେତନ ନୁହନ୍ତି ବା ସମାଧାନର ପନ୍ଥା ନିର୍ଣ୍ଣୟ କରିପାରୁ ନାହାନ୍ତି, ସେପରି ନୁହେଁ—ବିଭିନ୍ନ କାରଣହେତୁ ସମସ୍ୟାଗୁଡ଼ିକର ଦ୍ରୁତ ସମାଧାନ ସମ୍ଭବପର ହେଉନାହିଁ । ଫଳରେ ଶିକ୍ଷା କ୍ଷେତ୍ରରେ ବହୁ ସମସ୍ୟା ଦୀର୍ଘକାଳ ଧରି ରହି ଆସିଅଛି । ଏହି କ୍ଷୁଦ୍ର ପୁସ୍ତକଟିର ପ୍ରଥମଭାଗରେ ସେହିପରି କେତେକ ସମସ୍ୟା ଓ ସମାଧାନର ପନ୍ଥା ସମ୍ବନ୍ଧରେ ପାଠକମାନଙ୍କୁ ସଚେତନ କରାଇ ଦେବାର ଉଦ୍ୟମ କରାଯାଇଅଛି ମାତ୍ର । ଏହାମଧ୍ୟ ସତ ଯେ, ଏହି ପୁସ୍ତକଟିରେ ବର୍ଣ୍ଣିତ କେତେକ ସମସ୍ୟା କେତେ ବର୍ଷ ପରେ ଆଉ ସମସ୍ୟା ହୋଇ ରହି ନ ପାରେ । ତେଣୁ ପୁସ୍ତକଟି ହୁଏତ ସେତେବେଳେ ସମୟୋପଯୋଗୀ ମଧ୍ୟ ହୋଇ ନ ପାରେ । ଲେଖକ ଏ ସମ୍ବନ୍ଧରେ ସମ୍ପୂର୍ଣ୍ଣ ସଚେତନ ।

ପୁସ୍ତକଟିର ଦ୍ୱିତୀୟ ସ୍ତରରେ ବିଦ୍ୟାଳୟ ସଂଗଠନ ସମ୍ବନ୍ଧୀୟ କେତେକ ତଥ୍ୟ ଯୋଗାଇ ଦେବାପାଇଁ ଚେଷ୍ଟା କରାଯାଇଅଛି । ହଜାର ହଜାର ବିଦ୍ୟାଳୟ ଥିଲେ ମଧ୍ୟ ସୁସଂଗଠିତ ବିଦ୍ୟାଳୟର ସଂଖ୍ୟା ଯେ ଯଥେଷ୍ଟ କମ୍, ଏଥିରେ ସନ୍ଦେହ ନାହିଁ । ଅନେକ ସ୍ଥଳରେ ବିଦ୍ୟାଳୟର ବିଭିନ୍ନ କାର୍ଯ୍ୟକ୍ରମର ଅନ୍ତର୍ନିହିତ ଉଦ୍ଦେଶ୍ୟ ଓ ଲକ୍ଷ୍ୟ ସମ୍ବନ୍ଧରେ ଶିକ୍ଷକମାନେ ସଚେତନ ନ ହୋଇ କେବଳ ଯନ୍ତ୍ରବତ୍ ଶିକ୍ଷାଦାନରେ ଲିପ୍ତ ହେଉଥିବାରୁ ବିଦ୍ୟାଳୟ-ଶିକ୍ଷା ଛାତ୍ରମାନଙ୍କୁ ପରବର୍ତ୍ତୀ ଜୀବନରେ ପ୍ରଭାବିତ କରିପାରୁ ନାହିଁ ତେଣୁ ବିଭିନ୍ନ କାର୍ଯ୍ୟକ୍ରମ ସମ୍ବନ୍ଧରେ ଆଲୋଚନା କରାଯିବା ସଙ୍ଗେ ସଙ୍ଗେ ସେହି କାର୍ଯ୍ୟକ୍ରମଗୁଡ଼ିକର ଉଦ୍ଦେଶ୍ୟ ଓ ଲକ୍ଷ୍ୟ ସମ୍ବନ୍ଧରେ ଗୁରୁତ୍ୱ ଆରୋପ କରାଯାଇଅଛି ।

ମହାବିଦ୍ୟାଳୟ ସ୍ତରରେ 'ଶିକ୍ଷା' ବିଷୟଟି ଅଧ୍ୟୟନ କରୁଥିବା ଛାତ୍ରମାନଙ୍କୁ କେତେକ ଶିକ୍ଷା ସମସ୍ୟା ସମ୍ବନ୍ଧରେ ଜାଗ୍ରତ କରାଇପାରିଲେ ତଥା ବିଦ୍ୟାଳୟର ବିଭିନ୍ନ କାର୍ଯ୍ୟକ୍ରମର ଲକ୍ଷ୍ୟ ଓ ସଂଗଠନ ସମ୍ବନ୍ଧରେ ସଚେତନ କରାଇପାରିଲେ ପୁସ୍ତକଟିର ଉଦ୍ଦେଶ୍ୟ ସାଧିତ ହେବ ।

ଲେଖକ

# ସୂଚୀପତ୍ର

## ପ୍ରଥମ ଭାଗ

## ଭାରତର ଶିକ୍ଷା ସମସ୍ୟା

## ଦ୍ୱିତୀୟ ଭାଗ

## ବିଦ୍ୟାଳୟ ସଂଗଠନ

———

# ପ୍ରଥମ ଅଧ୍ୟାୟ

## ଶିକ୍ଷା ସମସ୍ୟାର କେତେକ ପ୍ରଧାନ ଦିଗ

"ବର୍ତ୍ତମାନ ଭାରତର ଭାଗ୍ୟ ତା'ର ଶ୍ରେଣୀ ଗୃହରେ ଗଠିତ ହେଉଅଛି ।" କୋଠାରି କମିଶନ (୧୯୬୪-୬୬)ଙ୍କର ଏହି ଉକ୍ତି ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ ଓ ପ୍ରଣିଧାନ-ଯୋଗ୍ୟ । ବିଜ୍ଞାନ ଓ କାରିଗରୀ ଯୁଗର ପୃଥିବୀରେ ଶିକ୍ଷା ହିଁ ଲୋକମାନଙ୍କର ସୌଭାଗ୍ୟ, ସମୃଦ୍ଧି ଓ ନିରାପତ୍ତା ନିର୍ଣ୍ଣୟ କରିଥାଏ । ଶିକ୍ଷାର ମାନ ତଥା ଶିକ୍ଷିତ ଲୋକମାନଙ୍କର ସଂଖ୍ୟା ଦେଶ ପୁନର୍ଗଠନର ପ୍ରଧାନ ସହାୟକ ହୋଇ ଲୋକମାନଙ୍କର ଜୀବନ ଧାରଣର ମାନ ଉନ୍ନତ କରିଥାଏ । ତେଣୁ ଶିକ୍ଷା ସମସ୍ୟା ସମ୍ବନ୍ଧରେ ବିଚାର କରିବାକୁ ଗଲେ ଏହାକୁ ଏକ ସ୍ୱତନ୍ତ୍ର ବା ପୃଥକ୍ ସମସ୍ୟା ଭାବରେ ବିଚାର କରାଯାଇ ନ ପାରେ । ଏହା ଆମ ଦେଶ ଆଗରେ ଦେଖା ଦେଇଥିବା ପ୍ରତ୍ୟେକ ପ୍ରଧାନ ଓ ଜଟିଳ ସାମାଜିକ, ଅର୍ଥନୈତିକ ତଥା ରାଜନୈତିକ ସମସ୍ୟା ସହ ଅଙ୍ଗାଙ୍ଗୀଭାବେ ଜଡ଼ିତ ।

୧୯୭୧ ଜନଗଣନା ଅନୁସାରେ ଭାରତର ଲୋକସଂଖ୍ୟା ହେଉଛି ପ୍ରାୟ ୫୪.୭୯ କୋଟି । ବିଗତ ଦଶନ୍ଧିରେ ଏ ଦେଶର ଲୋକସଂଖ୍ୟା ଶତକଡ଼ା ୨୪.୮ ବଢ଼ିଯାଇଅଛି । ଏବେ ପ୍ରତ୍ୟେକ ବର୍ଷ ଏ ଦେଶର ଲୋକସଂଖ୍ୟା ପ୍ରାୟ ୧ କୋଟି ୩୦ ଲକ୍ଷ (ଅଷ୍ଟ୍ରେଲିଆର ବର୍ତ୍ତମାନ ଲୋକସଂଖ୍ୟା ପ୍ରାୟ ଏତିକି) ବଢ଼ିଯାଉଅଛି । ଜାତିସଂଘର ସଭ୍ୟଭୁକ୍ତ ହୋଇ-ଥିବା ୧୩୧ଟି ଦେଶ ମଧ୍ୟରୁ ୯୦ ଦେଶର ଲୋକସଂଖ୍ୟା ଭାରତର ଲୋକସଂଖ୍ୟାର ବାର୍ଷିକ ଅଭିବୃଦ୍ଧିଠାରୁ କମ୍ । ତେଣୁ ଏପରି ଏକ ବିରାଟ ଦେଶର ଲୋକମାନଙ୍କ ପାଇଁ ଶିକ୍ଷା ବ୍ୟବସ୍ଥା କରିବା ନିଶ୍ଚୟ ଏକ କଷ୍ଟକର କାର୍ଯ୍ୟ । ସେତିକି ନୁହେଁ, ଦ୍ରୁତ ଜନସଂଖ୍ୟା ବୃଦ୍ଧି ଲୋକସଂଖ୍ୟାର ଗଠନ ଶୈଳୀକୁ ମଧ୍ୟ ପ୍ରଭାବିତ କରିଥାଏ । ତେଣୁ ଆଜି ଭାରତର ଲୋକ-ସଂଖ୍ୟାର ଅର୍ଦ୍ଧେକ ୧୮ ବର୍ଷରୁ କମ୍ ବୟସର କିନ୍ତୁ ବହୁ ଉନ୍ନତ ଦେଶରେ ଶତକଡ଼ା ୫୦ ଭାଗ ଲୋକଙ୍କର ବୟସ ପ୍ରାୟ ୩୫ ବର୍ଷ ମଧ୍ୟରେ । ଅଳ୍ପ ବୟସ ଲୋକଙ୍କ ସଂଖ୍ୟା ଅର୍ଦ୍ଧେକ ହୋଇଥିବାରୁ ଏମାନଙ୍କ ପାଇଁ ଶିକ୍ଷା ବ୍ୟବସ୍ଥା ଜାତୀୟ ଅର୍ଥନୀତି ଉପରେ ଏକ ଗୁରୁତର ଚାପ ସୃଷ୍ଟି କରୁଅଛି । ଉନ୍ନତ ଧରଣର ବୈଜ୍ଞାନିକ ଓ କାରିଗରୀ ଶିକ୍ଷାର ବ୍ୟବସ୍ଥା ତ ନିଶ୍ଚୟ ବ୍ୟୟସାପେକ୍ଷ, କୋଟି କୋଟି ଲୋକଙ୍କୁ ସାକ୍ଷର କରାଇବା ମଧ୍ୟ ଏକ ବିରାଟ ସମସ୍ୟା

୨ । "ଶିକ୍ଷା ସମସ୍ୟା ଏକ ପୃଥକ୍ ସମସ୍ୟା ନୁହେଁ । ଅନ୍ୟାନ୍ୟ ସାମାଜିକ, ଅର୍ଥନୈତିକ ଓ ରାଜନୈତିକ ସମସ୍ୟା ସହ ଏହା ଅଙ୍ଗାଙ୍ଗୀଭାବେ ଜଡ଼ିତ ।" ଏହି ଉକ୍ତିର ଯଥାର୍ଥତା ପ୍ରତିପାଦନ କର ।

୩ । ଶିକ୍ଷା ପ୍ରସାରର ଆବଶ୍ୟକତା ଅତ୍ୟନ୍ତ ଜରୁରୀ ହୋଇଥିଲେହେଁ ଏ କ୍ଷେତ୍ରରେ ନାନା ପ୍ରତିବନ୍ଧକ ରହିଅଛି—ଆଲୋଚନା କର ।

---

# ଦ୍ୱିତୀୟ ଅଧ୍ୟାୟ

## ବାଧ୍ୟତାମୂଳକ ଅବୈତନିକ ପ୍ରାଥମିକ ଶିକ୍ଷା

### ଏକ ବହୁ ଆକାଙ୍‌କ୍ଷିତ ବାସନା ଓ ସାମ୍ବିଧାନିକ ନିର୍ଦ୍ଦେଶନାମା

ସରକାରୀ ପ୍ରଚେଷ୍ଟାରେ ୧୪ ବର୍ଷ ପର୍ଯ୍ୟନ୍ତ ସବୁ ପିଲାଙ୍କ ଲାଗି ଅବୈତନିକ ଓ ପ୍ରାଥମିକ ଶିକ୍ଷାର ବ୍ୟବସ୍ଥା କରିବା ହେଉଛି ଆମ ସମ୍ବିଧାନର ୪୫ ଧାରାର ନିର୍ଦ୍ଦେଶନାମା । ୧୯୬୦ ମସିହା ମଧ୍ୟରେ କାର୍ଯ୍ୟକାରୀ ହେବାପାଇଁ ଉଦ୍ଦିଷ୍ଟ ଏହି ନିର୍ଦ୍ଦେଶନାମା ଏ ପର୍ଯ୍ୟନ୍ତ ମଧ୍ୟ ସମ୍ପୂର୍ଣ୍ଣ ଭାବରେ କାର୍ଯ୍ୟକାରୀ ହୋଇପାରି ନାହିଁ । ଏହାର କାରଣ ଆଲୋଚନା କରିବା ଆଗରୁ ଆମକୁ ମନେରଖିବାକୁ ହେବ ଯେ, ଏହି ସାମ୍ବିଧାନିକ ନିର୍ଦ୍ଦେଶନାମା ଭାରତୀୟମାନଙ୍କର ଏକ ବହୁ ଅକାଙ୍‌କ୍ଷିତ ବାସନାକୁ ବାସ୍ତବ ରୂପରେଖ ଦେଇଅଛି । ୧୮୭୦ରୁ ୧୮୮୦ ଖ୍ରୀଷ୍ଟାବ୍ଦ ମଧ୍ୟରେ ଇଂଲଣ୍ଡରେ ପାଶ୍ ହୋଇଥିବା ପ୍ରାଥମିକ ଶିକ୍ଷା ନିୟମାବଳୀ ( Elemenary Education Acts ) ଦ୍ୱାରା ଉଦ୍‌ବୁଦ୍ଧ ହୋଇ ଦାଦାଭାଇ ନାଓରୋଜୀଙ୍କ ଭଳି କେତେଜଣ ଭାରତୀୟ ୧୮୮୨ ଖ୍ରୀ:ଅ:ର ଭାରତୀୟ ଶିକ୍ଷା କମିଶନଙ୍କ ଆଗରେ ଏପରି ଏକ ଦାବୀ ଉପସ୍ଥାପନ କରିଥିଲେ । ସେତେବେଳେ (୧୮୮୨ ଖ୍ରୀଷ୍ଟାବ୍ଦରେ) ଇଂଲଣ୍ଡରେ ପ୍ରାୟ ୪୮ ଲକ୍ଷ ପିଲା ଅର୍ଥାତ୍ ପ୍ରତି ସାତ ଜଣରେ ଜଣେ ପାଠ ପଢ଼ୁଥିବା ସ୍ଥଳେ ଭାରତରେ ମାତ୍ର ୨୭ ଲକ୍ଷ ପିଲା ଅର୍ଥାତ୍ ପ୍ରତି ୧୧୪ ଜଣରେ ଜଣେ ପାଠ ପଢ଼ୁଥିଲେ । ଇଂଲଣ୍ଡରେ ସେତେବେଳେ ପ୍ରାଥମିକ ଶିକ୍ଷା ପାଇଁ ଯାହା ଖର୍ଚ୍ଚ ହେଉଥିଲା ତାହା ଥିଲା ମୁଣ୍ଡ ପିଛା ୪ ଶିଲିଂ ୩ ପେନ୍‌ସ ଅଥଚ ଭାରତରେ ସମୁଦାୟ ଶିକ୍ଷା ଖର୍ଚ୍ଚ ଥିଲା ମୁଣ୍ଡ ପିଛା ୮·୭ ପଇସା ଅର୍ଥାତ୍ ୧ ପେନ୍‌ସଠାରୁ କମ୍ । ଯାହାହେଉ ସେତେବେଳେ ବାଧ୍ୟତାମୂଳକ ଶିକ୍ଷାର ପ୍ରଚଳନ ପାଇଁ ହୋଇଥିବା ଦାବୀ କମିଶନଙ୍କ ପକ୍ଷେ ଗ୍ରହଣଯୋଗ୍ୟ ହୋଇ ନ ଥିଲା ।

ଧୀରେ ଧୀରେ ସ୍ଥାନୀୟ ସଂସ୍ଥାଗୁଡ଼ିକଦ୍ୱାରା ବାଧ୍ୟତାମୂଳକ ଶିକ୍ଷା ପ୍ରବର୍ତ୍ତନ ପାଇଁ ସ୍ୱର୍ଗୀୟ ଗୋପାଳକୃଷ୍ଣ ଗୋଖଲେ କେନ୍ଦ୍ର ବ୍ୟବସ୍ଥା ସଭାରେ ୧୯୧୦ ମସିହାରେ ଏକ

ପ୍ରସ୍ତାବ ଏବଂ ଖ୍ରୀ: ୧୯୧୧ରେ ଏକ ବିଲ୍ ଆଗତ କରିଥିଲେ । ତାଙ୍କର ସେହି ପ୍ରସ୍ତାବ ପ୍ରତ୍ୟାଖ୍ୟାତ ହୋଇଥିଲା ଏବଂ ବିଲ୍‌ଟି ବାତିଲ ହୋଇଯାଇଥିଲା । କାରଣ ସେତେବେଳେ ସରକାର ଏପ୍ରକାର ଶିକ୍ଷା ବ୍ୟବସ୍ଥାର ପ୍ରଶାସନିକ ତଥା ଅର୍ଥନୈତିକ ଗୁରୁ ଅତ୍ୟଧିକ ବୋଲି ମନେ କରିଥିଲେ । ଯାହାହେଉ, ଇତିମଧ୍ୟରେ ୧୮୯୩ ଖ୍ରୀଷ୍ଟାବ୍ଦରେ ବରୋଦାର ଗାଇକୋବାର୍ଡ଼ ମହାରାଜା ସୟାଜୀ ରାଓ ଏକ ଦୃଢ଼ ଓ ସାହସିକ ପଦକ୍ଷେପ ନେଇ ପରୀକ୍ଷାମୂଳକ ଭାବରେ ତାଙ୍କ ରାଜ୍ୟର ଅମରେଲୀ ମାହାଲରେ ଓ ପରେ ଖ୍ରୀ: ୧୯୦୬ରେ ସମଗ୍ର ରାଜ୍ୟରେ ବାଧ୍ୟତାମୂଳକ ଶିକ୍ଷା ପ୍ରବର୍ତ୍ତନ କରିଥିଲେ । କ୍ରମେ ଖ୍ରୀ: ୧୯୧୮ରୁ ୧୯୩୦ ମଧ୍ୟରେ ସମସ୍ତ ବ୍ରିଟିଶ ଶାସନାଧୀନ ପ୍ରଦେଶଗୁଡ଼ିକ ବାଧ୍ୟତାମୂଳକ ଶିକ୍ଷା ଆଇନ ପାଶ୍ କରିଥିଲେ । ତେଣୁ ବାଧ୍ୟତାମୂଳକ ପ୍ରାଥମିକ ଶିକ୍ଷା ଏକ ଗ୍ରହଣଯୋଗ୍ୟ ମତ ରୂପେ ପ୍ରତିଷ୍ଠାଲାଭ କରିବା ସଙ୍ଗେ ସଙ୍ଗେ ଆମ ଦେଶର ଆଇନ ଅନ୍ତର୍ଭୁକ୍ତ ହୋଇଥିଲା ।

ଆଇନ୍ ପାଶ୍ କରିବା ଯେତେ ସହଜ, ଆଇନକୁ କାର୍ଯ୍ୟକାରୀ କରିବା ସେତେ ସହଜ ନୁହେଁ । ସମସ୍ତ ପ୍ରକାର ସମାଜସେବା ମଧ୍ୟରେ ବାଧ୍ୟତାମୂଳକ ଶିକ୍ଷା ବ୍ୟବସ୍ଥା ସର୍ବାଧିକ ବ୍ୟୟସାପେକ୍ଷ । ଏହା ବ୍ୟତୀତ ବହୁ ଅସୁବିଧା ହେତୁ ଏହି ବ୍ୟବସ୍ଥା କାର୍ଯ୍ୟକାରୀ ହୋଇପାରି ନ ଥିଲା । ୧୯୪୪ ଖ୍ରୀ:ଅ.ରେ କେନ୍ଦ୍ରୀୟ ଶିକ୍ଷା ପରାମର୍ଶଦାତା ପରିଷଦ ଏକ ଯୋଜନା କରିଥିଲେ ଯାହା ତତ୍କାଳୀନ ଭାରତ ସରକାରଙ୍କ ଶିକ୍ଷା କମିଶନର ସାର୍ ଜନ୍ ସର୍ଜେଣ୍ଟଙ୍କ ନାମ ଅନୁସାରେ ସର୍ଜେଣ୍ଟ ଯୋଜନା ନାମରେ ନାମିତ ହୋଇଥିଲା । ଏହି ଯୋଜନା ଅନୁଯାୟୀ ଭାରତର ଜାତୀୟ ଶିକ୍ଷା ପଦ୍ଧତିରେ ୬ ବର୍ଷରୁ ୧୩ ବର୍ଷ ଯାଏ ୮ ବର୍ଷ ପାଇଁ ବାଧ୍ୟତାମୂଳକ ପ୍ରାଥମିକ ଶିକ୍ଷାକୁ ଅନ୍ତର୍ଭୁକ୍ତ କରାଯାଇଥିଲା । ଏହା ପର୍ଯ୍ୟାୟକ୍ରମେ ୪୦ ବର୍ଷ ମଧ୍ୟରେ କାର୍ଯ୍ୟକାରୀ କରାଯିବା ପାଇଁ ଲକ୍ଷ୍ୟ ରଖାଯାଇଥିଲା । ପରେ ଜାତୀୟ ସ୍ୱାର୍ଥ ଦୃଷ୍ଟିରୁ ଖେର୍ କମିଟି ଏହି ଯୋଜନା ପରୀକ୍ଷା କରି ୪୦ ବର୍ଷ ପରିବର୍ତ୍ତେ ୧୬ ବର୍ଷରେ ଅର୍ଥାତ୍ ୧୯୬୦ ମସିହା ମଧ୍ୟରେ କାର୍ଯ୍ୟକାରୀ କରିବାକୁ ମତ ଦେଇଥିଲେ । ସମ୍ବିଧାନ ପ୍ରଣେତାମାନେ ବୋଧହୁଏ ଏହି ମତ ଗ୍ରହଣ କରି ସମ୍ବିଧାନ ଲାଗୁ ହେବାଠାରୁ ଅର୍ଥାତ୍ ୨୬ ତାରିଖ ଜାନୁଆରୀ ୧୯୫୦ରୁ ୧୦ ବର୍ଷ ମଧ୍ୟରେ ଅର୍ଥାତ୍ ୧୯୬୦ ଖ୍ରୀଷ୍ଟାବ୍ଦ ମଧ୍ୟରେ ବାଧ୍ୟତାମୂଳକ ଅବୈତନିକ ପ୍ରାଥମିକ ଶିକ୍ଷାର ବ୍ୟବସ୍ଥା ପାଇଁ ନିର୍ଦ୍ଦେଶନାମା ରଖିଥିଲେ । ୧୯୬୦ ଖ୍ରୀ:ଅ. ମଧ୍ୟରେ କାର୍ଯ୍ୟକାରୀ ହେବାପାଇଁ ଉଦ୍ଦିଷ୍ଟ ସାମ୍ବିଧାନିକ ନିର୍ଦ୍ଦେଶନାମା ଏ ପର୍ଯ୍ୟନ୍ତ ମଧ୍ୟ କାର୍ଯ୍ୟକାରୀ ହୋଇପାରି ନାହିଁ ।

## ସାମ୍ବିଧାନିକ ନିର୍ଦ୍ଦେଶନାମା ଓ ଶିକ୍ଷାର ଅଗ୍ରଗତି

୧୯୫୬ରେ କାର୍ଯ୍ୟକାରୀ ହେବାକୁ ଯାଉଥିବା ଦ୍ୱିତୀୟ ପଞ୍ଚବାର୍ଷିକ ଯୋଜନାରୁ ଏହା ସ୍ପଷ୍ଟ ହୋଇଗଲା ଯେ ଖ୍ରୀ:୧୯୬୦ ସୁଦ୍ଧା ଆମେ ୬ ବର୍ଷରୁ ୧୦ ବର୍ଷ ବୟସର ପିଲାମାନଙ୍କ

ମଧ୍ୟରୁ ଶତକଡ଼ା ୬୧ ଭାଗ ଏବଂ ୧୧ରୁ ୧୩ ବର୍ଷ ବୟସର ପିଲାମାନଙ୍କ ମଧ୍ୟରୁ ଶତକଡ଼ା ୨୩ ଭାଗ ମାତ୍ର ବିଦ୍ୟାଳୟକୁ ପଠାଇ ପାରୁଛୁ । ତେଣୁ ୧୯୫୮ରେ ଯୋଜନା କମିଶନ ଏହି ସମସ୍ୟାର ବିସ୍ତୃତ ଆଲୋଚନା କରି ସୁପାରିଶ କଲେ ଯେ ଏକ ସମୟରେ ୬ ରୁ ୧୪ ବର୍ଷ ବୟସର ପିଲାଙ୍କପାଇଁ ୮ ବର୍ଷିଆ ପ୍ରାରମ୍ଭିକ ଶିକ୍ଷା ବ୍ୟବସ୍ଥା ନ କରି ୬ ରୁ ୧୦ ବର୍ଷ ବୟସ ପିଲାଙ୍କ ପାଇଁ ୫ ବର୍ଷିଆ ପ୍ରାଥମିକ ଶିକ୍ଷା ଓ ୧୧ ରୁ ୧୩ ବର୍ଷ ବୟସ ପିଲାଙ୍କ ପାଇଁ ଆଉ ଏକ ୩ ବର୍ଷିଆ ଶିକ୍ଷା ବ୍ୟବସ୍ଥା କରାଯାଉ । ଏହି ୫ ବର୍ଷିଆ ବାଧ୍ୟତାମୂଳକ ଶିକ୍ଷାର ସୁବିଧା ୩ୟ ପଞ୍ଚବାର୍ଷିକ ଯୋଜନାର ଶେଷ ସୁଦ୍ଧା ଅର୍ଥାତ୍ ଖ୍ରୀ: ୧୯୬୫-୬୬ ମଧ୍ୟରେ ଏବଂ ୩ ବର୍ଷିଆ ବାଧ୍ୟତାମୂଳକ ଶିକ୍ଷାର ସୁବିଧା ଖ୍ରୀ: ୧୯୭୫-୭୬ ମଧ୍ୟରେ ଦିଆଯାଉ । ଆଜି ବି ଅନେକ ମନେକରନ୍ତି ଯେ, ହୁଏତ ଲକ୍ଷ୍ୟ ଅନ୍ତ କମରେ ଖ୍ରୀ: ୧୯୮୫-୮୬ ମଧ୍ୟରେ ହାସଲ କରାଯାଇପାରେ । ତେଣୁ ସେହି ସର୍ବେ[illegible] ଯୋଜନା ଦିନେ କାଳ୍ପନିକ ବିରୋଧୀ ଓ ମାୟା ବୋଲି ମନେ ହେଉଥିଲା ଆଜି ପ୍ରକୃତରେ କାର୍ଯ୍ୟ-କ୍ଷେତ୍ରରେ ତାହା ଏକ ଅଗ୍ରଗାମୀ ଓ ସାହସିକ ଯୋଜନା ବୋଲି ମନେ ହେଉଅଛି ।

## ଶିକ୍ଷାକ୍ଷେତ୍ରରେ ଅନଗ୍ରସରତାର କେତେକ ପ୍ରଧାନ କାରଣ

ସ୍ୱତଃ ଏକ ପ୍ରଶ୍ନ ଉଠେ — କାହିଁକି ଆମେ ସମ୍ବିଧାନରେ ରହିଥିବା ଶିକ୍ଷା ସମ୍ବନ୍ଧୀୟ ଏକମାତ୍ର ନିର୍ଦ୍ଦେଶନାମାକୁ କାର୍ଯ୍ୟକାରୀ କରିବାକୁ ଅସମର୍ଥ ହେଲେ ? ଏହା ଏକ ଜଟିଳ ପ୍ରଶ୍ନ ଏବଂ ଏହାର କୌଣସି ଏକ ସିଧାସଳଖ ଉତ୍ତର ନାହିଁ । କିନ୍ତୁ ଏହା ନିଶ୍ଚିତ ଯେ ବିଭିନ୍ନ ସାମାଜିକ ଅର୍ଥନୈତିକ ଓ ଅନ୍ୟାନ୍ୟ କାରଣର ମିଳିତ ପ୍ରଭାବ ଯୋଗୁ ନିର୍ଦ୍ଦେଶ-ନାମାଟି କାର୍ଯ୍ୟକାରୀ କରିବା ସମ୍ଭବପର ହୋଇନାହିଁ । ସେଥି ମଧ୍ୟରୁ କେତେକ କାରଣ ନିମ୍ନରେ ପ୍ରଦତ୍ତ ହେଲା ।

ପ୍ରଥମତଃ ଦେଶରେ ଜନସଂଖ୍ୟାର ଅତିବୃଦ୍ଧି ଏପରି ଦ୍ରୁତଗତିରେ ହେଉଛି ଯେ ବର୍ତ୍ତମାନର କୌଣସି ସମସ୍ୟା ଆଖିଆଗରେ ରଖି ଯୋଜନା କରାଗଲେ ତାହା ମାତ୍ର କେତୋଟି ବର୍ଷ ପରେ ପୁଣି ଅକାମି ହୋଇଯାଉଅଛି । ଉଦାହରଣସ୍ୱରୂପ ବର୍ତ୍ତମାନ ଦେଶରେ ୫ ବର୍ଷରୁ ୧୧ ବର୍ଷ ବୟସ ପର୍ଯ୍ୟନ୍ତ ରହିଥିବା ସମସ୍ତ ପିଲାଙ୍କୁ ଯଦି ସ୍କୁଲକୁ ଆଣିବା ବ୍ୟବସ୍ଥା କରାଯାଏ ବା ସେହି ଅନୁସାରେ ଯୋଜନା କରାଯାଏ ତେବେ ୫ ବର୍ଷ ପରେ ଦେଖାଯିବ ଯେ ସେହି ବୟସର ପିଲାମାନଙ୍କ ସଂଖ୍ୟା ପୁଣି କେତେ ଲକ୍ଷ ବଢ଼ିଯାଇଅଛି, ଯାହା ଫଳରେ ଯୋଜନାରେ ରହିଥିବା ବ୍ୟବସ୍ଥାଗୁଡ଼ିକ ଅଧିକ ବ୍ୟାପକ ହେବା ଦରକାର ପଡ଼ୁଅଛି । ପୂର୍ବରୁ ହିସାବ କରି ଦେଖାଇ ଦିଆଯାଇଅଛି ଯେ କିପରି ପ୍ରତ୍ୟେକ ବର୍ଷ ସାକ୍ଷରଙ୍କ ସଂଖ୍ୟା ବଢ଼ିଚାଲିଥିଲେ ହେଁ ନିରକ୍ଷରଙ୍କ ସଂଖ୍ୟା ମଧ୍ୟ ବଢ଼ି ଚାଲିଛି । ତେଣୁ ଶିକ୍ଷା ସମ୍ବନ୍ଧୀୟ ଯେ କୌଣସି ଯୋଜନାର ପରିସର ବ୍ୟାପକ ସୁଦୂରପ୍ରସାରୀ ନ ହେଲେ ତାହା ଠିକ୍ ଭାବରେ

କାର୍ଯ୍ୟକାରୀ କରାଇବା ସମ୍ଭବପର ହେବ ନାହିଁ । ଭବିଷ୍ୟତରେ ସମସ୍ୟାଗୁଡ଼ିକ ପ୍ରତି ଲକ୍ଷ୍ୟରଖି ଶିକ୍ଷା ଯୋଜନାଗୁଡ଼ିକ ଅତି ବ୍ୟାପକ ଓ ସୁଦୂରପ୍ରସାରୀ କରିବା ମଧ୍ୟ ସହଜ-ସାଧ୍ୟ ବିଷୟ ନୁହେଁ । ଦ୍ୱିତୀୟତଃ, ବାଧ୍ୟତାମୂଳକ ଅବୈତନିକ ଶିକ୍ଷା ଏକ ଅତି ବ୍ୟୟସାପେକ୍ଷ ଯୋଜନା, ଏହା କାର୍ଯ୍ୟକାରୀ କରିବାକୁ ଆବଶ୍ୟକ ଅର୍ଥ ବ୍ୟବସ୍ଥା କରିବା ସମ୍ଭବପର ହେଉନାହିଁ । ତୃତୀୟତଃ, ଏ ଦେଶରେ ଅଗଣିତ ନିରକ୍ଷର ଲୋକେ ଶିକ୍ଷା ପ୍ରତି ଉଦାସୀନ । ସେମାନେ ଶିକ୍ଷାର ମୂଲ୍ୟ ବୁଝୁ ନ ଥିବାରୁ ଶିକ୍ଷା ବ୍ୟବସ୍ଥା ବାଧ୍ୟତାମୂଳକ କରାଇବା ପାଇଁ ଆନୁସଙ୍ଗିକ ପ୍ରଶାସନିକ ବ୍ୟବସ୍ଥା ମଧ୍ୟ କରିବା ଆବଶ୍ୟକ ହେବ । ଏହା ଫଳରେ ବାଧ୍ୟତାମୂଳକ ଶିକ୍ଷା ବ୍ୟବସ୍ଥା ଅଧିକତର ବ୍ୟୟସାପେକ୍ଷ ହେବ । ଚତୁର୍ଥତଃ, ଏବେ ମଧ୍ୟ ଅନେକ ଲୋକଙ୍କର ଧାରଣା ଯେ ନାରୀ ଶିକ୍ଷାର ଆବଶ୍ୟକତା ନାହିଁ । ତେଣୁ ଝିଅମାନେ ପାଠପଢ଼ିବା ଅନାବଶ୍ୟକ । ଏହି ଅବାଞ୍ଛିତ ମନୋଭାବ ଦେଶର ସାମାଜିକ ଅନଗ୍ରସରତାର ଏକ ସୂଚକ । ମୁଖ୍ୟତଃ ଏହିପରି ଏକ ଧାରଣା ହେତୁ ଆଜି ପ୍ରାଥମିକ, ମାଧ୍ୟମିକ ଓ ବିଶ୍ୱବିଦ୍ୟାଳୟ ପ୍ରତ୍ୟେକ କ୍ଷେତ୍ରରେ ଝିଅମାନଙ୍କ ସଂଖ୍ୟା ପୁଅମାନଙ୍କଠାରୁ କମ । ପଞ୍ଚମତଃ, ତଫସିଲଭୁକ୍ତ ଜାତି ଓ ସଂପ୍ରଦାୟର ଲୋକମାନେ ଏ ପର୍ଯ୍ୟନ୍ତ ମଧ୍ୟ ଅତ୍ୟନ୍ତ ଅନୁନ୍ନତ ଅବସ୍ଥାରେ ଅଛନ୍ତି । ସେମାନଙ୍କ ମଧ୍ୟରେ ଶିକ୍ଷାର ପ୍ରସାର କରାଇବା କଷ୍ଟକର । ଷଷ୍ଠତଃ, ଅନେକ କ୍ଷେତ୍ରରେ ପିତା ମାତାଙ୍କର ଆର୍ଥିକ ଦୁରବସ୍ଥା ହେତୁ ପିଲାମାନେ ଘରେ ଓ ବାହାରେ କାର୍ଯ୍ୟ କରି ସେମାନଙ୍କୁ ଆଂଶିକ ସାହାଯ୍ୟ କରିଥାଆନ୍ତି । ତେଣୁ ଏହି ପିଲାମାନଙ୍କ ପକ୍ଷରେ ପାଠ ପଢ଼ିବାକୁ ଆସିବା ସମ୍ଭବପର ହୁଏ ନାହିଁ । ସପ୍ତମତଃ, ଏ ଦେଶରେ ଅନେକ ଛୋଟ ଛୋଟ ଗ୍ରାମ ଅଛି, ଯେଉଁଗୁଡ଼ିକ ମଧ୍ୟରେ ଦୂରତା ଅଧିକ, ଯାହା ଫଳରେ ଗୋଟିଏ ଛୋଟ ଗ୍ରାମ ପାଇଁ ସ୍କୁଲଟିଏ କରାଇବା ଯେପରି ବ୍ୟୟସାପେକ୍ଷ ସେହିପରି ଦୂରଗ୍ରାମକୁ ଛୋଟ ପିଲାଙ୍କୁ ପଠାଇବା ମଧ୍ୟ କଷ୍ଟକର ବ୍ୟାପାର । ଭାରତବର୍ଷର ପ୍ରାୟ ଅଢ଼େଇ ଲକ୍ଷ ଏପରି ଗ୍ରାମ ଅଛି, ଯେଉଁଗୁଡ଼ିକରେ ପ୍ରତ୍ୟେକଟିର ଲୋକସଂଖ୍ୟା ଏକ ଶହରୁ କମ୍ । ଏତଦ୍‌ବ୍ୟତୀତ ଦେଶର ବହୁ ଅଞ୍ଚଳ ପାର୍ବତ୍ୟ ଏବଂ ଏ ପର୍ଯ୍ୟନ୍ତ ମଧ୍ୟ ଦୁର୍ଗମ । ଶେଷରେ ଏହି ସବୁ ପ୍ରତିବନ୍ଧକକୁ ଆଖି ଆଗରେ ରଖି ବାଧ୍ୟତାମୂଳକ ଶିକ୍ଷା ତଥା ବାଧ୍ୟତାମୂଳକ ଉପସ୍ଥାନ ପ୍ରବର୍ତ୍ତନ କରାଇବାକୁ ଯେଉଁ ଦକ୍ଷ ଓ ଦୃଢ଼ ପ୍ରଶାସନିକ ବ୍ୟବସ୍ଥା ଆବଶ୍ୟକ ସେହି ବ୍ୟବସ୍ଥାକୁ କାର୍ଯ୍ୟକାରୀ କରାଇବା ଯେ କେତେ ବ୍ୟୟସାପେକ୍ଷ, ତା' ମଧ୍ୟ ଚିନ୍ତାର ବିଷୟ । ମୋଟରେ ବହୁ ପ୍ରାକୃତିକ, ସାମାଜିକ, ଅର୍ଥନୈତିକ, ସାଂସ୍କୃତିକ ଓ ପ୍ରଶାସନିକ ଅସୁବିଧା ହେତୁ ବାଧ୍ୟତାମୂଳକ ସାର୍ବଜନୀନ ଶିକ୍ଷା ଏକ ଅସମ୍ଭବ କଥା ନ ହେଲେ ମଧ୍ୟ ଦୁରୂହ ଓ ବ୍ୟୟସାପେକ୍ଷ ହୋଇଅଛି ।

**ଶିକ୍ଷା କ୍ଷେତ୍ରରେ ଅନଗ୍ରସରତାର ଅନ୍ୟ ଏକ ଦିଗ**

ବାଧ୍ୟତାମୂଳକ ପ୍ରାଥମିକ ଶିକ୍ଷା ପାଇଁ ଉପୁଜୁଥିବା ଅସୁବିଧାର କେତେକ ଦିଗ ସମ୍ବନ୍ଧରେ

ପୂର୍ବ ପୃଷ୍ଠାରେ ଆଲୋଚନା କରାଗଲା, ମାତ୍ର ଏ ସବୁ ସାଧାରଣ ଅସୁବିଧା ବ୍ୟତୀତ ଏହି ସମସ୍ୟାର ଅନ୍ୟ ଏକ ପ୍ରଧାନ ଦିଗ ସମ୍ବନ୍ଧରେ ସମସ୍ତଙ୍କ ଦୃଷ୍ଟି ସହଜରେ ଆକର୍ଷିତ ହୁଏ ନାହିଁ । ତାହା ହେଉଛି ଭାରତର ଛଅଗୋଟି ଅନଗ୍ରସର ରାଜ୍ୟ, ଯେଉଁଗୁଡ଼ିକର ମୋଟ ଲୋକସଂଖ୍ୟା ଭାରତର ଲୋକସଂଖ୍ୟାର ଶତକଡ଼ା ୪୫ ଭାଗ ଅଥଚ ସେହି ରାଜ୍ୟଗୁଡ଼ିକର ବିଦ୍ୟାଳୟକୁ ପାଠ ପଢ଼ିବାକୁ ଆସୁ ନ ଥିବା ୬ରୁ ୧୦ ବର୍ଷ ବୟସର ପିଲାଙ୍କ ସଂଖ୍ୟା ସମଗ୍ର ଦେଶର ଏହି ବୟସର ପିଲାଙ୍କ ସଂଖ୍ୟାର ଶତକଡ଼ା ୬୦ ଭାଗ । ଏହି ରାଜ୍ୟଗୁଡ଼ିକ ହେଲେ ବିହାର, ଓଡ଼ିଶା, ମଧ୍ୟପ୍ରଦେଶ, ଉତ୍ତର ପ୍ରଦେଶ, ରାଜସ୍ଥାନ ଓ ଜାମ୍ମୁ-କାଶ୍ମୀର । ବିଦ୍ୟାଳୟକୁ ନ ଯାଉଥିବା ସମଗ୍ର ଦେଶର ୬ରୁ ୧୦ ବର୍ଷ ବୟସର ପିଲାମାନଙ୍କ ସଂଖ୍ୟାର ଶତକଡ଼ା ୪୨ ଭାଗ କେବଳ ବିହାର ଓ ଉତ୍ତର ପ୍ରଦେଶରେ । ଏହି ପ୍ରଦେଶଗୁଡ଼ିକରେ ୧୧ରୁ ୧୩ ବର୍ଷ ବୟସର ପିଲାମାନଙ୍କ ପାଇଁ ଶିକ୍ଷା ବ୍ୟବସ୍ଥା ଆହୁରି ଶୋଚନୀୟ । ଉଦାହରଣସ୍ୱରୂପ, ଖ୍ରୀ. ଅ. ୧୯୬୧ ରୁ ୧୯୬୬ ମଧ୍ୟରେ ଉକ୍ତ ବୟସର ଅଧିକ ୧୪ ଲକ୍ଷ ପିଲାଙ୍କ ପାଇଁ ସ୍କୁଲରେ ପଢ଼ିବାକୁ ବ୍ୟବସ୍ଥା କରାଯାଇଥିଲେ ମଧ୍ୟ ଏହି ସମୟ ମଧ୍ୟରେ ଏହି ବୟସର ପିଲାଙ୍କ ସଂଖ୍ୟା ବୃଦ୍ଧି ପାଇଥିଲା ପ୍ରାୟ ୨୮ ଲକ୍ଷ । ତେଣୁ ୧୪ ଲକ୍ଷ ଅଧିକ ପିଲାଙ୍କ ପାଇଁ ଏହି ୫ ବର୍ଷ ମଧ୍ୟରେ କରାଯାଇଥିବା ଶିକ୍ଷା ବ୍ୟବସ୍ଥା ଫଳରେ ପୂର୍ବରୁ ସ୍କୁଲରେ ପଢ଼ି ପାରୁ ନ ଥିବା ୧୧ରୁ ୧୩ ବର୍ଷ ବୟସର ପିଲାଙ୍କ ସଂଖ୍ୟା ଆହୁରି ୧୪ ଲକ୍ଷ ବଢ଼ିଗଲା । ମନେହୁଏ ୬ରୁ ୧୩ ବର୍ଷ ବୟସର ସମସ୍ତଙ୍କ ପାଇଁ ଦିଲ୍ଲୀ, ମାଡ୍ରାଜ ଓ କେରଳ ୧୯୭୫-୭୬ ଖ୍ରୀଷ୍ଟାବ୍ଦ ମଧ୍ୟରେ ଏବଂ ଅନ୍ୟାନ୍ୟ ଉନ୍ନତ ରାଜ୍ୟ-ଗୁଡ଼ିକ ୧୯୮୦-୮୧ ଖ୍ରୀଷ୍ଟାବ୍ଦ ମଧ୍ୟରେ ଶିକ୍ଷାର ବ୍ୟବସ୍ଥା କରିପାରିବେ; ମାତ୍ର ଏହି ଛଅଗୋଟି ଅନଗ୍ରସର ରାଜ୍ୟର ପ୍ରାଥମିକ ଶିକ୍ଷା ସମସ୍ୟାହିଁ ଦେଶର ସମସ୍ୟା ରୂପେ ବହୁ ବର୍ଷ ପର୍ଯ୍ୟନ୍ତ ଦେଖାଦେବ । ଏହି ରାଜ୍ୟଗୁଡ଼ିକରେ ଶିକ୍ଷାର ପ୍ରସାର ଯେପରି ଚାଲିଛି ସେହିପରି ଚାଲିଲେ ବିଂଶ ଶତାବ୍ଦୀର ଶେଷ ପୂର୍ବରୁ ଲକ୍ଷ୍ୟ ହାସଲ ହେବାର ସମ୍ଭାବନା ନାହିଁ ।

ପ୍ରସଙ୍ଗ କ୍ରମେ ଏହା ମଧ୍ୟ ବିଚାର କରାଯାଇପାରେ ଯେ ଏହି ଛଅଗୋଟି ରାଜ୍ୟ ଶିକ୍ଷା କ୍ଷେତ୍ରରେ ଅନଗ୍ରସର ହେବାର ବହୁ ପ୍ରାକୃତିକ, ସାମାଜିକ, ଅର୍ଥନୈତିକ କାରଣ ରହିଅଛି । ରାଜସ୍ଥାନର ଏକ ବିସ୍ତୃତ ଅଂଶ ମରୁଭୂମି ଯେଉଁଠାରେ ଜନବସତିଗୁଡ଼ିକ ଅତ୍ୟନ୍ତ ବିକ୍ଷିପ୍ତ ଭାବରେ ରହିଅଛି । ପୁଣି ସେଗୁଡ଼ିକର ଲୋକସଂଖ୍ୟା ମଧ୍ୟ କମ୍ । ଠିକ୍ ସେହିପରି ଅବସ୍ଥା ଓଡ଼ିଶା, ଉତ୍ତର ପ୍ରଦେଶ, ଜାମ୍ମୁ-କାଶ୍ମୀର ଓ ମଧ୍ୟପ୍ରଦେଶର ଅନେକ ଅଂଶରେ ପାହାଡ଼, ଜଙ୍ଗଲ ହେତୁ ହୋଇଅଛି । ବହୁ ସଂଖ୍ୟକ ତଫସିଲଭୁକ୍ତ ସଂପ୍ରଦାୟ, ଅନୁନ୍ନତ ଶ୍ରେଣୀର ଲୋକ ବିହାର, ଓଡ଼ିଶା, ମଧ୍ୟପ୍ରଦେଶ ଓ ରାଜସ୍ଥାନରେ ଠୁଳ ହୋଇଅଛନ୍ତି କହିଲେ ଚଳେ । ନାରୀ ଶିକ୍ଷାର ବିରୋଧ କରିବା ଏହି ରାଜ୍ୟଗୁଡ଼ିକର ଲୋକମାନଙ୍କର ଏକ ପରମ୍ପରା କହିଲେ ଅତ୍ୟୁକ୍ତି ହେବ ନାହିଁ । ବିହାରର ମୁଣ୍ଡପିଛା ଆୟ ଭାରତର ଅନ୍ୟ

ରାଜ୍ୟଗୁଡ଼ିକଠାରୁ କମ୍ । ସର୍ବୋପରି ଏହି ଛଅଗୋଟି ରାଜ୍ୟ ଅନ୍ୟାନ୍ୟ ରାଜ୍ୟଗୁଡ଼ିକଠାରୁ କମ୍ ଶିଳ୍ପୋନ୍ନତ । ତେଣୁ ଅଧିକ ଦରିଦ୍ର ।

## ଶିକ୍ଷା କ୍ଷେତ୍ରରେ ଅନଗ୍ରସରତା ଓ ଆଞ୍ଚଳିକ ଅସମତା

ବର୍ତ୍ତମାନ ବିଷୟର ଜାଣିବାର କଥା ଯେ, ଯଦି ଗୋଟିଏ ଦେଶର କେତେକ ରାଜ୍ୟ ୧୯୭୫-୭୬ ମସିହା ମଧ୍ୟରେ, କେତେକ ୧୯୮୦-୮୧ ମସିହା ମଧ୍ୟରେ ଏବଂ କେତେକ ୨୦୦୦ ଖ୍ରୀଷ୍ଟାବ୍ଦ ଆଡ଼କୁ ୬ରୁ ୧୩ ବର୍ଷର ସବୁ ପିଲାଙ୍କ ପାଇଁ ଶିକ୍ଷା ବ୍ୟବସ୍ଥା କରନ୍ତି ତେବେ ଦେଶରେ ଏବେ ରହିଥିବା ଆଞ୍ଚଳିକ ଅସମତା ବଢ଼ି ବଢ଼ି ଚାଲିବ ନାହିଁକି ? ହୁଏ ତ ଏହି କାରଣରୁ ଅନୁନ୍ନତ ଓ ଅନଗ୍ରସର ରାଜ୍ୟଗୁଡ଼ିକ ସବୁଦିନ ପାଇଁ ଅବହେଳିତ ହୋଇ ରହିଯିବେ । ଏଥିପାଇଁ କୋଠାରି କମିଶନଙ୍କ ମତ ହେଉଛି, ସମ୍ବିଧାନର ନିର୍ଦ୍ଦେଶନାମା ସବୁ ରାଜ୍ୟରେ ୧୯୮୫-୮୬ ମସିହା ମଧ୍ୟରେ କାର୍ଯ୍ୟକାରୀ ହେଉ । ୧୯୮୫-୮୬ ମସିହା ଆସିବାକୁ ଆହୁରି ଅନେକ ବର୍ଷ ଅଛି ବୋଲି ଯେଉଁମାନେ ଭାବୁଥିବେ ସେମାନେ କୋଠାରି କମିଶନଙ୍କର ସୁପାରିଶର ଗୁରୁତ୍ୱ ଓ ବିଶାଳତା ନିମ୍ନଲିଖିତ କେତୋଟି ହିସାବରୁ ହୃଦୟଙ୍ଗମ କରିପାରିବେ । ପ୍ରଥମ ଶ୍ରେଣୀରୁ ସପ୍ତମ ଶ୍ରେଣୀ ପର୍ଯ୍ୟନ୍ତ ପଢ଼ୁଥିବା ପିଲାଙ୍କ ସଂଖ୍ୟା ୧୯୬୫-୬୬ ମସିହାରେ ୫ କୋଟି ଥିବା ସ୍ଥଳେ, ୧୯୮୫-୮୬ ବେଳକୁ ଏହି ସଂଖ୍ୟା ୧୨ କୋଟି ୫୦ ଲକ୍ଷକୁ ବୃଦ୍ଧି ପାଇବ । ସମସ୍ତ ଦେଶରେ ପ୍ରଥମରୁ ଚତୁର୍ଥ ଶ୍ରେଣୀ ପର୍ଯ୍ୟନ୍ତ ୧୯୬୫-୬୬ ମସିହାରେ ପାଠ ପଢ଼ୁଥିବା ପିଲା ଥିଲେ ୩ କୋଟି ୭୦ ଲକ୍ଷ । ସମ୍ବିଧାନର ନିର୍ଦ୍ଦେଶନାମା କାର୍ଯ୍ୟକାରୀ କରିବାକୁ ଗଲେ ଆମକୁ ୧୯୭୫-୭୬ ମସିହା ବେଳକୁ ୭ କୋଟି ୨୦ ଲକ୍ଷ ଓ ୧୯୮୫-୮୬ ବେଳକୁ ୭ କୋଟି ୬୦ ଲକ୍ଷ ପିଲାଙ୍କ ପାଇଁ ନାମଲେଖା ବ୍ୟବସ୍ଥା କରିବାକୁ ହେବ । ସେହିପରି ପଞ୍ଚମରୁ ସପ୍ତମ ଶ୍ରେଣୀରେ ପଢ଼ୁଥିବା ପିଲାଙ୍କ ସଂଖ୍ୟା ୧୯୬୫-୬୬ ମସିହାରେ ୧ କୋଟି ୩୦ ଲକ୍ଷ ଥିବା ସ୍ଥଳେ ଏହି ସଂଖ୍ୟା ୧୯୭୫-୭୬ ମସିହାକୁ ୩ କୋଟି ୨୦ ଲକ୍ଷରେ ଓ ୧୯୮୫-୮୬ ମସିହାକୁ ୪ କୋଟି ୯୦ ଲକ୍ଷରେ ପହଞ୍ଚିବା ଆଶା କରାଯାଏ ।

ପରପୃଷ୍ଠାରେ ଦିଆଯାଇଥିବା ତଥ୍ୟରୁ ଏହା ସ୍ପଷ୍ଟ ଅନୁମିତ ହୁଏ ଯେ, ନିମ୍ନପ୍ରାଥମିକ ସ୍ତରରେ ଶିକ୍ଷାର ପ୍ରସାର ଅତି ଦ୍ରୁତ ହୋଇଅଛି । ଏହି କ୍ଷେତ୍ରରେ ଛାତ୍ରଛାତ୍ରୀମାନଙ୍କର ମୋଟ ସଂଖ୍ୟା ୧୯୫୦-୫୧ ମସିହାରେ ୧ କୋଟି ୪୦ ଲକ୍ଷ ଥିବା ସ୍ଥଳେ ୧୯୭୫-୭୬ ମସିହାକୁ ୩ କୋଟି ୭୦ ଲକ୍ଷକୁ ବୃଦ୍ଧି ହୋଇଅଛି, ଅର୍ଥାତ୍ ଛାତ୍ରଛାତ୍ରୀ ସଂଖ୍ୟା ଏହି ସମୟ ମଧ୍ୟରେ ପ୍ରାୟ ତିନିଗୁଣ ବୃଦ୍ଧି ହୋଇଅଛି । ଆହୁରି ମଧ୍ୟ ଏଥିରୁ ଜଣାଯାଏ ଯେ, ବାର୍ଷିକ ବୃଦ୍ଧି ହାର ପ୍ରଥମ ଯୋଜନାରେ ଶତକଡ଼ା ୪.୯ ହୋଇଥିବା ସ୍ଥଳେ ଦ୍ୱିତୀୟ ଯୋଜନା କାଳରେ ଶତକଡ଼ା ୭.୫କୁ ବୃଦ୍ଧି ପାଇ ତୃତୀୟ ଯୋଜନା କାଳରେ ଶତକଡ଼ା ୮.୨ରେ ପହଞ୍ଚିଛି । ବୃଦ୍ଧି ହାର ଏହିପରି ଆଉ କେତେ ବର୍ଷ ଚାଲିଲେ ଆଗାମୀ କେତେବର୍ଷ ମଧ୍ୟରେ ଏହି ଅନ୍ତଗତ ଚରମ ସୀମାରେ ପହଞ୍ଚି ତାହାପରେ ଧୀରେ ଧୀରେ ଧୀମେଇଯିବ ଅର୍ଥାତ୍


ବିଦ୍ୟାଳୟରେ ଛାତ୍ରଛାତ୍ରୀ ସଂଖ୍ୟା 1950-85
ଛାତ୍ର ସଂଖ୍ୟା (କୋଟିରେ)
8
6
4
2
0
୧ମରୁ ୪ର୍ଥ ଶ୍ରେଣୀ
୫ମରୁ ୭ମ ଶ୍ରେଣୀ
୮ମରୁ ଦଶମ ଶ୍ରେଣୀ
1950·51
1955·56
1960·61
1965·66
1970·71
1075·76
1980·81
1985·86

ପଞ୍ଚମ ଯୋଜନାର ଶେଷଅଡ଼କୁ ବୃଦ୍ଧିହାର ଶତକଡ଼ା ୫.୫ ହୋଇ ୬ଷ୍ଠ ଯୋଜନା କାଳରେ ଶତକଡ଼ା ୨.୨କୁ କମିଆସିବ । ତେଣୁ ବିଦ୍ୟାଳୟରେ ମୋଟ ଛାତ୍ରଛାତ୍ରୀ ସଂଖ୍ୟା ୧୯୬୫-୬୬ ମସିହାରେ ୩ କୋଟି ୬୦ ଲକ୍ଷରୁ ୧୯୭୦-୭୧ ମସିହାରେ ୫ କୋଟି ୪୦ ଲକ୍ଷକୁ ବୃଦ୍ଧିପାଇ ୧୯୭୫-୭୬ ମସିହାରେ ୭ କୋଟି ୨୦ ଲକ୍ଷରେ ଓ ୧୯୮୦-୮୧ ମସିହାରେ ୮ କୋଟିରେ ପହଞ୍ଚିବ । ଏହାପରେ ଛାତ୍ରଛାତ୍ରୀ ସଂଖ୍ୟା ପ୍ରକୃତରେ ୭ କୋଟି ୬୦ ଲକ୍ଷକୁ କମି ଆସିବ; କାରଣ ଏହି ସମୟ ମଧ୍ୟରେ ଜନ୍ମହାର ନିୟନ୍ତ୍ରଣ ଫଳରେ ଜନ୍ମହାର କମିଯାଇଥିବ ବୋଲି ଆଶା କରାଯାଏ । ଶିକ୍ଷା ପ୍ରସାରର ଚାପ କମିଗଲେ ତେଣିକି ଗୁଣାତ୍ମକ ଅଭିବୃଦ୍ଧି ପାଇଁ ଅଧିକ ମନୋନିବେଶ କରିବା ସହଜସାଧ୍ୟ ହେବ ।

ଉଚ୍ଚ ପ୍ରାଥମିକ ସ୍ତରରେ ଶିକ୍ଷାର ପ୍ରସାର ପ୍ରଥମ ତିନିଗୋଟି ଯୋଜନା କାଳରେ ନିମ୍ନ ପ୍ରାଥମିକ ସ୍ତରଠାରୁ ଦ୍ରୁତତର ହୋଇଅଛି । ଏହି ସ୍ତରରେ ଛାତ୍ରଛାତ୍ରୀ ସଂଖ୍ୟା ୧୯୫୦-୫୧ ମସିହାରେ ୩୦ ଲକ୍ଷ ଥିବା ସ୍ଥଳେ ୧୯୬୫-୬୬ ମସିହାରେ ତାହା ୧ କୋଟି ୩୦ ଲକ୍ଷରେ ପହଞ୍ଚିଛି ଅର୍ଥାତ ପନ୍ଦର ବର୍ଷ ମଧ୍ୟରେ ଛାତ୍ରଛାତ୍ରୀ ସଂଖ୍ୟା ଚାରିଗୁଣରୁ ଅଧିକ ହୋଇଅଛି । ଶିକ୍ଷା ପ୍ରସାରର ବେଗ ପ୍ରତ୍ୟେକ ଯୋଜନା କାଳରେ ଅଧିକରୁ ଅଧିକତର ହୋଇଅଛି; କାରଣ ବାର୍ଷିକ ବୃଦ୍ଧିହାର ପ୍ରଥମ ଯୋଜନା କାଳରେ ଶତକଡ଼ା ୭.୭ ଥିବା ସ୍ଥଳରେ, ଦ୍ୱିତୀୟ ଯୋଜନା କାଳରେ ଶତକଡ଼ା ୧୦-୨ ଓ ତୃତୀୟ ଯୋଜନା କାଳରେ ଶତକଡ଼ା ୧୧.୦ ହୋଇଅଛି । ଯାହା ଦେଖାଯାଉଅଛି ମୋଟ ଛାତ୍ରଛାତ୍ରୀ ସଂଖ୍ୟା ୧୯୬୫-୬୬ ମସିହାରେ ୧ କୋଟି ୩୦ ଲକ୍ଷ ଥିବା ସ୍ଥଳେ, ୧୯୭୫-୭୬ରେ ୩ କୋଟି ୨୦ ଲକ୍ଷ ଏବଂ ୧୯୮୫-୮୬ରେ ୪ କୋଟି ୯୦ ଲକ୍ଷରେ ପହଞ୍ଚିବ । ଯୋଜନାକାରୀମାନେ ଏହିସବୁ ହିସାବ ଆଖିଆଗରେ ନ ରଖିଲେ ଯୋଜନାହିଁ ଯୋଜନାରେ ରହିଯିବ ।

## ବାଧ୍ୟତାମୂଳକ ପ୍ରାଥମିକ ଶିକ୍ଷାପାଇଁ କେତେକ ଅତ୍ୟାବଶ୍ୟକ କାର୍ଯ୍ୟକ୍ରମ

ପୃଥିବୀର ଉନ୍ନତ ଦେଶଗୁଡ଼ିକରେ ପ୍ରଚଳିତ ବାଧ୍ୟତାମୂଳକ ପ୍ରାଥମିକ ଶିକ୍ଷାର କ୍ରମବିକାଶ ପ୍ରତି ଦୃଷ୍ଟି ଦେଲେ ଜଣାଯାଏ ଯେ ଏହି ବ୍ୟବସ୍ଥାର ତିନିଗୋଟି ପର୍ଯ୍ୟାୟ ରହିଅଛି । ସେହି ଅନୁସାରେ ପ୍ରଥମେ ଆମର ବିଦ୍ୟାଳୟଗୁଡ଼ିକ ଏପରି ସ୍ଥାନରେ ଅବସ୍ଥାପିତ ହେବା ଦରକାର, ଯେପରି ପ୍ରତ୍ୟେକ ପିଲାକୁ ବେଶୀ ବାଟ ଚାଲିବାକୁ ପଡ଼ିବ ନାହିଁ । ଦ୍ୱିତୀୟତଃ, ପ୍ରଥମ ଶ୍ରେଣୀରେ ନାମ ଲେଖିବାକୁ ଧାର୍ଯ୍ୟ ହୋଇଥିବା ବୟସ ହୋଇଗଲେ ପ୍ରତ୍ୟେକ ପିଲା ଯେପରି ନାମ ଲେଖାନ୍ତି ତାହା ଦେଖିବାକୁ ହେବ । ଏହା ପ୍ରଚାର, ପ୍ରରୋଚନା ବା ଆବଶ୍ୟକ ହେଲେ ଆଇନାନୁମୋଦିତ ଦଣ୍ଡବିଧାନ ଦ୍ୱାରା କରାଯାଇପାରେ । ତୃତୀୟତଃ ବୟସସୀମା ଅତିକ୍ରମ ନ କରିବା ପର୍ଯ୍ୟନ୍ତ ଯେପରି କୌଣସି ପିଲା ବିଦ୍ୟାଳୟ ଛାଡ଼ି ନ ଆସେ ତାହା ମଧ୍ୟ ଦେଖିବାକୁ ହେବ ।

ଏ ପର୍ଯ୍ୟନ୍ତ ଭାରତରେ ପ୍ରାୟ ସବୁ ରାଜ୍ୟରେ ୩୦୦ରୁ ଅଧିକ ଲୋକ ବାସକରୁଥିବା ପ୍ରତ୍ୟେକ ଗ୍ରାମରେ ନିମ୍ନ ପ୍ରାଥମିକ ବିଦ୍ୟାଳୟ ସ୍ଥାପିତ ହୋଇଅଛି । କେତେକ କେତେକ

ସ୍ଥାନରେ ଏହାଠାରୁ କମ ଲୋକ ବାସକରୁଥିବା ଗ୍ରାମମାନଙ୍କରେ ମଧ୍ୟ ନିମ୍ନ ପ୍ରାଥମିକ ବିଦ୍ୟାଳୟ ସ୍ଥାପିତ ହୋଇଅଛି, ମା'ତ୍ର ଉଚ୍ଚ ପ୍ରାଥମିକ ବିଦ୍ୟାଳୟ (୬ଷ୍ଠ ଓ ୭ମ ଶ୍ରେଣୀ ଅନ୍ତର୍ଭୁକ୍ତ) ସଂଖ୍ୟା ସନ୍ତୋଷଜନକ ନୁହେଁ । ପ୍ରତି ତିନିଗୋଟି ନିମ୍ନ ପ୍ରାଥମିକ ବିଦ୍ୟାଳୟ ପାଇଁ ଗୋଟିଏ ଉଚ୍ଚ ପ୍ରାଥମିକ ବିଦ୍ୟାଳୟ ଦରକାର ହେଉଥିଲେହେଁ ବର୍ତ୍ତମାନ ପ୍ରତି ୫ ଗୋଟି ନିମ୍ନ ପ୍ରାଥମିକ ବିଦ୍ୟାଳୟ ପାଇଁ ଗୋଟିଏ ଉଚ୍ଚ ପ୍ରାଥମିକ ବିଦ୍ୟାଳୟ ରହିଅଛି । କେତେକ ରାଜ୍ୟରେ ପ୍ରତି ଦଶଗୋଟି ନିମ୍ନ ପ୍ରାଥମିକ ବିଦ୍ୟାଳୟ ପାଇଁ ଗୋଟିଏ ମାତ୍ର ଉଚ୍ଚ ପ୍ରାଥମିକ ବିଦ୍ୟାଳୟ ରହିଅଛି । ଉନ୍ନତ ଦେଶମାନଙ୍କରେ ପିତାମାତାଙ୍କୁ ବର୍ଷକ ଆଗରୁ ପିଲାର ନାମ ବିଦ୍ୟାଳୟରେ ତାଲିକାଭୁକ୍ତ କରିବାକୁ ପଡେ ଓ ସେମାନେ କେବଳ ପ୍ରଥମ ଶ୍ରେଣୀରେ ନାମ ଲେଖାଇଥାଆନ୍ତି । ଆମ ଦେଶରେ ସେହିପରି କୌଣସି ବ୍ୟବସ୍ଥା ନ ଥିବାରୁ ବିଭିନ୍ନ ବୟସର ପିଲାମାନେ ଏକାଶ୍ରେଣୀରେ ନାମ ଲେଖାଉଅଛନ୍ତି ଯାହା ହେତୁ ଶିକ୍ଷାଗତ ଅସୁବିଧା ସୃଷ୍ଟି ହେଉଛି । ବିଭିନ୍ନ ବୟସର ବାଳକ ବାଳିକାମାନେ କିପରି ଗୋଟିଏ ଶ୍ରେଣୀରେ ନାମ ଲେଖାନ୍ତି ତା'ର ଏକ ଚିତ୍ର ନିମ୍ନ ପ୍ରଦତ୍ତ ହିସାବରୁ ସ୍ପଷ୍ଟ ହୋଇଯିବ । ୧୯୬୧-୬୨ ମସିହାରେ ଆମଦେଶରେ ପ୍ରଥମ ଶ୍ରେଣୀରେ ନାମ ଲେଖାଇବା ବୟସର (୬ରୁ ୭ ବର୍ଷ) ପିଲାମାନଙ୍କ ସଂଖ୍ୟା ଥିଲା ପ୍ରାୟ ଏକ କୋଟି ଚବିଶ ଲକ୍ଷ । ସେହି ବର୍ଷର ପ୍ରଥମ ଶ୍ରେଣୀରେ ନାମ ଲେଖାଇଥିଲେ ପ୍ରାୟ ଏକ କୋଟି ସତାବନ ଲକ୍ଷ ପିଲା । ଏଥି ମଧ୍ୟରୁ ୬ ରୁ ୭ ବର୍ଷ ବୟସର ପିଲାମାନଙ୍କ ସଂଖ୍ୟା ଥିଲା ମାତ୍ର ପଚିଶ ଲକ୍ଷ ଅର୍ଥାତ୍ ପ୍ରଥମ ଶ୍ରେଣୀରେ ନାମ ଲେଖାଇଥିବା ପିଲାମାନଙ୍କ ସଂଖ୍ୟାର ଶତକଡ଼ା ୩୧.୭ ଭାଗ । ଅନ୍ୟାନ୍ୟ ବୟସର ପିଲାମାନଙ୍କ ସଂଖ୍ୟା ନିମ୍ନରେ ପ୍ରଦତ୍ତ ହେଲା ।

| ବୟସ (ବର୍ଷରେ) | ପିଲାମାନଙ୍କର ସଂଖ୍ୟା | ପ୍ରଥମ ଶ୍ରେଣୀର ସମୁଦାୟ ପିଲାମାନଙ୍କର ଶତକଡ଼ା ଭାଗ |
|---|---|---|
| ୫ରୁ କମ୍ | ୧୬୨,୩୫୨ | ୧.୦ |
| ୫— ୬ | ୨,୮୯୨,୧୪୮ | ୧୮.୪ |
| ୬— ୭ | ୪,୯୯୩,୧୧୩ | ୩୧.୭ |
| ୭— ୮ | ୪,୦୪୨,୬୯୭ | ୨୫.୭ |
| ୮— ୯ | ୧,୯୭୬,୬୩୭ | ୧୨.୫ |
| ୯—୧୦ | ୯୪୧,୯୫୩ | ୬.୦ |
| ୧୦—୧୧ | ୪୬୪,୭୬୮ | ୩.୦ |
| ୧୧—୧୨ | ୧୮୦,୯୯୨ | ୧.୧ |
| ୧୨ରୁ ଊର୍ଦ୍ଧ୍ୱ | ୯୧,୪୦୫ | ୦.୬ |
| ପ୍ରଥମ ଶ୍ରେଣୀର ମୋଟ ପିଲା ସଂଖ୍ୟା | ୧୫,୭୪୬,୧୬୪ | ୧୦୦.୦ |

କେବଳ ପିଲମାନେ ନାମ ଲେଖାଇଦେଲେ ବା ସରକାର ନୂତନ ବିଦ୍ୟାଳୟ ସ୍ଥାପନ କରିଦେଲେ ଯେ ସମସ୍ୟାର ସମାଧାନ ହୋଇଯିବ, ସେପରି ନୁହେଁ । ହିସାବରୁ ଜଣାଯାଏ ଯେ, ପ୍ରଥମ ଶ୍ରେଣୀରେ ନାମ ଲେଖାଉଥିବା ପ୍ରତି ଶହେ ପିଲଙ୍କ ମଧ୍ୟରୁ ମାତ୍ର ଅଧାଅଧି ଚତୁର୍ଥ ଶ୍ରେଣୀ ପାଠ ସମ୍ପୂର୍ଣ୍ଣ କରନ୍ତି ଓ ୩୦ ଜଣ ସପ୍ତମ ଶ୍ରେଣୀ ପାଠ ସମ୍ପୂର୍ଣ୍ଣ କରନ୍ତି । ପାଠପଢ଼ା ଛାଡୁଥିବା ପିଲଙ୍କ ସଂଖ୍ୟା ପ୍ରଥମ ଶ୍ରେଣୀରେ ସର୍ବାଧିକ । ଏହାହିଁ ଶିକ୍ଷାକୁ ଅଯଥା ବ୍ୟୟସାପେକ୍ଷ କରାଉଅଛି । ତେଣୁ ଆମକୁ ନିଶ୍ଚିତ ହେବାକୁ ହେବ ଯେ ପିଲଟିଏ ପ୍ରଥମ ଶ୍ରେଣୀରେ ନାମ ଲେଖାଇ ଯେପରି ଅଧାରୁ ପାଠପଢ଼ା ନ ଛାଡ଼ି ୫ମ ଶ୍ରେଣୀ ପର୍ଯ୍ୟନ୍ତ ଅନ୍ତତଃ ପଢେ ଏବଂ ଅନ୍ୟୂନ ଶତକଡ଼ା ୮୦ ଜଣ ଛାତ୍ରଛାତ୍ରୀ ୭ମ ଶ୍ରେଣୀରେ ଯୋଗ ଦିଅନ୍ତି । ଏହା କାର୍ଯ୍ୟକାରୀ କରିବାକୁ ଆବଶ୍ୟକ ପ୍ରଶାସନିକ ବ୍ୟବସ୍ଥା କରି ନ ପାରିଲେ, ପ୍ରାଥମିକ ଶିକ୍ଷାପାଇଁ ପ୍ରଣୟନ କରାଯାଉଥିବା ସମସ୍ତ ଯୋଜନା ବ୍ୟର୍ଥ ହୋଇଯିବ ।

## ପିଲମାନେ ପାଠପଢ଼ା ଛାଡ଼ିଦେବାର କାରଣ ଓ ତାହାର ପ୍ରତିକାର

ପ୍ରାଥମିକ ଶିକ୍ଷା କ୍ଷେତ୍ରରେ ବିଶେଷତଃ ପ୍ରଥମ ଶ୍ରେଣୀରେ ପିଲମାନଙ୍କର ପଢ଼ା ଛାଡ଼ିଦେବା ଅନେକ କାରଣ ହେତୁ ହୋଇଥାଏ । ସେ ସବୁ ହେଲା ଶ୍ରେଣୀର ବିଭିନ୍ନ ବୟସର ପିଲମାନଙ୍କର ଏକତ୍ର ଅଧ୍ୟୟନ, କେତେକ ରାଜ୍ୟରେ ବର୍ଷସାରା ପ୍ରଥମ ଶ୍ରେଣୀରେ ନାମ ଲେଖାଇବାର ପ୍ରଥା, ପିଲମାନଙ୍କର ବିଦ୍ୟାଳୟରେ ଅନିୟମିତ ଉପସ୍ଥାନ, ବିଦ୍ୟାଳୟରେ ଉପକରଣ ଅଭାବ, ପିତାମାତାଙ୍କର ପିଲମାନଙ୍କୁ ଆବଶ୍ୟକ ବହିପତ୍ର ତଥା ଶିକ୍ଷୋପକରଣ ଯୋଗାଇ ଦେବାର ଅକ୍ଷମତା, ଅନୁପଯୋଗୀ ପାଠ୍ୟକ୍ରମ, ଶିକ୍ଷକମାନଙ୍କର କ୍ରୀଡ଼ାକୌତୁକ ମାଧ୍ୟମରେ ପାଠପଢ଼ାଇବାର ଅକ୍ଷମତା ଏବଂ ସର୍ବୋପରି ଏକ ଅନୁପଯୁକ୍ତ ପରୀକ୍ଷା ପଦ୍ଧତି । ଏଗୁଡ଼ିକ ମଧ୍ୟରୁ କେତେକ ଅସୁବିଧାର ଦୂରୀକରଣ ପାଇଁ ଉପଯୁକ୍ତ ବ୍ୟବସ୍ଥା କରିବା ଆଦୌ କଷ୍ଟସାଧ୍ୟ ନୁହେଁ ଏବଂ ଅନ୍ୟ କେତେକ ଶିକ୍ଷାର ଗୁଣାତ୍ମକ ଅଭିବୃଦ୍ଧି ଫଳରେ କ୍ରମେ କ୍ରମେ ଦୂରୀଭୂତ ହୋଇଯିବ । କେବଳ କେତେକ ବିଶେଷ ଅସୁବିଧା ପାଇଁ ଧ୍ୟାନ ଦେବାକୁ ହେବ; ଯଥା—ପ୍ରଥମ ଶ୍ରେଣୀ ପରେ ପରୀକ୍ଷା ବ୍ୟବସ୍ଥା । ଏହି ପରୀକ୍ଷା ଉଠାଇ ଦିଆଯିବା ଦରକାର । ପ୍ରଥମ ଦୁଇ ଶ୍ରେଣୀ ଏବଂ ସମ୍ଭବ ହେଲେ ପ୍ରଥମ ତିନିଗୋଟି ବା ଚାରିଗୋଟି ଶ୍ରେଣୀକୁ ଶିକ୍ଷାଦାନ ଦୃଷ୍ଟିରୁ ଗୋଟିଏ ଏକକ ବୋଲି ଧରି ନିଆଯିବା ଉଚିତ । ଏହି ବ୍ୟବସ୍ଥା ଫଳରେ ପ୍ରତ୍ୟେକ ପିଲା ତାର ଦକ୍ଷତା ଅନୁସାରେ ଅଗ୍ରଗତି କରିବାକୁ ସମର୍ଥ ହେବ । ପ୍ରଥମ ଶ୍ରେଣୀରେ କ୍ରୀଡ଼ାକୌତୁକ ମାଧ୍ୟମରେ ପାଠ ପଢ଼ାଇବାର ଶୈଳୀ ଏପରି ହେବା ଦରକାର, ଯାହା ଫଳରେ ବିଦ୍ୟାଳୟ ପିଲମାନଙ୍କର ଏକ ଆକର୍ଷଣୀୟ କ୍ଷେତ୍ରରେ ପରିଣତ ହେବ । ଏହି ଶ୍ରେଣୀରେ ପାଠ ପଢ଼ାଉଥିବା ଶିକ୍ଷକମାନେ ଏଥିପାଇଁ ସ୍ୱତନ୍ତ୍ର ତାଲିମ ପାଇବା ଆବଶ୍ୟକ । ପିତାମାତାଙ୍କର ଆର୍ଥିକ ଦୁର୍ଗତି ହେତୁ ମଧ୍ୟ ଅନେକ ପିଲା ପାଠପଢ଼ା ଛାଡ଼ି

ଦେଇଥାନ୍ତି । ଅବଶ୍ୟ ଏହି ଶ୍ରେଣୀର ପିତାମାତାମାନେ ପିଲାମାନଙ୍କୁ ସାଧାରଣତଃ ୬ରୁ ୯ ବର୍ଷ ବୟସ ମଧ୍ୟରେ ବିଦ୍ୟାଳୟକୁ ପଠାଇବାକୁ କୁଣ୍ଠିତ ହୁଅନ୍ତି ନାହିଁ; କାରଣ ଉପରୋକ୍ତ ବୟସର ପିଲାମାନେ ଗୃହର କୌଣସି କାର୍ଯ୍ୟରେ ସହାୟକ ହୋଇ ନ ଥାନ୍ତି । ମାତ୍ର ୯।୧୦ ବର୍ଷ ବୟସ ହେଲା ପରେ ପିଲାଟି ଯେତେବେଳେ ପିତାମାତାଙ୍କ କାର୍ଯ୍ୟରେ ସହାୟକ ହୋଇ ଆର୍ଥିକ ସ୍ଥିତି ସଚ୍ଛଳ ସାମାନ୍ୟ ବଦଳାଇବାକୁ ସମର୍ଥ ହୁଏ, ସେତେବେଳେ ସେ ପାଠପଢ଼ା ଛାଡ଼ିଦିଏ ବା ପିତାମାତା ତାହାକୁ ପାଠପଢ଼ା ଛାଡ଼ିଦେବାକୁ ବାଧ୍ୟ କରନ୍ତି ଏବଂ ଅଳ୍ପକେତେକ ବର୍ଷ ପରେ ପିଲାଟି ସବୁ ପାଠ ମଧ୍ୟ ଭୁଲିଯାଏ । ଏହି ସମସ୍ୟାର ସମାଧାନ ଲୋକମାନଙ୍କର ଆର୍ଥିକ ଅବସ୍ଥାର ଉନ୍ନତି ଉପରେ ନିର୍ଭର କରେ; ତେଣୁ ଏହା ସମୟସାପେକ୍ଷ । ମାତ୍ର ବର୍ତ୍ତମାନ ପାଇଁ ଏହି ସମସ୍ୟାର ସଙ୍କୁଚିତ ହେବାକୁ ଏକମାତ୍ର ଉପାୟ ହେଉଛି ଏହି ଶ୍ରେଣୀର ପିଲାମାନଙ୍କ ପାଇଁ ଅନ୍ୟ ସମୟରେ ଶିକ୍ଷା ଦାନର ବ୍ୟବସ୍ଥା କରିବା ଯେପରି, ସେମାନେ ପଢ଼ିପାରିବେ ଓ କାମରେ ପିତାମାତାଙ୍କୁ ସାହାଯ୍ୟ କରିପାରିବେ ।

## ବାଳିକାମାନଙ୍କ ପାଇଁ ସ୍ୱତନ୍ତ୍ର ବ୍ୟବସ୍ଥା

ପ୍ରାଥମିକ ଶିକ୍ଷା ସଂପ୍ରସାରଣ ପାଇଁ ପ୍ରତିବନ୍ଧକ ସୃଷ୍ଟି କରୁଥିବା ବିଷୟଗୁଡ଼ିକ ମଧ୍ୟରେ ନାରୀଶିକ୍ଷାର ଅନଗ୍ରସରତା ଅନ୍ୟତମ । ପ୍ରଥମ ଶ୍ରେଣୀରେ ଯେତେ ବାଳକ ନାମ ଲେଖାଉଛନ୍ତି ତା'ର ଅଧାସଂଖ୍ୟକ ବାଳିକା ନାମ ଲେଖାଉଛନ୍ତି । ଏହି ପାର୍ଥକ୍ୟ ଉଚ୍ଚ ପ୍ରାଥମିକ ଶ୍ରେଣୀରେ ଆହୁରି ବେଶୀ । ସେଠାରେ ପ୍ରତି ୧୦୦ ଜଣ ବାଳକଙ୍କ ସହିତ ମାତ୍ର ୪୦ ଜଣ ବାଳିକା ନାମ ଲେଖାଉଛନ୍ତି । ଅଳ୍ପ କେତେବର୍ଷ ମଧ୍ୟରେ ବାଳକମାନଙ୍କ ମଧ୍ୟରୁ ସମସ୍ତେ ବିଦ୍ୟାଳୟରେ ନାମ ଲେଖାଇବାର ସମ୍ଭାବନା ଥିଲେ ମଧ୍ୟ ସାମ୍ବିଧାନିକ ନିର୍ଦ୍ଦେଶନାମା କେବଳ ବାଳିକାମାନଙ୍କ ହେତୁ କାର୍ଯ୍ୟକାରୀ ହୋଇପାରିବ ନାହିଁ । ଜାତୀୟ ନାରୀଶିକ୍ଷା ସମିତି ଦ୍ୱାରା ଏହି ପ୍ରଶ୍ନ ଆଲୋଚିତ ହୋଇ ଯେଉଁ ସୁପାରିଶମାନ କରାଯାଇଥିଲା ସେହି ସୁପାରିଶଗୁଡ଼ିକ ସହିତ କୋଠାରୀ କମିଶନ ମଧ୍ୟ ଏକମତ ହୋଇଛନ୍ତି । ସେଗୁଡ଼ିକ ମଧ୍ୟରେ କେତେକ ଗୁରୁତ୍ୱପୂର୍ଣ୍ଣ । ସେ ସବୁ ହେଲା—ନାରୀଶିକ୍ଷା ସମ୍ବନ୍ଧରେ ରହିଥିବା ପାରମ୍ପରିକ ଭ୍ରାନ୍ତ ଧାରଣା ବିରୁଦ୍ଧରେ ଜନମତ ଜାଗ୍ରତ କରାଇବା, ଅଧିକ ସଂଖ୍ୟାରେ ଶିକ୍ଷୟିତ୍ରୀ ନିଯୁକ୍ତ କରାଇବା, ପ୍ରାଥମିକ ବିଦ୍ୟାଳୟଗୁଡ଼ିକରେ ସହଶିକ୍ଷାକୁ ଲୋକପ୍ରିୟ କରାଇବା, ଦାବୀ କରାଯାଉଥିବା ସ୍ଥାନରେ ସମ୍ଭବପର ହେଲେ ଉଚ୍ଚ ପ୍ରାଥମିକ ଶିକ୍ଷାପାଇଁ ସ୍ୱତନ୍ତ୍ର ବାଳିକା ବିଦ୍ୟାଳୟ ସ୍ଥାପନ କରିବା, ମାଗଣାରେ ବହି, ଖାତାପତ୍ର, ଆବଶ୍ୟକସ୍ଥଳେ ପୋଷାକ ପରିଚ୍ଛଦ ଯୋଗାଇଦେବା ଏବଂ ଯେଉଁଠାରେ ୧୧ ରୁ ୧୩ ବର୍ଷ ବୟସର ଝିଅମାନେ ଘରକରଣା କାମରେ ସାହାଯ୍ୟ କରିବାହେତୁ ବିଦ୍ୟାଳୟରେ ଯୋଗଦାନ କରିବାକୁ ଅସମର୍ଥ ସେମାନଙ୍କ ପାଇଁ ସାମୟିକ ଶିକ୍ଷାଦାନର ବ୍ୟବସ୍ଥା କରିବା ।

## ଆଦିବାସୀ ସମସ୍ୟା

ଆଦିବାସୀମାନଙ୍କ ମଧ୍ୟରେ ଶିକ୍ଷାର ପ୍ରସାର କରାଇବା ହେଉଛି ପ୍ରାଥମିକ ଶିକ୍ଷା କ୍ଷେତ୍ରରେ ଅନ୍ୟ ଏକ ସମସ୍ୟା । ଅନେକ ସ୍ଥଳରେ ଆଦିବାସୀବହୁଳ ଅଞ୍ଚଳଗୁଡ଼ିକରେ କାର୍ଯ୍ୟ କରିବା ପାଇଁ ଆବଶ୍ୟକ ସଂଖ୍ୟକ ଶିକ୍ଷକ ପାଇବା କଷ୍ଟକର ହୋଇଥାଏ । ତେଣୁ ଆଦିବାସୀ ବହୁଳ ଅଞ୍ଚଳରେ କାର୍ଯ୍ୟ କରୁଥିବା ଶିକ୍ଷକମାନଙ୍କ ପାଇଁ ଅଧିକ ଭତ୍ତା, ରହିବା ପାଇଁ ଘରର ସୁବିଧା ପ୍ରଭୃତି କେତେକ ବ୍ୟବସ୍ଥା କରାଗଲେ, ଏହି ଅଞ୍ଚଳରେ କାର୍ଯ୍ୟ କରିବାକୁ ଅନେକ ଶିକ୍ଷକ ଆଗ୍ରହୀ ହେବେ । ଯେଉଁଠାରେ କେବଳ ଦିବାଛାତ୍ରୀମାନଙ୍କ ପାଇଁ ସ୍କୁଲର ପ୍ରତିଷ୍ଠା ବା ପରିଚାଳନା କରିବା ସମ୍ଭବପର ନୁହେଁ, ସେଠାରେ ଆଶ୍ରମ ସ୍କୁଲ ସ୍ଥାପନ କରିବା ଉଚିତ । ବିଦ୍ୟାଳୟ କାର୍ଯ୍ୟକ୍ରମ ଆଦିବାସୀମାନଙ୍କ ଜୀବନଧାରା ପ୍ରତି ଦୃଷ୍ଟି ରଖି ପ୍ରସ୍ତୁତ ହେବା ଉଚିତ । ଏଥିପାଇଁ ଶିକ୍ଷକ ପ୍ରଶିକ୍ଷଣ ଅନୁଷ୍ଠାନଗୁଡ଼ିକରେ ଶିକ୍ଷାର୍ଥୀମାନେ ଆଦିବାସୀ ଭାଷା ଓ ସଂସ୍କୃତି ସହିତ ପରିଚିତ ହେବା ମଧ୍ୟ ଆବଶ୍ୟକ ।

## ପ୍ରାଥମିକ ଶିକ୍ଷାର ମାନ

ଏହି ପ୍ରସଙ୍ଗରେ ଆଉଗୋଟିଏ ଦିଗର ଗୁରୁତ୍ୱ ମଧ୍ୟ ଉପଲବ୍ଧି କରାଯିବା ଉଚିତ । ପ୍ରାୟ ସମସ୍ତେ ଏକମତ ଯେ, ପ୍ରାଥମିକ ଶିକ୍ଷାର ମାନ ସନ୍ତୋଷଜନକ ନୁହେଁ । ପ୍ରାଥମିକ ଶିକ୍ଷା ଅଳ୍ପ କେତେଗୋଟି ପାଠ୍ୟ ବିଷୟ ସମ୍ବନ୍ଧରେ କେତେକ ମୌଳିକ ଜ୍ଞାନ ଦେବା ବ୍ୟତୀତ ସାଧାରଣ ସାକ୍ଷର ଅବସ୍ଥାଠାରୁ ବେଶୀ ଦୂରକୁ ପିଲାମାନଙ୍କୁ ନେଇପାରୁ ନାହିଁ । କିନ୍ତୁ ପ୍ରକୃତରେ ପିଲାମାନଙ୍କୁ ଉପଯୁକ୍ତ ଦାୟିତ୍ୱବାନ ନାଗରିକ ରୂପେ ଗଢ଼ିବାକୁ ଆବଶ୍ୟକ ମୂଳଦୁଆ ଏହିଠାରେ ହିଁ ପଡ଼ିବାର କଥା । ଏକଥା ମନରେ ରଖି ଶିକ୍ଷାର ମାନ ପ୍ରତି ଉପଯୁକ୍ତ ଧ୍ୟାନ ଦିଆଗଲେ ଉଦ୍ଦେଶ୍ୟ ସାର୍ଥକ ହେବ । ଏଥିପାଇଁ ପ୍ରାଥମିକ ସ୍ତରରେ ଶିକ୍ଷାର ଗୁଣାତ୍ମକ ଅଭିବୃଦ୍ଧି ଲାଗି ସମଗ୍ର ପାଠ୍ୟକ୍ରମର ପୁନର୍ବିନ୍ୟାସ ହେବା ଆବଶ୍ୟକ । ଶିକ୍ଷାଦାନ ପାଇଁ ଆଧୁନିକ ପଦ୍ଧତି ଅବଲମ୍ବନ କରାଯିବା ଉଚିତ ଏବଂ ଏକ ପରିମାର୍ଜିତ ପରୀକ୍ଷା ପ୍ରଣାଳୀ ମଧ୍ୟ ଅନୁସୃତ ହେବା ଆବଶ୍ୟକ । ପ୍ରାଥମିକ ସ୍ତରରୁ ହିଁ ବିଜ୍ଞାନ ଓ ଗଣିତ ଶିକ୍ଷା କ୍ଷିପ୍ରତର ହେବା ବିଧେୟ । ଏତଦ୍‌ବ୍ୟତୀତ ବିଦ୍ୟାଳୟ କାର୍ଯ୍ୟକ୍ରମରେ କର୍ମାଭିଜ୍ଞତା (work experience) ପାଇଁ ଉପଯୁକ୍ତ ବ୍ୟବସ୍ଥା କରାଯିବା ଉଚିତ ଯଦ୍ୱାରା ଏହା ପ୍ରାଥମିକ ଶିକ୍ଷାର ଏକ ଅପରିହାର୍ଯ୍ୟ ଅଂଶ ହୋଇ ରହିବ ।

## ପ୍ରାଥମିକ ଶିକ୍ଷା ଶେଷ କରୁଥିବା ପିଲାର ବୟସ ଓ ସାମ୍ବିଧାନିକ ନିର୍ଦ୍ଦେଶନାମା

ପ୍ରଥମରୁ ସପ୍ତମ ଶ୍ରେଣୀ ପର୍ଯ୍ୟନ୍ତ ସାତବର୍ଷିଆ ବାଧ୍ୟତାମୂଳକ ଶିକ୍ଷା ଯୋଜନା କଲେ ଅନେକେ ହୁଏତ ବିଚାରିବେ ଯେ ଏହା ଫଳରେ ସାମ୍ବିଧାନିକ ନିର୍ଦ୍ଦେଶନାମାର ଖିଲାପ

କରାଯାଉଅଛି, କାରଣ ସପ୍ତମ ଶ୍ରେଣୀ ପାଠ ଶେଷ କଲାବେଳକୁ ଜଣେ ପିଲାକୁ ୧୩ ବର୍ଷ ହୋଇଥିବ ଅଥଚ ସମ୍ବିଧାନରେ ୧୪ବର୍ଷ ବୟସ ପର୍ଯ୍ୟନ୍ତ ପିଲାମାନଙ୍କ ପାଇଁ ଶିକ୍ଷା ବ୍ୟବସ୍ଥାର ଉଲ୍ଲେଖ କରାଯାଇଅଛି । କିନ୍ତୁ ବାସ୍ତବ କ୍ଷେତ୍ରରେ ସାମ୍ବିଧାନିକ ନିର୍ଦ୍ଦେଶନାମାର କୌଣସି ବ୍ୟତିକ୍ରମ ହେବନାହିଁ, କାରଣ ସମସ୍ତେ ଜାଣନ୍ତି ଯେ ଏ ଦେଶରେ ଅନେକ ପିଲାଙ୍କୁ ସପ୍ତମ ଶ୍ରେଣୀରେ ପଢିବା ପୂର୍ବରୁ ୧୪ ବର୍ଷ ହୋଇଯାଇଥାଏ । ସେମାନଙ୍କ ପାଇଁ ଭାବିବାର କିଛି ନାହିଁ । ଯେଉଁମାନେ କମ୍ ବୟସରେ ସପ୍ତମ ଶ୍ରେଣୀରୁ ଉତ୍ତୀର୍ଣ୍ଣ ହୋଇ ୮ମ ଶ୍ରେଣୀରେ ନାମ ଲେଖାଇବେ ସେମାନେ ତ ଶିକ୍ଷା ଅନୁଷ୍ଠାନରେ ରହିଲେ । ସେମାନଙ୍କ ପାଇଁ ମଧ୍ୟ ଭାବିବାର କିଛି ନାହିଁ । କେବଳ ଶତକଡ଼ା ମାତ୍ର ୧୦ ଭାଗ ପିଲା ଏପରି ବାହାରିବେ ଯେଉଁମାନେ କମ୍ ବୟସରେ ୮ମ ଶ୍ରେଣୀ ପାଠ ସମ୍ପୂର୍ଣ୍ଣ କରିବେ ଏବଂ ଆଉ ପାଠ ପଢିବେ ନାହିଁ । ସେହିଭଳି ପିଲାଙ୍କ ପାଇଁ ଏକ ସଂକ୍ଷିପ୍ତ ବୈଷୟିକ ବା ଧନ୍ଦାମୂଳକ ତାଲିମ ବ୍ୟବସ୍ଥା କରାଯାଇ ସେମାନଙ୍କର ବିଦ୍ୟାଳୟରେ ରହିବା ସମୟ ଏକ ବର୍ଷ ବଢ଼ାଇ ଦିଆଯିବାର ବ୍ୟବସ୍ଥା କରାଯିବା ଉଚିତ । ଏପରି କରାଯାଇପାରିଲେ ସାମ୍ବିଧାନିକ ନିର୍ଦ୍ଦେଶନାମାର ଖିଲାପ ପ୍ରଶ୍ନ ଉଠିବ ନାହିଁ ।

## ପ୍ରଶ୍ନାବଳୀ

୧ । ଅବୈତନିକ ଓ ବାଧ୍ୟତାମୂଳକ ପ୍ରାଥମିକ ଶିକ୍ଷାପାଇଁ ଭାରତୀୟ ସମ୍ବିଧାନର ନିର୍ଦ୍ଦେଶନାମା ଭାରତୀୟମାନଙ୍କର ଏକ ବହୁ ଆକାଂକ୍ଷିତ ବାସନାକୁ ବାସ୍ତବ ରୂପରେଖ ଦେଇଛି । କିପରି ?

୨ । ୧୯୬୦ ମସିହା ମଧ୍ୟରେ ଭାରତରେ ଅବୈତନିକ ବାଧ୍ୟତାମୂଳକ ପ୍ରାଥମିକ ଶିକ୍ଷା ପ୍ରଚଳନ କରାଯିବା ପାଇଁ ସାମ୍ବିଧାନିକ ନିର୍ଦ୍ଦେଶ ଥିବା ସତ୍ତ୍ୱେ ତାହା ଏ ପର୍ଯ୍ୟନ୍ତ କାର୍ଯ୍ୟକାରୀ ହୋଇ ପାରିନାହିଁ । କାହିଁକି ?

୩ । "ଆମ ଦେଶରେ ରହିଥିବା ଆଞ୍ଚଳିକ ଅସମତା ବା କେତେକ ରାଜ୍ୟର ଅନଗ୍ରସରତା ହେତୁ ସମଗ୍ର ଦେଶରେ ବାଧ୍ୟତାମୂଳକ ପ୍ରାଥମିକ ଶିକ୍ଷା ବିଂଶ ଶତାବ୍ଦୀର ଶେଷ ପୂର୍ବରୁ ହୁଏତ ପ୍ରଚଳିତ ହୋଇ ନ ପାରେ ।" ଏହି ଉକ୍ତିର ଯଥାର୍ଥତା ପ୍ରତିପାଦନ କର ।

୪ । ବାଧ୍ୟତାମୂଳକ ପ୍ରାଥମିକ ଶିକ୍ଷାର ସଫଳ ରୂପାୟନ ପାଇଁ ପ୍ରଥମ ଶ୍ରେଣୀର ପିଲାମାନଙ୍କର ନାମଲେଖା ସଙ୍ଗେ ସଙ୍ଗେ ଆଉ କି କି ଆନୁଷଙ୍ଗିକ ବ୍ୟବସ୍ଥା କରିବାକୁ ହେବ ?

୫ । ପ୍ରାଥମିକ ଶିକ୍ଷା କ୍ଷେତ୍ରରେ ହେଉଥିବା ଅପବ୍ୟୟ ଓ ଅପଚୟ କି କି ପଦକ୍ଷେପ ନିଆଯାଇ ବନ୍ଦ କରାଯାଇପାରେ ?

୬ । ନାରୀଶିକ୍ଷା କ୍ଷେତ୍ରରେ ଅନଗ୍ରସରତା ପ୍ରାଥମିକ ଶିକ୍ଷା ସଂପ୍ରସାରଣ ପାଇଁ ପ୍ରତିବନ୍ଧକ ସୃଷ୍ଟି କରୁଥିବା ବିଷୟଗୁଡ଼ିକ ମଧ୍ୟରେ ଅନ୍ୟତମ । କିପରି ?

୭ । ପ୍ରଥମ ଶ୍ରେଣୀରୁ ସପ୍ତମ ଶ୍ରେଣୀ ପର୍ଯ୍ୟନ୍ତ ଶିକ୍ଷା ବାଧ୍ୟତାମୂଳକ କରାଗଲେ ମଧ୍ୟ ସାମ୍ବିଧାନିକ ନିର୍ଦ୍ଦେଶନାମାର ଖିଲାପ ହେବ ବୋଲି କେତେକଙ୍କର ମତ । ଏହି ମତର ଯଥାର୍ଥତା ସମ୍ବନ୍ଧରେ ଆଲୋଚନା କର ।

———

# ତୃତୀୟ ଅଧ୍ୟାୟ

## ମୁଦାଲିୟର କମିଶନ ଓ କୋଠାରୀ କମିଶନଙ୍କର

## ମୁଖ୍ୟ ସୁପାରିଶମାନ

### ମାଧ୍ୟମିକ ଶିକ୍ଷା କମିଶନଙ୍କ ନିଯୁକ୍ତି

ଭାରତ ସରକାର ୧୯୫୨ ମସିହା ସେପ୍ଟେମ୍ବର ମାସ ୨୩ ତାରିଖରେ ମାଡ୍ରାଜ ବିଶ୍ୱବିଦ୍ୟାଳୟର ତତ୍କାଳୀନ କୁଳପତି ଡକ୍ଟର ଏ. ଲକ୍ଷ୍ମଣସ୍ୱାମୀ ମୁଦାଲିୟରଙ୍କ ଅଧ୍ୟକ୍ଷତାରେ ମାଧ୍ୟମିକ ଶିକ୍ଷା କମିଶନ ବସାଇବା କଥା ଘୋଷଣା କରିଥିଲେ ଏବଂ ଏହି କମିଶନ ୧୯୫୩ ମସିହା ଜୁନ ମାସରେ ତାଙ୍କର ରିପୋର୍ଟ ସରକାରଙ୍କ ପାଖରେ ଦାଖଲ କରିଥିଲେ । ଏହି କମିଶନଙ୍କୁ ଯାହା କରିବାକୁ କୁହାଯାଇଥିଲା ତାହା ହେଉଛି — (୧) ଭାରତରେ ମାଧ୍ୟମିକ ଶିକ୍ଷାର ପ୍ରତ୍ୟେକ ଦିଗ ଅନୁସନ୍ଧାନ କରି ରିପୋର୍ଟ ଦେବା ଏବଂ (୨) ଏହାର ପୁନର୍ଗଠନ ଓ ଉନ୍ନତି ପାଇଁ କି ପ୍ରକାର ପଦକ୍ଷେପ ନିଆଯିବା ଉଚିତ ତାହାର ସୂଚନା ଦେବା । ବିଶେଷତଃ (କ) ମାଧ୍ୟମିକ ଶିକ୍ଷାର ଲକ୍ଷ୍ୟ, ସଂଗଠନ ପ୍ରଣାଳୀର ପାଠ୍ୟ ବିଷୟବସ୍ତୁ (ଖ) ମାଧ୍ୟମିକ ଶିକ୍ଷାର ପ୍ରାଥମିକ, ମୌଳିକ ଓ ଉଚ୍ଚ ଶିକ୍ଷା ସହ ସମ୍ପର୍କ (ଗ) ବିଭିନ୍ନ ପ୍ରକାର ମାଧ୍ୟମିକ ସ୍କୁଲ ମଧ୍ୟରେ ପରସ୍ପର ସହ ସମ୍ପର୍କ ଏବଂ (ଘ) ଅନ୍ୟାନ୍ୟ ଆନୁଷଙ୍ଗିକ ସମସ୍ୟା ଉପରେ ଆଲୋକପାତ କରିବା କମିଶନଙ୍କର ବିଚାର ପରିସରଭୁକ୍ତ ହୋଇଥିଲା । ତଦ୍ଦ୍ୱାରା ଲୋକମାନଙ୍କର ଆବଶ୍ୟକତା ଓ ଆର୍ଥିକ ସଙ୍ଗତି ଅନୁଯାୟୀ ସମଗ୍ର ଦେଶ ପାଇଁ ଏକ ସୁସଙ୍ଗତ ଏବଂ ସମପ୍ରକାର ମାଧ୍ୟମିକ ଶିକ୍ଷାର ବ୍ୟବସ୍ଥା କରାଯାଇପାରିବ ।

### ସୁପାରିଶଗୁଡ଼ିକ କାର୍ଯ୍ୟକାରୀ ହେବାର

### ସମ୍ଭାବନା ସମ୍ବନ୍ଧରେ ସନ୍ଦେହ

ଏହି କମିଶନଙ୍କ ନିଯୁକ୍ତି ପୂର୍ବରୁ ଭାରତୀୟ ଶିକ୍ଷାର ସମୀକ୍ଷା ପାଇଁ ବିଭିନ୍ନ ସମୟରେ ବିଭିନ୍ନ କମିଶନ ନିଯୁକ୍ତ ହୋଇଥିଲେ । ୧୮୮୨ ଖ୍ରୀ:ଅ:ର ଭାରତୀୟ ଶିକ୍ଷା କମିଶନ (ହଣ୍ଟର କମିଶନ, ୧୯୦୨ ଖ୍ରୀ:ଅ:ର ବିଶ୍ୱବିଦ୍ୟାଳୟ କମିଶନ, ୧୯୧୭ ଖ୍ରୀ:ଅ:ର କଲିକତା ବିଶ୍-

ବିଦ୍ୟାଳୟ କମିଶନ (ସ୍ୟାଡ଼ଲର କମିଶନ), ୧୯୪୮ ଖ୍ରୀ: ଅ:ର ବିଶ୍ୱବିଦ୍ୟାଳୟ ଶିକ୍ଷା କମିଶନ (ରାଧାକ୍ରିଷ୍ଣନ କମିଶନ)—ସମସ୍ତେ ପ୍ରସଙ୍ଗକ୍ରମେ ମାଧ୍ୟମିକ ଶିକ୍ଷାର କେତେକ ଦିଗ ସମ୍ବନ୍ଧରେ ଆଲୋଚନା କରିଥିଲେ । ମାତ୍ର କେବଳ ମାଧ୍ୟମିକ ଶିକ୍ଷା ସମସ୍ୟାର ସମୀକ୍ଷା କରିବା ପାଇଁ ଏହା ପୂର୍ବରୁ କୌଣସି କମିଶନ ନିଯୁକ୍ତ ହୋଇ ନ ଥିଲେ । ପୂର୍ବବର୍ତ୍ତୀ କମିଶନମାନଙ୍କର ବହୁ ସୁପାରିଶ କାର୍ଯ୍ୟରେ ପରିଣତ ହୋଇପାରି ନ ଥିଲା । ତେଣୁ ଏହି କମିଶନରଙ୍କ ସୁପାରିଶଗୁଡ଼ିକ ପରୀକ୍ଷା କରି କାର୍ଯ୍ୟରେ ପରିଣତ କରିବା ପାଇଁ ସମ୍ଭାବ୍ୟ ପଦକ୍ଷେପ ସମ୍ବନ୍ଧରେ ବହୁ ଦାୟିତ୍ୱସମ୍ପନ୍ନ ବ୍ୟକ୍ତି କମିଶନଙ୍କୁ ପ୍ରଶ୍ନ କରିଥିଲେ । କମିଶନ ସେତେବେଳେ କହିଥିଲେ ଯେ ପୂର୍ବବର୍ତ୍ତୀ ଅଧିକାଂଶ କମିଶନରଙ୍କର ସୁପାରିଶ-ଗୁଡ଼ିକ ପ୍ରତିକୂଳ ଭାବାପନ୍ନ ବିଦେଶୀ ସରକାରଙ୍କ ସମୟରେ ହୋଇଥିଲା । ତେଣୁ ସେଗୁଡ଼ିକ କାର୍ଯ୍ୟକାରୀ ନ ହେବା ହେତୁ ସରକାରଙ୍କୁ ଦୋଷ ଦିଆଯାଇଥିଲା । ବର୍ତ୍ତମାନ ଦେଶର ଗଣତାନ୍ତ୍ରିକ ଶାସନ ପ୍ରଣାଳୀରେ ଏକ ସୁସଙ୍ଗତ ଶିକ୍ଷା ପଦ୍ଧତି କାର୍ଯ୍ୟକାରୀ କରାଇବା ଦାୟିତ୍ୱ ଲୋକମାନଙ୍କର ଏବଂ ସେମାନଙ୍କଦ୍ୱାରା ନିର୍ବାଚିତ ହୋଇଥିବା ପ୍ରତିନିଧିମାନଙ୍କର । କମିଶନ ପ୍ରସଙ୍ଗକ୍ରମେ ଏ କଥା ମଧ୍ୟ କହିଲେ —"ସୁପାରିଶଗୁଡ଼ିକ ଏପରି ହେବା ଦରକାର, ଯେପରି ସେ ସବୁ କାର୍ଯ୍ୟରେ ପରିଣତ କରାଯାଇପାରିବ— ଏଥିପାଇଁ ଆମ୍ଭେମାନେ ଉତ୍କଣ୍ଠିତ ।" ତେଣୁ ସେମାନେ ସ୍ୱଳ୍ପକାଳୀନ ଓ ଦୀର୍ଘକାଳୀନ —ଏହିପରି ଦୁଇପ୍ରକାର ସୁପାରିଶ କରିଥିଲେ । ସେହି ସୁପାରିଶଗୁଡ଼ିକ ମଧ୍ୟରୁ ଅନେକ କାର୍ଯ୍ୟରେ ପରିଣତ ହୋଇଅଛି—କେତେକ କାର୍ଯ୍ୟରେ ପରିଣତ ହେବା ପରେ ସେଥିରୁ ଯେଉଁ ଅଭିଜ୍ଞତା ମିଳିଅଛି, ତାହା ଉତ୍ସାହପ୍ରଦ ହୋଇନାହିଁ । କମିଶନ ମଧ୍ୟ ତାଙ୍କ ସୁପାରିଶଗୁଡ଼ିକର ଏହି ଦିଗ ପ୍ରତି ବେଶ୍ ସଚେତନ ଥିଲେ ବୋଲି ଜଣାଯାଏ । ସେଥିପାଇଁ ବୋଧହୁଏ ସେମାନେ କହିଲେ ଯେ କେତେକ ସୁପାରିଶ ଅପେକ୍ଷାକୃତ କମ୍ ସମୟ ପାଇଁ ଉପଯୋଗୀ ହୋଇପାରେ କାରଣ; ପରିବର୍ତ୍ତନଶୀଳ ସାମାଜିକ, ରାଜନୈତିକ, ଅର୍ଥନୈତିକ ଓ ସାଂସ୍କୃତିକ ପରିପ୍ରେକ୍ଷୀରେ ଶିକ୍ଷାର ଅଭିମୁଖ୍ୟ ବଦଳିବା ସ୍ୱାଭାବିକ । ପରିବର୍ତ୍ତନଶୀଳ ଦୁନିଆରେ ଶିକ୍ଷାର ସମସ୍ୟାଗୁଡ଼ିକ ମଧ୍ୟ ପରିବର୍ତ୍ତିତ ହେବା ସ୍ୱାଭାବିକ । ତେଣୁ ଆଜି ଯେଉଁ ଦିଗ ପ୍ରତି ଅଧିକ ଦୃଷ୍ଟି ଦିଆଯାଉଅଛି, ହୁଏତ ତାହା କାଲିକୁ ଅନାବଶ୍ୟକ ହୋଇପାରେ । ତେଣୁ କମିଶନ ନିଜର ସୁପାରିଶଗୁଡ଼ିକର କାର୍ଯ୍ୟକାରୀତା ସମ୍ବନ୍ଧରେ ଯେଉଁ ବିଶ୍ଳେଷଣ କରିଅଛନ୍ତି, ସେହି ଦୃଷ୍ଟିରୁ ଦେଖିବାକୁ ଗଲେ କେତେକ ସ୍ଥଳରେ ଯେଉଁ ଅଭିଜ୍ଞତା ଲାଭ ହୋଇଅଛି ତାହା ଉତ୍ସାହପ୍ରଦ ହୋଇ ନାହିଁ ।

ମୁଦାଲିୟରଙ୍କ କମିଶନଙ୍କର ପ୍ରଧାନ ସୁପାରିଶଗୁଡ଼ିକ ନିମ୍ନରେ ପ୍ରଦତ୍ତ ହେଲା ।

## ନୂତନ ସାଂଗଠନିକ ରୂପ

କମିଶନଙ୍କ ମତରେ ମାଧ୍ୟମିକ ଶିକ୍ଷା ଏକ ନୂତନ ସାଂଗଠନିକ ରୂପରେଖ ନେବା

ଉଚିତ । ଏହି ନୂତନ ବ୍ୟବସ୍ଥା ଅନୁସାରେ ୪।୫ ବର୍ଷର ପ୍ରାଥମିକ ବା ନିମ୍ନ ମୌଳିକ ଶିକ୍ଷା ପରେ ୩ ବର୍ଷିଆ ଉଚ୍ଚ ମୌଳିକ ବା ନିମ୍ନ ମାଧ୍ୟମିକ ଶିକ୍ଷା ଓ ଏହା ପରେ ଚାରି ବର୍ଷିଆ ଉଚ୍ଚତର ମାଧ୍ୟମିକ ଶିକ୍ଷାର ବ୍ୟବସ୍ଥା କରାଯିବା ଉଚିତ । ଚାରି ବର୍ଷିଆ ଉଚ୍ଚତର ମାଧ୍ୟମିକ (Higher Secondary) ଶିକ୍ଷାରେ ମହାବିଦ୍ୟାଳୟଗୁଡ଼ିକରେ ପ୍ରଚଳିତ ମଧ୍ୟବର୍ତ୍ତୀ ଶ୍ରେଣୀ (Intermediate Classes)କୁ ଗୋଟିଏ ବର୍ଷ ମିଶିଯିବା ଉଚିତ ଯାହା ଫଳରେ ବିଶ୍ୱବିଦ୍ୟାଳୟଗୁଡ଼ିକରେ ତିନବର୍ଷିଆ ସ୍ନାତକ ପାଠ୍ୟକ୍ରମ ପ୍ରଚଳିତ ହୋଇପାରିବ । ଯେଉଁମାନେ ଉଚ୍ଚମାଧ୍ୟମିକ ବିଦ୍ୟାଳୟ (High School) କୁ ଉତ୍ତୀର୍ଣ୍ଣ ହେବେ ସେମାନେ ବର୍ଷକ ପାଇଁ ପ୍ରାକ୍-ବିଶ୍ୱବିଦ୍ୟାଳୟ ଶିକ୍ଷା ପାଇ ପରେ ତିନବର୍ଷିଆ ସ୍ନାତକ ପାଠ୍ୟକ୍ରମରେ ଯୋଗ ଦେବେ । ବୃତ୍ତିଗତ ଶିକ୍ଷାନୁଷ୍ଠାନଗୁଡ଼ିକ ଉଚ୍ଚତର ମାଧ୍ୟମିକ ବା ପ୍ରାକ୍ ବିଶ୍ୱବିଦ୍ୟାଳୟର ଶିକ୍ଷା ସମାପ୍ତ କରିଥିବା ଛାତ୍ରଙ୍କ ପାଇଁ ଉନ୍ମୁକ୍ତ ରହିବା ଉଚିତ । ବୃତ୍ତିଗତ ଶିକ୍ଷାନୁଷ୍ଠାନଗୁଡ଼ିକରେ ବର୍ଷିକିଆ ପ୍ରାକ୍-ବୃତ୍ତିଗତ (Pre-professional) ପାଠ୍ୟକ୍ରମ ପ୍ରଚଳନ କରାଯିବା ଉଚିତ; କିନ୍ତୁ ମଧ୍ୟବର୍ତ୍ତୀ-କାଳୀନ ବ୍ୟବସ୍ଥାରୂପେ ସ୍ନାତକ ଶିକ୍ଷା ପ୍ରଦାନକାରୀ ମହାବିଦ୍ୟାଳୟଗୁଡ଼ିକରେ ଏହି ପାଠ୍ୟକ୍ରମ ପ୍ରଚଳନ କରାଯାଇପାରେ ।'

ଯେଉଁଠାରେ ସମ୍ଭବପର ସେଠାରେ ବହୁମୁଖୀ ବିଦ୍ୟାଳୟଗୁଡ଼ିକ ସ୍ଥାପିତ ହେବା ଉଚିତ । ଛାତ୍ରମାନଙ୍କ ଆଗ୍ରହ ଅନୁସାରେ ଭିନ୍ନ ଭିନ୍ନ ଲକ୍ଷ୍ୟ ପ୍ରବୃତ୍ତି ଓ ପାରଦର୍ଶିତା ସହ ବିବିଧ ପାଠ୍ୟକ୍ରମ ଏହି ବିଦ୍ୟାଳୟଗୁଡ଼ିକରେ ପ୍ରଚଳନ କରାଯିବା ବିଧେୟ ।

ସବୁ ରାଜ୍ୟର ଗ୍ରାମ୍ୟ ବିଦ୍ୟାଳୟଗୁଡ଼ିକରେ କୃଷି-ଶିକ୍ଷାର ବ୍ୟବସ୍ଥା କରିବା ଉଚିତ । ଏଥିରେ ଉଦ୍ୟାନ-ବିଦ୍ୟା, ପଶୁପାଳନ ଓ କୁଟୀରଶିଳ୍ପ ଅନ୍ତର୍ଭୁକ୍ତ ହେବା ବାଞ୍ଛନୀୟ ।

## ବୈଷୟିକ ଶିକ୍ଷା

ସ୍ୱତନ୍ତ୍ର ଭାବରେ ବା ବହୁମୁଖୀ ବିଦ୍ୟାଳୟର ଅଂଶ ଭାବରେ ବହୁସଂଖ୍ୟକ ବୈଷୟିକ ବିଦ୍ୟାଳୟ (Technical School) ସ୍ଥାପିତ ହେବା ଉଚିତ । ଯେଉଁ-ଠାରେ ସମ୍ଭବପର ସେଠାରେ ବୈଷୟିକ ବିଦ୍ୟାଳୟଗୁଡ଼ିକ ଉପଯୁକ୍ତ ଶିକ୍ଷାନୁଷ୍ଠାନ ନିକଟରେ ସ୍ଥାପିତ ହେବା ଏବଂ ଶିଳ୍ପାନୁଷ୍ଠାନର ସହଯୋଗରେ ସେଗୁଡ଼ିକ କାର୍ଯ୍ୟ କରିବା ଉଚିତ ।

## ସହ-ଶିକ୍ଷା

ବାଳକ ଓ ବାଳିକାମାନଙ୍କୁ ଦିଆଯାଉଥିବା ଶିକ୍ଷାର କୌଣସି ପାର୍ଥକ୍ୟ ରଖିବା ଅନାବଶ୍ୟକ ହେଲେହେଁ ବାଳିକା ବିଦ୍ୟାଳୟ ଓ ସହଶିକ୍ଷା ପ୍ରଚଳିତ ଥିବା ବିଦ୍ୟାଳୟ-ଗୁଡ଼ିକରେ ବାଳିକାମାନେ ଯେପରି ଗୃହବିଜ୍ଞାନ ଅଧ୍ୟୟନ କରିବା ପାଇଁ ସୁବିଧା ପାଆନ୍ତି ସେଥିପାଇଁ ବିଶେଷ ବ୍ୟବସ୍ଥା କରାଯିବା ଉଚିତ ।

ରାଜ୍ୟ ସରକାରମାନେ ଆବଶ୍ୟକସ୍ଥଳେ ବାଳିକାମାନଙ୍କ ପାଇଁ ପୃଥକ୍ ବିଦ୍ୟାଳୟ ସ୍ଥାପନ କରିବା ଉଚିତ । ସହ-ଶିକ୍ଷାର ବ୍ୟବସ୍ଥା ଥିବା ବିଦ୍ୟାଳୟଗୁଡ଼ିକରେ ଛାତ୍ରୀ ଓ ଶିକ୍ଷୟିତ୍ରୀମାନଙ୍କର ସୁବିଧା ପାଇଁ ନିର୍ଦ୍ଦିଷ୍ଟ ବ୍ୟବସ୍ଥାମାନ ରହିବା ବିଧେୟ ।

## ଭାଷା-ଅଧ୍ୟୟନ

ମାଧ୍ୟମିକ ଶିକ୍ଷାର ଶେଷ ପର୍ଯ୍ୟନ୍ତ ମାତୃଭାଷା ବା ଆଞ୍ଚଳିକ ଭାଷା ଶିକ୍ଷାର ମାଧ୍ୟମ ହେବା ଉଚିତ । ସଂଖ୍ୟାଲଘୁ ଭାଷାଭାଷୀମାନଙ୍କ ପାଇଁ କେନ୍ଦ୍ରୀୟ ଶିକ୍ଷାପରାମର୍ଶଦାତା ପରିଷଦଙ୍କ ପ୍ରସ୍ତାବ ଅନୁଯାୟୀ ବିଶେଷ ସୁବିଧା ଯୋଗାଇ ଦିଆଯିବା ଉଚିତ ।

ନିମ୍ନ ମାଧ୍ୟମିକ ଶ୍ରେଣୀରେ ପ୍ରତ୍ୟେକ ପିଲା ଅନ୍ୟୂନ ଦୁଇଟି ଭାଷା ଶିଖିବା ଉଚିତ । ପ୍ରାଥମିକ ଶିକ୍ଷାର ଶେଷଆଡ଼କୁ ଇଂରାଜୀ ଓ ହିନ୍ଦୀ ଶିକ୍ଷା ଦିଆଯିବା ଆବଶ୍ୟକ । ମାତ୍ର ଦୁଇଟି ଭାଷା କୌଣସି ଗୋଟିଏ ବର୍ଷରେ ପ୍ରଚଳନ କରାଯିବା ଉଚିତ ନୁହେଁ ।

ଉଚ୍ଚ ମାଧ୍ୟମିକ ଓ ଉଚ୍ଚତର ମାଧ୍ୟମିକ ଶିକ୍ଷା କ୍ଷେତ୍ରରେ ଅନ୍ୟୂନ ଦୁଇଟି ଭାଷା ଶିକ୍ଷା ଦିଆଯିବା ଆବଶ୍ୟକ । ଏଥିରୁ ଗୋଟିଏ ମାତୃଭାଷା ବା ଆଞ୍ଚଳିକ ଭାଷା ହେବା ଉଚିତ ।

## ମାଧ୍ୟମିକ ଶିକ୍ଷାର ପାଠ୍ୟକ୍ରମ

ମାଇନର ବା ନିମ୍ନମାଧ୍ୟମିକ ବିଦ୍ୟାଳୟର ପାଠ୍ୟକ୍ରମରେ (୧) ଦୁଇଟି ଭାଷା (୨) ସାମାଜିକ ଶିକ୍ଷା (୩) ସାଧାରଣ ବିଜ୍ଞାନ (୪) ଗଣିତ (୫) କଳା ଓ ସଙ୍ଗୀତ (୬) କାରିଗରୀ ପାଠ (Craft) ଏବଂ (୭) ସ୍ୱାସ୍ଥ୍ୟ ଶିକ୍ଷା ଅନ୍ତର୍ଭୁକ୍ତ ହେବା ଆବଶ୍ୟକ ।

ଉଚ୍ଚ ମାଧ୍ୟମିକ ଓ ଉଚ୍ଚତର ମାଧ୍ୟମିକ ଶିକ୍ଷା କ୍ଷେତ୍ରରେ ଛାତ୍ରଛାତ୍ରୀମାନଙ୍କୁ ବିଭିନ୍ନ ପ୍ରକାରର ପାଠ୍ୟକ୍ରମର ସୁବିଧା ଯୋଗାଇ ଦିଆଯିବା ଉଚିତ, ମାତ୍ର କେତେକ ପ୍ରଧାନ ବିଷୟ ସମସ୍ତଙ୍କୁ ଶିକ୍ଷା ଦିଆଯିବା ଉଚିତ । ପ୍ରଧାନ ବିଷୟଗୁଡ଼ିକ ହେଲା—(୧) ଭାଷା ସମୂହ (୨) ସାଧାରଣ ବିଜ୍ଞାନ (୩) ସାମାଜିକ ଶିକ୍ଷା ଓ (୪) କାରିଗରୀ ପାଠ । ବିଭିନ୍ନ ପ୍ରକାରର ପାଠ୍ୟକ୍ରମ ମଧ୍ୟରେ (୧) କଳା (୨) ବିଜ୍ଞାନ (୩) ବାଣିଜ୍ୟ (୪) ବିଭିନ୍ନ ବୈଷୟିକ ବିଷୟ (୫) କୃଷି (୬) ସୂକ୍ଷ୍ମ କଳା (୭) ଗୃହବିଜ୍ଞାନ ଓ ଆବଶ୍ୟକସ୍ଥଳେ ଅନ୍ୟାନ୍ୟ ବିଷୟ ମଧ୍ୟ ଅନ୍ତର୍ଭୁକ୍ତ ହେବା ଦରକାର । ଉଚ୍ଚମାଧ୍ୟମିକ ଓ ଉଚ୍ଚତର ମାଧ୍ୟମିକ ଶିକ୍ଷାର ଦ୍ୱିତୀୟ ବର୍ଷରେ ଏହି ବିଭିନ୍ନ ବିଷୟଗୁଡ଼ିକର ଶିକ୍ଷା ବ୍ୟବସ୍ଥା କରାଯିବା ଉଚିତ ।

## ପାଠ୍ୟ ପୁସ୍ତକ

ପାଠ୍ୟପୁସ୍ତକଗୁଡ଼ିକର ଗୁଣାତ୍ମକ ଅଭିବୃଦ୍ଧି ଲାଗି ଗୋଟିଏ ଉଚ୍ଚ କ୍ଷମତାସମ୍ପନ୍ନ ପାଠ୍ୟପୁସ୍ତକ କମିଟି ଗଢ଼ାଯିବା ଉଚିତ ଏବଂ ଏହି କମିଟି ଗୋଟିଏ ସ୍ୱାଧୀନ ସଂସ୍ଥାରୂପେ

କାର୍ଯ୍ୟ କରିବା ଉଚିତ । ପୁସ୍ତକଗୁଡ଼ିକର ବିକ୍ରିଲବ୍ଧ ଧନରୁ ଗୋଟିଏ ପାଣ୍ଠି ଗଢ଼ାଯାଇ ସେଥିରୁ ବିଦ୍ୟାଳୟର ଛାତ୍ରମାନଙ୍କୁ ବୃତ୍ତି, ବହିପତ୍ର ଓ ଅନ୍ୟାନ୍ୟ ସୁବିଧା ଯୋଗାଇ ଦିଆଯିବା ଦରକାର ।

ପ୍ରତ୍ୟେକ ବିଷୟ ପାଇଁ ଗୋଟିଏ ଲେଖାଏଁ ବହି ମଞ୍ଜୁର ନ କରି ପାଠ୍ୟବସ୍ତୁର ନିର୍ଦ୍ଧାରିତ ମାନ ରକ୍ଷା କରୁଥିବା କେତେଖଣ୍ଡି ପୁସ୍ତକ ପ୍ରଚଳନ କରାଯିବା ଆବଶ୍ୟକ ଏବଂ ବିଦ୍ୟାଳୟଗୁଡ଼ିକ ସ୍ୱଇଚ୍ଛାରେ ପୁସ୍ତକ ବାଛି ପ୍ରଚଳନ କରିବା ଉଚିତ । ଭାଷାର ନିଶ୍ଚିତ କ୍ରମୋନ୍ନତି ଲାଗି ପ୍ରତ୍ୟେକ ଶ୍ରେଣୀରେ ଭାଷାଗୁଡ଼ିକର ନିର୍ଦ୍ଦିଷ୍ଟ ପୁସ୍ତକମାନ ମଞ୍ଜୁର ହେବା ଦରକାର । ପାଠ୍ୟପୁସ୍ତକର ଘନ ଘନ ପରିବର୍ତ୍ତନ କରାଯିବା ବାଞ୍ଛନୀୟ ନୁହେଁ ।

ପାଠ୍ୟପୁସ୍ତକ ବା ପାଠ୍ୟକ୍ରମ ଲାଗି ବଛାଯାଇଥିବା ଅନ୍ୟ ପୁସ୍ତକଗୁଡ଼ିକରେ ଏପରି କୌଣସି ବିଷୟବସ୍ତୁ ରହିବା ଉଚିତ ନୁହେଁ ଯାହା ବିଭିନ୍ନ ଧର୍ମ ବା ସାମାଜିକ ପ୍ରଥାକୁ ଆକ୍ଷେପ କରୁଥିବ କିମ୍ବା ତରୁଣ ଛାତ୍ରଛାତ୍ରୀମାନଙ୍କୁ କୌଣସି ରାଜନୈତିକ ତଥା ଧର୍ମଗତ ଆଦର୍ଶରେ ଅନୁପ୍ରାଣିତ କରୁଥିବ ।

## ସକ୍ରିୟ ଶିକ୍ଷାଦାନ ପ୍ରଣାଳୀ

କେବଳ ଉତ୍ତମରୂପେ ଜ୍ଞାନଦାନ କରିବା ଶିକ୍ଷାଦାନ ପ୍ରଣାଳୀର ଲକ୍ଷ୍ୟ ନ ହୋଇ ଛାତ୍ରଛାତ୍ରୀମାନଙ୍କ ମଧ୍ୟରେ ବାଞ୍ଛନୀୟ ମୂଲ୍ୟବୋଧ, ଉପଯୁକ୍ତ ପ୍ରବୃତ୍ତି ଓ କାର୍ଯ୍ୟ କରିବାର ଅଭ୍ୟାସ ବଢାଇବା ମଧ୍ୟ ଲକ୍ଷ୍ୟ ହେବା ଉଚିତ । ଛାତ୍ରଛାତ୍ରୀମାନଙ୍କର କାର୍ଯ୍ୟ କରିବା ପାଇଁ ପ୍ରକୃତ ଅନୁରକ୍ତି ସୃଷ୍ଟି କରାଯିବା ଉଚିତ ଯେପରି ସେମାନେ ଦକ୍ଷତା ଓ ସାଧୁତା ସହ କାର୍ଯ୍ୟଗୁଡ଼ିକ ମୂଳରୁ ଶେଷ ପର୍ଯ୍ୟନ୍ତ କରିପାରିବେ ।

ପ୍ରତ୍ୟେକ ବିଷୟରେ ଶିକ୍ଷାଦାନ ସମୟରେ କହିବା ଓ ଲେଖିବା ପାଇଁ ଉତ୍ତମ ଭାବନା ଓ ଅଭିବ୍ୟକ୍ତି ଉପରେ ଗୁରୁତ୍ୱ ଦିଆଯିବା ଉଚିତ ।

ସର୍ବାଧିକ ପରିମାଣର ଜ୍ଞାନଲାଭ ପ୍ରତି ଅଧିକ ଦୃଷ୍ଟି ନ ଦେଇ ବରଂ କି ଉପାୟରେ ଛାତ୍ରମାନେ ନିଜର ଶକ୍ତି ଖଟାଇ ଜ୍ଞାନ ଆହରଣ କରିପାରିବେ ସେଥିପ୍ରତି ଶିକ୍ଷାଦାନ ପଦ୍ଧତିରେ ଅଧିକ ଗୁରୁତ୍ୱ ଆରୋପ କରାଯିବା ଉଚିତ ।

ବ୍ୟକ୍ତିଗତ ଆବଶ୍ୟକତା ପ୍ରତି ଦୃଷ୍ଟିଦେଇ ଏକ ସ୍ୱତନ୍ତ୍ର ଶିକ୍ଷାଦାନ ପ୍ରଣାଳୀ ପ୍ରବର୍ତ୍ତନ କରାଯିବା ଦରକାର ଯାହାଦ୍ୱାରା କମ୍ ବୁଦ୍ଧିମାନ, ଅତି ବୁଦ୍ଧିମାନ ଓ ସାଧାରଣ ବୁଦ୍ଧିସମ୍ପନ୍ନ ସମସ୍ତ ଛାତ୍ର ସ୍ୱଚ୍ଛନ୍ଦରେ ଅଗ୍ରଗତି କରିପାରିବେ ।

ଛାତ୍ରମାନଙ୍କୁ ଦଳଗତ ଭାବରେ କାର୍ଯ୍ୟ କରିବାର ଯଥେଷ୍ଟ ସୁଯୋଗ ଦିଆଯିବା ଉଚିତ ଯାହା ଫଳରେ ସେମାନେ ଦଳଗତ ଜୀବନ ଓ ସହଯୋଗମୂଳକ କାର୍ଯ୍ୟପାଇଁ ଆବଶ୍ୟକ ଯୋଗ୍ୟତା ହାସଲ କରିପାରିବେ ।

ଆଧୁନିକ ଶିକ୍ଷାଦାନ ପଦ୍ଧତି ଲୋକପ୍ରିୟ କରିବା ପାଇଁ ଏବଂ ସେ ସବୁ ପ୍ରଚଳନ କରିବାର ପଥ ସୁଗମ କରିବା ପାଇଁ ପରୀକ୍ଷାମୂଳକ ଓ ଆଦର୍ଶ ( Experimental and Demonstration ) ବିଦ୍ୟାଳୟ ସ୍ଥାପନ କରାଯିବା ବିଧେୟ । ଯେଉଁ-ଠାରେ ଏହି ପ୍ରକାର ବିଦ୍ୟାଳୟମାନ ଅଛି, ସେ ସବୁକୁ ଉତ୍ସାହିତ କରାଯିବା ଦରକାର । ତାହାହେଲେ ଏହି ବିଦ୍ୟାଳୟଗୁଡ଼ିକ ବିଭାଗୀୟ ନିୟନ୍ତ୍ରଣର ବନ୍ଧନ ନ ମାନି ବିନା ବାଧାରେ ନୂତନ ପଦ୍ଧତିଗୁଡ଼ିକ ପରୀକ୍ଷା କରିପାରିବେ ।

## ଚରିତ୍ର ଗଠନପାଇଁ ଶିକ୍ଷା

### (କ) ଶୃଙ୍ଖଳା

ଚରିତ୍ର ଗଠନ ପାଇଁ ଶିକ୍ଷାର ଅବଧାରଣା କରିବା ପ୍ରତ୍ୟେକ ଶିକ୍ଷକଙ୍କର ଦାୟିତ୍ୱ ଏବଂ ବିଦ୍ୟାଳୟ କାର୍ଯ୍ୟକ୍ରମର ପ୍ରତ୍ୟେକ ଦିଗ ଚରିତ୍ର ଗଠନ ପାଇଁ ଉଦ୍ଦିଷ୍ଟ ହେବା ବାଞ୍ଛନୀୟ ।

ଶୃଙ୍ଖଳା ଜ୍ଞାନର ଅଭିବୃଦ୍ଧି ଲାଗି ଶିକ୍ଷକ ଓ ଛାତ୍ରଙ୍କ ମଧ୍ୟରେ ସୁସମ୍ପର୍କ ଦୃଢ଼ୀଭୂତ ହେବା ଉଚିତ । ଛାତ୍ର ପରିଷଦ ଓ ସ୍ୱୟଂ-ଶାସନ ପ୍ରଥାଦ୍ୱାରା ଛାତ୍ରମାନେ ନିଜେ ନିୟମ ପ୍ରଣୟନ କରିବେ ଏବଂ ନିୟମଗୁଡ଼ିକ କାର୍ଯ୍ୟକାରୀ ହେଉଅଛି କି ନାହିଁ ତାହା ସେହିମାନେ ହିଁ ଦେଖିବେ । ଏହି ପ୍ରଥା ପ୍ରତ୍ୟେକ ବିଦ୍ୟାଳୟରେ ପ୍ରଚଳିତ ହେବା ବିଧେୟ । ଦଳଗତ କ୍ରୀଡ଼ା କୌତୁକ ଓ ସହ-ପାଠ୍ୟ କାର୍ଯ୍ୟକ୍ରମଗୁଡ଼ିକ ପ୍ରତି ବିଶେଷ ଧ୍ୟାନ ଦିଆଯିବା ଉଚିତ ଏବଂ ଏହି ସବୁର କି କି ଶିକ୍ଷାଗତ ଉପାଦେୟତା ଅଛି ତାହାର ପୂର୍ଣ୍ଣ ଅନୁସନ୍ଧାନ ହେବା ମଧ୍ୟ ଆବଶ୍ୟକ ।

ରାଜନୈତିକ ତଥା ନିର୍ବାଚନ ପ୍ରଚାର ପାଇଁ ୧୭ ବର୍ଷରୁ କମ୍ ବୟସର ପିଲାଙ୍କୁ ନିଯୋଜନ କରିବା ଏକ ଅପରାଧ ରୂପେ ଗଣ୍ୟ ହେବା ଉଚିତ ଏବଂ ଏଥିପାଇଁ ବିଧିବଦ୍ଧ ଆଇନ ପ୍ରଣୟନ କରାଯିବା ବାଞ୍ଛନୀୟ ।

### (ଖ) ଧର୍ମ ସମ୍ବନ୍ଧୀୟ ନୈତିକ ଉପଦେଶ

ବିଦ୍ୟାଳୟର ନିୟମିତ କାର୍ଯ୍ୟକ୍ରମ ବାହାରେ ସ୍ୱେଚ୍ଛାକୃତ ଭାବରେ କୌଣସି ଧର୍ମ ସମ୍ବନ୍ଧୀୟ ଶିକ୍ଷା ଦିଆଯାଇପାରେ; ମାତ୍ର ଏହା କେବଳ ସେହି ଧର୍ମ ବିଶ୍ୱାସୀ ଛାତ୍ରମାନଙ୍କପାଇଁ ସୀମିତ ହେବା ଦରକାର ଏବଂ ଏଥିପାଇଁ ପିତାମାତା ଓ ପରିଚାଳନା ସଂସ୍ଥାର ସ୍ୱୀକୃତି ନିଆଯିବା ମଧ୍ୟ ଆବଶ୍ୟକ ।

### (ଗ) ପାଠ୍ୟକ୍ରମ ବହିର୍ଭୂତ କାର୍ଯ୍ୟାବଳୀ

ପାଠ୍ୟକ୍ରମ ବହିର୍ଭୂତ କାର୍ଯ୍ୟାବଳୀ ପ୍ରକୃତ ଶିକ୍ଷାର ଏକ ଅପରିହାର୍ଯ୍ୟ ଅଂଶ ରୂପେ ବିବେଚିତ ହେବା ଉଚିତ ଏବଂ ପ୍ରତ୍ୟେକ ଶିକ୍ଷକ ନିଶ୍ଚୟ ଏହି କାର୍ଯ୍ୟାବଳୀ ଲାଗି କିଛି ସମୟ ଦେବା ଦରକାର ।

ସରକାର ବାଳଚର ସଂସ୍ଥାକୁ ଯଥେଷ୍ଟ ଆର୍ଥିକ ସାହାଯ୍ୟ ଯୋଗାଇ ଦେବା ବାଞ୍ଛନୀୟ ଏବଂ ଉପଯୁକ୍ତ ସ୍ଥାନରେ ବାଳଚର ଶିବିର ସ୍ଥାପନ କରିବାରେ ସାହାଯ୍ୟ କରିବା ଉଚିତ । ଯେତେଦୂର ସମ୍ଭବ ବିଦ୍ୟାଳୟଗୁଡ଼ିକ ପ୍ରତ୍ୟେକ ବାଳଚର ଦଳକୁ ପ୍ରତ୍ୟେକ ବର୍ଷ ଏହି ଶିବିରଗୁଡ଼ିକରେ ଅଳ୍ପ କେତେଦିନ କଟାଇବାକୁ ସୁଯୋଗ ଦେବା ଆବଶ୍ୟକ ।

ଜାତୀୟ ସମର ଶିକ୍ଷାର୍ଥୀ ସଂସ୍ଥା କେନ୍ଦ୍ରସରକାରଙ୍କ ଅଧୀନକୁ ଆସିବା ଉଚିତ ଓ କେନ୍ଦ୍ର ସରକାର ଏହାର ଉପଯୁକ୍ତ ପରିଚାଳନା ଉନ୍ନତି ଓ ପ୍ରସାରର ଦାୟିତ୍ୱ ବହନ କରିବା ଆବଶ୍ୟକ ।

## ମାଧ୍ୟମିକ ବିଦ୍ୟାଳୟରେ ଉପଦେଶନ ଓ ଉପବୋଧନ (Guidance and Counselling) ବ୍ୟବସ୍ଥା :

ଶିକ୍ଷା ସମ୍ବନ୍ଧୀୟ ଉପଦେଶନ ପାଇଁ ବିଭାଗୀୟ କର୍ତ୍ତୃପକ୍ଷ ସବିଶେଷ ଦୃଷ୍ଟି ଦେବା ଆବଶ୍ୟକ ।

ଶିଳ୍ପାନୁଷ୍ଠାନଗୁଡ଼ିକର ବିଭିନ୍ନ ଧନ୍ଦା ସମ୍ବନ୍ଧରେ ଛାତ୍ରମାନଙ୍କୁ ଅବଗତ କରାଇବା ପାଇଁ ଚଳଚ୍ଚିତ୍ର ସାହାଯ୍ୟରେ ଶିଳ୍ପାନୁଷ୍ଠାନଗୁଡ଼ିକରେ କି କି ପ୍ରକାର କାର୍ଯ୍ୟ ହେଉଛି, ତାହା ଦେଖାଇ ଦିଆଯିବା ଉଚିତ । ସମ୍ଭବ ହେଲେ ଛାତ୍ରମାନଙ୍କପାଇଁ ବିଭିନ୍ନ ଶିଳ୍ପାନୁଷ୍ଠାନ ଦେଖିବାର ବ୍ୟବସ୍ଥା ମଧ୍ୟ କରାଯିବା ଆବଶ୍ୟକ ।

ସମସ୍ତ ଶିକ୍ଷାନୁଷ୍ଠାନ ଧୀରେ ଧୀରେ ତାଲିମପ୍ରାପ୍ତ ଉପଦେଶନ କର୍ମଚାରୀ ଓ ବୃତ୍ତି ନିର୍ଦ୍ଦେଶକ ଶିକ୍ଷକଙ୍କଠାରୁ ସାହାଯ୍ୟ ସହଯୋଗ ଲାଭ କରିବା ଉଚିତ ଏବଂ ଏହି ସାହାଯ୍ୟ କ୍ରମଶଃ ଅଧିକରୁ ଅଧିକତର ମିଳିବା ବାଞ୍ଛନୀୟ । ଏହି କର୍ମଚାରୀ ଓ ଶିକ୍ଷକମାନଙ୍କ ପାଇଁ ପ୍ରଶିକ୍ଷଣ କାର୍ଯ୍ୟକ୍ରମର ଦାୟିତ୍ୱ କେନ୍ଦ୍ର ସରକାର ବହନ କରିବା ଦରକାର ଏବଂ ରାଜ୍ୟ ସରକାରମାନେ ପ୍ରଶିକ୍ଷଣ କେନ୍ଦ୍ରକୁ ବହୁସଂଖ୍ୟକ ଶିକ୍ଷକ ଓ ଅନ୍ୟାନ୍ୟ ଯୋଗ୍ୟ ବ୍ୟକ୍ତିମାନଙ୍କୁ ତାଲିମ୍ ପାଇଁ ପଠାଇବା ଉଚିତ ।

## ଛାତ୍ରମାନଙ୍କର ଶାରୀରିକ ସମୃଦ୍ଧି :

ପ୍ରତ୍ୟେକ ରାଜ୍ୟରେ ସୁସଂଗଠିତ ଭାବରେ ବିଦ୍ୟାଳୟ-ଚିକିତ୍ସା-ସଂସ୍ଥା ( School medical service) ଗଠନ କରାଯିବା ଉଚିତ । ପ୍ରତ୍ୟେକ ବିଦ୍ୟାଳୟର ଛାତ୍ରମାନଙ୍କ ପାଇଁ ସଂପୂର୍ଣ୍ଣ ଡାକ୍ତରୀ ପରୀକ୍ଷା ଓ ଆବଶ୍ୟକାନୁଯାୟୀ ଚିକିତ୍ସାର ବ୍ୟବସ୍ଥା କରାଯିବା ବିଧେୟ ।

କେତେକ ଶିକ୍ଷକ ପ୍ରାଥମିକ ଚିକିତ୍ସା ଓ ସ୍ୱାସ୍ଥ୍ୟ ସମ୍ବନ୍ଧୀୟ ସାଧାରଣ ନିୟମଗୁଡ଼ିକ ସମ୍ବନ୍ଧରେ ତାଲିମ ପାଇବା ଉଚିତ । ତାହାହେଲେ ସେମାନେ ଚିକିତ୍ସା ବିଭାଗର କର୍ମଚାରୀଙ୍କସହ ପୂର୍ଣ୍ଣ ସହଯୋଗ ରକ୍ଷା କରିପାରିବେ ।

ଯେଉଁଠାରେ ସମ୍ଭବପର ସେଠାରେ ବିଦ୍ୟାଳୟଗୁଡ଼ିକ ସେହି ଅଞ୍ଚଳର ପରିଚ୍ଛନ୍ନତା ରକ୍ଷା କରିବାରେ ସାହାଯ୍ୟ କରିବା ଦରକାର । ଏହାଦ୍ୱାରା ଛାତ୍ରମାନେ ଶାରୀରିକ ପରିଶ୍ରମର ମର୍ଯ୍ୟାଦା ହୃଦୟଙ୍ଗମ କରିପାରିବେ ।

୪୦ ବର୍ଷରୁ କମ୍ ବୟସର ପ୍ରତ୍ୟେକ ଶିକ୍ଷକ ଛାତ୍ରମାନଙ୍କ ପାଇଁ ଉଦ୍ଦିଷ୍ଟ ଶାରୀରିକ କାର୍ଯ୍ୟକ୍ରମରେ ସକ୍ରିୟ ଅଂଶ ଗ୍ରହଣ କରି ଏହି କାର୍ଯ୍ୟକ୍ରମକୁ ଜୀବନ୍ତ କରିବା ଉଚିତ ।

ଶାରୀରିକ ଶିକ୍ଷା ଦେଉଥିବା ଶିକ୍ଷକମାନେ ଶରୀର ବିଜ୍ଞାନ ଓ ସ୍ୱାସ୍ଥ୍ୟରକ୍ଷା ପ୍ରଭୃତି ବିଷୟଗୁଡ଼ିକ ପଢ଼ାଇବାରେ ସଂଶ୍ଳିଷ୍ଟ ହେବା ବିଧେୟ ଏବଂ ଏହି ବିଷୟଗୁଡ଼ିକ ପଢ଼ାଇବାକୁ ଯୋଗ୍ୟତା ଥିବା ଅନ୍ୟାନ୍ୟ ଶିକ୍ଷକମାନଙ୍କ ମର୍ଯ୍ୟାଦା ସହ ସମାନ ମର୍ଯ୍ୟାଦା ସେମାନଙ୍କୁ ମିଳିବା ଆବଶ୍ୟକ ।

## ପରୀକ୍ଷା ଓ ମୂଲ୍ୟାୟନର ନୂଆ ବ୍ୟବସ୍ଥା

ବାହ୍ୟ ପରୀକ୍ଷାଗୁଡ଼ିକର ସଂଖ୍ୟା କମାଇ ଦିଆଯିବା ଉଚିତ । ପରୀକ୍ଷକମାନଙ୍କର ଆତ୍ମମୁଖୀ ଉପାଦାନ (element of subjectivity) ହେତୁ ବର୍ଣ୍ଣନାତ୍ମକ ଉତ୍ତର ଗୁଡ଼ିକର ଠିକ୍ ମୂଲ୍ୟାୟନ ହୋଇପାରେ ନାହିଁ । ମୁଖ୍ୟତଃ ଏହି କାରଣରୁ ପ୍ରଶ୍ନଗୁଡ଼ିକର ପ୍ରକାର ପରିବର୍ତ୍ତନ କରାଯିବା ଆବଶ୍ୟକ । ଏଥିପାଇଁ ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟମୂଳକ ଉପଯୁକ୍ତ ପ୍ରଶ୍ନମାନ ଦିଆଯାଇ ପାରେ ।

ଛାତ୍ରର ସର୍ବାଙ୍ଗୀନ ବିକାଶ ନିରୂପଣ କରିବାକୁ ବିଦ୍ୟାଳୟରେ ପ୍ରତ୍ୟେକ ଛାତ୍ରପାଇଁ ଅଭିଲେଖର ପ୍ରଚଳନ କରାଯିବା ଉଚିତ । ବିଭିନ୍ନ ସମୟରେ ବିଭିନ୍ନ ଦିଗରେ ଛାତ୍ରର ବ୍ୟୁତ୍ପତ୍ତି ଅଭିଲେଖରେ ଲିପିବଦ୍ଧ କରାଯିବା ଆବଶ୍ୟକ । ଛାତ୍ରମାନଙ୍କ ପାଇଁ ଉଦ୍ଦିଷ୍ଟ ଚୂଡ଼ାନ୍ତ ମୂଲ୍ୟାୟନ ବ୍ୟବସ୍ଥାରେ ଆଭ୍ୟନ୍ତରୀଣ ପରୀକ୍ଷା ଓ ବିଦ୍ୟାଳୟର ଅଭିଲେଖକୁ ଉପଯୁକ୍ତ ମର୍ଯ୍ୟାଦା ଦିଆଯିବା ବିଧେୟ ।

ବାହ୍ୟ ତଥା ଆଭ୍ୟନ୍ତରୀଣ ପରୀକ୍ଷା ଓ ଅଭିଲେଖଗୁଡ଼ିକର ମୂଲ୍ୟାୟନ ଅଙ୍କରେ ନ ହୋଇ ସଙ୍କେତରେ ହେବା ଉଚିତ । ମାଧ୍ୟମିକ ଶିକ୍ଷା ଶେଷରେ ଗୋଟିଏ ମାତ୍ର ସାଧାରଣ ପରୀକ୍ଷା କରାଯିବା ଆବଶ୍ୟକ ।

ପ୍ରମାଣ ପତ୍ରରେ ସାଧାରଣ ପରୀକ୍ଷା ପରେ ବିଭିନ୍ନ ବିଷୟରେ ଲାଭ କରିଥିବା ଫଳାଫଳ ସହ ଏହି ପରୀକ୍ଷା ବହିର୍ଭୂତ ବିଷୟଗୁଡ଼ିକରେ ବିଦ୍ୟାଳୟରେ ଲାଭ କରିଥିବା ଫଳାଫଳ ଓ ବିଦ୍ୟାଳୟର ଅଭିଲେଖର ସାରାଂଶ ଲିପିବଦ୍ଧ ହେବା ଆବଶ୍ୟକ । ଶେଷ ସାଧାରଣ

ପରୀକ୍ଷାରେ ଆଂଶିକ (compartmental) ପରୀକ୍ଷା ପ୍ରଥା ଅନ୍ତର୍ଭୁକ୍ତ ହେବା ବାଞ୍ଛନୀୟ ।

## ଶିକ୍ଷକମାନଙ୍କର ଉନ୍ନତି

ସମସ୍ତ ପ୍ରକାର ବିଦ୍ୟାଳୟରେ ଶିକ୍ଷକ ମନୋନୟନ ଓ ନିଯୁକ୍ତି ପାଇଁ ଗୋଟିଏ ପ୍ରକାର ନୀତି ଅନୁସୃତ ହେବା ଦରକାର । ଉଚ୍ଚ ମାଧ୍ୟମିକ ବିଦ୍ୟାଳୟ ପାଇଁ ଶିକ୍ଷକ ପାଠ୍ୟ ବିଷୟରେ ସ୍ନାତକ ଏବଂ ଶିକ୍ଷାରେ ସ୍ନାତକ ହେବା ଦରକାର । ଉଚ୍ଚତର ମାଧ୍ୟମିକ ବିଦ୍ୟାଳୟଗୁଡ଼ିକ ପାଇଁ ଶିକ୍ଷକମାନଙ୍କର ଉଚ୍ଚତର ଯୋଗ୍ୟତା ରହିବା ଉଚିତ । ଏହି ଯୋଗ୍ୟତା ମଧ୍ୟବର୍ତ୍ତୀ ମହାବିଦ୍ୟାଳୟର ଅଧ୍ୟାପକମାନଙ୍କ ପାଇଁ ବିଶ୍ୱବିଦ୍ୟାଳୟ ଦ୍ୱାରା ନିର୍ଦ୍ଧାରିତ ହୋଇଥିବା ଯୋଗ୍ୟତାର ଅନୁରୂପ ହେବା ଆବଶ୍ୟକ ।

ଯେ ଯେଉଁ ପ୍ରକାର ବିଦ୍ୟାଳୟରେ କାର୍ଯ୍ୟ କରନ୍ତୁ ପଛକେ, ଏକ ପ୍ରକାର ଯୋଗ୍ୟତା ଓ ଏକ ପ୍ରକାର କାର୍ଯ୍ୟ କରୁଥିବା ଶିକ୍ଷକମାନଙ୍କୁ ସମପର୍ଯ୍ୟାୟଭୁକ୍ତ କରାଯିବା ଉଚିତ ଓ ସମାନ ହାରରେ ବେତନ ଦିଆଯିବା ଦରକାର ।

ଶିକ୍ଷକମାନେ ଯେପରି ନିଜର ବା ସେମାନଙ୍କ ଉପରେ ନିର୍ଭର କରୁଥିବା ବ୍ୟକ୍ତିମାନଙ୍କ ଭବିଷ୍ୟତ ସମ୍ବନ୍ଧରେ ଉଦ୍‌ବିଗ୍ନ ନ ହୋଇ ଦକ୍ଷତାର ସହ କାର୍ଯ୍ୟ କରନ୍ତି ସେଥିପାଇଁ ପ୍ରତ୍ୟେକ ରାଜ୍ୟରେ ତ୍ରିବିଧ ସୁବିଧା ଅର୍ଥାତ୍ ଅବସରକାଳୀନ ଭତ୍ତା-ଭବିଷ୍ୟନିଧି-ଜୀବନବୀମାର ପ୍ରଚଳନ କରାଯିବା ଉଚିତ ।

ଯେଉଁ ସୁଦକ୍ଷ ଶିକ୍ଷକମାନଙ୍କର ଶାରୀରିକ ସାମର୍ଥ୍ୟ ଥିବ ସେମାନଙ୍କ ପାଇଁ ଅବସର ଗ୍ରହଣର ବୟସ ସୀମା ଶିକ୍ଷା ନିର୍ଦ୍ଦେଶକଙ୍କ ସମ୍ମତି କ୍ରମେ ୬୦ ବର୍ଷକୁ ବୃଦ୍ଧି କରାଯାଇ ପାରେ । ଶିକ୍ଷକମାନଙ୍କର ସନ୍ତାନସନ୍ତତିମାନେ ବିଦ୍ୟାଳୟ ଶିକ୍ଷା ସମାପ୍ତ କରିବା ପର୍ଯ୍ୟନ୍ତ ଅବୈତନିକ ଶିକ୍ଷା ପାଇବା ଆବଶ୍ୟକ । ଘରୋଇ ଶିକ୍ଷାଦାନ (private tuition) ବ୍ୟବସ୍ଥା ସମ୍ପୂର୍ଣ୍ଣରୂପେ ଉଠାଇ ଦିଆଯିବା ଆବଶ୍ୟକ ।

## ଶିକ୍ଷକ ପ୍ରଶିକ୍ଷଣ

ଶିକ୍ଷକ ପ୍ରଶିକ୍ଷଣ ପାଇଁ କେବଳ ଦୁଇପ୍ରକାର ଅନୁଷ୍ଠାନ ରହିବା ଆବଶ୍ୟକ । (୧) ଉଚ୍ଚତର ମାଧ୍ୟମିକ ଶିକ୍ଷାପ୍ରାପ୍ତ ବ୍ୟକ୍ତିଙ୍କ ପାଇଁ ଦୁଇବର୍ଷିଆ ପ୍ରଶିକ୍ଷଣ କାର୍ଯ୍ୟକ୍ରମ ଏବଂ (୨) ସ୍ନାତକମାନଙ୍କ ପାଇଁ ଆପାତତଃ ବର୍ଷିକିଆ ପ୍ରଶିକ୍ଷଣ କାର୍ଯ୍ୟକ୍ରମ । ଏହି ବର୍ଷିକିଆ କାର୍ଯ୍ୟକ୍ରମକୁ ପରେ ଦୁଇବର୍ଷକୁ ବଢ଼ାଇ ଦିଆଯାଇପାରେ ।

ପ୍ରଶିକ୍ଷଣ ମହାବିଦ୍ୟାଳୟଗୁଡ଼ିକରେ ଶିକ୍ଷାର୍ଥୀମାନେ ଦରମା ଦେବା ଉଚିତ ନୁହେଁ । ତାଲିମ ସମୟରେ ଶିକ୍ଷାର୍ଥୀମାନେ ସରକାରଙ୍କଠାରୁ ଉପଯୁକ୍ତ ଛାତ୍ରବୃତ୍ତି ପାଇବା ଆବଶ୍ୟକ

ଏବଂ ଯେଉଁ ଶିକ୍ଷକମାନେ ସ୍କୁଲସ୍ତ କ୍ଷେତ୍ରରୁ ତାଲିମ ପାଇଁ ଆସିଥିବେ ସେମାନେ ସ୍କୁଲସ୍ତ ସମୟରେ ପାଉଥିବା ପୂର୍ବ ଦରମା ପାଇବା ଉଚିତ । କେବଳ ତାଲିମପ୍ରାପ୍ତ ସ୍ନାତକ-ମାନେ ଶିକ୍ଷା କ୍ଷେତ୍ରରେ ତିନିବର୍ଷର ଅଭିଜ୍ଞତା ପରେ ସ୍ନାତକୋତ୍ତର-ଶିକ୍ଷା ଶ୍ରେଣୀରେ ନାମ ଲେଖାଇବା ପାଇଁ ଯୋଗ୍ୟ ବିବେଚିତ ହେବା ଆବଶ୍ୟକ । ଶିକ୍ଷା ପରିଦର୍ଶକ, କେତେକ ମନୋନୀତ ପ୍ରଧାନ ଶିକ୍ଷକ ଓ ପ୍ରଶିକ୍ଷଣ ମହାବିଦ୍ୟାଳୟର ଅଧ୍ୟାପକମାନଙ୍କ ମଧ୍ୟରେ ସହଜରେ ବଦଳି ବ୍ୟବସ୍ଥା ପ୍ରଚଳିତ ହେବା ଦରକାର ।

**ପ୍ରଶାସନିକ ସମସ୍ୟା :**

ସଂଗଠନ ଓ ପ୍ରଶାସନ—ମନ୍ତ୍ରୀଙ୍କୁ ପରାମର୍ଶ ଦେବାପାଇଁ ଶିକ୍ଷାନିର୍ଦ୍ଦେଶକ ହିଁ ମୁଖ୍ୟତଃ ଦାୟୀ ହେବା ଉଚିତ । ତେଣୁ ତାଙ୍କୁ ଯୁଗ୍ମ-ସଚୀବ (Joint Secretary) ପାହ୍ୟା ଦିଆଯିବା ଦରକାର ଯାହାଫଳରେ ସେ ସିଧାସଳଖ ମନ୍ତ୍ରୀଙ୍କ ସହ ସମ୍ପର୍କ ସ୍ଥାପନ କରିପାରିବେ ।

ଶିକ୍ଷା ନିର୍ଦ୍ଦେଶକଙ୍କ ଅଧ୍ୟକ୍ଷତାରେ ସର୍ବାଧିକ ୨୫ ଜଣ ସଭ୍ୟଙ୍କୁ ନେଇ ଏକ ମାଧ୍ୟମିକ ଶିକ୍ଷା ପରିଷଦ ଗଠିତ ହେବା ଦରକାର ଯାହା ମାଧ୍ୟମିକ ଶିକ୍ଷା ସ୍ତରର ସମସ୍ତ ବିଷୟ ବିସ୍ତର ବିଷ ଆବଶ୍ୟକ ନୀତି ନିର୍ଦ୍ଧାରଣ କରିବେ । ମାଧ୍ୟମିକ ଶିକ୍ଷା ପରିଷଦର ଏକ ଉପ-ସମିତି ପରୀକ୍ଷା ପରିଚାଳନା କରିବା ଦରକାର ।

ଉପସ୍ନାତକମାନଙ୍କପାଇଁ ପ୍ରଶିକ୍ଷଣ ବ୍ୟବସ୍ଥାର ତତ୍ତ୍ୱାବଧାନ କରିବାକୁ ଗୋଟିଏ ଶିକ୍ଷକ-ପ୍ରଶିକ୍ଷଣ ପରିଷଦ ରହିବା ଉଚିତ । ଏହି ପରିଷଦ ଉପସ୍ନାତକମାନଙ୍କର ଉପଯୁକ୍ତ ପ୍ରଶିକ୍ଷଣ ଲାଗି ଆବଶ୍ୟକ ସର୍ତ୍ତାବଳୀ ସ୍ଥିର କରିବା ଉଚିତ । ଏହା ମଧ୍ୟ ସ୍ନାତକମାନଙ୍କର ପ୍ରଶିକ୍ଷଣ ବ୍ୟବସ୍ଥାର ଉନ୍ନତି ଲାଗି ବିଶ୍ୱବିଦ୍ୟାଳୟକୁ ପ୍ରସ୍ତାବ ଦେବା ଦରକାର ।

ଶିକ୍ଷା କ୍ଷେତ୍ରରେ ସର୍ବଭାରତୀୟ ସମସ୍ୟାର ବିଚାର କରିବାକୁ ବର୍ତ୍ତମାନର କେନ୍ଦ୍ରୀୟ-ଶିକ୍ଷା-ପରାମର୍ଶଦାତା ପରିଷଦ ଗୋଟିଏ ସମନ୍ୱୟକାରୀ ସଂସ୍ଥାରୂପେ କାର୍ଯ୍ୟ କରିଯିବା ଉଚିତ । ଶିକ୍ଷା ସମ୍ବନ୍ଧୀୟ ସମସ୍ତ ବିଷୟରେ ଶିକ୍ଷାବିଭାଗକୁ ପରାମର୍ଶ ଦେବାପାଇଁ କେନ୍ଦ୍ରୀୟ ପରିଷଦ ଢାଞ୍ଚାରେ ପ୍ରତ୍ୟେକ ରାଜ୍ୟପାଇଁ ଗୋଟିଏ ଗୋଟିଏ ରାଜ୍ୟ-ପରାମର୍ଶଦାତା-ପରିଷଦ ଗଠିତ ହେବା ବାଞ୍ଛନୀୟ ।

ବିଦ୍ୟାଳୟ ପରିଦର୍ଶନ- ପ୍ରତ୍ୟେକ ବିଦ୍ୟାଳୟର ସମସ୍ୟାଗୁଡ଼ିକର ଅନୁଶୀଳନ କରିବା, ଶିକ୍ଷାର ଲକ୍ଷ୍ୟ ଦୃଷ୍ଟିରୁ ତାହା ବିଚାର କରିବା ଏବଂ ଶିକ୍ଷାର ଉତ୍କର୍ଷ ସାଧନ ପାଇଁ ଆବଶ୍ୟକ ପରାମର୍ଶ ଦେଇ ଶିକ୍ଷକମାନଙ୍କୁ ସେହି ପରାମର୍ଶଗୁଡ଼ିକ କାର୍ଯ୍ୟକାରୀ କରିବାରେ ସାହାଯ୍ୟ କରିବା ହେଉଛି ପରିଦର୍ଶକଙ୍କର ପ୍ରକୃତ କାର୍ଯ୍ୟ ।

ଗୃହ ବିଜ୍ଞାନ, କଳା, ସଙ୍ଗୀତ ପ୍ରଭୃତି ସ୍ୱତନ୍ତ୍ର ବିଷୟଗୁଡ଼ିକର ଶିକ୍ଷାଦାନ ମାର୍ଗଦର୍ଶନ କରିବାପାଇଁ ସ୍ୱତନ୍ତ୍ର ପରିଦର୍ଶକ ନିଯୁକ୍ତ ହେବା ଆବଶ୍ୟକ । ବାର୍ଷିକ କାର୍ଯ୍ୟ ଦିବସ ୨୦୦ ଦିନରୁ କମ୍ ହେବା ଉଚିତ ନୁହେଁ । ପ୍ରତି ସପ୍ତାହରେ ଅନ୍ୟୂନ ୩୫ଟି ପିରିଅଡ଼ ରହିବା ଓ ପ୍ରତ୍ୟେକ ପିରିଅଡ଼ ୪୫ ମିନିଟ ହେବା ଉଚିତ ।

ଉପରୋକ୍ତ ସୁପାରିଶଗୁଡ଼ିକ ବ୍ୟତୀତ କମିଶନ ବିଦ୍ୟାଳୟ-ପରିଚାଳନା, ବିଦ୍ୟାଳୟକୁ ମଞ୍ଜୁରୀ ଦେବାର ସର୍ତ୍ତାବଳୀ, ବିଦ୍ୟାଳୟର ଗୃହ ଓ ଉପକରଣ, ଆର୍ଥିକ ବ୍ୟବସ୍ଥା ଆଦି କେତେକ ବିଷୟରେ ମଧ୍ୟ ସୁପାରିଶମାନ କରିଅଛନ୍ତି ।

## କୋଠାରୀ କମିଶନ

**କମିଶନଙ୍କ ନିଯୁକ୍ତି :**

ଭାରତ ସରକାର ୧୯୬୪ ମସିହା ଜୁଲାଇ ମାସ ୧୪ ତାରିଖରେ ତତ୍କାଳୀନ ବିଶ୍ୱବିଦ୍ୟାଳୟ ମଞ୍ଜୁରୀ କମିଶନ ଅଧ୍ୟକ୍ଷ ଶ୍ରୀଯୁକ୍ତ ଡ଼.ଏସ. କୋଠାରୀଙ୍କର ଅଧ୍ୟକ୍ଷତାରେ ଗୋଟିଏ ଶିକ୍ଷା କମିଶନ ନିଯୁକ୍ତ କରିଥିଲେ । ଜାତୀୟ ଶିକ୍ଷାର ରୂପରେଖ କି ପ୍ରକାରର ହେବା ଉଚିତ ଏବଂ ସବୁ ସ୍ତରରେ ସବୁ ଦିଗରୁ ଶିକ୍ଷାର ଅଭିବୃଦ୍ଧି ପାଇଁ କେଉଁ କେଉଁ ସାଧାରଣ ନୀତି ନିୟମ ଅନୁସୃତ ହେବା ଆବଶ୍ୟକ, ସେ ସମ୍ବନ୍ଧରେ ସରକାରଙ୍କୁ ପରାମର୍ଶ ଦେବା ଏହି କମିଶନଙ୍କର କାର୍ଯ୍ୟ ଥିଲା ।

କମିଶନଙ୍କ ଭାଷାରେ "ଭାରତୀୟ ଶିକ୍ଷାରେ ଆବଶ୍ୟକ ହେଉଛି ଏକ ଆମୂଳଚୂଳ ପୁନର୍ଗଠନ"—ଏକ ବିପ୍ଳବ । କମିଶନଙ୍କ ମତରେ ପ୍ରାଥମିକ ଶିକ୍ଷା ଫଳପ୍ରଦ ହେବା ଦରକାର । କର୍ମାଭିଜ୍ଞତା (Work-Experience) ସାଧାରଣ ଶିକ୍ଷାର ଏକ ଅପରିହାର୍ଯ୍ୟ ଉପାଦାନ ରୂପେ ଗୃହୀତ ହେବା ଦରକାର ଏବଂ ମାଧ୍ୟମିକ ଶିକ୍ଷା ଧନ୍ଦାମୂଳକ ହେବା ଉଚିତ । ପ୍ରତ୍ୟେକ ସ୍ତରରେ ଶିକ୍ଷକଙ୍କର ଗୁଣାତ୍ମକ ଅଭିବୃଦ୍ଧି ସଙ୍ଗେ ସଙ୍ଗେ ଯଥେଷ୍ଟ ସଂଖ୍ୟକ ଶିକ୍ଷକ ଯୋଗାଇଦେବା, ନିରକ୍ଷରତା ଦୂର କରିବା, ଉନ୍ନତ ଅଧ୍ୟୟନ କେନ୍ଦ୍ରଗୁଡ଼ିକର ସ୍ଥିତି ଦୃଢ଼ କରିବା, କେତେକ ବିଶ୍ୱବିଦ୍ୟାଳୟରେ ଶିକ୍ଷାର ମାନ ଉଚ୍ଚତର ଆନ୍ତର୍ଜାତିକ ମାନ ସଙ୍ଗେ ସମାନ କରିବାକୁ ଚେଷ୍ଟା କରିବା, ଶିକ୍ଷାଦାନ ସଙ୍ଗେ ସଙ୍ଗେ ଗବେଷଣା ଉପରେ ଗୁରୁତ୍ୱ ଆରୋପ କରିବା—କମିଶନଙ୍କର ଅନ୍ୟ କେତେକ ପ୍ରଧାନ ସୁପାରିଶ ।

ଯାହାହେଉ କୋଠାରୀ କମିଶନଙ୍କର ପ୍ରଧାନ ସୁପାରିଶଗୁଡ଼ିକ ନିମ୍ନରେ ପ୍ରଦତ୍ତ ହେଲା ।

### ଶିକ୍ଷା ଓ ଜାତୀୟ ଲକ୍ଷ୍ୟ

ଶିକ୍ଷା କ୍ଷେତ୍ରରେ ଆବଶ୍ୟକ ହେଉଥିବା ସର୍ବପ୍ରଧାନ ଓ ଜରୁରୀ ସଂସ୍କାର ହେଉଛି—ଶିକ୍ଷାକୁ ଲୋକମାନଙ୍କର ଜୀବନ ସହ ଏବଂ ସେମାନଙ୍କର ଆବଶ୍ୟକତା ଓ ଆକାଙ୍‌କ୍ଷା ସହ

ଜଡ଼ିତ କରିବା ସଙ୍ଗେ ସଙ୍ଗେ ଜାତୀୟ ଲକ୍ଷ୍ୟ ସାଧନ ଉଦ୍ଦେଶ୍ୟରେ ସାମାଜିକ, ଅର୍ଥନୈତିକ ଓ ସାଂସ୍କୃତିକ ପରିବର୍ତ୍ତନ ଆଣିବାକୁ ଶିକ୍ଷାକୁ ଏକ ଶକ୍ତିଶାଳୀ ଅସ୍ତ୍ରରୂପେ ପରିଣତ କରିବା । ଏହି ଉଦ୍ଦେଶ୍ୟ ହେତୁ ଶିକ୍ଷା ଏପରି ଉନ୍ନତ ହେବା ଉଚିତ ଯାହା ଫଳରେ ଉତ୍ପାଦନ ବୃଦ୍ଧି ପାଇବ, ସାମାଜିକ ତଥା ଜାତୀୟ ସଂହତି ପ୍ରତିଷ୍ଠିତ ହେବ, ଆଧୁନିକୀକରଣର ପ୍ରକ୍ରିୟା କ୍ଷିପ୍ରତର ହେବ ଏବଂ ସାମାଜିକ, ନୈତିକ ଓ ଆଧ୍ୟାତ୍ମିକ ମୂଲ୍ୟବୋଧର ଅନୁଶୀଳନ କରାଯାଇପାରିବ ।

## ଶିକ୍ଷା ଓ ଉତ୍ପାଦନ କ୍ଷମତା

ବିଜ୍ଞାନ ଶିକ୍ଷା ବିଦ୍ୟାଳୟ ପାଠ୍ୟକ୍ରମର ଏକ ଅପରିହାର୍ଯ୍ୟ ଅଂଶ ହେବା ଦରକାର ଏବଂ କ୍ରମେ କ୍ରମେ ଏହା ବିଶ୍ୱବିଦ୍ୟାଳୟ ସ୍ତରର ପ୍ରତ୍ୟେକ ପାଠ୍ୟକ୍ରମର ଅଂଶରୂପେ ସ୍ଥାନ ପାଇବା ଉଚିତ ।

ସମସ୍ତ ଶିକ୍ଷାର ଅବିଚ୍ଛେଦ୍ୟ ଅଙ୍ଗରୂପେ କର୍ମାଭିଜ୍ଞତା (Work experience) ଗୃହୀତ ହେବା ଉଚିତ । କର୍ମାଭିଜ୍ଞତାକୁ କାରିଗରୀ ଓ ଶିଳ୍ପମୁଖୀ କରାଇବା ପାଇଁ ଚେଷ୍ଟା କରାଯିବ। ସଙ୍ଗେ ସଙ୍ଗେ ବିଜ୍ଞାନକୁ କୃଷି ଓ ଅନ୍ୟାନ୍ୟ ଉତ୍ପାଦନ ପ୍ରକ୍ରିୟାରେ ପ୍ରୟୋଗ କରିବା ପାଇଁ ଚେଷ୍ଟା କରାଯିବା ଉଚିତ ।

ମାଧ୍ୟମିକ ଶିକ୍ଷା ଅନେକାଂଶରେ ଏବଂ ଅଧିକରୁ ଅଧିକତର ହାରରେ ଧନ୍ଦାମୁଖୀ ହେବା ଉଚିତ ଏବଂ ଉଚ୍ଚତର ପାଠ୍ୟକ୍ରମ କୃଷି ଓ ବୈଷୟିକ ଶିକ୍ଷା ପାଇଁ ଅଧିକ ଗୁରୁତ୍ୱ ଦିଆଯିବା ଆବଶ୍ୟକ ।

## ସାମାଜିକ ଓ ଜାତୀୟ ସଂହତି

ସାମାଜିକ ଓ ଜାତୀୟ ସଂହତି ସାଧିତ ହେବା ଶିକ୍ଷାର ଏକ ପ୍ରଧାନ ଲକ୍ଷ୍ୟ । ତେଣୁ ଜାତୀୟ ଜାଗରଣ ଓ ସଂହତି ଲାଗି କେତେକ ପଦକ୍ଷେପ ନିଆଯିବା ଦରକାର ।

ସାର୍ବଜନୀନ ଶିକ୍ଷାଲାଗି ସାଧାରଣ-ବିଦ୍ୟାଳୟ ବ୍ୟବସ୍ଥା (Common School System) ଏକ ଜାତୀୟ ଲକ୍ଷ୍ୟ ରୂପେ ଗୃହୀତ ହେବା ଆବଶ୍ୟକ । ଏହା ପର୍ଯ୍ୟାୟକ୍ରମେ ୨୦ ବର୍ଷ ମଧ୍ୟରେ ଉପଯୁକ୍ତ ଭାବରେ କାର୍ଯ୍ୟକାରୀ ହେବା ଉଚିତ ।

ସମସ୍ତ ଛାତ୍ରଙ୍କ ପାଇଁ ସବୁ ସ୍ତରରେ ସାମାଜିକ ଓ ଜାତୀୟ ସେବା ବାଧ୍ୟତାମୂଳକ ହେବା ଦରକାର । ବିଦ୍ୟାଳୟ ଓ ମହାବିଦ୍ୟାଳୟଗୁଡ଼ିକରେ ପାଠପଢ଼ା ସହ ଏହି କାର୍ଯ୍ୟକ୍ରମର ବ୍ୟବସ୍ଥା କରାଯିବା ଆବଶ୍ୟକ ।

ଏକ ଉପଯୁକ୍ତ ଭାଷାନୀତିର ବିକାଶ ଏହି ସାମାଜିକ ଓ ଜାତୀୟ ସଂହତିର ବିଶେଷ ସହାୟକ ହେବ । ବିଦ୍ୟାଳୟ ଓ ମହାବିଦ୍ୟାଳୟ ସ୍ତରରେ ଶିକ୍ଷାର ମାଧ୍ୟମ ପାଇଁ ମାତୃ-

ଭାଷାର ସ୍ଥାନ ସର୍ବଶ୍ରେଷ୍ଠ । ବିଦ୍ୟାଳୟ ପାଇଁ ଶିକ୍ଷାର ମାଧ୍ୟମ ଯାହା, ଉଚ୍ଚତର ଶିକ୍ଷାପାଇଁ ଶିକ୍ଷାର ମାଧ୍ୟମ ତାହାହିଁ ହେବା ଉଚିତ । ତେଣୁ ଉଚ୍ଚତର ଶିକ୍ଷାପାଇଁ ଆଞ୍ଚଳିକ ଭାଷାଗୁଡ଼ିକ ଶିକ୍ଷାର ମାଧ୍ୟମରୂପେ ଗୃହୀତ ହେବା ବାଞ୍ଛନୀୟ ।

ବିଶ୍ୱବିଦ୍ୟାଳୟ ମଞ୍ଜୁରୀ କମିଶନ ଓ ବିଶ୍ୱବିଦ୍ୟାଳୟଗୁଡ଼ିକ ଏହି ସୁପାରିଶ୍‌ମାନ କାର୍ଯ୍ୟକାରୀ କରିବାକୁ ଉପଯୁକ୍ତ କାର୍ଯ୍ୟକ୍ରମ ପ୍ରସ୍ତୁତ କରିବା ଆବଶ୍ୟକ । ଏହି ପରିବର୍ତ୍ତନ ଦଶବର୍ଷ ମଧ୍ୟରେ ସମ୍ପୂର୍ଣ୍ଣ ହେବା ଆବଶ୍ୟକ ।

ଆଞ୍ଚଳିକ ଭାଷାରେ ପୁସ୍ତକ ପ୍ରଣୟନ ଲାଗି ବିଶେଷତଃ ବିଜ୍ଞାନ ଓ ବୈଷୟିକ ବିଷୟଗୁଡ଼ିକର ପୁସ୍ତକ ପ୍ରଣୟନ ଲାଗି ବଳିଷ୍ଠ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାଯିବା ଦରକାର । ବିଶ୍ୱବିଦ୍ୟାଳୟ ମଞ୍ଜୁରୀ କମିଶନଙ୍କ ସହାୟତାରେ ଏହି କାର୍ଯ୍ୟ କରିବାପାଇଁ ବିଶ୍ୱବିଦ୍ୟାଳୟଗୁଡ଼ିକ ଉପରେ ଦାୟିତ୍ୱ ନ୍ୟସ୍ତ ହେବା ବାଞ୍ଛନୀୟ ।

ସର୍ବଭାରତୀୟ ଅନୁଷ୍ଠାନଗୁଡ଼ିକରେ ଶିକ୍ଷାର ମାଧ୍ୟମ ରୂପେ ଇଂରାଜୀଭାଷା ବର୍ତ୍ତମାନ ପାଇଁ ରହିଲୁ ରହିବା ଉଚିତ । ପରେ ହିନ୍ଦୀର ପ୍ରଚଳନ ଯଥା ସମୟରେ ବିସ୍ତାରକୁ ନଆଯିବା ଆବଶ୍ୟକ । ଅବଶ୍ୟ ଏଥିପାଇଁ କେତେକ ସତର୍କତା ଅବଲମ୍ବନ କରିବାକୁ ପଡ଼ିବ । ଯେତେ ଶୀଘ୍ର ସମ୍ଭବପର ଆଞ୍ଚଳିକ ଭାଷାଗୁଡ଼ିକ ସମ୍ପୃକ୍ତ ଅଞ୍ଚଳର ପ୍ରଶାସନିକ-ଭାଷା ହେବା ବାଞ୍ଛନୀୟ । ଏହା କରାଗଲେ ଯେଉଁମାନେ ଆଞ୍ଚଳିକ ଭାଷା ମାଧ୍ୟମରେ ପଢ଼ିବେ ସେମାନେ ଉଚ୍ଚ ଚାକିରୀ ପାଇବାରୁ ବଞ୍ଚିତ ହେବେ ନାହିଁ ।

ବିଦ୍ୟାଳୟ ସ୍ତରରୁ ହିଁ ଇଂରାଜୀ ପଢ଼ିବା ଓ ପଢ଼ାଇବା ବ୍ୟବସ୍ଥାକୁ ଉତ୍ସାହିତ କରାଯିବା ଉଚିତ । ଆନ୍ତର୍ଜାତିକ ବୃତ୍ତିମାନ ପାଇଁ ଆବଶ୍ୟକ ହେଉଥିବା ଅନ୍ୟାନ୍ୟ ଭାଷାଗୁଡ଼ିକ ମଧ୍ୟ ଉତ୍ସାହିତ ହେବା ଆବଶ୍ୟକ । ରୁଷୀୟ ଭାଷାର ଶିକ୍ଷା ବ୍ୟବସ୍ଥା ସବିଶେଷ ଦୃଷ୍ଟି ଆକର୍ଷଣ କରିବା ଉଚିତ । ଉଭୟ ବିଦ୍ୟାଳୟ ଓ ବିଶ୍ୱବିଦ୍ୟାଳୟ ସ୍ତରରେ ଅଳ୍ପ କେତେଗୋଟି ଅନୁଷ୍ଠାନ ସ୍ଥାପିତ ହେବା ଉଚିତ ଯେଉଁଠାରେ ପୃଥିବୀର କେତେକ ପ୍ରଧାନ ଭାଷା ମାଧ୍ୟମରେ ଶିକ୍ଷା ଦିଆଯାଇ ପାରିବ ।

## ଜାତୀୟ ଚେତନାର ଅଭିବୃଦ୍ଧି

ଜାତୀୟ ଚେତନାର ଅଭିବୃଦ୍ଧି ବିଦ୍ୟାଳୟ ଶିକ୍ଷାର ଏକ ପ୍ରଧାନ ଲକ୍ଷ୍ୟ ହେବା ଉଚିତ । ଆମର ସାଂସ୍କୃତିକ ପରମ୍ପରାକୁ ଠିକ୍ ଭାବରେ ବୁଝିବାକୁ ଚେଷ୍ଟା କରି ଏବଂ ସେ ସବୁର ପୁନଃ-ମୂଲ୍ୟାୟନ କରି ଜାତୀୟ ଚେତନାର ଅଭିବୃଦ୍ଧି ଦିଗରେ ଚେଷ୍ଟା କରାଯିବା ଆବଶ୍ୟକ । ଏଥିପାଇଁ ମଧ୍ୟ ଆମର ଆକାଂକ୍ଷିତ ଭବିଷ୍ୟତ ଉପରେ ଦୃଢ଼ ବିଶ୍ୱାସ ଜନ୍ମିବା ଆବଶ୍ୟକ ।

ଜାତୀୟ ଚେତନାର ଅଭିବୃଦ୍ଧି ଓ ଆନ୍ତର୍ଜାତିକ ବୁଝାମଣାର ବିକାଶ ସାଧନ— ଏ ଦୁଇଟି ପରସ୍ପର ବିରୋଧୀ ବିଷୟ ନୁହେଁ । ତେଣୁ ଶିକ୍ଷାଦ୍ୱାରା ଏ ଦୁଇଟି ବିଷୟର ବିକାଶ ଏକସଙ୍ଗେ ସମାହିତ ହେବା ଉଚିତ । ବିଦ୍ୟାଳୟ ଓ ମହାବିଦ୍ୟାଳୟଗୁଡ଼ିକରେ ଶିକ୍ଷା ସମ୍ବନ୍ଧୀୟ କାର୍ଯ୍ୟକ୍ରମ ଏପରି ପ୍ରସ୍ତୁତ ହେବା ଆବଶ୍ୟକ ଯାହା ଫଳରେ ଗଣତାନ୍ତ୍ରିକ ମୂଲ୍ୟବୋଧ ସୁଦୃଢ଼ ହେବ ।

## ଧର୍ମ ସମ୍ବନ୍ଧୀୟ ଶିକ୍ଷା

ଗୋଟିଏ ବହୁଧର୍ମୀସମନ୍ୱିତ ଗଣତାନ୍ତ୍ରିକ ରାଷ୍ଟ୍ରରେ ସବୁ ଧର୍ମର ଅଧ୍ୟୟନ ପ୍ରତି ସହିଷ୍ଣୁତା ପ୍ରଦର୍ଶନ ଆବଶ୍ୟକ । ତାହା ହେଲେ ନାଗରିକମାନଙ୍କ ମଧ୍ୟରେ ପରସ୍ପର ବୁଝାମଣା ଓ ମିଳାମିଶି ଚଳିବା ସହଜ ହେବ ।

## ଶିକ୍ଷା ପ୍ରଣାଳୀର ଗଠନ ପଦ୍ଧତି ଓ ଶିକ୍ଷାର ମାନ :

ଶିକ୍ଷା ପ୍ରଣାଳୀର ଗଠନ ପଦ୍ଧତି ଏପରି ହେବା ଆବଶ୍ୟକ, ଯହିଁରେ ଏକବର୍ଷରୁ ତିନିବର୍ଷ ପର୍ଯ୍ୟନ୍ତ ପ୍ରାକ୍-ବିଦ୍ୟାଳୟ (Pre School) ଶିକ୍ଷା ଓ ଦଶବର୍ଷିଆ ସାଧାରଣ ଶିକ୍ଷା ବ୍ୟବସ୍ଥା ରଖାଯାଇ ପାରିବ । ଏହି ୧୦ ବର୍ଷିଆ ଶିକ୍ଷା ବ୍ୟବସ୍ଥାର ୭।୮ ବର୍ଷ ପ୍ରାଥମିକ ଶିକ୍ଷା (୪।୫ ବର୍ଷର ନିମ୍ନପ୍ରାଥମିକ ଓ ୨।୩ ବର୍ଷର ଉଚ୍ଚପ୍ରାଥମିକ ଶିକ୍ଷା) ଓ ୨ ବା ୩ ବର୍ଷ ନିମ୍ନ ମାଧ୍ୟମିକ ଶିକ୍ଷା ବା ୧ ବର୍ଷରୁ ୩ ବର୍ଷ ପର୍ଯ୍ୟନ୍ତ ଧନ୍ଦାମୁଖୀ ଶିକ୍ଷା ଦେବା ଉଚିତ । ଉପଯୁକ୍ତ ଧନ୍ଦାମୁଖୀ ଶିକ୍ଷା ଏହି ସ୍ତରରେ ଶତକଡ଼ା ୨୦ ଭାଗ ଛାତ୍ରଙ୍କ ପାଇଁ ଉଦ୍ଦିଷ୍ଟ ହେବା ଆବଶ୍ୟକ । ଉଚ୍ଚତର ମାଧ୍ୟମିକ ସ୍ତରରେ ଦୁଇବର୍ଷିଆ ସାଧାରଣ ଶିକ୍ଷା ବା ୧ ବର୍ଷରୁ ୩ ବର୍ଷ ପର୍ଯ୍ୟନ୍ତ ଧନ୍ଦାମୁଖୀ ଶିକ୍ଷା ରହିବା ଉଚିତ । ଏହି ସ୍ତରର ଧନ୍ଦାମୁଖୀ ଶିକ୍ଷାରେ ଶତକଡ଼ା ୫୦ ଭାଗ ଛାତ୍ର ଅନ୍ତର୍ଭୁକ୍ତ ହେବା ଦରକାର । ଉଚ୍ଚ ଶିକ୍ଷା ସ୍ତରରେ ସ୍ନାତକ ଉପାଧିପାଇଁ ତିନିବର୍ଷିଆ ପାଠ୍ୟକ୍ରମ ଓ ସ୍ନାତକୋତ୍ତର ଉପାଧିପାଇଁ ବା ଗବେଷଣା ଉପାଧି ପାଇଁ ଭିନ୍ନ ଭିନ୍ନ ସମୟର ପାଠ୍ୟକ୍ରମ ରହିବା ଉଚିତ ।

ପ୍ରଥମ ଶ୍ରେଣୀରେ ନାମ ଲେଖାଇବା ପାଇଁ ପିଲାର ବୟସ ସାଧାରଣତଃ ୬ ବର୍ଷରୁ କମ୍ ହେବା ଉଚିତ ନୁହେଁ । ପ୍ରଥମ ସାଧାରଣ ବାହ୍ୟ ପରୀକ୍ଷା ବିଦ୍ୟାଳୟ ଶିକ୍ଷାର ପ୍ରଥମ ୧୦ ବର୍ଷ ପରେ ହେବା ଉଚିତ ।

ସାଧାରଣ ଶିକ୍ଷା ଦିଆଯାଉଥିବା ବିଦ୍ୟାଳୟରେ ୯ମ ଶ୍ରେଣୀରୁ ଛାତ୍ରମାନେ ବିଭିନ୍ନ ଦିଗରେ ଯିବା ବ୍ୟବସ୍ଥା ଉଠାଇଦେବା ଆବଶ୍ୟକ । ଦଶମ ଶ୍ରେଣୀର ପାଠ ଶେଷ ନ ହେବା ପର୍ଯ୍ୟନ୍ତ ବିଶେଷ ପାଠ୍ୟକ୍ରମର ଶିକ୍ଷାଦାନ ସମ୍ବନ୍ଧରେ କୌଣସି ପଦକ୍ଷେପ ନେବା ଅନୁଚିତ ।

ମାଧ୍ୟମିକ ବିଦ୍ୟାଳୟ ଦୁଇ ପ୍ରକାରର ହେବା ଉଚିତ—୧୦ ବର୍ଷିଆ ପାଠ୍ୟକ୍ରମର ଉଚ୍ଚ ମାଧ୍ୟମିକ ବିଦ୍ୟାଳୟ ଓ ୧୧ ବା ୧୨ ବର୍ଷିଆ ପାଠ୍ୟକ୍ରମର ଉଚ୍ଚତର ମାଧ୍ୟମିକ ବିଦ୍ୟାଳୟ । ପ୍ରତ୍ୟେକ ଉଚ୍ଚ ମାଧ୍ୟମିକ ବିଦ୍ୟାଳୟକୁ ଉଚ୍ଚତର ମାଧ୍ୟମିକରେ ପରିଣତ କରିବାର ଚେଷ୍ଟା ବନ୍ଦ ହେବା ଦରକାର । କେବଳ ବୃହତ୍ତର ଓ ଉନ୍ନତ ବିଦ୍ୟାଳୟ-ଗୁଡ଼ିକ ଅର୍ଥାତ୍ ମୋଟ ବିଦ୍ୟାଳୟ ସଂଖ୍ୟାର ପ୍ରାୟ ଏକ ଚତୁର୍ଥାଂଶ ମାତ୍ର ଉଚ୍ଚତର ବିଦ୍ୟାଳୟରେ ପରିଣତ କରାଯାଇପାରେ । ଏହି ଦୃଷ୍ଟିରୁ ବର୍ତ୍ତମାନ ରହିଥିବା ଉଚ୍ଚତର ମାଧ୍ୟମିକ ବିଦ୍ୟାଳୟଗୁଡ଼ିକର ଅବସ୍ଥାର ସମୀକ୍ଷା କରାଯାଇ ଆବଶ୍ୟକ ସ୍ଥଳେ କେତେକ ଉଚ୍ଚତର ମାଧ୍ୟମିକ ବିଦ୍ୟାଳୟକୁ ଉଚ୍ଚ ମାଧ୍ୟମିକ ପାହ୍ୟାକୁ ଖସାଇ ଆଣିବା ଉଚିତ । ପ୍ରାକ୍-ବିଶ୍ୱବିଦ୍ୟାଳୟ ଶ୍ରେଣୀଗୁଡ଼ିକ ୧୯୭୫-୭୬ ମଧ୍ୟରେ ବିଶ୍ୱବିଦ୍ୟାଳୟ ଓ ସ୍ୱୀକୃତିପ୍ରାପ୍ତ ମହାବିଦ୍ୟାଳୟଗୁଡ଼ିକରୁ ବିଦ୍ୟାଳୟକୁ ସ୍ଥାନାନ୍ତରିତ ହେବା ଉଚିତ ଏବଂ ୧୯୮୫-୮୬ ମସିହା ସୁଦ୍ଧା ଏହି ପାଠ୍ୟକ୍ରମ ଦୁଇବର୍ଷକୁ ବଢ଼ାଇ ଦିଆଯିବା ଉଚିତ । ବିଶ୍ୱବିଦ୍ୟାଳୟ ମଞ୍ଜୁରୀ କମିଶନ ଏହି ଶ୍ରେଣୀ ସ୍ଥାନାନ୍ତର କରିବାର ଦାୟିତ୍ୱ ବହନ କରିବା ବିଧେୟ ।

ସ୍ନାତକ ଉପାଧି ପାଇଁ ପାଠ୍ୟକ୍ରମର ସମୟ ୩ ବର୍ଷରୁ କମ୍ ହେବା ଉଚିତ ନୁହେଁ । ସ୍ନାତକୋତ୍ତର ଉପାଧି ପାଇଁ ପାଠ୍ୟକ୍ରମ ୨ରୁ ୩ ବର୍ଷ ପାଇଁ ହୋଇପାରେ ।

ବାର୍ଷିକ କାର୍ଯ୍ୟ ଦିବସ ବିଦ୍ୟାଳୟଗୁଡ଼ିକ ପାଇଁ ୩୯ ସପ୍ତାହ ଏବଂ ମହାବିଦ୍ୟାଳୟ ଓ ପ୍ରାକ୍-ପ୍ରାଥମିକ ବିଦ୍ୟାଳୟ (Per-Primary Schools) ଗୁଡ଼ିକ ପାଇଁ ୩୬ ସପ୍ତାହକୁ ବଢ଼ାଇ ଦିଆଯିବା ଉଚିତ । ଦୀର୍ଘ ଅବକାଶଗୁଡ଼ିକ ସାମାଜିକ ସେବା ଶିବିର, ଉତ୍ପାଦନ ଅଭିଜ୍ଞତା, ସାକ୍ଷର ଆନ୍ଦୋଳନ ପ୍ରଭୃତିରେ ସମ୍ପୂର୍ଣ୍ଣ ବିନିଯୋଗ କରାଯିବା ଉଚିତ ।

ଶିକ୍ଷାର ପ୍ରତ୍ୟେକ ସ୍ତରର ମାନ କ୍ରମାଗତ ବୃଦ୍ଧି କରିବା ପାଇଁ ସବିଶେଷ ଉଦ୍ୟମ ଆବଶ୍ୟକ । ଶିକ୍ଷାର ମାନ ବୃଦ୍ଧି ପାଇଁ ବିଭିନ୍ନ ସ୍ତର ମଧ୍ୟରେ ସମନ୍ୱୟ ସ୍ଥାପିତ ହେବା ଉଚିତ, ତାହାହେଲେ ଶିକ୍ଷାନୁଷ୍ଠାନଗୁଡ଼ିକ ବର୍ତ୍ତମାନ ଯେପରି ପୃଥକ୍ ପୃଥକ୍ ଭାବରେ କାମ କରୁଛି ତାହାର ପରିସମାପ୍ତି ଘଟିବ । ଏଥିପାଇଁ ବିଶ୍ୱବିଦ୍ୟାଳୟ ଓ ମହାବିଦ୍ୟାଳୟ-ଗୁଡ଼ିକ ବିଭିନ୍ନ କାର୍ଯ୍ୟକ୍ରମ ମାଧ୍ୟମରେ ମାଧ୍ୟମିକ ବିଦ୍ୟାଳୟଗୁଡ଼ିକର ଦକ୍ଷତା ବଢ଼ାଇବାରେ ସାହାଯ୍ୟ କରିବା ଉଚିତ । ସେହିପରି ଗୋଟିଏ ଗୋଟିଏ ମାଧ୍ୟମିକ ବିଦ୍ୟାଳୟ ଓ ତାର ପାଖାପାଖି ରହିଥିବା ସମସ୍ତ ଉଚ୍ଚ ପ୍ରାଥମିକ ବିଦ୍ୟାଳୟ ମିଶି ଗୋଟିଏ ଗୋଟିଏ ସହଯୋଗୀ ଦଳରୂପେ ଉନ୍ନତି ପଥରେ ଅଗ୍ରସର ହେବା ଉଚିତ ।

# ଶିକ୍ଷକମାନଙ୍କର ପଦମର୍ଯ୍ୟାଦା

ଶିକ୍ଷକମାନଙ୍କର ଅର୍ଥନୈତିକ, ସାମାଜିକ ତଥା ବୃତ୍ତିଗତ ମର୍ଯ୍ୟାଦା ବଢ଼ାଇବା ପାଇଁ ନିରବଚ୍ଛିନ୍ନ ଓ ପ୍ରଗାଢ଼ ଉଦ୍ୟମ ଆବଶ୍ୟକ । ଏଥି ସଙ୍ଗେ ସଙ୍ଗେ ପ୍ରତିଭାମାନ ଯୁବକମାନଙ୍କୁ ଏହି ବୃତ୍ତି ଅବଲମ୍ବନ କରିବା ପାଇଁ ଉପଯୁକ୍ତ ପ୍ରେରଣା ଦିଆଯିବା ଆବଶ୍ୟକ ।

ଶିକ୍ଷକମାନଙ୍କର, ବିଶେଷତଃ ବିଦ୍ୟାଳୟରେ କାର୍ଯ୍ୟ କରୁଥିବା ଶିକ୍ଷକମାନଙ୍କର ବେତନ ବୃଦ୍ଧି ଏକ ଅତି ଜରୁରୀ ଆବଶ୍ୟକତା । ଭାରତ ସରକାର ବିଶ୍ୱବିଦ୍ୟାଳୟ ସ୍ତରର ଶିକ୍ଷକମାନଙ୍କ ପାଇଁ ସର୍ବନିମ୍ନ ବେତନ ନିର୍ଦ୍ଧାରଣ କରିଦେବା ଆବଶ୍ୟକ ଏବଂ ରାଜ୍ୟ ଓ କେନ୍ଦ୍ରଶାସିତ ଅଞ୍ଚଳଗୁଡ଼ିକ ସେହି ବେତନ ହାର ବା ତତୋଽଧିକ ବେତନ ହାର ପ୍ରଚଳନ କରିବାରେ କେନ୍ଦ୍ର ସରକାର ସାହାଯ୍ୟ କରିବା ମଧ୍ୟ ଉଚିତ ।

ଏକ ଶ୍ରେଣୀର ଶିକ୍ଷକ, ସରକାରୀ ବା ବେସରକାରୀ ଯେ କୌଣସି ବିଦ୍ୟାଳୟରେ କାର୍ଯ୍ୟ କରନ୍ତୁ ପଛକେ ସେମାନଙ୍କର ବେତନ ହାର ସମାନ ହେବା ଦରକାର ଏବଂ ଏହା ଅବିଳମ୍ବେ କାର୍ଯ୍ୟକାରୀ ହେବା ଉଚିତ । ଦରକାର ହେଲେ ଏହାକୁ ପର୍ଯ୍ୟାୟକ୍ରମେ ୫ ବର୍ଷ ମଧ୍ୟରେ ସମ୍ପୂର୍ଣ୍ଣ କାର୍ଯ୍ୟକାରୀ କରାଯିବା ବିଧେୟ ।

ମାଧ୍ୟମିକ ବିଦ୍ୟାଳୟର ସମସ୍ତ ଶିକ୍ଷକଙ୍କ ପାଇଁ ବୃତ୍ତିଗତ ତାଲିମ ବାଧ୍ୟତାମୂଳକ ହେବା ଉଚିତ । ରାଜ୍ୟ ବିଦ୍ୟାଳୟ-ଶିକ୍ଷା ପରିଷଦ ବା ରାଜ୍ୟ ଶିକ୍ଷାବିଭାଗ ଶିକ୍ଷକମାନଙ୍କ ପାଇଁ ଆବଶ୍ୟକ ଯୋଗ୍ୟତା ନିର୍ଦ୍ଧାରଣ କରିଦେବା ଉଚିତ ଓ ତତ୍ ସଙ୍ଗେ ସଙ୍ଗେ ଶିକ୍ଷକ ମନୋନୟନର ପ୍ରଣାଳୀ ମଧ୍ୟ ନିରୂପଣ କରିଦେବା ଉଚିତ । ଏହି ମନୋନୟନ ପ୍ରଣାଳୀ ସରକାରୀ ଓ ବେସରକାରୀ ସମସ୍ତ ବିଦ୍ୟାଳୟ ପ୍ରତି ପ୍ରଯୁଜ୍ୟ ହେବା ଉଚିତ ।

ଶିକ୍ଷକମାନଙ୍କର ପଦୋନ୍ନତିର ଆଶା ଉଜ୍ଜ୍ୱଳ ହେବା ଉଚିତ । ତାହାହେଲେ ପ୍ରତିଭାବାନ ବ୍ୟକ୍ତିମାନେ ଏହି କାର୍ଯ୍ୟ ପାଇଁ ଆକୃଷ୍ଟ ହେବେ ଓ ଅନ୍ୟ ଚାକିରୀ ପ୍ରତି ମନ ବଳାଇବେ ନାହିଁ ।

କେନ୍ଦ୍ର ସରକାରୀ କର୍ମଚାରୀମାନଙ୍କ ପାଇଁ ଯେଉଁ ଅବସରକାଳୀନ ସୁବିଧା ଦିଆଯାଉଅଛି, ତାହା ରାଜ୍ୟଗୁଡ଼ିକର ସରକାରୀ ଶିକ୍ଷକମାନଙ୍କ ପ୍ରତି ପ୍ରଥମେ ପ୍ରଯୁଜ୍ୟ ହେବା ଉଚିତ ଏବଂ ପରେ ପରେ ଏହି ସୁବିଧା ଘରୋଇ ସଂସ୍ଥାଦ୍ୱାରା ପରିଚାଳିତ ବିଦ୍ୟାଳୟ-ଗୁଡ଼ିକର ଶିକ୍ଷକମାନଙ୍କ ପ୍ରତି ମଧ୍ୟ ପ୍ରଯୁଜ୍ୟ ହେବା ଦରକାର । ମଧ୍ୟବର୍ତ୍ତୀକାଳୀନ ବ୍ୟବସ୍ଥା ସ୍ୱରୂପ, ସ୍ଥାନୀୟ ସଂସ୍ଥା ଓ ଘରୋଇ ସଂସ୍ଥାଦ୍ୱାରା ପରିଚାଳିତ ବିଦ୍ୟାଳୟ ତଥା ବିଶ୍ୱବିଦ୍ୟାଳୟ ଓ ମହାବିଦ୍ୟାଳୟ ଶିକ୍ଷକମାନଙ୍କ ପାଇଁ ତ୍ରିବିଧ ସୁବିଧାର ପ୍ରଚଳନ କରାଯିବା ଉଚିତ ।

ବିଦ୍ୟାଳୟ, ମହାବିଦ୍ୟାଳୟ ଓ ବିଶ୍ୱବିଦ୍ୟାଳୟ ଶିକ୍ଷକମାନଙ୍କର ସ୍ୱାଭାବିକ ଅବସର ଗ୍ରହଣ ବୟସ ୬୦ ବର୍ଷ ହେବା ବାଞ୍ଛନୀୟ । ଏହାକୁ ଆବଶ୍ୟକ ସ୍ଥଳେ ୬୫ ବର୍ଷ ପର୍ଯ୍ୟନ୍ତ ବଢ଼ାଇ ଦେବାର ବ୍ୟବସ୍ଥା ମଧ୍ୟ ରହିବା ଉଚିତ ।

ଶିକ୍ଷାନୁଷ୍ଠାନଗୁଡ଼ିକରେ କାର୍ଯ୍ୟ କରିବାର ପରିସ୍ଥିତି ଏପରି ଅନୁକୂଳ ହେବା ଉଚିତ ଯାହାଦ୍ୱାରା ଶିକ୍ଷକମାନେ ସେମାନଙ୍କର ଦକ୍ଷତାର ସର୍ବୋଚ୍ଚ ସ୍ତରରେ କାର୍ଯ୍ୟ କରିବାକୁ ସମର୍ଥ ହୋଇପାରିବେ ।

ଶିକ୍ଷାର ସବୁ ସ୍ତରରେ ଓ ସମସ୍ତ ବିଷୟରେ ଶିକ୍ଷୟିତ୍ରୀମାନଙ୍କର ନିଯୁକ୍ତିକୁ ଉତ୍ସାହିତ କରାଯିବା ଦରକାର । ସେମାନଙ୍କ ପାଇଁ ବ୍ୟାପକ ଭାବରେ ସାମୟିକ ନିଯୁକ୍ତିର ବ୍ୟବସ୍ଥା ମଧ୍ୟ କରାଯିବା ଉଚିତ ।

ଆଦିବାସୀ ଅଞ୍ଚଳରେ କାର୍ଯ୍ୟ କରୁଥିବା ଶିକ୍ଷକମାନଙ୍କୁ ସ୍ୱତନ୍ତ୍ର ଭତ୍ତା ଦିଆଯିବା ଉଚିତ । ସେମାନଙ୍କୁ ବାସଗୃହ ଯୋଗାଇ ଦିଆଯିବା ଦରକାର ଓ ସେମାନଙ୍କର ସନ୍ତାନମାନଙ୍କର ଶିକ୍ଷାଲାଗି ସାହାଯ୍ୟ ବ୍ୟବସ୍ଥା ମଧ୍ୟ କରାଯିବା ବିଧେୟ । ଆଦିବାସୀ ଅଞ୍ଚଳରେ ଯେଉଁ ଶିକ୍ଷକମାନେ କାର୍ଯ୍ୟ କରିବେ ସେମାନଙ୍କ ପାଇଁ ସ୍ୱତନ୍ତ୍ର ତାଲିମର ବ୍ୟବସ୍ଥା ମଧ୍ୟ କରାଯିବା ଉଚିତ ।

ଜାତୀୟ ପୁରସ୍କାର ପାଇଁ ଶିକ୍ଷା ମନ୍ତ୍ରଣାଳୟ ନିମ୍ନଲିଖିତ ପ୍ରସ୍ତାବଗୁଡ଼ିକର ବିଚାର କରିବା ଆବଶ୍ୟକ । ସେ ସବୁ ହେଲା—ଜାତୀୟ ପୁରସ୍କାରର ସଂଖ୍ୟା ବଢ଼ାଇ ଦିଆଯିବା ଉଚିତ, ମନୋନୟନ ପଦ୍ଧତି ଦୃଢ଼ୀଭୂତ ହେବା ଉଚିତ ଏବଂ ପୁରସ୍କାର ପାଇଁ ମନୋନୀତ ହେଉଥିବା ଶିକ୍ଷକମାନଙ୍କ ପାଇଁ ଗସ୍ତଖର୍ଚ୍ଚର ହାର ଓ ସରକାରଙ୍କର ପ୍ରଥମ ଶ୍ରେଣୀ କର୍ମଚାରୀମାନଙ୍କ ଗସ୍ତଖର୍ଚ୍ଚର ହାର ସମାନ ହେବା ଦରକାର ।

## ଶିକ୍ଷକମାନଙ୍କ ପାଇଁ ଶିକ୍ଷା ବ୍ୟବସ୍ଥା

ଶିକ୍ଷାର ଗୁଣାତ୍ମକ ଅଭିବୃଦ୍ଧିପାଇଁ ଶିକ୍ଷକମାନଙ୍କର ବୃତ୍ତିଗତ ପ୍ରସ୍ତୁତି ଏକ ଅତି ଗୁରୁତ୍ୱପୂର୍ଣ୍ଣ ବିଷୟ । ଏଥିପାଇଁ ଉଭୟ ରାଜ୍ୟ ଓ ଜାତୀୟ ସ୍ତରରେ ଯଥେଷ୍ଟ ଅର୍ଥ ବ୍ୟବସ୍ଥା କରାଯିବା ଆବଶ୍ୟକ ।

ପାଠ୍ୟକ୍ରମରେ ଅନ୍ୟ ଯେ କୌଣସି ବିଷୟ ଭଳି ଶିକ୍ଷାକୁ ଏକ ସ୍ୱତନ୍ତ୍ର ବିଷୟରୂପେ ସ୍ଥାନ ଦିଆଯିବା ଦରକାର ଏବଂ ସ୍ନାତକ ଓ ସ୍ନାତକୋତ୍ତର ଉପାଧି ସ୍ତରରେ ଏହାକୁ ଏକ ଇଚ୍ଛାଧୀନ ବିଷୟରୂପେ ରଖାଯିବା ଉଚିତ ।

ମାଧ୍ୟମିକ ଶିକ୍ଷା ଶେଷ କରିଥିବା ପ୍ରାଥମିକ ଶିକ୍ଷକଙ୍କ ପାଇଁ ଦୁଇବର୍ଷିଆ ପ୍ରଶିକ୍ଷଣ ପାଠ୍ୟକ୍ରମ ଓ ସ୍ନାତକମାନଙ୍କ ପାଇଁ ଏକବର୍ଷିଆ ପାଠ୍ୟକ୍ରମ ପ୍ରଚଳନ କରାଯିବା ବିଧେୟ । ଶେଷୋକ୍ତ ପାଠ୍ୟକ୍ରମରେ କାର୍ଯ୍ୟ ଦିବସର ସଂଖ୍ୟା ୨୩୦କୁ ବୃଦ୍ଧି ପାଇବା ଉଚିତ ।

ଶିକ୍ଷକ ପ୍ରଶିକ୍ଷଣ ଅନୁଷ୍ଠାନଗୁଡ଼ିକର ଉନ୍ନତି ପାଇଁ ଦ୍ରୁତ ପଦକ୍ଷେପ ନିଆଯିବା ଦରକାର ।

ଏବେ ଶିକ୍ଷକମାନଙ୍କ ପାଇଁ ଉଦ୍ଦିଷ୍ଟ ପାଠ୍ୟକ୍ରମ ଯେପରି ଭାବରେ ବିଦ୍ୟାଳୟଠାରୁ ବିଚ୍ଛିନ୍ନ ହୋଇ ରହିଅଛି, ତାହା ଦୂରୀଭୂତ ହେବା ବାଞ୍ଛନୀୟ । ସମ୍ପ୍ରସାରଣ କାର୍ଯ୍ୟକ୍ରମ ଶିକ୍ଷକ-ପ୍ରଶିକ୍ଷଣ ଅନୁଷ୍ଠାନଗୁଡ଼ିକର ଏକ ଅତ୍ୟାବଶ୍ୟକ କାର୍ଯ୍ୟରୂପେ ବିବେଚିତ ହେବା ଉଚିତ । ପ୍ରାକ୍-ପ୍ରାଥମିକ, ପ୍ରାଥମିକ ଓ ମାଧ୍ୟମିକ ଶିକ୍ଷକମାନଙ୍କୁ ତାଲିମ ଦେଉଥିବା ପ୍ରତ୍ୟେକ ଅନୁଷ୍ଠାନରେ ସମ୍ପ୍ରସାରଣ ସେବା ବିଭାଗ (Extension Services Department) ଏକ ଅପରିହାର୍ଯ୍ୟ ଅଂଶରୂପେ ପ୍ରତିଷ୍ଠିତ ହେବା ଆବଶ୍ୟକ ।

ପୁରାତନ ଛାତ୍ରମାନେ ଶିକ୍ଷକମାନଙ୍କ ସହ ମିଶି ଯେପରି ବିଭିନ୍ନ ପାଠ୍ୟକ୍ରମ ଓ କାର୍ଯ୍ୟକ୍ରମ ସମ୍ବନ୍ଧରେ ଆଲୋଚନା କରିପାରିବେ ଓ ଯୋଜନା ପ୍ରସ୍ତୁତ କରିପାରିବେ, ସେଥିପାଇଁ ପ୍ରଶିକ୍ଷଣ ଅନୁଷ୍ଠାନଗୁଡ଼ିକରେ କାର୍ଯ୍ୟକ୍ଷମ ପୁରାତନ ଛାତ୍ରସଂଘ ପ୍ରତିଷ୍ଠିତ ହେବା ଦରକାର ।

କେତେକ ମନୋନୀତ ବିଦ୍ୟାଳୟର ସକ୍ରିୟ ସହଯୋଗରେ ତାଲିମ ପାଉଥିବା ଶିକ୍ଷକମାନଙ୍କପାଇଁ ଶିକ୍ଷାଦାନ ଅଭ୍ୟାସ ( Practice-teaching ) ବ୍ୟବସ୍ଥା କାର୍ଯ୍ୟକାରୀ ହେବା ଉଚିତ । ଏହି ବିଦ୍ୟାଳୟଗୁଡ଼ିକ "ସହଯୋଗୀ-ବିଦ୍ୟାଳୟ ( Co-operating Schools)" ରୂପେ ଶିକ୍ଷା ବିଭାଗର ସ୍ୱୀକୃତି ଲାଭ କରିବା ଉଚିତ । ଏହି ବିଦ୍ୟାଳୟଗୁଡ଼ିକ ବିଭିନ୍ନ ଉପକରଣ ଓ ତତ୍ତ୍ୱାବଧାନ ଲାଗି ଆର୍ଥିକ ସାହାଯ୍ୟ ପାଇବା ମଧ୍ୟ ଉଚିତ । ସହଯୋଗୀ ବିଦ୍ୟାଳୟ ଓ ପ୍ରଶିକ୍ଷଣ ଅନୁଷ୍ଠାନର ଶିକ୍ଷକମାନଙ୍କ ମଧ୍ୟରେ ସାମୟିକ ବଦଳି ବ୍ୟବସ୍ଥା ଚାଲୁ କରିବା ଦରକାର ।

ବିଭିନ୍ନ ସ୍ତରରେ ତଥା କଳା, କାରିଗରୀ (Craft) ଓ ଶାରୀରିକ ଶିକ୍ଷା ପ୍ରଭୃତି ନିର୍ଦ୍ଦିଷ୍ଟ କ୍ଷେତ୍ରରେ ଯେଉଁ ଅନୁଷ୍ଠାନଗୁଡ଼ିକ ଶିକ୍ଷକ ପ୍ରସ୍ତୁତ କରୁଅଛନ୍ତି; ସେଗୁଡ଼ିକ ଏବେ ଯେପରି ପରସ୍ପରଠାରୁ ବିଚ୍ଛିନ୍ନ -- ତାହା ଦୂର ହେବା ପାଇଁ ପ୍ରଗାଢ଼ ଉଦ୍ୟମ ଆବଶ୍ୟକ । ସମସ୍ତ ପ୍ରକାର ପ୍ରଶିକ୍ଷଣ ପାଠ୍ୟକ୍ରମ ବିଶ୍ୱବିଦ୍ୟାଳୟର ପରିସରଭୁକ୍ତ ହେବା ଲକ୍ଷ୍ୟରେ ସମସ୍ତ ପ୍ରକାର ପ୍ରଶିକ୍ଷଣ ଅନୁଷ୍ଠାନ ପର୍ଯ୍ୟାୟକ୍ରମେ ମହାବିଦ୍ୟାଳୟ ସ୍ତରକୁ ଉନ୍ନୀତ ହେବା ବିଧେୟ । ପ୍ରତ୍ୟେକ ରାଜ୍ୟରେ ବିଧିବଦ୍ଧ ପରିକଳ୍ପନା ଅନୁଯାୟୀ ବ୍ୟାପକ କାର୍ଯ୍ୟକ୍ରମର ବ୍ୟବସ୍ଥା ଥିବା ଶିକ୍ଷା-ମହାବିଦ୍ୟାଳୟମାନ ପ୍ରତିଷ୍ଠିତ ହେବା ଆବଶ୍ୟକ । ଆଉ ମଧ୍ୟ ପ୍ରତ୍ୟେକ ରାଜ୍ୟରେ "ରାଜ୍ୟ ଶିକ୍ଷକ ପାଠ୍ୟ ପରିଷଦ (State Boards of Teacher Education)" ସ୍ଥାପିତ ହେବା ଉଚିତ । ଏହି ପରିଷଦ ପ୍ରତ୍ୟେକ ସ୍ତରରେ ଶିକ୍ଷକ-ପାଠ୍ୟ ସମ୍ବନ୍ଧୀୟ ସମସ୍ତ କାର୍ଯ୍ୟକ୍ରମ ପାଇଁ ଦାୟୀ ରହିବେ ।

ଜାତୀୟ ସ୍ତରରେ "ବିଶ୍ୱବିଦ୍ୟାଳୟ ମଞ୍ଜୁରୀ କମିଶନ" ଶିକ୍ଷକମାନଙ୍କପାଇଁ ଉଦ୍ଦିଷ୍ଟ ପାଠ୍ୟକ୍ରମର ମାନ ସଂରକ୍ଷଣ ପାଇଁ ଓ ରାଜ୍ୟ ସ୍ତରରେ "ରାଜ୍ୟ ଶିକ୍ଷକ-ପାଠ୍ୟ ପରିଷଦ" ପାଠ୍ୟକ୍ରମର ମାନବୃଦ୍ଧି ପାଇଁ ଦାୟିତ୍ୱ ବହନ କରିବା ଆବଶ୍ୟକ ।

## ନାମଲେଖା ଓ ଲୋକଶକ୍ତି

ଆଗାମୀ ୨୦ ବର୍ଷ ପାଇଁ ଜାତୀୟ ସ୍ତରରେ ନାମଲେଖା ମଧ୍ୟର ଲକ୍ଷ୍ୟ ବ୍ୟାପକ ହେବା ଉଚିତ ।

ପ୍ରତ୍ୟେକ ପିଲାକୁ ୭ ବର୍ଷ ପାଇଁ ବାଧ୍ୟତାମୂଳକ ଅବୈତନିକ ଶିକ୍ଷା ଦିଆଯିବାର ବ୍ୟବସ୍ଥା କରାଯିବା ଦରକାର । ଏହି ସାଧାରଣ ଶିକ୍ଷା ଫଳପ୍ରଦ ହେବା ଆବଶ୍ୟକ । ନିମ୍ନ ମାଧ୍ୟମିକ ଶିକ୍ଷା ଯେତେ ଅଧିକ ସମ୍ପ୍ରସାରଣ କରାଯାଇପାରେ ତାହା କରାଯିବା ଉଚିତ ।

ଯେଉଁମାନେ ଉଚ୍ଚତର ମାଧ୍ୟମିକ ଓ ବିଶ୍ୱବିଦ୍ୟାଳୟ ଶିକ୍ଷା ପାଇବାକୁ ଯୋଗ୍ୟ ଓ ଇଚ୍ଛୁକ ସେହିମାନଙ୍କପାଇଁ ଏହି ଶିକ୍ଷାର ବ୍ୟବସ୍ଥା କରାଯିବା ଆବଶ୍ୟକ । ତାଲିମପ୍ରାପ୍ତ ଲୋକଶକ୍ତିର ଆବଶ୍ୟକତା ସହିତ ଏହି ଶିକ୍ଷାର ସମତା ରହିବା ଆବଶ୍ୟକ ଏବଂ ଏଥି ସଙ୍ଗେ ସଙ୍ଗେ ଶିକ୍ଷାର ଉପଯୁକ୍ତ ମାନ ରକ୍ଷା କରାଯିବା ଉଚିତ । ଏହି ଶିକ୍ଷା ପାଇବାପାଇଁ ଯେଉଁମାନଙ୍କର ଆର୍ଥିକ ଅସୁବିଧା ରହିଛି ସେମାନଙ୍କୁ ଯଥେଷ୍ଟ ଆର୍ଥିକ ସାହାଯ୍ୟ ଦିଆଯିବାର ବ୍ୟବସ୍ଥା କରାଯିବା ଉଚିତ ।

ବୃତ୍ତିଗତ, ଧନ୍ଦାଗତ ଓ ବୈଷୟିକ ଶିକ୍ଷା ଉପରେ ଗୁରୁତ୍ୱ ଆରୋପ କରାଯାଇ କୃଷି ଓ ଶିଳ୍ପର ଉନ୍ନତିକଳ୍ପେ ଆବଶ୍ୟକାନୁସାରେ ସୁଦକ୍ଷ ତାଲିମପ୍ରାପ୍ତ ବ୍ୟକ୍ତିମାନଙ୍କୁ ପ୍ରସ୍ତୁତ କରାଯିବା ଦରକାର ।

ପ୍ରତିଭାବାନ ବ୍ୟକ୍ତିମାନଙ୍କୁ ଚିହ୍ନି ସେମାନଙ୍କର ଧୀଶକ୍ତିର ପୂର୍ଣ୍ଣ ବିକାଶ କରାଯିବା ଉଚିତ । ନିରକ୍ଷରତା ଦୂରୀକରଣ ସଙ୍ଗେ ସଙ୍ଗେ ପୌଢ଼ଶିକ୍ଷା ଚାଲୁ ରହିବା ଉଚିତ । ସମସ୍ତଙ୍କୁ ସମାନ ଶିକ୍ଷାଗତ ସୁବିଧା ଦେବାର ଚେଷ୍ଟା ଅବ୍ୟାହତ ରହିବା ଆବଶ୍ୟକ ।

ଆମ୍ଭେମାନେ ଏଣିକି ପ୍ରତ୍ୟେକ ସ୍ନାତକକୁ ତାହାର ଉପାଧି ସହ ଏକ ନିଯୁକ୍ତିପତ୍ର ଦେବାପାଇଁ ଚେଷ୍ଟା କରିବା ଦରକାର । ଏହି ଦୃଷ୍ଟିରୁ ଡାକ୍ତରୀ ସ୍ନାତକମାନଙ୍କ ଲାଗି ଯେପରି ଏକ ବର୍ଷ ପାଇଁ ଶିକ୍ଷାନବିଶ କାର୍ଯ୍ୟକ୍ରମର ବ୍ୟବସ୍ଥା ଅଛି ସେହି ପ୍ରଥା ଅନ୍ୟାନ୍ୟ ସ୍ନାତକମାନଙ୍କ ପାଇଁ ସମ୍ପ୍ରସାରିତ ହେବା ଉଚିତ ।

ଜନ-ସମ୍ପଦର ଉନ୍ନୟନ ଏକ ବ୍ୟାପକ କାର୍ଯ୍ୟକ୍ରମ ମାଧ୍ୟମରେ ସମ୍ଭବ ହୋଇପାରିବ । ଏକ ପୂର୍ଣ୍ଣ ଯୋଜନା କରାଯାଇପାରେ ଯାହାର ତିନିଗୋଟି ଲକ୍ଷ୍ୟ ରହିବା ଆବଶ୍ୟକ । ସେ ସବୁ ହେଲା (୧) ଜନ୍ମହାର ଅଧିକୁ କମାଇ ଦେବା (୨) କର୍ମ ସଂସ୍ଥାର ସମ୍ପ୍ରସାରଣ କରିବା ଏବଂ (୩) ଯୁବକମାନଙ୍କୁ ନିର୍ଦ୍ଦିଷ୍ଟ କାର୍ଯ୍ୟପାଇଁ ଶିକ୍ଷାଦେବା । ଏହିପରି ଏକ ସମ୍ପୂର୍ଣ୍ଣ ଯୋଜନା ଜାତୀୟ, ରାଜ୍ୟ ଓ ଜିଲ୍ଲା ସ୍ତରରେ କରିବା ଆବଶ୍ୟକ ହେଉଅଛି ।

# ଶିକ୍ଷାଗତ ସୁଯୋଗର ସମୀକରଣ

ଦେଶରେ ପ୍ରଚଳିତ ସମସ୍ତ ପ୍ରକାର ଶିକ୍ଷା ଅବୈତନିକ କରିବାକୁ ଚେଷ୍ଟା ହେବା ଆବଶ୍ୟକ । ଏପରିକି ଆଗାମୀ ଦଶବର୍ଷ ମଧ୍ୟରେ ଉଚ୍ଚତର ମାଧ୍ୟମିକ ଓ ବିଶ୍ୱବିଦ୍ୟାଳୟ ସ୍ତରରେ ପ୍ରତ୍ୟେକ ଗରିବ ଓ ଯୋଗ୍ୟ ଛାତ୍ରଙ୍କ ପାଇଁ ଅବୈତନିକ ଶିକ୍ଷାର ବ୍ୟବସ୍ଥା କରାଯିବା ଉଚିତ । ଏ ଦିଗରେ ପ୍ରଥମ ପଦକ୍ଷେପ ସ୍ୱରୂପ ବେତନ ଛାଡ଼ କରାଯାଉଥିବା ଛାତ୍ରଙ୍କ ସଂଖ୍ୟା ଶତକଡ଼ା ୩୦କୁ ବଢ଼ାଇ ଦିଆଯିବା ଉଚିତ ।

ପ୍ରାଥମିକ ଶିକ୍ଷା ପାଉଥିବା ପିଲମାନଙ୍କୁ ମାଗଣାରେ ବହି ଓ ଖାତାପତ୍ର ଯୋଗାଇ ଦିଆଯିବା ଉଚିତ । ନୂତନ ଛାତ୍ରଛାତ୍ରୀମାନଙ୍କୁ ବିଦ୍ୟାଳୟର ଏକ ଉତ୍ସବରେ ସ୍ୱାଗତ କରାଯାଇ ଆବଶ୍ୟକ ବହିଗୁଡ଼ିକ ଉପହାରରୂପେ ଦିଆଯିବା ଉଚିତ । ଅନ୍ୟମାନଙ୍କୁ ଶ୍ରେଣୀରୁ ଉତ୍ତୀର୍ଣ୍ଣ ହେବା ପରେ ପରେ ପରବର୍ଷ ପାଇଁ ଆବଶ୍ୟକ ବହିଗୁଡ଼ିକ ଯୋଗାଇ ଦିଆଯିବା ଦରକାର । ତାହେଲେ ସେମାନେ ଦୀର୍ଘ ଅବକାଶର ଉପଯୋଗ କରିପାରିବେ ।

ବିଦ୍ୟାଳୟ ଓ ଉଚ୍ଚ ଶିକ୍ଷାନୁଷ୍ଠାନଗୁଡ଼ିକରେ ବହି ବ୍ୟାଙ୍କର ବ୍ୟବସ୍ଥା ହେବା ଉଚିତ । ରାଜ୍ୟ ଶିକ୍ଷା ବିଭାଗ ଅଧୀନରେ ଏକ ପାଣ୍ଠି ରହିବା ଦରକାର ଯେଉଁଥିରୁ ସେମାନେ ମାଧ୍ୟମିକ ବିଦ୍ୟାଳୟରେ ଏହି ବହି ବ୍ୟାଙ୍କ ପ୍ରତିଷ୍ଠା କାର୍ଯ୍ୟକୁ ଉତ୍ସାହିତ କରି-ପାରିବେ । ବିଶ୍ୱବିଦ୍ୟାଳୟ ଓ ମହାବିଦ୍ୟାଳୟଗୁଡ଼ିକପାଇଁ ବିଶ୍ୱବିଦ୍ୟାଳୟ ମଞ୍ଜୁରି କମିଶନଙ୍କ ଅଧୀନରେ ଏକ ପାଣ୍ଠିର ବ୍ୟବସ୍ଥା କରାଯିବା ଉଚିତ ।

ଛାତ୍ରବୃତ୍ତି ଯୋଜନା ଏକ ନିରବଚ୍ଛିନ୍ନ ବ୍ୟବସ୍ଥାରୂପେ ଶିକ୍ଷାର ପ୍ରତ୍ୟେକ ସ୍ତରରେ ସଗଠିତ ହେବା ଆବଶ୍ୟକ । ଜାତୀୟ ଛାତ୍ରବୃତ୍ତି ବ୍ୟବସ୍ଥା ସମ୍ପ୍ରସାରିତ ହେବା ଆବଶ୍ୟକ । କୃତକାର୍ଯ୍ୟ ହୋଇଥିବା ଛାତ୍ରଛାତ୍ରୀମାନଙ୍କ ମଧ୍ୟରେ ଶୀର୍ଷସ୍ଥାନ ଅଧିକାର କରିଥିବା ଶତକଡ଼ା ୫ ଭାଗ ଛାତ୍ରଛାତ୍ରୀଙ୍କୁ ୧୯୭୫—୭୬ ମସିହା ସୁଦ୍ଧା ଜାତୀୟ ଛାତ୍ରବୃତ୍ତିର ପରିସରଭୁକ୍ତ କରାଯିବା ଆବଶ୍ୟକ । ସେହିପରି ୧୯୮୫—୮୬ ମସିହା ସୁଦ୍ଧା କୃତୀ ଛାତ୍ରଛାତ୍ରୀମାନଙ୍କ ମଧ୍ୟରେ ଶୀର୍ଷସ୍ଥାନ ଅଧିକାର କରୁଥିବା ଶତକଡ଼ା ୧୦ ଭାଗ ଛାତ୍ର ଏହି ଯୋଜନାର ପରିସରଭୁକ୍ତ ହେବା ଉଚିତ ।

ଜାତୀୟ ଛାତ୍ରବୃତ୍ତିର ପରିପୂରକରୂପେ ବିଶ୍ୱବିଦ୍ୟାଳୟ ଛାତ୍ରବୃତ୍ତି ବିଶ୍ୱବିଦ୍ୟାଳୟ ମଞ୍ଜୁରି କମିଶନଙ୍କଦ୍ୱାରା ପ୍ରଚଳନ କରାଯିବା ଉଚିତ । ଉପସ୍ନାତକ ସ୍ତରରେ ଶିକ୍ଷା ପାଉଥିବା ମୋଟ ଓ ଛାତ୍ରସଂଖ୍ୟାର ଶତକଡ଼ା ୧୦ ଭାଗ ସ୍ନାତକୋତ୍ତର ଶ୍ରେଣୀରେ ଶିକ୍ଷାପାଉଥିବା ଛାତ୍ରସଂଖ୍ୟାର ଶତକଡ଼ା ୨୦ ଭାଗ ୧୯୭୬ ମସିହା ସୁଦ୍ଧା ଏହି ଯୋଜନାର ପରିସରଭୁକ୍ତ ହେବା ବାଞ୍ଛନୀୟ ।

ବିଶେଷ ପ୍ରତିଭାବାନ ଛାତ୍ରଛାତ୍ରୀମାନଙ୍କ ପାଇଁ ବିଦେଶରେ ଅଧ୍ୟୟନ କରିବାକୁ ଏକ ଜାତୀୟ ଯୋଜନା ପ୍ରସ୍ତୁତ କରାଯିବା ଦରକାର । ଏହି ଯୋଜନା ଅନୁଯାୟୀ ପ୍ରତ୍ୟେକ ବର୍ଷ ୫୦୦ ଛାତ୍ରବୃତ୍ତି ଦିଆଯିବା ଉଚିତ ।

ଉପର୍ଯ୍ୟୁକ୍ତ ବୃତ୍ତିଗୁଡ଼ିକର ପରିପୂରକରୂପେ ଛାତ୍ରମାନଙ୍କ ପାଇଁ ଋଣବୃତ୍ତିର ବ୍ୟବସ୍ଥା ମଧ୍ୟ କରାଯିବା ଦରକାର । ପ୍ରତ୍ୟେକ ପ୍ରକାର ଛାତ୍ରବୃତ୍ତି ବ୍ୟବସ୍ଥାରେ ଛାତ୍ରୀମାନଙ୍କର ଆବଶ୍ୟକତା ପ୍ରତି ଅଗ୍ରାଧିକାର ଦିଆଯିବା ଉଚିତ ।

ଆଗାମୀ କେତେବର୍ଷ ପାଇଁ ଶିକ୍ଷାକ୍ଷେତ୍ରରେ ନାରୀଶିକ୍ଷା କାର୍ଯ୍ୟକ୍ରମ ଏକ ପ୍ରଧାନ କାର୍ଯ୍ୟକ୍ରମରୂପେ ବିବେଚିତ ହେବା ଉଚିତ । ଏହା କାର୍ଯ୍ୟକାରୀ କରିବାକୁ ଯେଉଁ ଅସୁବିଧା ଗୁଡ଼ିକର ସମ୍ମୁଖୀନ ହେବାକୁ ରହିଛି ସେ ସବୁର ଦୂରୀକରଣ ପାଇଁ ଦୃଢ଼ ପଦକ୍ଷେପ ନିଆଯିବା ଦରକାର । ତାହାହେଲେ ପୁରୁଷ ଓ ସ୍ତ୍ରୀମାନଙ୍କ ମଧ୍ୟରେ ରହିଥିବା ଶିକ୍ଷାଗତ ପାର୍ଥକ୍ୟ ଶୀଘ୍ର ଦୂରୀଭୂତ ହୋଇପାରିବ ।

ଶିକ୍ଷାକ୍ଷେତ୍ରରେ ତଫସିଲଭୁକ୍ତ ଜାତିଙ୍କ ପାଇଁ ବର୍ତ୍ତମାନ ଦିଆଯାଉଥିବା ସୁବିଧା ସୁଯୋଗ ସ୍ଥିର ରହିବା ଉଚିତ ଏବଂ ତାହାର ମଧ୍ୟ ସମ୍ପ୍ରସାରଣ କରାଯାଇପାରେ ।

ଆଦିବାସୀମାନଙ୍କ ପାଇଁ ପ୍ରାଥମିକ ସ୍ତରରେ ଦିଆଯାଉଥିବା ସୁବିଧା ସୁଯୋଗର ଉନ୍ନତ ହେବା ବାଞ୍ଛନୀୟ ଏବଂ ଜନବିରଳ ଅଞ୍ଚଳରେ ଆଶ୍ରମ ବିଦ୍ୟାଳୟମାନ ସ୍ଥାପିତ ହେବା ଉଚିତ । ଶିକ୍ଷକମାନେ ଆଦିବାସୀ ଭାଷା ଜାଣିବା ଆବଶ୍ୟକ । ପ୍ରଥମ ଦୁଇବର୍ଷ ଆଦିବାସୀ ଭାଷା ମାଧ୍ୟମରେ ଶିକ୍ଷା ଦିଆଯିବା ସଙ୍ଗେ ସଙ୍ଗେ ଅଞ୍ଚଳର ଭାଷାରେ ମୌଖିକ ଉପଦେଶ ଦିଆଯିବା ଉଚିତ । ତୃତୀୟ ବର୍ଷ ଆଞ୍ଚଳିକ ଭାଷାହିଁ ଶିକ୍ଷାର ମାଧ୍ୟମ କରାଯିବା ଉଚିତ ।

ଆଦିବାସୀମାନଙ୍କ ପାଇଁ ମାଧ୍ୟମିକ ସ୍ତରରେ ବିଦ୍ୟାଳୟର ବ୍ୟବସ୍ଥା କରିବା ସଙ୍ଗେ ସଙ୍ଗେ ଛାତ୍ରାବାସ ସୁବିଧା ଓ ଛାତ୍ରବୃତ୍ତି ସଂଖ୍ୟା ଯଥେଷ୍ଟ ବଢ଼ାଇ ଦିଆଯିବା ଉଚିତ ।

## ବିଦ୍ୟାଳୟ ପାଠ୍ୟକ୍ରମ

ଅଳ୍ପ କେତେବର୍ଷ ହେଲା ଜ୍ଞାନର ବିସ୍ଫୋରଣ ତଥା ନାନା ନୂତନ ବୈଜ୍ଞାନିକ ତଥ୍ୟର ଉଦ୍ଭାବନ ଫଳରେ ଆମ୍ଭେମାନେ ବିଦ୍ୟାଳୟର ପ୍ରଚଳିତ ପାଠ୍ୟକ୍ରମର ସ୍ୱଳ୍ପତା ସମ୍ବନ୍ଧରେ ସଚେତନ ହେଉଅଛୁ । ସବୁ ଦିଗରୁ ଏହି ବିଦ୍ୟାଳୟ ପାଠ୍ୟକ୍ରମର ଆମୂଳ ସଂସ୍କାର ପାଇଁ ପ୍ରବଳ ଚାପ ପଡ଼ୁଅଛି ।

ଉଚ୍ଚକୋଟୀର ବିଦ୍ୟାଳୟ ପାଠ୍ୟକ୍ରମ ପ୍ରବର୍ତ୍ତନ କରିବା ପାଇଁ ଯେଉଁସବୁ ପଦକ୍ଷେପ ନିଆଯିବା ଉଚିତ ସେ ସବୁ ହେଲା—(କ) ପାଠ୍ୟକ୍ରମର ବିକାଶପାଇଁ ଗବେଷଣା—ଯାହା

ବିଶ୍ୱବିଦ୍ୟାଳୟଗୁଡ଼ିକର ଶିକ୍ଷାବିଭାଗ, ପ୍ରଶିକ୍ଷଣ ମହାବିଦ୍ୟାଳୟ, ରାଜ୍ୟ ପ୍ରତିଷ୍ଠାନ ଓ ମାଧ୍ୟମିକ ଶିକ୍ଷାପରିଷଦ୍‌ଗୁଡ଼ିକଦ୍ୱାରା କରାଯାଇପାରେ (ଖ) ଗବେଷଣାର ଫଳାଫଳ ଅନୁଯାୟୀ ସମୟେ ସମୟେ ପାଠ୍ୟକ୍ରମର ପରିବର୍ତ୍ତନ (ଗ) ପାଠ୍ୟପୁସ୍ତକ ଏବଂ ଶିକ୍ଷାଦାନ ଓ ଗ୍ରହଣ (teaching-learning) ସମ୍ବନ୍ଧୀୟ ଉପକରଣଗୁଡ଼ିକର ପ୍ରସ୍ତୁତିକରଣ ଏବଂ (ଘ) ପରିବର୍ତ୍ତିତ ପାଠ୍ୟକ୍ରମ ବିଷୟରେ ଶିକ୍ଷକମାନଙ୍କର ପୁନଃ-ପ୍ରଶିକ୍ଷଣ ।

ନିଜର ଆବଶ୍ୟକତା ଅନୁସାରେ ନୂତନ ପାଠ୍ୟକ୍ରମର ଉଦ୍ଭାବନ ଓ ପରୀକ୍ଷା ଲାଗି ବିଦ୍ୟାଳୟଗୁଡ଼ିକୁ ସ୍ୱାଧୀନତା ଦିଆଯିବା ଉଚିତ । ପ୍ରଶିକ୍ଷଣ ମହାବିଦ୍ୟାଳୟ ଓ ବିଶ୍ୱ-ବିଦ୍ୟାଳୟଗୁଡ଼ିକ ନିଜ ନିଜ ଅଧୀନରେ ଥିବା ପରୀକ୍ଷାମୂଳକ ବିଦ୍ୟାଳୟ (experimental school) ଜରିଆରେ ଏ ଦିଗରେ ପଥପ୍ରଦର୍ଶନ କରିବା ଆବଶ୍ୟକ ।

ବିଦ୍ୟାଳୟ ସ୍ତରରେ ଭାଷା ଅଧ୍ୟୟନ ସକାଶରେ ପୁନର୍ବିଚାର କରିବା ଆବଶ୍ୟକ ଏବଂ ଭାଷା ଅଧ୍ୟୟନ ସମ୍ପର୍କରେ ଏକ ନୂଆ ନୀତି ଅନୁସୃତ ହେବା ଉଚିତ । ଭାଷା ସୂତ୍ରରେ ଯେଉଁ ପରିବର୍ତ୍ତନ ହେବ ତାହା ନିମ୍ନଲିଖିତ ନୀତିଗୁଡ଼ିକ ଉପରେ ପ୍ରତିଷ୍ଠିତ ହେବା ବାଞ୍ଛନୀୟ ।

(କ) ରାଷ୍ଟ୍ରର ସରକାରୀ ଭାଷା ହିନ୍ଦୀ ହୋଇଥିବାରୁ ମାତୃଭାଷା ପରେ ହିନ୍ଦୀ ହିଁ ପ୍ରାଧାନ୍ୟଲାଭ କରିବାର ସୁଯୋଗ ପାଉଅଛି ।

(ଖ) ଇଂରାଜୀରେ ବ୍ୟାବହାରିକ ଜ୍ଞାନ ଛାତ୍ରମାନଙ୍କର ଏକ ଅମୂଲ୍ୟ ସମ୍ପଦ ହୋଇ ଦୀର୍ଘକାଳ ପର୍ଯ୍ୟନ୍ତ ରହିବ ।

(ଗ) ଶିକ୍ଷକମାନଙ୍କ ଉପରେ ଓ ମିଳୁଥିବା ସୁବିଧା ସୁଯୋଗ ଉପରେ ଭାଷାରେ ବ୍ୟୁତ୍ପତ୍ତି ଲାଭ କରିବା ଯେତିକି ନିର୍ଭର କରେ ସେତିକି ନିର୍ଭର କରେ ଭାଷାଟି ଶିକ୍ଷା କରିବାକୁ ଲାଗୁଥିବା ସମୟ ଉପରେ ।

(ଘ) ତିନୋଟି ଭାଷା ଶିକ୍ଷା କରିବା ପାଇଁ ନିମ୍ନମାଧ୍ୟମିକ ସ୍ତର (୮ମରୁ ୧୦ମ ଶ୍ରେଣୀ) ହିଁ ସର୍ବୋତ୍କୃଷ୍ଟ ।

(ଙ) ସର୍ବାଧିକ ଆବଶ୍ୟକତା ଓ ଅଭିପ୍ରାୟ ଥିବା ସମୟରେ ହିଁ ଇଂରାଜୀ ଓ ହିନ୍ଦୀର ପ୍ରଚଳନ କରାଯିବା ଉଚିତ ।

(ଚ) କୌଣସି ସ୍ତରରେ ହିଁ ଚାରିଗୋଟି ଭାଷାର ଶିକ୍ଷା ବାଧ୍ୟତାମୂଳକ ହେବା ଉଚିତ ନୁହେଁ ।

ତେଣୁ ଏହି ନୀତି ଉପରେ ରୂପାୟିତ ତ୍ରିଭାଷୀ ସୂତ୍ରରେ ସ୍ଥାନ ପାଇବ (କ) ମାତୃ-ଭାଷା ବା ଆଞ୍ଚଳିକ ଭାଷା (ଖ) ରାଷ୍ଟ୍ରର ସରକାରୀ ଭାଷା ବା ସହଯୋଗୀ ସରକାରୀ ଭାଷା ଓ

(ଗ) ଗୋଟିଏ ଆଧୁନିକ ଭାରତୀୟ ବା ଇଉରୋପୀୟ ଭାଷା; କିନ୍ତୁ ଏହା 'କ' ଓ 'ଖ'ର ପରିପୂରକ ହୋଇ ନ ଥିବ କିମ୍ବା ଶିକ୍ଷାର ମାଧ୍ୟମ ହୋଇ ନ ଥିବ ।

ବିଦ୍ୟାଳୟ ଶିକ୍ଷାର ପ୍ରଥମ ୧୦ ବର୍ଷ ପାଇଁ ଗଣିତ ଓ ବିଜ୍ଞାନ ବାଧ୍ୟତାମୂଳକ ବିଷୟ ରୂପେ ରହିବା ଉଚିତ । ଉତ୍ତମ ନାଗରିକତା ଓ ଆବେଗିକ ସଂହତି (emotional integration) ପାଇଁ ସାମାଜିକ ପାଠର ଏକ ଫଳପ୍ରଦ କାର୍ଯ୍ୟକ୍ରମ ଅତ୍ୟାବଶ୍ୟକ ।

ନୂତନ ସାମାଜିକ ଧାରାର ରୂପରେଖ ଆଖି ଆଗରେ ରଖି କର୍ମାଭିଜ୍ଞତା (work-experience)ର ବ୍ୟବସ୍ଥା କରାଯିବା ଉଚିତ । ନିମ୍ନପ୍ରାଥମିକ ସ୍ତରରେ ଏହାକୁ ସରଳ ହସ୍ତକର୍ମରୂପେ ଓ ଉଚ୍ଚପ୍ରାଥମିକ ସ୍ତରରେ ଏହାକୁ କାରିଗରୀ ବିଦ୍ୟା (craft) ରୂପେ ରଖାଯାଇପାରେ । ନିମ୍ନମାଧ୍ୟମିକ ସ୍ତରରେ ଏଥିପାଇଁ କର୍ମଶାଳାରେ ତାଲିମ ବ୍ୟବସ୍ଥା ରଖାଯାଇପାରେ । ଉଚ୍ଚମାଧ୍ୟମିକ ସ୍ତରରେ କର୍ମଶାଳା, କୃଷିକ୍ଷେତ୍ର ବା ଶିଳ୍ପ ଓ ବାଣିଜ୍ୟ ପ୍ରତିଷ୍ଠାନରେ କର୍ମାଭିଜ୍ଞତା ବ୍ୟବସ୍ଥା କରାଯିବା ଉଚିତ ।

ନୈତିକ ଶିକ୍ଷା ଦେବାପାଇଁ ଓ ଆଧ୍ୟାତ୍ମିକ ମୂଲ୍ୟବୋଧକୁ ଦୃଢ଼ୀଭୂତ କରିବା ପାଇଁ ବିଦ୍ୟାଳୟଗୁଡ଼ିକରେ ସୁସଂଗଠିତ ଉଦ୍ୟମ ଆବଶ୍ୟକ । ଏହା ବିଭିନ୍ନ ଧର୍ମର ନୀତିଦ୍ୱାରା ପ୍ରତ୍ୟକ୍ଷରେ ବା ପରୋକ୍ଷରେ କରାଯାଇପାରେ ।

ବାଳକ ଏବଂ ବାଳିକାମାନଙ୍କ ପାଇଁ ଉଦ୍ଦିଷ୍ଟ ପାଠ୍ୟକ୍ରମରେ କୌଣସି ପାର୍ଥକ୍ୟ ରହିବା ଉଚିତ ନୁହେଁ । ହଂସ ମେହେଟା କମିଟିର ଏହି ସୁପାରିଶ ସହ କମିଶନ ଏକମତ । ଗୃହବିଜ୍ଞାନ ବାଳିକାମାନଙ୍କପାଇଁ ବାଧ୍ୟତାମୂଳକ ନ ହୋଇ ଏକ ଇଚ୍ଛାଧୀନ ବିଷୟରୂପେ ରହିବା ଉଚିତ । ସଙ୍ଗୀତ ଓ ନୃତ୍ୟକଳା ପାଇଁ ଅଧିକ ବ୍ୟବସ୍ଥା କରାଯିବା ଆବଶ୍ୟକ ଏବଂ ଗଣିତ ଓ ବିଜ୍ଞାନର ଅଧ୍ୟୟନ ଉତ୍ସାହିତ ହେବା ଦରକାର ।

## ଶିକ୍ଷାଦାନ ପ୍ରଣାଳୀ, ଉପଦେଶନ ଓ ମୂଲ୍ୟାୟନ

ଉତ୍ତମ ଶିକ୍ଷା ପଦ୍ଧତି ସକ୍ରିୟ ଓ ପ୍ରସାରଣକ୍ଷମ ହେବା ବାଞ୍ଛନୀୟ । ଭେଷ୍ଟ-ବିଦ୍ୟାଳୟ ଶିକ୍ଷାପାଇଁ ଉଦ୍ଭାବିତ ହେଉଥିବା ନୂତନ ପଦ୍ଧତିଗୁଡ଼ିକ ବିଭିନ୍ନ ବିଦ୍ୟାଳୟକୁ ପରିବ୍ୟାପ୍ତ ହେବା ସଙ୍ଗେ ସଙ୍ଗେ ଶିକ୍ଷକମାନେ ସେହିସବୁ ପଦ୍ଧତିର ପରୀକ୍ଷା ନିରୀକ୍ଷା କରିବାକୁ ଉପଯୁକ୍ତ ସାହାଯ୍ୟ ପାଇବା ଆବଶ୍ୟକ । ଶିକ୍ଷା ପ୍ରଶାସନ କଳ ନୂତନ ଶିକ୍ଷାଦାନ ପ୍ରଣାଳୀକୁ ପରିବ୍ୟାପ୍ତ ତଥା ତ୍ୱରାନ୍ୱିତ କରିବାରେ ଉତ୍ସାହ ଦେବା ଆବଶ୍ୟକ ।

ଉପଦେଶନ ଓ ଉପବୋଧନ (Guidance and Counselling) ଶିକ୍ଷାର ଅବିଚ୍ଛେଦ୍ୟ ଅଂଶରୂପେ ପରିଗଣିତ ହେବା ବାଞ୍ଛନୀୟ । ଏହା ସମସ୍ତ ଛାତ୍ରଙ୍କ ପାଇଁ ଉଦ୍ଦିଷ୍ଟ

ହେବା ଦରକାର । ଯେ କୌଣସି ଛାତ୍ରଙ୍କୁ ବିଭିନ୍ନ ସମୟରେ ନିଷ୍ପତ୍ତିମୂଳକ ପଦକ୍ଷେପ ନେଇ ଆଗେଇବାରେ ସାହାଯ୍ୟ କରିବାହିଁ ଏହାର ମାର୍ଗ ପ୍ରଦର୍ଶନର ଲକ୍ଷ୍ୟ ।

ମୂଲ୍ୟାୟନ ଏକ ନିରବଚ୍ଛିନ୍ନ ପ୍ରକ୍ରିୟା ଏବଂ ଶିକ୍ଷାପଦ୍ଧତିର ଏକ ଅପରିହାର୍ଯ୍ୟ ଅଂଶ । ଶିକ୍ଷକଙ୍କର ଶିକ୍ଷାଦାନ ପ୍ରଣାଳୀ ଓ ଛାତ୍ରମାନଙ୍କର ଅଧ୍ୟୟନ ରୀତି ଉପରେ ଏହା ଗୁରୁତର ପ୍ରଭାବ ପକାଇଥାଏ । ତେଣୁ ଏହା କେବଳ ଶିକ୍ଷାଗତ ସଫଳତାର ପରିମାପକ ନୁହେଁ, ତାହାର ଉନ୍ନତର କାରଣ ମଧ୍ୟ ।

ନୂତନ ମୂଲ୍ୟାୟନ ପଦ୍ଧତି ଏପରି ହେବା ଉଚିତ ଯାହାଦ୍ୱାରା ଲିଖିତ ପରୀକ୍ଷା ନିର୍ଭରଯୋଗ୍ୟ ହୋଇପାରିବ ଏବଂ ଏପରି ନୂତନ କୌଶଳମାନ ପ୍ରୟୋଗ କରାଯିବା ଉଚିତ ଯାହାଦ୍ୱାରା ଛାତ୍ରର ସମବିକାଶର ଅନ୍ୟାନ୍ୟ ଦିଗଗୁଡ଼ିକ ମଧ୍ୟ ମାପି ହେବ— ଯାହା ପରୀକ୍ଷାଦ୍ୱାରା ସମ୍ଭବ ହୁଏନାହିଁ ।

ରାଜ୍ୟର ବିଦ୍ୟାଳୟ ଶିକ୍ଷା ପରିଷଦଦ୍ୱାରା ପ୍ରଦତ୍ତ ପ୍ରମାଣ ପତ୍ରରେ କେବଳ ଛାତ୍ରର ବାହ୍ୟ ପରୀକ୍ଷାର କୃତିତ୍ୱ ଲିପିବଦ୍ଧ ହେବା ଉଚିତ; ମାତ୍ର ଏଥିରେ ଛାତ୍ର କୃତକାର୍ଯ୍ୟ ବା ଅକୃତକାର୍ଯ୍ୟ ହୋଇଛି ସେପରି କୌଣସି ମନ୍ତବ୍ୟ ରହିବା ଉଚିତ ନୁହେଁ । ଯେଉଁ ଛାତ୍ର ଇଚ୍ଛା କରିବେ ସେ ସମୁଦାୟ ପରୀକ୍ଷାଟି ଆଉ ଥରେ ଦେଇପାରନ୍ତି । ଏହା ଦ୍ୱାରା ସେ ନିଜର ଶିକ୍ଷାଗତ ମାନ ଉନ୍ନତ କରିବାର ସୁଯୋଗ ପାଇପାରିବେ ।

ପ୍ରତ୍ୟେକ ଛାତ୍ର ବିଦ୍ୟାଳୟରୁ ମଧ୍ୟ ଗୋଟିଏ ପ୍ରମାଣ ପତ୍ର ପାଇବା ଉଚିତ ଯେଉଁଥିରେ ଆଭ୍ୟନ୍ତରୀଣ ପରୀକ୍ଷା ଓ ଅନ୍ୟାନ୍ୟ କାର୍ଯ୍ୟକଳାପର ଅଭିଲେଖ ଲିପିବଦ୍ଧ ହୋଇଥିବ । ଏହା ଶିକ୍ଷା ପରିଷଦ ଦ୍ୱାରା ପ୍ରଦତ୍ତ ପ୍ରମାଣ ପତ୍ର ସହ ସଂଯୁକ୍ତ ହେବା ଆବଶ୍ୟକ ।

ରାଜ୍ୟ ଶିକ୍ଷା ବିଭାଗକୁ ଶିକ୍ଷାର ମାନ ରକ୍ଷା କରିବାରେ ଓ ପରିବର୍ତ୍ତନ କରିବାରେ ସାହାଯ୍ୟ କରିବାକୁ ପ୍ରତ୍ୟେକ ରାଜ୍ୟରେ ଗୋଟିଏ ଲେଖାଏଁ ରାଜ୍ୟ ମୂଲ୍ୟାୟନ ସଂସ୍ଥା ସ୍ଥାପିତ ହେବା ଉଚିତ । ଏହା ଏକ ସ୍ୱାଧୀନ ଓ ସ୍ୱୟଂ ଶାସିତ ସଂସ୍ଥା ହେବା ଆବଶ୍ୟକ ।

ରାଜ୍ୟ ମୂଲ୍ୟାୟନ ସଂସ୍ଥା ଜିଲ୍ଲା ଶିକ୍ଷାଧିକାରୀମାନଙ୍କୁ ବିଦ୍ୟାଳୟରେ ମୂଲ୍ୟାୟନ ବ୍ୟବସ୍ଥା ଉନ୍ନତ କରାଇବାରେ ସାହାଯ୍ୟ କରିବେ । ଉପଯୁକ୍ତ ପାଠ୍ୟପୁସ୍ତକ ପ୍ରସ୍ତୁତ ପାଇଁ ଏବଂ ଶିକ୍ଷାର ଆକାଙ୍କ୍ଷିତ ମାନରକ୍ଷା ପାଇଁ ପାଠ୍ୟକ୍ରମକୁ କି ପ୍ରକାରେ ପରିବର୍ତ୍ତିତ କରାଯାଇପାରେ ସେ ସମ୍ବନ୍ଧରେ ରାଜ୍ୟ ଶିକ୍ଷା ବିଭାଗକୁ ମଧ୍ୟ ଆବଶ୍ୟକ ପରାମର୍ଶ ଦେବେ ।

## ଉଚ୍ଚ ଶିକ୍ଷାର ଲକ୍ଷ୍ୟ ଓ ଉତ୍କର୍ଷ ସାଧନ

ନୂତନ ଜ୍ଞାନର ସନ୍ଧାନ ଓ ଅନୁଶୀଳନ, ନିର୍ଭୀକ ତଥା ସକ୍ରିୟ ଭାବରେ ସତ୍ୟର ଅନ୍ୱେଷଣ ଏବଂ ନୂତନ ଜ୍ଞାନର ଆବଶ୍ୟକତା ଓ ଆବିଷ୍କାର ଦୃଷ୍ଟିରୁ ପୁରାତନ ଜ୍ଞାନ ଏବଂ

ଧାରଣାର ବ୍ୟାଖ୍ୟା ତଥା ବିଶ୍ଳେଷଣ ହେଉଛି ବିଶ୍ୱବିଦ୍ୟାଳୟ ଶିକ୍ଷାର ପ୍ରଧାନ ଉଦ୍ଦେଶ୍ୟ । ଏହା ବ୍ୟକ୍ତିଗତ ଜୀବନର ପ୍ରତ୍ୟେକ କ୍ଷେତ୍ରରେ ଉପଯୁକ୍ତ ନେତୃତ୍ୱ ଦେବା ଏବଂ ପ୍ରତିଭାବାନ୍ ଯୁବକମାନଙ୍କର ସନ୍ଧାନ କରି ସେମାନଙ୍କର ଅନ୍ତର୍ନିହିତ ଶକ୍ତିର ପୂର୍ଣ୍ଣ ପ୍ରକାଶ ପାଇଁ ଶାରୀରିକ ଦକ୍ଷତା ସଙ୍ଗେ ସଙ୍ଗେ ଉପଯୁକ୍ତ ଆଗ୍ରହ, ମନୋବୃତ୍ତି ଓ ନୈତିକ ତଥା ବୌଦ୍ଧିକ ମୂଲ୍ୟବୋଧର ଅନୁଶୀଳନ ଦ୍ୱାରା ମାନସିକ ଶକ୍ତିର ବିକାଶ କରାଇବା ମଧ୍ୟ ବିଶ୍ୱବିଦ୍ୟାଳୟ ଶିକ୍ଷାର ଲକ୍ଷ୍ୟ । କଳା, ବିଜ୍ଞାନ, କୃଷି, ଡାକ୍ତରୀ ଓ ଯାନ୍ତ୍ରିକ ବିଦ୍ୟାରେ ତାଲିମ ପାଇଥିବା ସୁଶିକ୍ଷିତ ତଥା ସମାଜ ସେବାରେ ଅନୁପ୍ରାଣିତ ଦକ୍ଷ ସ୍ତ୍ରୀ ଓ ପୁରୁଷ ଯେପରି ଯଥେଷ୍ଟ ସଂଖ୍ୟାରେ ଦେଶରେ କାର୍ଯ୍ୟ କରନ୍ତି—ତାହା ମଧ୍ୟ ବିଶ୍ୱବିଦ୍ୟାଳୟ ଶିକ୍ଷାର ଅନ୍ୟତମ ଉଦ୍ଦେଶ୍ୟ ହେବା ଉଚିତ ।

ଉପରୋକ୍ତ ଲକ୍ଷ୍ୟଗୁଡ଼ିକ ହାସଲ କରିବାକୁ ହେଲେ ଉଚ୍ଚଶିକ୍ଷାର ବିକାଶ ପାଇଁ ଏକ ସୁଚିନ୍ତିତ ଏବଂ ପୂର୍ଣ୍ଣାଙ୍ଗ ଯୋଜନା ଆଗାମୀ ୨୦ ବର୍ଷ ମଧ୍ୟରେ ପର୍ଯ୍ୟାୟକ୍ରମେ କାର୍ଯ୍ୟକାରୀ ହେବା ଆବଶ୍ୟକ । ଏହି ଯୋଜନାରେ ତିନିଗୋଟି ବିଷୟ ପ୍ରତି ଅଗ୍ରାଧିକାର ଦିଆଯିବା ଉଚିତ । ସେ ସବୁ ହେଲା—(୧) ଉଚ୍ଚଶିକ୍ଷା ଓ ଗବେଷଣାର ମାନ ଓ ଗୁଣର ଚରମ ଉନ୍ନତି (୨) ଜାତୀୟ ବିକାଶରେ ଲୋକଶକ୍ତିର ଆବଶ୍ୟକତା ଦୃଷ୍ଟିରୁ ଏବଂ ଏକ ଉଦୀୟମାନ ସମାଜରେ ଲୋକମାନଙ୍କର ଆଶା ଓ ଆକାଂକ୍ଷା ଚରିତାର୍ଥ କରିବାପାଇଁ ଉଚ୍ଚଶିକ୍ଷାର ସମ୍ପ୍ରସାରଣ ଏବଂ (୩) ବିଶ୍ୱବିଦ୍ୟାଳୟଗୁଡ଼ିକର ସାଂଗଠନିକ ଓ ପ୍ରଶାସନିକ ବ୍ୟବସ୍ଥାର ଉନ୍ନତି ।

ଉଚ୍ଚଶିକ୍ଷା କ୍ଷେତ୍ରରେ କୋଠାରୀ କମିସନ୍‌ଙ୍କ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ସୁପାରିଶ ହେଉଛି "ମୁଖ୍ୟ ବିଶ୍ୱବିଦ୍ୟାଳୟ ( Major Universities )" ଯୋଜନା । ଏଠାରେ ଉଚ୍ଚକୋଟୀର ସ୍ନାତକୋତ୍ତର କାର୍ଯ୍ୟ ଓ ଗବେଷଣା କରିବାର ସୁଯୋଗ ମିଳିବା ସଙ୍ଗେ ସଙ୍ଗେ ଏ ସବୁର ମାନ ପୃଥିବୀର ଯେ କୌଣସି ଅନୁଷ୍ଠାନ ସହ ତୁଳନୀୟ ହେବା ଉଚିତ । ବିଶ୍ୱବିଦ୍ୟାଳୟ ମଞ୍ଜୁରୀ କମିଶନ ବିଶ୍ୱବିଦ୍ୟାଳୟଗୁଡ଼ିକ ମଧ୍ୟରୁ ଅନ୍ତତଃ ୬ ଗୋଟି ବିଶ୍ୱବିଦ୍ୟାଳୟ (ଗୋଟିଏ କୃଷି ବିଶ୍ୱବିଦ୍ୟାଳୟ ଓ ଗୋଟିଏ ଭାରତୀୟ ବୈଷୟିକ ଶିକ୍ଷାନୁଷ୍ଠାନ ଏଥିରେ ଅନ୍ତର୍ଭୁକ୍ତ) 'ମୁଖ୍ୟ ବିଶ୍ୱବିଦ୍ୟାଳୟ' ରେ ପରିଣତ କରିବାପାଇଁ ଉପଯୁକ୍ତ ପଦକ୍ଷେପ ନେବା ଉଚିତ । ଏହି ଯୋଜନା ୧୯୬୬-୬୭ରୁ ଆରମ୍ଭ ହେବା ବାଞ୍ଛନୀୟ ବୋଲି କମିଶନ ରିପୋର୍ଟରେ ଉଲ୍ଲେଖ କରିଥିଲେ । ଅନ୍ୟାନ୍ୟ ବିଶ୍ୱବିଦ୍ୟାଳୟ ଓ ସ୍ୱୀକୃତିପ୍ରାପ୍ତ ମହାବିଦ୍ୟାଳୟଗୁଡ଼ିକୁ ମୁଖ୍ୟ ବିଶ୍ୱବିଦ୍ୟାଳୟ ଯୋଗ୍ୟ ଶିକ୍ଷକ ଯୋଗାଇଦେବା ଉଚିତ ।

ଶ୍ରେଣୀଗୃହ ଓ ବିଜ୍ଞାନାଗାରରେ ଯେତେ ଘଣ୍ଟା ଆନୁଷ୍ଠାନିକ କାର୍ଯ୍ୟନିର୍ଘଣ୍ଟ ହେତୁ ବ୍ୟୟିତ ହେଉଅଛି ତାହାର ପରିମାଣ କମାଇ ଦିଆଯିବା ଉଚିତ । ଏହା ଫଳରେ ମିଳୁଥିବା ସମସ୍ତ ଶିକ୍ଷକମାନଙ୍କ ତତ୍ତ୍ୱାବଧାନରେ ଛାତ୍ରମାନଙ୍କର ସ୍ୱାଧୀନ ଭାବରେ ଅଧ୍ୟୟନ (Inde-

pendent study) ଶିକ୍ଷକମାନଙ୍କ ଦ୍ୱାରା ନିର୍ଦ୍ଦିଷ୍ଟୀକୃତ ପାଠ୍ୟବସ୍ତୁମାନଙ୍କର ଅଧ୍ୟୟନ (assigned reading), ପ୍ରବନ୍ଧ ଲିଖନ, କଠିନ ପ୍ରଶ୍ନର ସମାଧାନ ଓ କ୍ଷୁଦ୍ର ଗବେଷଣାର ପରିକଳ୍ପନା ଲାଗି ଉପଯୋଗ କରାଯିବା ଉଚିତ । ଏସବୁ କରାଗଲେ ଛାତ୍ର-ସ୍ୱାଧୀନ ଭାବରେ ସେମାନଙ୍କର ଆବଶ୍ୟକ ପୁସ୍ତକାଦିର ବ୍ୟବହାର ଶିକ୍ଷା କରିପାରିବେ ।

ବିଶ୍ୱବିଦ୍ୟାଳୟ ଓ ମହାବିଦ୍ୟାଳୟଗୁଡ଼ିକରେ ଉତ୍ତମ ପୁସ୍ତକାଗାର ନିର୍ମାଣ କରିବା ପାଇଁ ସବୁ ପ୍ରକାର ଯତ୍ନ କରାଯିବା ଉଚିତ ।

ଅଧ୍ୟୟନ କରାଯାଉଥିବା ସମସ୍ତ ବିଷୟରେ ମୌଳିକ ଚିନ୍ତାଧାରା ପ୍ରତି ଗୁରୁତ୍ୱ ଆରୋପ କରାଯିବା ଉଚିତ । କେବଳ ମୁଖସ୍ଥ କରି ମନେରଖିବାକୁ ନିରୁତ୍ସାହିତ କରାଯିବା ଉଚିତ ।

ଆଞ୍ଚଳିକ ଭାଷା ବିଶ୍ୱବିଦ୍ୟାଳୟ ସ୍ତରରେ ଶିକ୍ଷାର ମାଧ୍ୟମ ହେବା ବିଧେୟ । ଏହା ପର୍ଯ୍ୟାୟକ୍ରମେ ୧୦ ବର୍ଷରେ କରାଯିବା ଉଚିତ । ପ୍ରଥମେ ସ୍ନାତକ ପାଠ୍ୟକ୍ରମର ଅଧିକାଂଶ ଶିକ୍ଷା ଆଞ୍ଚଳିକ ଭାଷା ମାଧ୍ୟମରେ ଏବଂ ସ୍ନାତକୋତ୍ତର ସ୍ତରର ଶିକ୍ଷା ଇଂରାଜୀରେ ଦିଆଯାଇପାରେ । କ୍ରମେ ଉଚ୍ଚ ଶିକ୍ଷା ସହ ସମ୍ପୃକ୍ତ ସମସ୍ତ ଶିକ୍ଷକ ଅନ୍ତତଃ ଦୁଇଟି ଭାଷା ଜାଣିବା ବାଞ୍ଛନୀୟ ଏବଂ ସ୍ନାତକୋତ୍ତର ଛାତ୍ରମାନେ ଉଭୟ ଆଞ୍ଚଳିକ ଭାଷା ଓ ଇଂରାଜୀରେ ବକ୍ତୃତା ବୁଝିବା ସଙ୍ଗେ ସଙ୍ଗେ ଉଭୟ ଭାଷାରେ ପାଠ୍ୟବସ୍ତୁର ବ୍ୟବହାର ପାଇଁ ସମର୍ଥ ହେବା ଆବଶ୍ୟକ । ଅହେନ୍ଦୀ ଅଞ୍ଚଳରେ ହିନ୍ଦୀ ମାଧ୍ୟମରେ ଶିକ୍ଷା ଦେଉଥିବା ମହାବିଦ୍ୟାଳୟର ସୁରକ୍ଷା ପାଇଁ ଅନୁମତି ଦିଆଯିବା ବିଧେୟ ଏବଂ ଏଗୁଡ଼ିକୁ ମଧ୍ୟ ଉତ୍ସାହିତ କରାଯିବା ଦରକାର । ସେହିପରି ଦେଶର ଯେ କୌଣସି ଅଂଶରେ ଯଥେଷ୍ଟ ସଂଖ୍ୟକ ଉର୍ଦ୍ଦୁଭାଷୀ ଛାତ୍ର ଥିଲେ ସେଠାରେ ଉର୍ଦ୍ଦୁ ମାଧ୍ୟମରେ ଶିକ୍ଷା ଦେଉଥିବା ମହାବିଦ୍ୟାଳୟ-ଗୁଡ଼ିକ ସୁରକ୍ଷିତ ଓ ଉତ୍ସାହିତ ହେବା ଆବଶ୍ୟକ । ଉର୍ଦ୍ଦୁ ଓ ଅନ୍ୟାନ୍ୟ ସମସ୍ତ ଆଧୁନିକ ଭାରତୀୟ ଭାଷା ପାଇଁ ଉନ୍ନତ ଅଧ୍ୟାପନା କେନ୍ଦ୍ରମାନ (Centres of advance study) ପ୍ରତିଷ୍ଠା କରାଯିବା ଉଚିତ ।

ଛାତ୍ର ସେବା (Student Services) କେବଳ ଏକ ହିତକର କାର୍ଯ୍ୟ ନୁହେଁ, ଏହା ଶିକ୍ଷାର ଏକ ଅବିଚ୍ଛେଦ୍ୟ ଅଙ୍ଗ । ନୂତନ ଛାତ୍ରମାନଙ୍କୁ ମହାବିଦ୍ୟାଳୟ ବା ବିଶ୍ୱବିଦ୍ୟାଳୟର କାର୍ଯ୍ୟକଳାପ ତଥା ସୁବିଧା ସୁଯୋଗ ସହ ପରିଚିତ କରାଇଦେବା, ସେମାନଙ୍କର ଶାରୀରିକ ସୁସ୍ଥତା ପାଇଁ ବ୍ୟବସ୍ଥା କରିବା, ରହିବା ପାଇଁ ସୁବିଧା ଯୋଗାଇଦେବା, ଉପଦେଶନ ଓ ଉପବୋଧନ ସଙ୍ଗେ ସଙ୍ଗେ କର୍ମସଂସ୍ଥାନ ପାଇଁ ସୁବିଧା ସୁଯୋଗ ଦେବା ଓ ଆର୍ଥିକ ସାହାଯ୍ୟର ବ୍ୟବସ୍ଥା କରିବା—ଏ ସମସ୍ତ କାର୍ଯ୍ୟ ଛାତ୍ରସେବାର ଅନ୍ତର୍ଭୁକ୍ତ । ଛାତ୍ରସଂଘଗୁଡ଼ିକ (Student Unions) କିପରି କାର୍ଯ୍ୟ କରିବ—ତାହା ପ୍ରତ୍ୟେକ ବିଶ୍ୱବିଦ୍ୟାଳୟ ଠିକ୍ କରିଦେବା ଆବଶ୍ୟକ । ଛାତ୍ରମାନେ ବଳେ ବଳେ ସଂଘର ସଭ୍ୟ ହେବେ, କିନ୍ତୁ ପ୍ରତ୍ୟେକ ଛାତ୍ରସଂଘ ଦ୍ୱାରା ଆୟୋଜିତ ଅନ୍ୟୂନ ଗୋଟିଏ କାର୍ଯ୍ୟକ୍ରମରେ ଅଂଶଗ୍ରହଣ କରିବା

ଆଶା କରାଯାଏ । ବିଭିନ୍ନ ବିଶ୍ୱବିଦ୍ୟାଳୟ ଓ ମହାବିଦ୍ୟାଳୟର ଛାତ୍ରସଂଘ ପ୍ରତିନିଧି-ମାନଙ୍କର ବାର୍ଷିକ ଅଧିବେଶନ ଡକାଇବାକୁ ଓ ଆର୍ଥିକ ସାହାଯ୍ୟ ଦେବାକୁ ବିଶ୍ୱବିଦ୍ୟାଳୟ ମଞ୍ଜୁରି କମିଶନ ନେତୃତ୍ୱ ନେବା ଦରକାର ।

ଶିକ୍ଷା, ଯୁବକ ଯୁବତୀମାନଙ୍କୁ ସଭ୍ୟତାନୁମୋଦିତ ଆଚରଣରେ ଅଭ୍ୟସ୍ତ ହେବା ପାଇଁ ସମର୍ଥ କରିବା ବାଞ୍ଛନୀୟ । ଆଜିକାଲି ଘଟିଯାଉଥିବା ଛାତ୍ର ବିଶୃଙ୍ଖଳା ସମାଜର ଏକ ସାମୂହିକ (Multilateral) ଦାୟିତ୍ୱ । ତେଣୁ ଛାତ୍ର, ଶିକ୍ଷକ, ଅଭିଭାବକ, ରାଜ୍ୟସରକାର ଓ ରାଜନୈତିକ ଦଳମାନେ ନିଜ ନିଜର କର୍ତ୍ତବ୍ୟ ନ କଲେ ଏହି ସମସ୍ୟାର ଫଳପ୍ରଦ ସମାଧାନ ହୋଇପାରିବ ନାହିଁ । ଶିକ୍ଷାଗତ ତ୍ରୁଟି ଦୂର କରିବାକୁ ବିଶେଷ ଉଦ୍ୟମ କରାଯିବା ଆବଶ୍ୟକ । କାରଣ ଏହା ଛାତ୍ର ଆନ୍ଦୋଳନର ସହାୟକ ହୋଇଥାଏ । ଆଉ ମଧ୍ୟ ଏକ ଦୃଢ଼ ପରାମର୍ଶମୂଳକ ତଥା ପ୍ରଶାସନିକ କଳ ସ୍ଥାପିତ ହେବା ଉଚିତ, ଯାହା ବିଶୃଙ୍ଖଳିତ କାର୍ଯ୍ୟକଳାପ ସଂଘଟିତ ହେବାରେ ବାଧା ସୃଷ୍ଟି କରିବ ।

## ପ୍ରୌଢ଼ ଶିକ୍ଷା

ଯେତେ ଶୀଘ୍ର ସମ୍ଭବ ଦେଶରୁ ନିରକ୍ଷରତା ଦୂରୀକରଣ ପାଇଁ ସବୁ ପ୍ରକାରର ଉଦ୍ୟମ ହେବା ଆବଶ୍ୟକ । ଦେଶର ଯେକୌଣସି ଅଂଶ ଯେତେ ଅନୁନ୍ନତ ହେଉ ପଛେ ଏହି କାର୍ଯ୍ୟ ପାଇଁ ୨୦ ବର୍ଷରୁ ଅଧିକ ସମୟ ଲାଗିବା ଉଚିତ ନୁହେଁ । ପ୍ରଥମ ପଦକ୍ଷେପ ସ୍ୱରୂପ ନିରକ୍ଷରଙ୍କ ସଂଖ୍ୟା ଆଉ ଯେପରି ନ ବଢ଼େ ସେଥିପାଇଁ ଚେଷ୍ଟା କରାଯିବା ଆବଶ୍ୟକ । ତାହା ହେଉଛି—(କ) ୬ ରୁ ୧୧ ବର୍ଷ ବୟସର ପିଲାମାନଙ୍କ ପାଇଁ ସାର୍ବଜନୀନ ଶିକ୍ଷାର ସଂପ୍ରସାରଣ ହେବା ଉଚିତ (ଖ) ୧୧ ରୁ ୧୪ ବର୍ଷ ବୟସର ଯେଉଁ ପିଲାମାନେ ବିଦ୍ୟାଳୟ ଯିବା ସୁଯୋଗରୁ ବଞ୍ଚିତ ହେଉଛନ୍ତି ବା ଯେଉଁମାନେ ଅସମୟରେ ପାଠପଢ଼ା ଛାଡିଦେଇଛନ୍ତି ସେମାନଙ୍କ ପାଇଁ ସାମୟିକ-ଶିକ୍ଷା (Part-time education) ବ୍ୟବସ୍ଥା କରାଯିବା ଉଚିତ ଏବଂ (ଗ) ୧୫ ରୁ ୩୦ ବର୍ଷ ବୟସର ଲୋକ-ମାନଙ୍କ ପାଇଁ ସାମୟିକ ସାଧାରଣ ଶିକ୍ଷା ଓ ଧନ୍ଦାମୂଳକ ଶିକ୍ଷା ଦିଆଯିବା ଉଚିତ ।

ଦୁଇଟି ଦିଗରୁ ନିରକ୍ଷରତା ଦୂରୀକରଣ ସମସ୍ୟାର ସମ୍ମୁଖୀନ ହେବାକୁ ପଡ଼ିବ । ପ୍ରଥମଟି ହେଲା--ବଡ଼ବଡ଼ କାରଖାନା, ଶିଳ୍ପାନୁଷ୍ଠାନ, ବାଣିଜ୍ୟିକ ପ୍ରତିଷ୍ଠାନ ଓ ଅନ୍ୟାନ୍ୟ ଅନୁଷ୍ଠାନଗୁଡ଼ିକୁ ସେମାନଙ୍କର କର୍ମଚାରୀମାନଙ୍କ ସାକ୍ଷରତା ଲାଗି ଦାୟୀ କରାଯିବା ଉଚିତ । ସରକାରୀ ଉଦ୍ୟୋଗରେ ପରିଚାଳିତ ବୃହତ୍ ଶିଳ୍ପାନୁଷ୍ଠାନଗୁଡ଼ିକ ଶୀଘ୍ର ଏ ଦିଗରେ ଅଗ୍ରଣୀ ହେବା ଉଚିତ । ଦ୍ୱିତୀୟଟି ହେଲା --ଦେଶରେ ଯେଉଁ ସମସ୍ତ ଶିକ୍ଷିତ ସ୍ତ୍ରୀ ଓ ପୁରୁଷଙ୍କର ସାହାଯ୍ୟ ସହଜରେ ମିଳିପାରିବ, ନିରକ୍ଷରତା ବିରୁଦ୍ଧରେ ସଂଗ୍ରାମ ଚଳାଇବା ପାଇଁ ସେମାନଙ୍କୁ ପ୍ରସ୍ତୁତ କରି ରଖିବା । ଏହି ଗଣ ଆନ୍ଦୋଳନ ସଂଗଠନ କରାଇବାରେ

ସମସ୍ତ ଶିକ୍ଷାନୁଷ୍ଠାନର ଛାତ୍ର ଓ ଶିକ୍ଷକସକିସ୍ୱ ଅଂଶ ଗ୍ରହଣ କରିବା ଉଚିତ । ଉଚ୍ଚପ୍ରାଥମିକ, ମାଧ୍ୟମିକ, ଉଚ୍ଚତର ମାଧ୍ୟମିକ ଓ ଉପସ୍ନାତକ ଶ୍ରେଣୀର ଛାତ୍ରମାନେ ବାଧ୍ୟତାମୂଳକ ଜାତୀୟ ସେବା କାର୍ଯ୍ୟକ୍ରମର ଏକ ଅଂଶ ରୂପେ ବୟଃପ୍ରାପ୍ତମାନଙ୍କୁ ଶିକ୍ଷା ଦେବା ଉଚିତ । ପ୍ରତ୍ୟେକ ବିଦ୍ୟାଳୟର ଶିକ୍ଷକମାନେ ଏହି ଆନ୍ଦୋଳନରେ ଅଂଶ ଗ୍ରହଣ ଓ ଶିକ୍ଷାଦାନ କରିବା ଉଚିତ । ପ୍ରତ୍ୟେକ ଶିକ୍ଷାନୁଷ୍ଠାନ ଗୋଟିଏ ଗୋଟିଏ ନିର୍ଦ୍ଦିଷ୍ଟ ଅଞ୍ଚଳର ନିରକ୍ଷରତା ଦୂରୀକରଣର ଦାୟିତ୍ୱ ନେବା ଉଚିତ । ଏହିପରି ଭାବରେ ବିଦ୍ୟାଳୟଗୁଡ଼ିକ ଗୋଷ୍ଠୀଜୀବନର କେନ୍ଦ୍ରରୂପେ ରୂପାନ୍ତରିତ ହେବା ଆବଶ୍ୟକ । ଲୋକମାନଙ୍କର ସାକ୍ଷରତା ରକ୍ଷା କରିବାକୁ ସାକ୍ଷରତା ଆନ୍ଦୋଳନର ପରବର୍ତ୍ତୀ କାର୍ଯ୍ୟାନୁଷ୍ଠାନର (follow up) ବ୍ୟବସ୍ଥା ରହିବା ଉଚିତ । ଏହି ବ୍ୟବସ୍ଥାରେ ଅଧିକ ଶିକ୍ଷାଲାଭର ସୁଯୋଗ, ପୁସ୍ତକାଗାରର ବ୍ୟବହାର, ପାଠ୍ୟବସ୍ତୁର ଉତ୍ପାଦନ ଆଦି ଅନ୍ତର୍ଭୁକ୍ତ ।

ଏ ପର୍ଯ୍ୟନ୍ତ ଆଲୋଚିତ ହୋଇଥିବା ସୁପାରିଶଗୁଡ଼ିକ ବ୍ୟତୀତ କୋଠାରୀ କମିଶନ୍ ଆହୁରି ଅନେକଗୁଡ଼ିଏ ବିଷୟରେ ବିଭିନ୍ନ ସୁପାରିଶ କରିଅଛନ୍ତି ।

## ପ୍ରଶ୍ନାବଳୀ

୧ । ମାଧ୍ୟମିକ ଶିକ୍ଷା ପାଠ୍ୟକ୍ରମରେ କି କି ବିଷୟ ଅନ୍ତର୍ଭୁକ୍ତ ହେବା ଉଚିତ ବୋଲି ମୁଦାଲିୟର କମିଶନ ଓ କୋଠାରୀ କମିଶନ ମତ ଦେଇଅଛନ୍ତି ? ମାଧ୍ୟମିକ ଶିକ୍ଷାର ଗଠନ ପଦ୍ଧତି ସମ୍ବନ୍ଧରେ ମଧ୍ୟ ଉଭୟ କମିଶନଙ୍କର ମତାମତ ଲେଖ ।

୨ । ବିଦ୍ୟାଳୟ ସ୍ତରରେ ଭାଷା ଅଧ୍ୟୟନ ପାଇଁ ମୁଦାଲିୟର କମିଶନ ଓ କୋଠାରୀ କମିଶନ କି କି ସୁପାରିଶ କରିଅଛନ୍ତି ?

୩ । ଶିକ୍ଷାଦାନ ପ୍ରଣାଳୀ, ଉପଦେଶନ ଓ ମୂଲ୍ୟାଙ୍କନ—ଏହିସବୁ ବିଷୟପାଇଁ କୋଠାରୀ କମିଶନ ଓ ମୁଦାଲିୟର କମିଶନ କି କି ସୁପାରିଶ କରିଅଛନ୍ତି ?

୪ । ଉଚ୍ଚଶିକ୍ଷାର ଲକ୍ଷ୍ୟ ଓ ଉତ୍କର୍ଷସାଧନ ଦିଗରେ କୋଠାରୀ କମିଶନଙ୍କ ମତାମତ ଆଲୋଚନା କର ।

୫ । ଶିକ୍ଷାଲାଭ ପାଇଁ ସମସ୍ତଙ୍କୁ ସମାନ ସୁଯୋଗ ଦିଆଯିବା ଦରକାର । କୋଠାରୀ କମିଶନଙ୍କ ସୁପାରିଶ ଅନୁଯାୟୀ ଏ ଦିଗରେ କି କି ପଦକ୍ଷେପ ନିଆଯିବା ଦରକାର ?

୬ । କୋଠାରୀ କମିଶନଙ୍କର କେଉଁ କେଉଁ ସୁପାରିଶଗୁଡ଼ିକ ଏ ପର୍ଯ୍ୟନ୍ତ ସଫଳତାର ସହିତ କାର୍ଯ୍ୟକାରୀ ହୋଇଅଛି ବୋଲି ମନେ କରୁଅଛ ? ଆଲୋଚନା କର ।

୭ । ଜାତୀୟ ଲକ୍ଷ୍ୟ ସାଧନ ପାଇଁ ଶିକ୍ଷାକୁ ଏକ ଅସ୍ତ୍ର ରୂପେ ବ୍ୟବହାର କରାଯିବା ଉଚିତ । କୋଠାରୀ କମିଶନଙ୍କ ମତରେ ଏହା କିପରି ସମ୍ଭବପର ହୋଇପାରିବ ?

———

# ଚତୁର୍ଥ ଅଧ୍ୟାୟ

## ଭାଷା ସମସ୍ୟା ଓ ଶିକ୍ଷାର ମାଧ୍ୟମ

ଭାରତରେ ଭାଷା ସମସ୍ୟା ଶିକ୍ଷାର ଅଗ୍ରଗତିରେ ଏକ ବିରାଟ ପ୍ରତିବନ୍ଧକ ରୂପେ ଦେଖା ଦେଇଅଛି । ଏକ ଦୃଢ଼ ଓ ଫଳପ୍ରଦ ଭାଷାନୀତି ଅନୁସୃତ ନ ହେଲେ କୌଣସି ଦେଶର ଅଗ୍ରଗତି ସମ୍ଭବପର ନୁହେଁ । ପୃଥିବୀର ଅଧିକାଂଶ ଦେଶରେ ଭାଷା ଓ ଶିକ୍ଷା ସମସ୍ୟା ସ୍ୱଳ୍ପ ବା ଅଧିକ ମାତ୍ରାରେ ରହିଅଛି; ତେଣୁ ଭାରତରେ ଏପରି ଏକ ସମସ୍ୟାର ସୃଷ୍ଟି ହେବା ଏକ ନୂଆ କଥା ନୁହେଁ । ମାତ୍ର ଭାରତରେ ଏହି ସମସ୍ୟା ଏକ ଜଟିଳ ସମସ୍ୟାରେ ପରିଣତ ହୋଇଅଛି । ବିଶେଷତଃ ଏକ ପକ୍ଷରେ ପୂର୍ବର ବିଦେଶୀ ଶାସନର ପ୍ରଭାବ ଓ ଅନ୍ୟ ପକ୍ଷରେ ବର୍ତ୍ତମାନର ରାଜନୀତି ଏହି ସମସ୍ୟାକୁ ଜଟିଳତର କରି ପକାଉଛି । ଦୁର୍ଭାଗ୍ୟର କଥା, ଆମେ କୌଣସି ଦୃଢ଼ ସିଦ୍ଧାନ୍ତକୁ ଦୃଢ଼ତାର ସହ କାର୍ଯ୍ୟକାରୀ କରିପାରୁ ନାହୁଁ । ଭାଷା ଓ ଶିକ୍ଷା କ୍ଷେତ୍ରରେ ଆମର ସିଦ୍ଧାନ୍ତ କୌଣସି ନିର୍ଦ୍ଦିଷ୍ଟ ରୂପରେଖ ନେଇ ପାରୁନାହିଁ, କାରଣ ଏହାର ପର୍ଯ୍ୟାଲୋଚନା ଶିକ୍ଷାନୁଷ୍ଠାନରେ ହେବା ପୂର୍ବରୁ ରାଜନୈତିକ ମଞ୍ଚରେ ଏଥିପାଇଁ ଅଧିକ ତତ୍ପରତା ଦେଖାଯାଉଅଛି ।

## ଭାରତୀୟ ବିଦ୍ୟାଳୟଗୁଡ଼ିକରେ ଭାଷା ଶିକ୍ଷାର ସମସ୍ୟା

ଦୁର୍ଭାଗ୍ୟର କଥା, ଗୋଟିଏ ଭାରତୀୟ ପିଲା ତା'ର ଶିକ୍ଷାର ପ୍ରାଥମିକ ସ୍ତରରେ ତିନିଗୋଟି ଭାଷାର ଯେଉଁ ଗୁରୁଭାର ବହନ କରେ ତାହା ପୃଥିବୀର ଅଧିକାଂଶ ଉନ୍ନତ ରାଷ୍ଟ୍ରରେ ମଧ୍ୟ ଦେଖାଯାଏ ନାହିଁ । ଅନେକଙ୍କର ଦୃଢ଼ ମତ ଯେ, ଭାଷାର ଏହି ଗୁରୁଭାର ପ୍ରତ୍ୟେକ ସାଧାରଣ ପ୍ରତିଭାବାନ ବାଳକ ବାଳିକାଙ୍କର ବୌଦ୍ଧିକ ବିକାଶରେ ଘୋର ଅନ୍ତରାୟ ହୁଏ । ବିଭିନ୍ନ ଭାଷାର ଶିକ୍ଷା ପିଲାମାନଙ୍କ ପାଇଁ ଏକ ସୁଯୋଗ ରୂପେ ରହିବା ଉଚିତ—ଗୁରୁଭାର ରୂପେ ନୁହେଁ । ପୃଥିବୀର କେତେକ ଉନ୍ନତ ଦେଶରେ କେଉଁ ସ୍ତରରେ କେତୋଟି ଭାଷା ଶିକ୍ଷା ଦିଆଯାଏ, ତା'ର ଏକ ସମୀକ୍ଷା ଏଠାରେ ଆବଶ୍ୟକ ମନେହୁଏ ।

## ଆମେରିକା

ଆମେରିକା ଯୁକ୍ତରାଷ୍ଟ୍ରରେ ବିଦ୍ୟାଳୟ ସ୍ତରରେ ପ୍ରଥମରୁ ଦ୍ୱାଦଶ ଶ୍ରେଣୀ ପର୍ଯ୍ୟନ୍ତ କେବଳ ଇଂରାଜୀ ଭାଷା ଅଧ୍ୟୟନ ବାଧ୍ୟତାମୂଳକ ଅଟେ । ଅନ୍ୟ କୌଣସି ଭାଷା ପ୍ରାଥମିକ ବା ମାଧ୍ୟମିକ ସ୍ତରରେ ବାଧ୍ୟତାମୂଳକ ନୁହେଁ । ଅନେକ ମାଧ୍ୟମିକ ବିଦ୍ୟାଳୟରେ ଛାତ୍ର-ମାନଙ୍କ ପାଇଁ ଫ୍ରେଞ୍ଚ, ଜର୍ମାନ, ସ୍ପେନିସ୍ ପ୍ରଭୃତି ଏକ ଅତିରିକ୍ତ ଇଚ୍ଛାଧୀନ ଭାଷା ୨।୩ ବର୍ଷ ପାଇଁ ପଢ଼ିବାର ବ୍ୟବସ୍ଥା ଅଛି ଏବଂ ଏହା ସାଧାରଣତଃ ଉଚ୍ଚମାଧ୍ୟମିକ ସ୍ତରରେ ପଢ଼ାଯାଇଥାଏ ।

## ଯୁକ୍ତରାଜ୍ୟ

ଇଂଲଣ୍ଡର ବିଦ୍ୟାଳୟଗୁଡ଼ିକରେ ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ଇଂରାଜୀ ପଢ଼ା ହୁଏ । ଅଳ୍ପ କେତେକ ଘରୋଇ ବିଦ୍ୟାଳୟକୁ ଛାଡ଼ିଦେଲେ ପ୍ରାଥମିକ ସ୍ତରରେ ଅନ୍ୟ କୌଣସି ଭାଷା ଶିକ୍ଷା ଦିଆଯାଏ ନାହିଁ । ଅଳ୍ପ ସଂଖ୍ୟକ ଛାତ୍ରଙ୍କ ପାଇଁ ଇଚ୍ଛାଧୀନ ବିଷୟ ରୂପେ ଗ୍ରୀକ୍, ଲାଟିନ୍ ପ୍ରଭୃତି ପ୍ରାଚୀନ ଭାଷା ( Classical Language ) ଶିକ୍ଷାଦାନ ବ୍ୟବସ୍ଥା ଅଛି । ବୈଷୟିକ ଓ ବୃତ୍ତିମୂଳକ ପାଠ୍ୟକ୍ରମରେ ଯୋଗଦେଇଥିବା ଛାତ୍ରମାନେ ଇଂରାଜୀ ବ୍ୟତୀତ ଅନ୍ୟ କୌଣସି ଭାଷା ଆଦୌ ପଢି ନ ପାରନ୍ତି ।

## ଜାପାନ

ଜାପାନରେ ୬ ବର୍ଷିଆ ପ୍ରାଥମିକ ବିଦ୍ୟାଳୟ, ୩ ବର୍ଷିଆ ନିମ୍ନ ମାଧ୍ୟମିକ ଓ ୩ ବର୍ଷିଆ ଉଚ୍ଚ ମାଧ୍ୟମିକ ବିଦ୍ୟାଳୟ ଅଛି । ଏଠାରେ ପ୍ରାଥମିକ ସ୍ତରରେ ଜାପାନୀ ବ୍ୟତୀତ ଅନ୍ୟ କୌଣସି ଭାଷା ପଢ଼ାଯାଏ ନାହିଁ । ନିମ୍ନ ମାଧ୍ୟମିକ ସ୍ତରରେ ପିଲାମାନେ ଇଚ୍ଛାକଲେ ଗୋଟିଏ ବିଦେଶୀ ଭାଷା ଇଚ୍ଛାଧୀନ ବିଷୟ ରୂପେ ପଢିପାରନ୍ତି । ଉଚ୍ଚତର ମାଧ୍ୟମିକ ସ୍ତରରେ ମଧ୍ୟ କେବଳ ଜାପାନୀ ଭାଷା ବାଧ୍ୟତାମୂଳକ; ମାତ୍ର ପିଲାମାନେ ଗୋଟିଏ ବା ଦୁଇଟି ବିଦେଶୀ ଭାଷା ଏବଂ ଗୋଟିଏ ପ୍ରାଚୀନ ଭାଷା ଇଚ୍ଛାଧୀନ ବିଷୟ ରୂପେ ପଢି ପାରନ୍ତି ।।

## ଫ୍ରାନ୍ସ

ଫ୍ରାନ୍ସରେ ଫ୍ରେଞ୍ଚ ମାତୃଭାଷା ଓ ପ୍ରଥମ ଭାଷା ରୂପେ ପ୍ରଥମ ଶ୍ରେଣୀରୁ ମାଧ୍ୟମିକ ଶିକ୍ଷାର ଶେଷ ପର୍ଯ୍ୟନ୍ତ (ସମୁଦାୟ ୧୪ ବର୍ଷ) ପଢ଼ା ହୁଏ । ଅତିରିକ୍ତ ଭାଷାଗୁଡ଼ିକ କେବଳ ମାଧ୍ୟମିକ ସ୍ତରରେ ପ୍ରଚଳନ କରାଯାଏ ।

## ଜର୍ମାନୀ

ଜର୍ମାନ ସାଧାରଣତନ୍ତ୍ର ରାଷ୍ଟ୍ରରେ ଜର୍ମାନ ଭାଷା ପ୍ରଥମରୁ ଦ୍ୱାଦଶ ଶ୍ରେଣୀ ପର୍ଯ୍ୟନ୍ତ ଶିକ୍ଷା ଦିଆଯାଏ । ଇଂରାଜୀ ପଞ୍ଚମ ଶ୍ରେଣୀରୁ ଶିକ୍ଷା ଦିଆଯାଏ ଏବଂ ଏହା କେତେକ ସ୍ଥଳରେ ଦଶମ ଶ୍ରେଣୀ ପର୍ଯ୍ୟନ୍ତ ପାଠ୍ୟକ୍ରମରେ ଅନ୍ତର୍ଭୁକ୍ତ ।

## ରୁଷିଆ

ରୁଷିଆରେ ପ୍ରାଥମିକ ଶିକ୍ଷାର କାଳ ସାତ ବର୍ଷ । ଯେଉଁ ପିଲାମାନଙ୍କର ମାତୃଭାଷା ଋଷିଆନ ସେମାନେ ତାହା ପ୍ରଥମ ଶ୍ରେଣୀରୁ କ୍ରମାଗତ ପଢ଼ନ୍ତି । ଯେଉଁମାନଙ୍କ ମାତୃଭାଷା ଋଷିଆନ୍ ନୁହେଁ (ଯଥା—ଉଜ୍‌ବେକସ୍ଥାନରେ ମାତୃଭାଷା ଉଜ୍‌ବେକ୍, ଇଉକ୍ରେନ୍‌ରେ ମାତୃଭାଷା ଇଉକ୍ରେନିଆନ୍) ସେମାନେ ପ୍ରଥମ ଶ୍ରେଣୀରୁ ମାତୃଭାଷା ଓ ଦ୍ୱିତୀୟ ଶ୍ରେଣୀରୁ ଋଷିଆନ୍ ପଢ଼ନ୍ତି । ସମସ୍ତ ବିଦ୍ୟାଳୟରେ ପଞ୍ଚମ ଶ୍ରେଣୀରୁ ଗୋଟିଏ ବିଦେଶୀ ଭାଷା ଶିକ୍ଷା ଦିଆଯାଏ ।

# କେଉଁ କେଉଁ ଭାଷା ବିଦ୍ୟାଳୟରେ ନିଆଯିବା ଉଚିତ

ଆମ ଦେଶରେ ଜଣେ ପିଲା କି ଭାଷା କେଉଁ ସ୍ତରରୁ ପଢ଼ିବା ଆବଶ୍ୟକ ତାହା ବିଚାର କଲାବେଳେ ଆମକୁ ପାଞ୍ଚଗୋଟି ସ୍ୱତନ୍ତ୍ର ଶ୍ରେଣୀର ଭାଷା ସମ୍ବନ୍ଧରେ ସଚେତନ ହେବାକୁ ହେବ । ସେ ସବୁ ହେଲା—(୧) ମାତୃଭାଷା, (୨) ଆଞ୍ଚଳିକ ଭାଷା, (ଆଞ୍ଚଳିକ ଭାଷା ମାତୃଭାଷାଠାରୁ ପୃଥକ୍ ହୋଇଥିଲେ), (୩) ଦେଶର ସରକାରୀ ଭାଷା ବା ରାଷ୍ଟ୍ରଭାଷା, (୪) ସଂସ୍କୃତ, ଆରବିକ୍, ପର୍ସିଆନ୍, ଲାଟିନ୍ ପ୍ରଭୃତି ପ୍ରାଚୀନ ଭାଷା ଏବଂ (୫) ଆନ୍ତର୍ଜାତିକ ଭାଷାର ସମ୍ମାନଲାଭ କରିଥିବା ଇଂରାଜୀ ଭାଷା । ଯେଉଁ ଅଞ୍ଚଳରେ ମାତୃଭାଷା ଓ ଆଞ୍ଚଳିକ ଭାଷା ଅଭିନ୍ନ ସେଠାରେ କେବଳ ଚାରିଗୋଟି ଭାଷା ବିଦ୍ୟାଳୟରେ ନିଆଯିବା ଉଚିତ । ସେହିପରି ଯେଉଁଠାରେ ଗୋଟିଏ ଭାଷା ହିଁ ମାତୃଭାଷା, ଆଞ୍ଚଳିକ ଭାଷା ଓ ରାଷ୍ଟ୍ରଭାଷା ସେଠାରେ ତିନଗୋଟି ଭାଷା ବିଦ୍ୟାଳୟରେ ନିଆଯିବା ଉଚିତ । ଅବଶ୍ୟ ଭାରତରେ ପ୍ରଚଳିତ ବହୁ ଉପଭାଷା ବିଦ୍ୟାଳୟରେ ନିଆଯାଇ ନାହିଁ ; କାରଣ ସେଗୁଡ଼ିକର ନିର୍ଦ୍ଦିଷ୍ଟ ଲିପି ନାହିଁ ।

## କଥିତ ଭାଷାର ଗୁରୁତ୍ୱ

ଭାରତରେ ମାତ୍ର କେତୋଟି କିଲୋମିଟର ଅତିକ୍ରମ କଲା ପରେ କଥିତ ଭାଷା ପରିବର୍ତ୍ତିତ ହୋଇଯାଏ । ତେଣୁ ଜଣେ ଅନେକ କଥିତ ଭାଷା ବୁଝି ପାରିବାକୁ ସମର୍ଥ ହେବା ଉଚିତ । ଅବଶ୍ୟ ଏହା ଏକ ଭାଷା ଅମସ୍ୟା ନୁହେଁ ; କାରଣ ଏ ସବୁ କୌଣସି

ସ୍ୱତନ୍ତ୍ର ଲିପି ନାହିଁ । ଏହା କେବଳ ସ୍ଥାନୀୟ ବ୍ୟବହାରରେ ତଥା ପଡ଼ୋଶୀ ଗ୍ରାମବାସୀମାନଙ୍କର ଖବର ଆଦାନ ପ୍ରଦାନରେ ସାହାଯ୍ୟ କରିଥାଏ । କଥିତ ଭାଷା ଉପରେ ଆଞ୍ଚଳିକ ଭାଷାର ଗୁରୁତ୍ୱର ଛାପ ପଡ଼ିବା ସତ୍ତ୍ୱେ ସେ ସବୁର ଅଭିବୃଦ୍ଧି ଅବ୍ୟାହତ ରହିଅଛି । ଦୀର୍ଘଦିନର ନିରକ୍ଷରତା ଏଥିପାଇଁ ମୁଖ୍ୟତଃ ଦାୟୀ; କାରଣ ଅଜ୍ଞ ଓ ନିରକ୍ଷର ଜନତାର ଲବ୍ଧ-ଭାଷା ଜ୍ଞାନର ଅଭାବ ହେତୁ ସେମାନଙ୍କୁ ପୂର୍ବ ଅନୁସୃତ ଭାଷାର ଆଶ୍ରୟ ନେବାକୁ ପଡ଼ୁଅଛି ! ଯାହାହେଉ ବର୍ତ୍ତମାନ ପ୍ରକୃତ ସମସ୍ୟାର ବିଚାର କଲେ ଦେଖାଯିବ ଯେ ଗୋଟିଏ ପିଲା ସହଜରେ ଓ ଶୀଘ୍ର ତା'ର ମାତୃଭାଷା ଶିଖିପାରିବ । ସେହିପରି ଜଣେ ବିଶେଷ ଆୟାସ ନ କରି ଆଞ୍ଚଳିକ ଭାଷାରେ ମଧ୍ୟ ଦକ୍ଷତାଲାଭ କରିପାରିବ ।

## ଏକ ସାଧାରଣ ଭାଷାର ଆବଶ୍ୟକତା

ଭାରତ ଗୋଟିଏ ବହୁ ଭାଷାଭାଷୀ ଦେଶ । ଜଣେ ଗୋଟିଏ ଆଞ୍ଚଳିକ ଭାଷାରେ ଯେତେ ଦକ୍ଷ ହେଲେ ମଧ୍ୟ ପଡ଼ୋଶୀ ରାଜ୍ୟର ଭାଷା ନ ଜାଣିଲେ ରାଜ୍ୟ ରାଜ୍ୟ ମଧ୍ୟରେ ମତ ବିନିମୟ ତଥା ଖବର ଆଦାନ ପ୍ରଦାନରେ ଘୋର ଅସୁବିଧା ସୃଷ୍ଟି ହେବ । ଏଥିପାଇଁ କ'ଣ ଗୋଟିଏ ରାଜ୍ୟର ଲୋକେ ସେହି ରାଜ୍ୟକୁ ଘେରିଥିବା ଅନ୍ୟ ଚାରିଗୋଟି ରାଜ୍ୟର ଆଞ୍ଚଳିକ ଭାଷା ଶିକ୍ଷା କରିବେ ? ଏହା ସମ୍ଭବପର ନୁହେଁ, ତେଣୁ ଦେଶର ଅଧିକାଂଶ ଲୋକ ବୁଝିପାରିବାକୁ ସମର୍ଥ ହେଉଥିବା ଏକ ଗ୍ରହଣଯୋଗ୍ୟ ସାଧାରଣ ଭାଷା ଆବଶ୍ୟକ ।

## ଏକ ଆନ୍ତର୍ଜାତିକ ଭାଷାର ଆବଶ୍ୟକତା

ବୈଜ୍ଞାନିକ ଓ ବୈଷୟିକ ଜ୍ଞାନର ସମୃଦ୍ଧି ଫଳରେ ସମଗ୍ର ପୃଥିବୀ ଆଜି ଗୋଟିଏ ପରିବାର ଭଳି ହୋଇଅଛି । ପୃଥିବୀର କୌଣସି ଦେଶର ସ୍ଥିତି ଓ ଉନ୍ନତି ପୃଥକୀକରଣ ଦ୍ୱାରା ସମ୍ଭବପର ନୁହେଁ । ଦେଶ ଦେଶ ମଧ୍ୟରେ ବହୁ ବିଷୟର ଆଦାନ ପ୍ରଦାନ ପାଇଁ ଏବଂ ଗୋଟିଏ ଦେଶର ଅନୁଭୂତି ଓ ଆବିଷ୍କାରରେ ଅନ୍ୟର ଅଂଶ ଗ୍ରହଣ ପାଇଁ ଏକ ସଂଯୋଗକାରୀ ଭାଷା ବା ଆନ୍ତର୍ଜାତିକ ଭାଷା ଏକାନ୍ତ ଆବଶ୍ୟକ । ପୃଥିବୀର ବହୁ ଦେଶ ଜାଣିଥିବା ଗୋଟିଏ ଭାଷା ଆନ୍ତର୍ଜାତିକ ଭାଷାରେ ପରିଣତ ହୁଏ ।

## ପ୍ରକୃତ ସମସ୍ୟା

ଉପର୍ଯ୍ୟୁକ୍ତ ଆଲୋଚନାରୁ ପ୍ରତୀୟମାନ ହୁଏ ଯେ ମାତୃଭାଷା, ଆଞ୍ଚଳିକ ଭାଷା, ରାଷ୍ଟ୍ରଭାଷା ଓ ଆନ୍ତର୍ଜାତିକ ଭାଷା—ପ୍ରତ୍ୟେକର ଆବଶ୍ୟକତା ରହିଅଛି । ମାତ୍ର ପ୍ରକୃତରେ ଜଣେ କେତୋଟି ଭାଷା କେଉଁ ସ୍ତରରୁ ଅଧ୍ୟୟନ କରିବ ଓ କରିପାରିବ, ତାହାହିଁ ସମସ୍ୟା । ଏହି ସମସ୍ୟାର ସମାଧାନ ପାଇଁ ଦୀର୍ଘଦିନଧରି ବିଭିନ୍ନ ସ୍ତରରେ ବହୁ ଆଲୋଚନା, ପର୍ଯ୍ୟାଲୋଚନା ହୋଇଅଛି । ୧୯୫୬ ମସିହାରେ କେନ୍ଦ୍ରୀୟ ଶିକ୍ଷା ପରାମର୍ଶଦାତା ପରିଷଦ ଏହି ଜଟିଳ ସମସ୍ୟାର ସୁବିସ୍ତୃତ ଆଲୋଚନା କରି ଏକ "ତ୍ରିଭାଷା ସୂତ୍ର" ବାହାର

କରିଥିଲେ । ୧୯୬୧ ମସିହାରେ ମୁଖ୍ୟମନ୍ତ୍ରୀମାନଙ୍କର ବୈଠକରେ ଏହି ସୂତ୍ର ଅନୁମୋଦିତ ହୋଇଥିଲା । କିନ୍ତୁ ଏହି ବିଷୟରଧାର ମୂଳରେ ଶିକ୍ଷାଗତ ଆବଶ୍ୟକତାଠାରୁ ରାଜନୈତିକ ଓ ସାମାଜିକ ପ୍ରଭାବର ଆଧିକ୍ୟ ଥିଲା ବୋଲି ମନେ ହୁଏ । ହିନ୍ଦୀ ଓ ଅଣହିନ୍ଦୀ ଅଞ୍ଚଳରେ ଭାଷାଶିକ୍ଷା ଦୃଷ୍ଟିରୁ ସମତା ଆଣିବା ପାଇଁ ଏହି ସୂତ୍ରରେ ବ୍ୟବସ୍ଥା ରହିଥିଲା । ଏହି ସୂତ୍ର ଅନୁସାରେ ଅଣହିନ୍ଦୀ ଅଞ୍ଚଳର ପିଲାମାନେ ତୃତୀୟ ଭାଷାରୂପେ ହିନ୍ଦୀ ଓ ହିନ୍ଦୀ ଅଞ୍ଚଳର ପିଲାମାନେ ହିନ୍ଦୀ ଓ ଇଂରାଜୀ ବ୍ୟତୀତ ଅନ୍ୟ ଏକ ଭାରତୀୟ ଭାଷା ତୃତୀୟ ଭାଷାରୂପେ ଶିକ୍ଷା କରିବା ବ୍ୟବସ୍ଥା ଥିଲା ।

## 'ତ୍ରିଭାଷା ସୂତ୍ର' ବ୍ୟର୍ଥ ହେବାର କାରଣ

କାର୍ଯ୍ୟତଃ ଏହି 'ତ୍ରିଭାଷା ସୂତ୍ର' କାର୍ଯ୍ୟକାରୀ ହେବାରେ ବହୁ ଅସୁବିଧା ହେଲା ଏବଂ ଏହା ବିଶେଷ ଫଳପ୍ରଦ ହେଲା ନାହିଁ । ଏହାର ଅନେକ କାରଣ ରହିଅଛି । ବିଦ୍ୟାଳୟ ପାଠ୍ୟକ୍ରମରେ ଭାଷା ଶିକ୍ଷାର ଭାର ଅଧିକ ହୋଇଯାଇଅଛି ବୋଲି ସାଧାରଣଙ୍କ ତରଫରୁ ଏହି ଭାଷାସୂତ୍ରର ପ୍ରତିରୋଧ କରାଗଲା । ହିନ୍ଦୀ ଭାଷାଭାଷୀ ଅଞ୍ଚଳରେ ଅନ୍ୟ ଏକ ଭାରତୀୟ ଭାଷା ଶିକ୍ଷା କରିବା ପାଇଁ ଆଗ୍ରହର ଅଭାବ ପରିଲକ୍ଷିତ ହେଲା । କେତେକ ଅଣହିନ୍ଦୀ ଅଞ୍ଚଳରେ ହିନ୍ଦୀଶିକ୍ଷା ବିରୁଦ୍ଧରେ ଜନମତ ସୃଷ୍ଟି ହେଲା । ବିଦ୍ୟାଳୟଗୁଡ଼ିକରେ ୬ବର୍ଷ ପାଇଁ ଦ୍ୱିତୀୟ ଓ ତୃତୀୟ ଭାଷା ଶିକ୍ଷା ଦେବାର ଆବଶ୍ୟକ ବ୍ୟବସ୍ଥା ବ୍ୟୟ ବହୁଳ ହେଲା । ସର୍ବୋପରି ତ୍ରୁଟିପୂର୍ଣ୍ଣ ଯୋଜନା ଓ ଆଗ୍ରହଶୂନ୍ୟ ଭାବରେ ଏହି ସୂତ୍ରର କାର୍ଯ୍ୟକାରିତା ପରିସ୍ଥିତିକୁ ଆହୁରି ଖରାପ କଲା । ଏହା ଫଳରେ ଦେଶର ବହୁ ସମ୍ପଦ କେବଳ ନଷ୍ଟ ହେଲା; ମାତ୍ର ଯୋଜନା ଫଳପ୍ରଦ ହେଲା ନାହିଁ । ବିଦ୍ୟାଳୟରେ ଆବଶ୍ୟକ ସୁବିଧା ସୁଯୋଗ ନ ଥାଇ ଏକ ଅବାସ୍ତବ ପରିସ୍ଥିତିରେ ଛାତ୍ରମାନେ ଯେପରି ତୃତୀୟ ଭାଷା ଶିଖିଲେ ସେଥିରୁ ସେମାନେ କିଛି ଲାଭ କଲେ ନାହିଁ କହିଲେ ଚଳେ । ଏହି ସବୁ କାରଣ ହେଉ ସମଗ୍ର ପରିସ୍ଥିତିର ପୁନର୍ବିଚାର କରି ବିଦ୍ୟାଳୟ ସ୍ତରରେ ଭାଷା ଅଧ୍ୟୟନର ନୂଆ ସୂତ୍ର ଉଦ୍ଭାବନ କରାଯିବା ଆବଶ୍ୟକ । ବିଶେଷତଃ ଭାରତରେ ଅନିର୍ଦ୍ଦିଷ୍ଟ କାଳ ପାଇଁ ଇଂରାଜୀକୁ ସହଯୋଗୀ ସରକାରୀ ଭାଷା ହିସାବରେ ସ୍ୱୀକୃତ ଦିଆଯିବା ପରେ ଏହା ଅଧିକ ଜରୁରୀ ହୋଇପଡ଼ିଅଛି ।

## କୋଠାରୀ କମିଶନଙ୍କ ନୀତି

ତ୍ରିଭାଷା ସୂତ୍ରର ବ୍ୟର୍ଥତାର କାରଣଗୁଡ଼ିକ ଆଖି ଆଗରେ ରଖି ତାହାକୁ କିପରି କାର୍ଯ୍ୟକାରୀ କରାଯାଇ ପାରିବ ସେଥିପାଇଁ କୋଠାରୀ କମିଶନ କେତେଗୁଡ଼ିଏ ନୀତିର ସୂଚନା ଦେଇଅଛନ୍ତି । ସେସବୁ ପର ପୃଷ୍ଠାରେ ଆଲୋଚନା କରାଗଲା ।

(୧) ହିନ୍ଦୀ ଦେଶର ସରକାରୀ ଭାଷା ହୋଇଥିବାରୁ କାଳକ୍ରମେ ଏହା ସାଧାରଣ ଭାଷା (lingua franca)ରେ ପରିଣତ ହେବା ଆଶା କରାଯାଏ । ତେଣୁ ମାତୃଭାଷା ପରେ ପରେ ଏହାକୁ ସର୍ବାଧିକ ଗୁରୁତ୍ୱ ଦିଆଯିବା ଉଚିତ ।

(୨) ଯେ ପର୍ଯ୍ୟନ୍ତ ବିଶ୍ୱବିଦ୍ୟାଳୟ ସ୍ତରରେ ଶିକ୍ଷାର ପ୍ରଧାନ ମାଧ୍ୟମରୂପେ ଏବଂ କେନ୍ଦ୍ର ଓ ଅଧିକାଂଶ ରାଜ୍ୟରେ ପ୍ରଶାସନିକ ଭାଷା ରୂପେ ଇଂରାଜୀ ବ୍ୟବହୃତ ହେଉଥିବ ସେ ପର୍ଯ୍ୟନ୍ତ ତାହା ଏକ ଉଚ୍ଚସ୍ଥାନ ଅଧିକାର କରିବ । ଏପରି କି ଆଞ୍ଚଳିକ ଭାଷା ବିଶ୍ୱ-ବିଦ୍ୟାଳୟରେ ଉଚ୍ଚ ଶିକ୍ଷାର ମାଧ୍ୟମ ହେଲ ପରେ ମଧ୍ୟ ଇଂରାଜୀର ବ୍ୟାବହାରିକ ଜ୍ଞାନ ସମସ୍ତ ଛାତ୍ରଙ୍କ ପାଇଁ ଏକ ମୂଲ୍ୟବାନ ସମ୍ପଦ ହୋଇ ରହିବ ଏବଂ ଏହି ଭାଷାରେ ଆଶାନୁରୂପ ଦକ୍ଷତା ହାସଲ କରିଥିବା ଛାତ୍ରମାନଙ୍କ ପକ୍ଷରେ ବିଶ୍ୱବିଦ୍ୟାଳୟରେ ଆଗେଇବା ସହଜ ହେବ ।

(୩) ବିଦ୍ୟାଳୟରେ ବହୁବର୍ଷ ଧରି ଗୋଟିଏ ଭାଷା ଶିକ୍ଷାଲାଭ କଲେ ଯେ ଜଣେ ସେଥିରେ ବ୍ୟୁତ୍ପତ୍ତି ଲାଭ କରିବ ତାହା ନୁହେଁ, ବରଂ ଏହା ପିଲାର ଆଗ୍ରହ, ପିଲାର ବୟସ, ଉପଯୁକ୍ତ ଶିକ୍ଷକ, ଶିକ୍ଷାଦାନ ପ୍ରଣାଳୀ, ପାଠ୍ୟୋପକରଣ ସୁଲଭତା ଇତ୍ୟାଦି ବହୁ ବିଷୟ ଉପରେ ନିର୍ଭର କରେ । ଉପଯୁକ୍ତ ବାତାବରଣ ମଧ୍ୟରେ ଅଳ୍ପ ବର୍ଷର ଶିକ୍ଷା ମଧ୍ୟ ଉତ୍କୃଷ୍ଟ ଫଳ ଦେଇପାରେ । ପିଲାଦିନରୁ ଦ୍ୱିତୀୟ ଭାଷା ସହ ପରିଚିତ ହେବା ସପକ୍ଷରେ ଯୁକ୍ତି ଦର୍ଶାଯାଇପାରେ ମାତ୍ର କୋଟି କୋଟି ପିଲାଙ୍କ ପାଇଁ ଯୋଗ୍ୟ ଓ ଦକ୍ଷ ଶିକ୍ଷକ ଯୋଗାଇ ଦେବା ନିଶ୍ଚିତ ଏକ କଷ୍ଟକର ବ୍ୟାପାର ।

(୪) ତିନିଗୋଟି ଭାଷାକୁ ବାଧ୍ୟତାମୂଳକ କରିବାପାଇଁ ଉପଯୁକ୍ତ ସ୍ତର ହେଉଛି ଅଷ୍ଟମରୁ ଦଶମ ଶ୍ରେଣୀ । ଏହି ସ୍ତରରେ ଛାତ୍ରମାନଙ୍କ ସଂଖ୍ୟା ଅପେକ୍ଷାକୃତ କମ୍, ତେଣୁ ଯୋଗ୍ୟ ଶିକ୍ଷକ ଓ ଉପଯୁକ୍ତ ପାଠ୍ୟୋପକରଣ ଯୋଗାଇ ଦେବାରେ ଅସୁବିଧା ହୋଇ ନ ପାରେ । ଗୋଟିଏ ଅତିରିକ୍ତ ଭାଷା ଉଚ୍ଚ ପ୍ରାଥମିକ ଶ୍ରେଣୀରେ ଓ ଅନ୍ୟଟି ନିମ୍ନମାଧ୍ୟମିକ ଶ୍ରେଣୀରେ ପ୍ରଚଳନ କରାଗଲେ ଜଣେ ଛାତ୍ର ଦ୍ୱିତୀୟ ଭାଷା ଶିକ୍ଷା କରିବା ପୂର୍ବରୁ ପ୍ରଥମ ଭାଷାଟି କେତେକାଂଶରେ ଆୟତ୍ତ କରିପାରିଥିବ । ଗୋଟିଏ ଭାଷାରେ ବ୍ୟାବହାରିକ ଜ୍ଞାନ ଲାଭ କରିବାପାଇଁ ତିନିବର୍ଷର ବାଧ୍ୟତାମୂଳକ ପାଠ୍ୟକ୍ରମ ଯଥେଷ୍ଟ ।

(୫) କେଉଁ ସ୍ତରରୁ ହିନ୍ଦୀ ବା ଇଂରାଜୀ ଦ୍ୱିତୀୟ ଭାଷା ରୂପେ ପ୍ରଚଳନ କରାଯିବ ତାହା ସ୍ଥାନୀୟ ଆଗ୍ରହ ଓ ଆବଶ୍ୟକତା ଉପରେ ନିର୍ଭର କରେ । ତେଣୁ ଏ ପ୍ରଶ୍ନର ବିଚାର ସମ୍ପୂର୍ଣ୍ଣ ଭାବରେ ରାଜ୍ୟ ସରକାରମାନଙ୍କ ଉପରେ ଛାଡ଼ି ଦିଆଯିବା ଉଚିତ ।

(୬) କୌଣସି ସ୍ତରରେ ଚାରିଗୋଟି ଭାଷାର ଶିକ୍ଷା ବାଧ୍ୟତାମୂଳକ ହେବା ଉଚିତ ନୁହେଁ ; ମାତ୍ର ଜଣେ ସ୍ୱଇଚ୍ଛାରେ ଚାରି ବା ପାଞ୍ଚଗୋଟି ଭାଷା ଶିକ୍ଷା କରିବାକୁ ଚାହିଁଲେ ସେଥିପାଇଁ ସୁବିଧା ସୁଯୋଗ ଦିଆଯିବା ଉଚିତ ।

## ପରିମାର୍ଜିତ ଭାଷାସୂତ୍ର

ତେଣୁ କୋଠାରି କମିଶନଙ୍କ ପରିମାର୍ଜିତ ଭାଷାସୂତ୍ରରେ (୧) ମାତୃଭାଷା ବା ଆଞ୍ଚଳିକ ଭାଷା (୨) ରାଷ୍ଟ୍ରର ସରକାରୀ ଭାଷା ବା ସହଯୋଗୀ ସରକାରୀ ଭାଷା (୩) ଶିକ୍ଷାର ମାଧ୍ୟମ ହୋଇ ନ ଥିବା ଏବଂ ୧ ନମ୍ବର ୨ ର ପରିସରଭୁକ୍ତ ହୋଇ ନ ଥିବା ଏକ ଆଧୁନିକ ଭାରତୀୟ ଭାଷା ବା ବିଦେଶୀ ଭାଷା—ଅନ୍ତର୍ଭୁକ୍ତ ହେବା ବାଞ୍ଛନୀୟ ।

କୋଠାରି କମିଶନ ମଧ୍ୟ ଏହି ପରିମାର୍ଜିତ ସୂତ୍ରର ଅନ୍ତର୍ନିହିତ ଅର୍ଥ ସ୍ପଷ୍ଟ କରି ଦେଇଅଛନ୍ତି । ନିମ୍ନ ପ୍ରାଥମିକ ସ୍ତରରେ ଗୋଟିଏ ମାତ୍ର ଭାଷା ଶିକ୍ଷା ଦିଆଯିବା ଉଚିତ । ତାହା ହେଉଛି ମାତୃଭାଷା ବା ଆଞ୍ଚଳିକ ଭାଷା । ଦେଶର ଅଧିକାଂଶ ଲୋକଙ୍କପାଇଁ ଆଞ୍ଚଳିକ ଭାଷାହିଁ ମାତୃଭାଷା । ଏହା ବ୍ୟତୀତ ସଂଖ୍ୟାଲଘୁ ଭାଷାଭାଷୀମାନଙ୍କ ମଧ୍ୟରୁ ଅନେକ ସ୍ୱଇଚ୍ଛାରେ ଆଞ୍ଚଳିକ ଭାଷା ପଢ଼ିବାକୁ ଗ୍ରହି ପାରନ୍ତି; କିନ୍ତୁ ଏଥିପାଇଁ ସେମାନଙ୍କୁ ବାଧ୍ୟ କରାଯାଇ ପାରିବ ନାହିଁ, କାରଣ ସାମ୍ବିଧାନିକ ବ୍ୟବସ୍ଥା ଅନୁସାରେ ସଂଖ୍ୟାଲଘୁ ଭାଷାଭାଷୀଙ୍କର ମାତୃଭାଷାରେ ପ୍ରାଥମିକ ଶିକ୍ଷା ପାଇବାର ଅଧିକାର ଅଛି । ରାଜ୍ୟ ସରକାରମାନେ ଏହି ସୁବିଧା ସୁଯୋଗ ଦେବା ଆବଶ୍ୟକ । କିନ୍ତୁ ୧୯୪୯ ମସିହାରେ ଶିକ୍ଷାମନ୍ତ୍ରୀମାନଙ୍କର ବୈଠକରେ ଗୃହୀତ ସର୍ତ୍ତ ଅନୁସାରେ କେବଳ ଏହି ସୁବିଧାର ବ୍ୟବସ୍ଥା କରାଯାଇପାରେ । ସେହି ସର୍ତ୍ତ ହେଲା – ଗୋଟିଏ ଶ୍ରେଣୀରେ ୪୦ ଜଣ ପିଲାଙ୍କ ମଧ୍ୟରୁ ୧୦ ଜଣ ସଂଖ୍ୟାଲଘୁ ଭାଷାଭାଷୀ ଯଦି ସେମାନଙ୍କର ମାତୃଭାଷାରେ ପଢ଼ିବାକୁ ଚାହାନ୍ତି, ତାହାହେଲେ ସେମାନଙ୍କୁ ସେମାନଙ୍କର ମାତୃଭାଷାରେ ପଢ଼ିବାକୁ ସୁଯୋଗ ଦିଆଯିବ ।

ଉଚ୍ଚ ପ୍ରାଥମିକ ସ୍ତରରେ ଦୁଇଟି ଭାଷା ବାଧ୍ୟତାମୂଳକ ଭାବରେ ଶିକ୍ଷା ଦିଆଯିବା ଉଚିତ । ଗୋଟିଏ ହେଲା ମାତୃଭାଷା ବା ଆଞ୍ଚଳିକ ଭାଷା, ଅନ୍ୟଟି ହେଲା ରାଷ୍ଟ୍ରର ସରକାରୀ ବା ସହଯୋଗୀ-ସରକାରୀ ଭାଷା । ପ୍ରାୟ ସମସ୍ତ ହିନ୍ଦୀ ଭାଷାଭାଷୀ ଅଞ୍ଚଳରେ ଏବଂ ଅଧିକାଂଶ ଅଣହିନ୍ଦୀ ଅଞ୍ଚଳରେ ଇଂରାଜୀ ଦ୍ୱିତୀୟ ଭାଷାର ସ୍ଥାନ ଅଧିକାର କରିବ । କେତେକ ଅଣହିନ୍ଦୀ ଅଞ୍ଚଳରେ ହିନ୍ଦୀକୁ ଦ୍ୱିତୀୟ ଭାଷାରୂପେ ପଢ଼ିବାକୁ ମଧ୍ୟ ଲୋକମାନେ ଚାହିଁପାରନ୍ତି । ଏହା ବ୍ୟତୀତ ଯେଉଁମାନେ ଚାହାଁନ୍ତି ସେମାନଙ୍କ ପାଇଁ ଏହି ସ୍ତରରେ ତୃତୀୟ ଭାଷା ଏକ ଇଚ୍ଛାଧୀନ ବିଷୟରୂପେ ଶିକ୍ଷା ଦିଆଯାଇପାରେ ।

ନିମ୍ନମାଧ୍ୟମିକ ସ୍ତରରେ (୮ମ ରୁ ୧୦ମ ଶ୍ରେଣୀ) ତିନୋଟି ଭାଷା ବାଧ୍ୟତାମୂଳକ ହେବା ବାଞ୍ଛନୀୟ । ଛାତ୍ରମାନେ ସରକାରୀ ଓ ସହଯୋଗୀ-ସରକାରୀ ଭାଷା ମଧ୍ୟରୁ ଯେଉଁଟି ପ୍ରାଥମିକ ସ୍ତରରେ ଶିକ୍ଷା କରି ନ ଥିବେ ତାହା ଏଠାରେ ଶିକ୍ଷା କରିବା ଉଚିତ । ଅଧିକାଂଶ କ୍ଷେତ୍ରରେ ହିନ୍ଦୀ ଅଞ୍ଚଳର ପିଲାମାନେ ହିନ୍ଦୀ, ଇଂରାଜୀ ଓ ଗୋଟିଏ ଆଧୁନିକ ଭାରତୀୟ ଭାଷା ଏବଂ ଅଣହିନ୍ଦୀ ଅଞ୍ଚଳର ପିଲାମାନେ ଆଞ୍ଚଳିକ ଭାଷା, ହିନ୍ଦୀ ଓ ଇଂରାଜୀ ପଢ଼ିବେ । ହିନ୍ଦୀ ଅଞ୍ଚଳରେ ଆଉ ଗୋଟିଏ ଆଧୁନିକ ଭାରତୀୟ ଭାଷା ପଢ଼ିବାକୁ ଆଗ୍ରହ

ସୃଷ୍ଟି କରାଯିବା ଉଚିତ, ବିଶେଷତଃ ସେହି ଅଞ୍ଚଳର ସୀମାନ୍ତବର୍ତ୍ତୀ ଅଞ୍ଚଳରେ ପ୍ରଚଳିତ ଅନ୍ୟ ଭାରତୀୟ ଭାଷା ତୃତୀୟ ଭାଷାରୂପେ ବଚ୍ଛାଯାଇପାରେ । ୬୪ ପୃଷ୍ଠାରେ ପ୍ରଦତ୍ତ ଚିତ୍ରଟି ପରିମାଣିତ ତ୍ରିଭାଷା ସୂତ୍ରରେ ସ୍ପଷ୍ଟ ଧାରଣା ଦିଏ । କୋଠାରି କମିଶନଙ୍କ ମତରେ କେତେକ ବଡ଼ ବଡ଼ ବିଦ୍ୟାଳୟରେ ଜର୍ମାନ, ଫ୍ରେଞ୍ଚ, ସ୍ପେନିସ୍, ରୁଷିଆନ, ଚାଇନିଜ୍, ଜାପାନିଜ ପ୍ରଭୃତି କେତେକ ବିଶିଷ୍ଟ ଭାଷା ଶିକ୍ଷା ଦିଆଯିବାର ବ୍ୟବସ୍ଥା ହେବା ଉଚିତ ଏବଂ ଛାତ୍ରମାନେ ଏହି ଭାଷା ଏକ ଅତିରିକ୍ତ ଭାଷାରୂପେ ବା ହିନ୍ଦୀ କିମ୍ବା ଇଂରାଜୀ ପରିବର୍ତ୍ତେ ପଢ଼ିବା ଉଚିତ । ଉଚ୍ଚତର ମାଧ୍ୟମିକ ସ୍ତରରେ ମାତ୍ର ଦୁଇଟି ଭାଷା ବାଧ୍ୟତାମୂଳକ ହେବା ଦରକାର । ଉଚ୍ଚଶିକ୍ଷା କ୍ଷେତ୍ରରେ ଭାଷାଅଧ୍ୟୟନ ବାଧ୍ୟତାମୂଳକ ହେବା ଉଚିତ ନୁହେଁ ।

ଅଧିକାଂଶ ସ୍ଥଳରେ ଛାତ୍ରମାନେ ତିନିଗୋଟି ଭାଷା ଅଧ୍ୟୟନ କରିବା ଫଳରେ ଯେତେ ହଇରାଣ ହେଉଅଛନ୍ତି ତାହାଠାରୁ ଅଧିକ ହଇରାଣ ହେଉଅଛନ୍ତି, ତିନିଗୋଟି ଲିପିର ଅଧ୍ୟୟନ ହେତୁ । ଏହି ସମସ୍ୟା ଏବଂ ଏଥି ସହିତ ସଂପୃକ୍ତ ଅନ୍ୟାନ୍ୟ ସମସ୍ୟା-ଗୁଡ଼ିକର ସମାଧାନ ସହଜ ହୋଇପାରିବ । ଯଦି ସମସ୍ତ ଆଧୁନିକ ଭାରତୀୟ ଭାଷା ପାଇଁ କେବଳ ଗୋଟିଏ ମାତ୍ର ଲିପିର ପ୍ରଚଳନ କରାଯାଇପାରେ, ତାହା ହୁଏତ ରୋମାନ କିମ୍ବା ଦେବନାଗରୀ ଲିପି ହୋଇପାରେ । ଦୁର୍ଭାଗ୍ୟବଶତଃ ଏହି ପ୍ରଶ୍ନ ଉପରେ କୌଣସି ମତୈକ୍ୟ ନାହିଁ । ତଥାପି ଯଦି ଏହି ଦୁଇ ଲିପିରେ ବିଭିନ୍ନ ଆଧୁନିକ ଭାରତୀୟ ଭାଷାର କେତେକ ଛୋଟ ପୁସ୍ତିକାର ମୁଦ୍ରଣ ଆରମ୍ଭ କରି ଦିଆଯାଏ, ତେବେ କ୍ରମେ ଭାଷା ସମସ୍ୟାର ସମାଧାନ ସହଜ ହୋଇପାରିବ । ଯେଉଁ ବିଦ୍ୟାଳୟଗୁଡ଼ିକରେ ଆଧୁନିକ ଭାରତୀୟ ଭାଷାର ତୃତୀୟ ଭାଷାରୂପେ ଶିକ୍ଷା ଦିଆଯିବ ସେଠାରେ ଏହି ବ୍ୟବସ୍ଥା ପ୍ରଥମେ ଆରମ୍ଭ କରାଯାଇପାରେ । ଏହାଦ୍ୱାରା ହିନ୍ଦୀ ଅଞ୍ଚଳର ପିଲାମାନେ ଓଡ଼ିଆ, ବଙ୍ଗଳା, ତାମିଲ ପ୍ରଭୃତି ଭାଷାକୁ ଦେବନାଗରୀ ବା ରୋମାନ ଲିପିରେ ଏବଂ ଅଣହିନ୍ଦୀ ଅଞ୍ଚଳର ପିଲାମାନେ ହିନ୍ଦୀ ଭାଷା ରୋମାନ ଲିପିରେ ବା ସେମାନଙ୍କର ମାତୃଭାଷାର ଲିପିରେ ପଢ଼ିପାରିବେ । ଭାଷାଟି କେତେକାଂଶରେ ଆୟତ୍ତ କଲାପରେ ଓ ଏଥିପାଇଁ ଆଗ୍ରହାନ୍ୱିତ ହେବା ପରେ ପିଲାକୁ ଭାଷାଟିର ପ୍ରକୃତ ଲିପି ଶିକ୍ଷା ଦିଆଯାଇପାରେ ।

ଜାତୀୟ ଶିକ୍ଷା ଜୀବନରେ ପ୍ରାଚୀନ ଭାଷାଗୁଡ଼ିକର ବିଶେଷତଃ ସଂସ୍କୃତର ଏକ ସ୍ୱତନ୍ତ୍ର ମର୍ଯ୍ୟାଦା ଥିଲେ ମଧ୍ୟ ଏହାକୁ ତ୍ରିଭାଷା-ସୂତ୍ରର ଅନ୍ତର୍ଭୁକ୍ତ କରାଯିବା ଉଚିତ ନୁହେଁ । କୋଠାରି କମିଶନଙ୍କର ମତ ଯେ ତ୍ରିଭାଷା ସୂତ୍ରର ବ୍ୟାପକତା କେବଳ ଆଧୁନିକ ଭାରତୀୟ ଭାଷାରେ ସୀମାବଦ୍ଧ ହେବା ଉଚିତ । ହୁଏତ ମାତୃଭାଷା ଓ ସଂସ୍କୃତ ପାଇଁ ଏକ ମିଳିତ ପାଠ୍ୟକ୍ରମ ରଖାଯାଇପାରେ; ମାତ୍ର ଏହି ପ୍ରସ୍ତାବ ବିଶେଷ ଲୋକପ୍ରିୟ ହୋଇ ନ ପାରେ । ତେଣୁ ଅଷ୍ଟମ ଶ୍ରେଣୀରୁ ବିଦ୍ୟାଳୟ ପାଠ୍ୟକ୍ରମରେ ପ୍ରାଚୀନ ଭାଷାଗୁଡ଼ିକ ଇଚ୍ଛାଧୀନ ବିଷୟ ରୂପେ ରଖାଯିବାର ବ୍ୟବସ୍ଥା କରାଯାଇପାରେ । କୋଠାରି କମିଶନ ମଧ୍ୟ ନୂଆ ସଂସ୍କୃତ ବିଶ୍ୱବିଦ୍ୟାଳୟ ସ୍ଥାପନାର ଆଦୌ ପକ୍ଷପାତୀ ନୁହଁନ୍ତି ।

## ପ୍ରଶ୍ନାବଳୀ

୧ । "ଜଣେ ଭାରତୀୟ ପିଲା ପ୍ରାଥମିକ ଶିକ୍ଷା ସ୍ତରରେ ବିଭିନ୍ନ ଭାଷା ଶିକ୍ଷା କରିବା ଦ୍ୱାରା ଯେଉଁ ଗୁରୁଭାର ବହନ କରେ ତାହା ପୃଥିବୀର ଅଧିକାଂଶ ଉନ୍ନତ ରାଷ୍ଟ୍ରରେ ମଧ୍ୟ ଦେଖାଯାଏ ନାହିଁ ।" ଉଦାହରଣ ସହ ଏହି ଉକ୍ତିର ଯଥାର୍ଥତା ପ୍ରତିପାଦନ କର ।

୨ । 'ତ୍ରିଭାଷା ସୂତ୍ର' କଣ ? କେଉଁ କେଉଁ କାରଣରୁ ଏହି ସୂତ୍ରର ସଫଳ କାର୍ଯ୍ୟକାରିତା ସମ୍ଭବପର ହୋଇପାରିଲା ନାହିଁ ।

୩ । କୋଠାରୀ କମିଶନଙ୍କର ପରିମାର୍ଜିତ ଭାଷାସୂତ୍ର କ'ଣ ଓ ଏହା କେଉଁ କେଉଁ ନୀତି ଉପରେ ପର୍ଯ୍ୟବେସିତ ?

୪ । ଶିକ୍ଷାର ବିଭିନ୍ନ ସ୍ତରରେ କେଉଁ କେଉଁ ଭାଷା ପ୍ରଚଳିତ ହେବା ଆବଶ୍ୟକ ? ଭାଷା ସମସ୍ୟାର ସମାଧାନ ପାଇଁ ଆଉ କି ଉପାୟ ସହଜରେ ଅବଲମ୍ବନ କରାଯାଇପାରେ?

---

# ପଞ୍ଚମ ଅଧ୍ୟାୟ

## ନାରୀ ଶିକ୍ଷା

ଅନେକଙ୍କ ମତ ଯେ ଶିକ୍ଷା କ୍ଷେତ୍ରରେ ନାରୀଶିକ୍ଷା ଏବେ ଆଉ ଏକ ସମସ୍ୟା ନୁହେଁ, କେବଳ ନାରୀ ଶିକ୍ଷାର କେତେକ ଦିଗପ୍ରତି ସ୍ୱତନ୍ତ୍ର ଧ୍ୟାନ ଦିଆଯିବା ଉଚିତ । ଆମର ଜନଶକ୍ତିର ପୂର୍ଣ୍ଣ ବିକାଶ ପାଇଁ ତଥା ଶୈଶବ ଅବସ୍ଥାରେ ଶିଶୁର ଦେହ, ମନ ଓ ଚରିତ୍ରର ଉପଯୁକ୍ତ ଗଠନ ପାଇଁ ନାରୀ ଶିକ୍ଷାର ଆବଶ୍ୟକତା ଯେ ଅତ୍ୟଧିକ, ଏଥିରେ କେହି ଦ୍ୱିମତ ନୁହଁନ୍ତି । ଆଜି ବିଶ୍ୱବିଦ୍ୟାଳୟଗୁଡ଼ିକର କୃଷି, ଡାକ୍ତରୀ, ପଶୁଚିକିତ୍ସା ଯାନ୍ତ୍ରିକ ବିଦ୍ୟା, ବାଣିଜ୍ୟ, ଆଇନ, କଳା, ବିଜ୍ଞାନ, ଶିକ୍ଷକ ପ୍ରଶିକ୍ଷଣ ଇତ୍ୟାଦି ପ୍ରତ୍ୟେକ ବିଭାଗରେ ଝିଅମାନେ ପାଠ ପଢ଼ୁଅଛନ୍ତି । ଏହା ଏକ ଉଲ୍ଲେଖନୀୟ ଅଗ୍ରଗତିର ସୂଚନା । ମାତ୍ର କେତେବର୍ଷ ପୂର୍ବରୁ ସାଧାରଣ ଶିକ୍ଷା କ୍ଷେତ୍ରରେ ମଧ୍ୟ ବାଳିକାମାନଙ୍କର ସଂଖ୍ୟା ବାଳକମାନଙ୍କଠାରୁ ଏତେ କମ୍ ଥିଲା ଯେ ଏହି ତାରତମ୍ୟର ଦୂରୀକରଣ ଏକ ପ୍ରଧାନ ସମସ୍ୟାରୂପେ ଦେଖା ଦେଇଥିଲା । ଆଜି ଯେ ସେହି ସମସ୍ୟା ନାହିଁ, ତାହା ନୁହେଁ, ମାତ୍ର ଶିକ୍ଷା କ୍ଷେତ୍ରରେ ବାଳକ ବାଳିକାଙ୍କର ସଂଖ୍ୟାର ତାରତମ୍ୟ ଯେପରି ଦ୍ରୁତ ଗତିରେ ହ୍ରାସ ପାଉଅଛି ତାହା ଆଗାମୀ କେତେବର୍ଷ ମଧ୍ୟରେ ସଂପୂର୍ଣ୍ଣ ଦୂରୀଭୂତ ହୋଇଯିବାର ଆଶା କରାଯାଏ ।

### ନାରୀ ଶିକ୍ଷାର ଦ୍ରୁତ ପ୍ରସାରଣ

ଏହି ଶତାବ୍ଦୀର ପ୍ରାରମ୍ଭରେ ଅର୍ଥାତ ୧୯୦୧ ମସିହାରେ ଆମ ଦେଶରେ ସ୍ତ୍ରୀମାନଙ୍କ ମଧ୍ୟରେ ଯେତେ ସାକ୍ଷର ଥିଲେ ତାହା ଲୋକ ସଂଖ୍ୟାର ମାତ୍ର ଶତକଡ଼ା ୦·୮ ଜଣ । ସେତେବେଳେ ପ୍ରାଥମିକ ଶିକ୍ଷା ପାଉଥିବା ପ୍ରତି ୧୦୦ ଜଣ ବାଳକଙ୍କ ସ୍ଥଳେ ବାଳିକାଙ୍କ ସଂଖ୍ୟା ଥିଲା ମାତ୍ର ୧୨ । ସେହିପରି ମାଧ୍ୟମିକ ଶିକ୍ଷା କ୍ଷେତ୍ରରେ ପ୍ରତି ୧୦୦ ଜଣ

ବାଳକରେ ମାତ୍ର ୪ ଜଣ ବାଳିକା ପାଠ ପଢ଼ୁଥିଲେ । ସେହି ବର୍ଷ ମାତ୍ର ୨୬୪ ଜଣ ସ୍ତ୍ରୀ ଉଚ୍ଚଶିକ୍ଷା ପାଉଥିଲେ । ନିମ୍ନପ୍ରାଥମିକ ସ୍ତରରେ ପ୍ରତି ଏକ ଶହ ବାଳକରେ ବାଳିକାଙ୍କ ସଂଖ୍ୟା ୧୯୦୧ ମସିହାରେ ୧୨ରୁ ୧୯୫୦ ମସିହାରେ ୩୯କୁ ଏବଂ ୧୯୬୫ରେ ୫୫କୁ ବୃଦ୍ଧି ହୋଇଅଛି । ସେହିପରି ମାଧ୍ୟମିକ ସ୍ତରରେ ବାଳିକାମାନଙ୍କ ସଂଖ୍ୟା ୧୯୦୧ ମସିହାରେ ୪ରୁ ୧୯୫୦ରେ ୧୫କୁ ଏବଂ ୧୯୬୫ରେ ୨୬କୁ ବୃଦ୍ଧି ହୋଇଅଛି । ଉଚ୍ଚଶିକ୍ଷା କ୍ଷେତ୍ରରେ ସ୍ତ୍ରୀମାନଙ୍କ ସଂଖ୍ୟା ୧୯୦୧ ମସିହାରେ ମାତ୍ର ୨୬୪ ଜଣ ଥିବାସ୍ଥଳେ ୧୯୫୦ ମସିହାରେ ସେମାନଙ୍କ ସଂଖ୍ୟା ୪୦,୦୦୦ ଓ ୧୯୬୫ରେ ୨୪୦,୦୦୦ ଥିଲା । ବିଗତ କେତେବର୍ଷ ମଧ୍ୟରେ ନାରୀଶିକ୍ଷା ଯେ ଦ୍ରୁତ ଗତିରେ ପ୍ରସାରିତ ହୋଇଅଛି ଏଥିରେ ସନ୍ଦେହ ନାହିଁ; ଏପରିକି ଏହି ପ୍ରସାରଣର ବେଗ ବାଳକମାନଙ୍କ ଶିକ୍ଷା ପ୍ରସାରଣର ବେଗଠାରୁ ଦ୍ରୁତତର ହୋଇଅଛି ।

## ସାମ୍ବିଧାନିକ ନିର୍ଦ୍ଦେଶନାମା ଓ ନାରୀଶିକ୍ଷା

ପ୍ରଥମ ତିନିଗୋଟି ଯୋଜନା କାଳରେ ନିମ୍ନପ୍ରାଥମିକ ସ୍ତର (୧ମ ଶ୍ରେଣୀରୁ ୪ର୍ଥ ଶ୍ରେଣୀ) ରେ ପାଠ ପଢ଼ୁଥିବା ପିଲାମାନଙ୍କ ସଂଖ୍ୟା ଅତି ଦ୍ରୁତଗତିରେ ବୃଦ୍ଧି ପାଇଅଛି । ଏହି ସ୍ତରରେ ୧୯୫୦-୫୧ ମସିହାରେ ନାମ ଲେଖାଇଥିବା ଛାତ୍ରସଂଖ୍ୟା ୧୪ ନିୟୁତରୁ ୧୯୬୫-୬୬ ମସିହାରେ ୩୬ ନିୟୁତକୁ ବୃଦ୍ଧି ପାଇଅଛି । ଆଶା କରାଯାଏ ଏହି ସଂଖ୍ୟା ୧୯୬୫-୬୬ ମସିହାରେ ୬୨ ନିୟୁତ ହୋଇ ୧୯୮୦-୮୧ ମସିହାରେ ୮୦ ନିୟୁତରେ ପହଞ୍ଚିବ । ଆଶା କରାଯାଏ ଜନ୍ମହାର ହ୍ରାସ ଫଳରେ ଏହି ସ୍ତରରେ ପିଲାମାନଙ୍କର ସଂଖ୍ୟା ୧୯୮୫-୮୬ ମସିହା ବେଳକୁ ୭୨ ନିୟୁତ ହୋଇପାରେ; କିନ୍ତୁ ସମ୍ବିଧାନର ନିର୍ଦ୍ଦେଶନାମା କାର୍ଯ୍ୟକାରୀ ହେବାରେ ନାରୀଶିକ୍ଷା ଯେ ଅନ୍ତରାୟ ହେଉଛି ଏଥିରେ ସନ୍ଦେହ ନାହିଁ । କାରଣ ନିମ୍ନପ୍ରାଥମିକ ସ୍ତରରେ ପ୍ରତି ୧୦୦ ଜଣ ବାଳକଙ୍କ ସ୍ଥଳେ ପ୍ରାୟ ୫୦ ଜଣ ମାତ୍ର ବାଳିକା ପଢ଼ୁଥିବା ସ୍ଥଳେ ଉଚ୍ଚପ୍ରାଥମିକ ଶ୍ରେଣୀରେ ପ୍ରତି ୧୦୦ ଜଣ ବାଳକରେ ୪୦ ଜଣ ବାଳିକା ପାଠ ପଢ଼ୁଅଛନ୍ତି । ତେଣୁ ବାଧ୍ୟତାମୂଳକ ଅବୈତନିକ ପ୍ରାଥମିକ ଶିକ୍ଷା ବ୍ୟବସ୍ଥା ଯାହାକି ସମ୍ବିଧାନର ଏକ ନିର୍ଦ୍ଦେଶନାମା ତାହା କାର୍ଯ୍ୟକାରୀ କରିବାରେ ନାରୀଶିକ୍ଷା ହିଁ ପ୍ରତିବନ୍ଧକ ସୃଷ୍ଟି କରୁଅଛି । ପ୍ରାଥମିକ ଶିକ୍ଷାର ସମସ୍ୟା ପ୍ରସଙ୍ଗରେ ପୂର୍ବ ଅଧ୍ୟାୟରେ ଏହି ସମସ୍ୟାର ସମାଧାନର ଉପାୟ ଆଲୋଚିତ ହୋଇଅଛି ।

## ନାରୀଶିକ୍ଷାର ଅଗ୍ରଗତି ପାଇଁ ଆବଶ୍ୟକ ବ୍ୟବସ୍ଥା

ବର୍ତ୍ତମାନ ପ୍ରକୃତ ସମସ୍ୟା ହେଉଛି, ବାଳକ ଏବଂ ବାଳିକାମାନଙ୍କ ମଧ୍ୟରେ ଶିକ୍ଷା କ୍ଷେତ୍ରରେ ଯେଉଁ ସଂଖ୍ୟାଗତ ପାର୍ଥକ୍ୟ ଅଛି ତାହାକୁ ଦୂରକରିବା ପାଇଁ ଆବଶ୍ୟକ ବ୍ୟବସ୍ଥା ଗ୍ରହଣ କରିବା । ଏହି ସନ୍ଦର୍ଭରେ ନାରୀଶିକ୍ଷା ପାଇଁ ଗଠିତ ହୋଇଥିବା ଜାତୀୟ ସମିତିର

ସୁପାରିଶଗୁଡ଼ିକ ପ୍ରଣିଧାନଯୋଗ୍ୟ । ଏହି ସୁପାରିଶଗୁଡ଼ିକ କୋଠାରୀ କମିଶନଙ୍କ ଦ୍ଵାରା ସମ୍ପୂର୍ଣ୍ଣ ଅନୁମୋଦିତ ହୋଇଅଛି । ନାରୀଶିକ୍ଷାର ଅଗ୍ରଗତି ପାଇଁ ମୁଖ୍ୟତଃ ଦୁଇପ୍ରକାର ବ୍ୟବସ୍ଥା ଗ୍ରହଣ କରାଯିବା ଉଚିତ । ପ୍ରଥମଟି ହେଲା ନାରୀଶିକ୍ଷା ଜାତୀୟ ସମିତି ଦ୍ଵାରା ସୁପାରିଶ କରାଯାଇଥିବା ବିଶେଷ ବ୍ୟବସ୍ଥା ଏବଂ ଦ୍ଵିତୀୟଟି ହେଲା ସବୁ ସ୍ତରରେ ଓ ସବୁ ଦିଗରେ ଶିକ୍ଷାର ଉନ୍ନତି ଓ ପ୍ରସାରଣ ଲାଗି ହେଉଥିବା କାର୍ଯ୍ୟକ୍ରମଗୁଡ଼ିକ ମଧ୍ୟରେ ନାରୀଶିକ୍ଷାର ଅପରିହାର୍ଯ୍ୟତା ପ୍ରତି ଦୃଷ୍ଟିଦେବା ।

ପ୍ରଥମ ବ୍ୟବସ୍ଥା ଅନୁସାରେ ଆଗାମୀ କେତେବର୍ଷ ପାଇଁ ବାଳିକାମାନଙ୍କର ଶିକ୍ଷା ବ୍ୟବସ୍ଥା ଏକ ମୁଖ୍ୟ କାର୍ଯ୍ୟକ୍ରମରୂପେ ଗୃହୀତ ହେବା ଆବଶ୍ୟକ । ଶିକ୍ଷାକ୍ଷେତ୍ରରେ ବାଳକ ଓ ବାଳିକା ମଧ୍ୟରେ ଥିବା ସଂଖ୍ୟାଗତ ତାରତମ୍ୟ ଦୂର କରିବାକୁ ଏକ ଦୃଢ଼ ପଦକ୍ଷେପ ନିଆଯିବା ଦରକାର । ଏହି ତାରତମ୍ୟ ଯେତେଶୀଘ୍ର ସମ୍ଭବ ଦୂର କରାଯିବା ଉଚିତ । କେନ୍ଦ୍ର ଓ ରାଜ୍ୟ ଉଭୟ ସ୍ତରରେ ନାରୀଶିକ୍ଷାର ତତ୍ତ୍ଵାବଧାନ କରିବାପାଇଁ ଏକ ସ୍ଵତନ୍ତ୍ର ସଂସ୍ଥା ପ୍ରତିଷ୍ଠିତ ହେବା ଉଚିତ । ଏହି ସଂସ୍ଥା ଉଭୟ ସରକାରୀ ଓ ବେସରକାରୀ କ୍ଷମତାପ୍ରାପ୍ତ ବ୍ୟକ୍ତିମାନଙ୍କୁ ଏକତ୍ର କରାଇ ନାରୀଶିକ୍ଷା ପାଇଁ ଉପଯୁକ୍ତ ଯୋଜନା ପ୍ରଣୟନ କରିବା ସଙ୍ଗେ ସଙ୍ଗେ ତାହା କାର୍ଯ୍ୟକାରୀ କରାଇବା ପାଇଁ ଉପଯୁକ୍ତ ପଦକ୍ଷେପମାନ ନେବା ବାଞ୍ଛନୀୟ ।

ଦ୍ଵିତୀୟ ବ୍ୟବସ୍ଥା ଅନୁସାରେ ଶିକ୍ଷାକ୍ଷେତ୍ରରେ ସବୁ ସ୍ତରର ସଂପ୍ରସାରଣ କାର୍ଯ୍ୟକ୍ରମରେ ନାରୀଶିକ୍ଷାର ଅପରିହାର୍ଯ୍ୟତା ପ୍ରତି ଦୃଷ୍ଟିଦେବା ବିଧେୟ । ଯଦି ପ୍ରକୃତରେ ଏହି ଦ୍ଵିତୀୟ ବ୍ୟବସ୍ଥାଟି ମୂଳରୁ କାର୍ଯ୍ୟକାରୀ ହୋଇଥାନ୍ତା, ତାହାହେଲେ ଆଜି ଆଉ ପ୍ରଥମ ବ୍ୟବସ୍ଥା ବା ବିଶେଷ ବ୍ୟବସ୍ଥା ଆବଶ୍ୟକ ହୋଇ ନ ଥାନ୍ତା । ଅବଶ୍ୟ ପ୍ରଥମ ବ୍ୟବସ୍ଥାଟି ଗୋଟିଏ ଅସ୍ଥାୟୀ ବ୍ୟବସ୍ଥା, କାରଣ ବାଳକ ଓ ବାଳିକାମାନଙ୍କ ମଧ୍ୟରେ ସଂଖ୍ୟାଗତ ପାର୍ଥକ୍ୟ ଦୂରହେବା ପରେ ଏହାର ଆଉ କୌଣସି ଗୁରୁତ୍ଵ ରହିବ ନାହିଁ । ତେଣୁ ଦ୍ଵିତୀୟ ବ୍ୟବସ୍ଥାଟି କାର୍ଯ୍ୟକାରୀ ହେବାପାଇଁ ବିଶେଷ ଧ୍ୟାନ ଦିଆଯିବା ଉଚିତ ।

## ଦେଶର ପୁନର୍ଗଠନରେ ନାରୀମାନଙ୍କର ଭୂମିକା

ଦେଶର ସାମାଜିକ ଓ ଅର୍ଥନୈତିକ ଜୀବନରେ ନାରୀମାନଙ୍କର ଏକ ଗୁରୁତ୍ଵପୂର୍ଣ୍ଣ ଭୂମିକା ରହିଅଛି ଏବଂ ଶିକ୍ଷିତା ନାରୀମାନଙ୍କର ସଂଖ୍ୟା ବୃଦ୍ଧି ଫଳରେ ଆଗାମୀ କେତେବର୍ଷ ମଧ୍ୟରେ ଏହାର ଗୁରୁତ୍ଵ ଅଧିକ ସୁସ୍ପଷ୍ଟ ହୋଇଯିବ । ତେଣୁ ନାରୀଶିକ୍ଷାର ପ୍ରସାର ସଙ୍ଗେ ସଙ୍ଗେ ପ୍ରଶିକ୍ଷଣ ଓ ନିଯୁକ୍ତି ବ୍ୟବସ୍ଥା ପ୍ରତି ମଧ୍ୟ ବିଶେଷ ଦୃଷ୍ଟି ଦିଆଯିବା ଆବଶ୍ୟକ । ହିସାବରୁ ଜଣାଯାଏ ଯେ, ଦେଶରେ ନିୟୁତାଧିକ ବିବାହିତା ଯୁବତୀ ଅଛନ୍ତି ଯେଉଁମାନଙ୍କର ବୟସ ୧୪ ବର୍ଷରୁ କମ୍ ଏବଂ ଯେଉଁମାନେ ଖୁବ୍ କମ୍‌ରେ ମାଟ୍ରିକ ପାଶ କରିଅଛନ୍ତି ।

କିନ୍ତୁ ଗୃହକାର୍ଯ୍ୟ ବ୍ୟତୀତ ଅନ୍ୟ କୌଣସି କାର୍ଯ୍ୟ କରୁନାହାଁନ୍ତି । ଜାତୀୟ ପୁନର୍ଗଠନ ଯୋଜନାରେ ଅଂଶ ଗ୍ରହଣ କରିବା ପାଇଁ ଏହି ମହିଳାମାନଙ୍କ ପାଇଁ ସାମୟିକ ନିଯୁକ୍ତିର ବ୍ୟବସ୍ଥା କରିବା ପ୍ରୟୋଜନ । ଆବଶ୍ୟକସ୍ଥଳେ ଏମାନେ ଅବୈତନିକ ଭାବରେ ଜାତି ଗଠନର କାର୍ଯ୍ୟକଳାପରେ ଲାଗନ୍ତେବା ଉଚିତ । ଏହା ବ୍ୟତୀତ ପୂର୍ଣ୍ଣ ସମୟ ପାଇଁ ଏମାନଙ୍କୁ ନିଯୁକ୍ତି ଦେବାର ବ୍ୟବସ୍ଥା ମଧ୍ୟ ପ୍ରସାରିତ ହେବା ଆବଶ୍ୟକ । ବିବାହ ବୟସ କ୍ରମଶଃ ବୃଦ୍ଧି ପାଉଥିବା ଦୃଷ୍ଟିରୁ ସମସ୍ତ ଅବିବାହିତା, ଶିକ୍ଷିତା ଯୁବତୀମାନଙ୍କ ପାଇଁ କର୍ମ-ସଂସ୍ଥାନର ବ୍ୟବସ୍ଥା କରିବା ଦରକାର । ଅନ୍ୟ ଦେଶଗୁଡ଼ିକ ପରି କ୍ରମେ ଏ ଦେଶର ସ୍ତ୍ରୀ ଲୋକମାନେ ମଧ୍ୟ ସେମାନଙ୍କର ସନ୍ତାନସନ୍ତତି ବିଦ୍ୟାଳୟରେ ଯୋଗଦେବା ବୟସର ହୋଇଗଲେ ଚାକିରି କରିବାକୁ ଚାହିଁପାରନ୍ତି । ଏଥିପାଇଁ ଉପଯୁକ୍ତ ବ୍ୟବସ୍ଥା କରାଯିବା ଆବଶ୍ୟକ । ଶିକ୍ଷୟିତ୍ରୀ, ଶୁଶ୍ରୂଷାକାରିଣୀ, ସମାଜ ସେବିକା ଆଦି କେତେକ କାର୍ଯ୍ୟରେ ସ୍ତ୍ରୀମାନେ ଫଳପ୍ରଦ ଭୂମିକା ଗ୍ରହଣ କରିବାକୁ ଯେ ସମର୍ଥ ହୋଇପାରିବେ ଏହା ଏକ ସ୍ୱୀକୃତ ଘଟଣା । ଅନ୍ୟାନ୍ୟ ସମସ୍ତ କ୍ଷେତ୍ରରେ ମଧ୍ୟ ନାରୀମାନଙ୍କ ପାଇଁ ନିଯୁକ୍ତିର ବ୍ୟବସ୍ଥା କରାଯିବା ଉଚିତ ।

### ସହ-ଶିକ୍ଷା

ନାରୀଶିକ୍ଷାର ସମସ୍ୟା ଆଲୋଚନା କଲାବେଳେ ସ୍ୱତଃ ସହ-ଶିକ୍ଷାର ପ୍ରଶ୍ନ ଉଠେ । ପ୍ରାଥମିକ ସ୍ତରରେ ଓ ବିଶ୍ୱବିଦ୍ୟାଳୟ ସ୍ତରରେ, ବିଶେଷତଃ ସ୍ନାତକୋତ୍ତର ଶ୍ରେଣୀରେ ସହଶିକ୍ଷା ପ୍ରଚଳନ କରାଯିବା ସପକ୍ଷରେ ପ୍ରାୟ ସମସ୍ତେ ଏକମତ । ମାତ୍ର ଅନେକଙ୍କର ମତ ଯେ ମାଧ୍ୟମିକ ଶିକ୍ଷା ପାଉଥିବା ଅବସ୍ଥାରେ ଅର୍ଥାତ୍ ଛାତ୍ରଛାତ୍ରୀମାନେ କୈଶୋରାବସ୍ଥାରେ ପୃଥକ୍ ପୃଥକ୍ ଭାବରେ ଶିକ୍ଷା ଲାଭ କରିବା ଉଚିତ । ଏହି ଅନୁସାରେ ଯଦି ଶିକ୍ଷାନୀତି ପରିଚାଳିତ ହୁଏ ତାହାହେଲେ ଆର୍ଥିକ ଅସୁବିଧା ହେତୁ ଏବଂ କେତେକ ପାଠ୍ୟ ବିଷୟରେ ଉପଯୁକ୍ତ ଶିକ୍ଷୟିତ୍ରୀଙ୍କର ଅଭାବ ଦୃଷ୍ଟିରୁ ହୁଏତ ଅନେକ ବାଳିକା ମାଧ୍ୟମିକ ଶିକ୍ଷାଲାଭ କରିବାକୁ ବଞ୍ଚିତ ହେବେ । ତେଣୁ ସହ-ଶିକ୍ଷା ପାଇଁ କୌଣସି ଧରାବନ୍ଧା ନୀତି ରହିବା ଉଚିତ ନୁହେଁ । ଯେଉଁଠାରେ ସମ୍ଭବ-ପର ସେଠାରେ ବାଳିକାମାନଙ୍କପାଇଁ ସ୍ୱତନ୍ତ୍ର ବିଦ୍ୟାଳୟ ସ୍ଥାପିତ ହେଲେ ସେମାନଙ୍କର ଶାରୀରିକ, ମାନସିକ ଓ ସାମାଜିକ ପ୍ରବୃତ୍ତି ସହଜରେ ପରିସ୍ଫୁଟ ହୋଇପାରିବ । କିନ୍ତୁ ଅଭିଭାବକମାନଙ୍କର କୌଣସି ଆପତ୍ତି ନ ଥିଲେ ବାଳିକାମାନଙ୍କୁ ବାଳକମାନଙ୍କ ସହ ଶିକ୍ଷାଲାଭ କରିବାର ସମ୍ପୂର୍ଣ୍ଣ ସୁଯୋଗ ଦିଆଯିବା ଉଚିତ । ମିଶ୍ରିତ ବିଦ୍ୟାଳୟଗୁଡ଼ିକରେ ବାଳିକାମାନଙ୍କପାଇଁ କେତେକ ସ୍ୱତନ୍ତ୍ର ସୁବିଧାର ବ୍ୟବସ୍ଥା କରାଯିବା ବାଞ୍ଛନୀୟ । ପ୍ରଥମତଃ ଏହିପ୍ରକାର ବିଦ୍ୟାଳୟଗୁଡ଼ିକରେ ଶିକ୍ଷକ ଓ ଶିକ୍ଷୟିତ୍ରୀ ଉଭୟ ଶିକ୍ଷାଦାନ ପାଇଁ ନିଯୁକ୍ତ ପାଇବା ଆବଶ୍ୟକ। ଦ୍ୱିତୀୟତଃ, ବାଳିକାମାନଙ୍କ ପାଇଁ ଆକର୍ଷଣୀୟ ବିଷୟ ଯଥା--ଗାର୍ହସ୍ଥ୍ୟ

ବିଜ୍ଞାନ, ସଙ୍ଗୀତ, ଚିତ୍ରାଙ୍କନ ଇତ୍ୟାଦିର ଶିକ୍ଷାଦାନ ବ୍ୟବସ୍ଥା ରହିବା ଉଚିତ । ଗ୍ରାମ୍ୟ ବିଦ୍ୟାଳୟଗୁଡ଼ିକରେ ଯେଉଁଠାରେ ସହ-ଶିକ୍ଷା ପ୍ରଚଳିତ, ମାତ୍ର ବାଳିକାମାନଙ୍କ ସଂଖ୍ୟା ଅତ୍ୟନ୍ତ କମ୍ ସେଠାରେ ଅନ୍ୟୂନ ଜଣେ ଶିକ୍ଷୟିତ୍ରୀ ନିଯୁକ୍ତ ହେବା ଉଚିତ, ଯେ କି ବାଳିକାମାନଙ୍କର ଅଭାବ, ଅସୁବିଧା ଓ ବ୍ୟକ୍ତିଗତ ବିଷୟଗୁଡ଼ିକ ପ୍ରତି ଧ୍ୟାନ ଦେଇପାରିବେ ।

ସ୍ଥାନୀୟ ଐତିହାସିକ ପରମ୍ପରା ଏବଂ ସାମାଜିକ ପୃଷ୍ଠଭୂମି ମହାବିଦ୍ୟାଳୟ ସ୍ତରରେ ସହ-ଶିକ୍ଷାର ପ୍ରଚଳନ ବ୍ୟବସ୍ଥାକୁ ପ୍ରଭାବିତ କରିଥାଏ । ତେଣୁ ଏହି ସ୍ତରରେ ମଧ୍ୟ ସହଶିକ୍ଷା ପାଇଁ କୌଣସି ଗୋଟିଏ ସାଧାରଣ ନୀତି ସାରା ଦେଶରେ ଅନୁସୃତ ହେବା ଅନାବଶ୍ୟକ । ମହାରାଷ୍ଟ୍ରରେ ବାଳିକାମାନେ ତଥା ସେମାନଙ୍କର ପିତାମାତା ମିଶ୍ରିତ ମହାବିଦ୍ୟାଳୟଗୁଡ଼ିକୁ ଅଧିକ ପସନ୍ଦ କରନ୍ତି । ତେଣୁ ସେଠାରେ ବାଳିକାମାନଙ୍କପାଇଁ ସ୍ୱତନ୍ତ୍ର ମହାବିଦ୍ୟାଳୟ ସଂଖ୍ୟା ବହୁତ କମ୍ । ନାରୀ ଶିକ୍ଷାରେ ସମାନ ଅଗ୍ରଗତି କରିଥିବା ଅନ୍ୟ ଏକ ରାଜ୍ୟ ହେଉଛି ମାନ୍ଦ୍ରାଜ; ମାତ୍ର ଏଠାରେ ଲୋକମାନେ ବାଳିକାମାନଙ୍କପାଇଁ ସ୍ୱତନ୍ତ୍ର ମହାବିଦ୍ୟାଳୟକୁ ଅଧିକ ପସନ୍ଦ କରନ୍ତି ଯାହା ହେତୁ ଏହି ରାଜ୍ୟରେ ଅନେକଗୁଡ଼ିଏ ସ୍ୱତନ୍ତ୍ର ବାଳିକା ମହାବିଦ୍ୟାଳୟ ସ୍ଥାପିତ ହୋଇଅଛି । ତେଣୁ ପ୍ରତ୍ୟେକ ରାଜ୍ୟ ଏହି ସମ୍ବନ୍ଧରେ ନିଜ ନିଜର ଗ୍ରହଣଯୋଗ୍ୟ ନୀତି ନିରୂପଣ କରିବା ଉଚିତ । ବାଳିକା ମହାବିଦ୍ୟାଳୟଗୁଡ଼ିକର କର୍ତ୍ତୃପକ୍ଷ ଓ ଶିକ୍ଷାଦାନ୍ତ୍ରୀମାନେ ନିଶ୍ଚିତ ହେବା ଦରକାର ଯେ ସେମାନେ ଓ ଛାତ୍ରୀବୃନ୍ଦ ବିଶ୍ୱବିଦ୍ୟାଳୟର ସାଧାରଣ ପ୍ରବାହଠାରୁ ଭିନ୍ନ ମାର୍ଗରେ ଗତି କରୁନାହାନ୍ତି । ପୂର୍ବରୁ କୁହାଯାଇଛି ଯେ ସ୍ନାତକୋତ୍ତର ସ୍ତରରେ ନାରୀଶିକ୍ଷା ପାଇଁ କୌଣସି ପୃଥକ୍ ଅନୁଷ୍ଠାନ ରହିବା ଉଚିତ ନୁହେଁ । ଏହି ନୀତି ସର୍ବଜନ ସମ୍ମତ, ମୁଦାଲିୟର ଓ କୋଠାରି କମିଶନଙ୍କଦ୍ୱାରା ମଧ୍ୟ ଏହି ନୀତି ଅନୁମୋଦିତ ।

## ପ୍ରଶ୍ନାବଳୀ

୧ । "ଚଳିତ ଶତକର ପ୍ରାରମ୍ଭରୁ ଏ ପର୍ଯ୍ୟନ୍ତ ନାରୀଶିକ୍ଷା କ୍ଷେତ୍ରରେ ଯେଉଁ ସଂଖ୍ୟାତ୍ମକ ଅଗ୍ରଗତି ହୋଇଅଛି ସେଥିରୁ ନାରୀଶିକ୍ଷା ଏକ ସମସ୍ୟାରୂପେ ଆଉ ବିବେଚିତ ହେବା ଉଚିତ ନୁହେଁ ।" ଏହି ଉକ୍ତିର ଯଥାର୍ଥତା ପ୍ରତିପାଦନ କର ।

୨ । ବର୍ତ୍ତମାନ ବାଳକ ଓ ବାଳିକାମାନଙ୍କ ମଧ୍ୟରେ ଶିକ୍ଷାକ୍ଷେତ୍ରରେ ଯେଉଁ ସଂଖ୍ୟାଗତ ପାର୍ଥକ୍ୟ ରହିଅଛି ତାହା ଦୂର କରିବା ପାଇଁ କି କି ପଦକ୍ଷେପ ନିଆଯାଇପାରେ ।

୩ । ଜାତୀୟ ପୁନର୍ଗଠନ ଯୋଜନାରେ ଶିକ୍ଷିତା, ବିବାହିତା ଯୁବତୀମାନଙ୍କର ଭୂମିକା ସମ୍ବନ୍ଧରେ ଆଲୋଚନା କର ।

୪ । ଶିକ୍ଷାର ବିଭିନ୍ନ ସ୍ତରରେ ସହଶିକ୍ଷା ପ୍ରଚଳନ କରାଯିବା ସମ୍ବନ୍ଧରେ ନିଜର ମତାମତ ଦିଅ ।

# ଷଷ୍ଠ ଅଧ୍ୟାୟ

## ଛାତ୍ର ବିଶୃଙ୍ଖଳା

ଆଜି ଦେଶର ପ୍ରାୟ ପ୍ରତ୍ୟେକ ଉଚ୍ଚ ଶିକ୍ଷାନୁଷ୍ଠାନ ଅଳ୍ପ ବହୁତେ ଛାତ୍ର ବିଶୃଙ୍ଖଳା-ଜନିତ ଅଶାନ୍ତିଦ୍ୱାରା ଆକ୍ରାନ୍ତ । ବିଗତ ଦୁଇ ଦଶନ୍ଧି ମଧ୍ୟରେ ଏଥିପାଇଁ ବିଭିନ୍ନ ସ୍ତରରେ ବହୁ ଆଲୋଚନା ହୋଇଅଛି ବହୁ ସତ୍ତ୍ୱସମିତି ବସିଅଛି, ସମାଧାନର ମାର୍ଗ ଚିନ୍ତା କରା-ଯାଇଅଛି । ତଥାପି ଏହି ଅଶାନ୍ତି ଦୂରୀଭୂତ ହୋଇନାହିଁ । ସାମାନ୍ୟ ସାମାନ୍ୟ କଥାରେ ଏବଂ ଅନେକ ସମୟରେ କୌଣସି ଯଥାର୍ଥତା ନ ଥାଇ ଧାରଣା, ଧର୍ମଘଟ, ହିଂସାକାଣ୍ଡ, ପରୀକ୍ଷା ବର୍ଜନ, ଶ୍ରେଣୀ ବର୍ଜନ, ବସ ପୋଡ଼ା, ସିନେମାଘର ପୋଡ଼ା, ପୋଲିସ ସହ ସଂଘର୍ଷ, ଏପରିକି ନିଜର ଶିକ୍ଷକ ଓ ନିଜ ଅନୁଷ୍ଠାନର କର୍ମଚାରୀଙ୍କ ପ୍ରତି ଦୁର୍ବ୍ୟବହାର କରିବା ଏକ ସାଧାରଣ ଘଟଣାରେ ପରିଣତ ହେଲାଣି । ଏହାର କାରଣ କ'ଣ ହୋଇପାରେ ? ଏ ସବୁର କୌଣସି ଗୋଟିଏ ମାତ୍ର କାରଣ ନାହିଁ ଯାହାର ସମାଧାନରେ ଅଶାନ୍ତିର ଦୂରୀକରଣ ହୋଇପାରିବ ।

## ଛାତ୍ର ବିଶୃଙ୍ଖଳାର କେତେକ ପ୍ରଧାନ କାରଣ

୧ । ବ୍ୟର୍ଥତା ଓ ମାନସିକ ଦ୍ୱନ୍ଦ୍ୱ : ଏ କଥା ନିଶ୍ଚିତ ଯେ, ଆଜି ଛାତ୍ରମାନଙ୍କ ମନ ଘୋର ନୈରାଶ୍ୟର ଛାୟାରେ ଆଚ୍ଛାଦିତ, କାରଣ ସେମାନଙ୍କର ଭବିଷ୍ୟତ ଅନିଶ୍ଚିତ । ଏହି ନୈରାଶ୍ୟରୁ ହିଁ ଦାୟିତ୍ୱହୀନତାର ସୃଷ୍ଟି ହୁଏ । ପୁଣି ବିଦ୍ୟା ଅଧ୍ୟୟନ କାଳରେ କ୍ରମେ ଛାତ୍ର ହୃଦୟଙ୍ଗମ କରେ ଯେ, ଶିକ୍ଷାନୁଷ୍ଠାନରେ ଯେଉଁ ନୈତିକତାର ମୂଲ୍ୟବୋଧ ଉପରେ ଏତେ ଗୁରୁତ୍ୱ ଆରୋପ କରାଯାଏ ତାହା ଭବିଷ୍ୟତରେ ସୁଖମୟ ଜୀବନ ପାଇଁ ହୁଏ ତ ଅଦୌ ଆବଶ୍ୟକ ହୋଇ ନ ପାରେ । ସେ ଦେଖେ ଅନେକ ଲୋକ ସମାଜରେ ସୁପ୍ରତିଷ୍ଠିତ ହୋଇଛନ୍ତି; ଯେଉଁମାନଙ୍କର ସମାଜ ପ୍ରତି କୌଣସି ଅବଦାନ ନାହିଁ । ସେ ଦେଖେ ବିଶ୍ୱବିଦ୍ୟାଳୟ ସୀମା ମାଡ଼ି ନ ଥିବା ଅନେକ ଲୋକ ନିଜ ନିଜର କୌଣସି ସମ୍ପର୍କୀୟ ବ୍ୟକ୍ତିଙ୍କ ପ୍ରଭାବରେ ବହୁ

ସମ୍ପତ୍ତିର ଅଧିକାଂଶ । ଏକ ପକ୍ଷରେ କେତେକ ବାସ୍ତବ ସାମାଜିକ ତଥ୍ୟ ଓ ଅନ୍ୟ ପକ୍ଷରେ ଶ୍ରେଣୀ ଗୃହରେ ଶିକ୍ଷା ଦିଆଯାଉଥିବା ଆଦର୍ଶବାଦ, ନୈତିକତା, ସାଧୁତା ଇତ୍ୟାଦି ଘୋର ମାନସିକ ଦ୍ୱନ୍ଦ୍ୱ ସୃଷ୍ଟି କରେ । ବିଶ୍ୱବିଦ୍ୟାଳୟର ବିଶେଷ ଯୋଗ୍ୟତା କର୍ମସଂସ୍ଥାନର ମାନଦଣ୍ଡ ନୁହେଁ, ବରଂ ଅନେକ କ୍ଷେତ୍ରରେ କର୍ମସଂସ୍ଥାନର ନୀତିଗୁଡ଼ିକ ବହୁ ଭାବରେ ପ୍ରଭାବିତ । ଏହି ଧାରଣା ଜନ୍ମିଲେ ଛାତ୍ର ଅଧ୍ୟୟନ ପ୍ରତି କ୍ରମଶଃ ବୀତଶ୍ରଦ୍ଧ ହୁଏ । ଏ ସବୁ କ୍ରମେ ଛାତ୍ର ବିଶୃଙ୍ଖଳାଜନିତ କାର୍ଯ୍ୟକଳାପରେ ରୂପାନ୍ତରିତ ହୁଏ ।

୨ । ପ୍ରଚଳିତ ପାଠ୍ୟକ୍ରମ ଓ ଛାତ୍ର-ଶିକ୍ଷକ ସମ୍ପର୍କ : ଶିକ୍ଷାନୁଷ୍ଠାନ-ଗୁଡ଼ିକର ଅନେକ ପ୍ରଚଳିତ ପାଠ୍ୟକ୍ରମ ପ୍ରାଣହୀନ । ସମୟର ଅଗ୍ରଗତି ଅନୁସାରେ ତଥା ଛାତ୍ରମାନଙ୍କର ଓ ସମାଜର ଆବଶ୍ୟକତା ଅନୁସାରେ ଏହାକୁ ପରିମାର୍ଜିତ କରାଯାଇ ନ ଥାଏ । ତେଣୁ ଅନେକ କ୍ଷେତ୍ରରେ ପାଠ୍ୟକ୍ରମ ସମୟୋପଯୋଗୀ ହୋଇ ନ ଥାଏ । ପୁଣି ଅନେକ ଶିକ୍ଷାନୁଷ୍ଠାନରେ ଛାତ୍ର-ଶିକ୍ଷକ ସମ୍ପର୍କ ଆଦୌ ନ ଥାଏ । କେହି କେହି ଛାତ୍ର-ଶିକ୍ଷକଙ୍କ ସହ ପଦେମାତ୍ର କଥାବାର୍ତ୍ତା ନ ହୋଇ ମହାବିଦ୍ୟାଳୟ ଶିକ୍ଷା ସମାପ୍ତ କରନ୍ତି । କେତେକ କ୍ଷେତ୍ରରେ ଶିକ୍ଷକମାନେ ମଧ୍ୟ ଛାତ୍ରମାନଙ୍କ ସମସ୍ୟା ପ୍ରତି କୌଣସି ଆଗ୍ରହ ଦେଖାନ୍ତି ନାହିଁ । ସମସ୍ତ ସମୟରେ ଶିକ୍ଷାନୁଷ୍ଠାନଗୁଡ଼ିକର ଅଧ୍ୟକ୍ଷମାନେ ସମସ୍ୟାଗୁଡ଼ିକର ସଠିକ ଅବଧାରଣା କରିପାରନ୍ତି ନାହିଁ । ତେଣୁ ଦୃଢ଼ତା ଓ ବିଚକ୍ଷଣତା ସହ ଆବଶ୍ୟକ ପଦକ୍ଷେପ ନେବାକୁ ଅସମର୍ଥ ହୁଅନ୍ତି ।

୩ । ରାଜନୈତିକ ପ୍ରଭାବ : ଅନେକ ଶିକ୍ଷାନୁଷ୍ଠାନର ଛାତ୍ରମାନେ ରାଜନୀତିଜ୍ଞ-ମାନଙ୍କ ଦ୍ୱାରା ପ୍ରଭାବିତ । କୌଣସି ରାଜନୈତିକ ଧାରଣାର ପକ୍ଷପାତୀ ହେବା ଏବଂ ସକ୍ରିୟ ରାଜନୀତିରେ ଅଂଶଗ୍ରହଣ କରିବା—ଦୁଇଟି ସଂପୂର୍ଣ୍ଣ ଭିନ୍ନ ବିଷୟ । ଛାତ୍ରମାନେ ଅଧ୍ୟୟନ ଦ୍ୱାରା ନିଜ ନିଜର ରାଜନୈତିକ ଧାରଣା ଦୃଢ଼ କରିପାରନ୍ତି ବା ପରିବର୍ତ୍ତନ କରିପାରନ୍ତି ; ମାତ୍ର କୌଣସି ସକ୍ରିୟ ରାଜନୀତିରେ ଅଂଶଗ୍ରହଣ କରିବା ବାଞ୍ଛନୀୟ ନୁହେଁ । ଦୁଃଖର ବିଷୟ, ଅନେକ ସମୟରେ ନେତାମାନେ ନିଜର ସ୍ୱାର୍ଥ ପାଇଁ ଛାତ୍ରମାନଙ୍କୁ ବ୍ୟବହାର କରନ୍ତି । ରାଜନୈତିକ ନେତାମାନେ ନିଜ ଦେଶର ବା ଅଞ୍ଚଳର ଛାତ୍ରଛାତ୍ରୀମାନଙ୍କୁ ଉଦ୍‌ବୋଧନ ଦେବା ସୁଖର କଥା । କିନ୍ତୁ ବାସ୍ତବ କ୍ଷେତ୍ରରେ ନେତାମାନେ ଛାତ୍ରମାନଙ୍କୁ ଉଦ୍‌ବୋଧନ ଦେଲାବେଳେ ଅଧିକାଂଶ ସ୍ଥଳରେ ପ୍ରକୃତ ବିଷୟଠାରୁ ଦୂରେଇ ଯାଆନ୍ତି ଏବଂ ଛାତ୍ରସମାଜ ପାଇଁ ଯାହା ଆବଶ୍ୟକ ତାହା ନ କହି ଅନ୍ୟ ଏକ ଭିନ୍ନ ଶ୍ରୋତାମଣ୍ଡଳୀ ଆଗରେ ଯାହା କହିବାର କଥା ତାହା ହିଁ କହିଥାନ୍ତି । ଅବଶ୍ୟ ଅନେକ ଉଚ୍ଚକୋଟୀର ନେତା ଏହି ଦୁର୍ବଳତାର ସୀମା ବାହାରେ ।

## ବୟୋଜ୍ୟେଷ୍ଠ ବ୍ୟକ୍ତିମାନଙ୍କର ଆଚରଣ

ବୟୋଜ୍ୟେଷ୍ଠ ବ୍ୟକ୍ତିମାନଙ୍କର ବ୍ୟବହାର ଓ ଶୃଙ୍ଖଳାଜ୍ଞାନ ଅନେକ ସମୟରେ ଛାତ୍ରମାନଙ୍କର ଶୃଙ୍ଖଳାଜ୍ଞାନକୁ ପରୋକ୍ଷ ଭାବରେ ପ୍ରଭାବିତ କରେ । ତେଣୁ ଛାତ୍ରମାନଙ୍କ ମଧ୍ୟରେ ଶୃଙ୍ଖଳାଜ୍ଞାନର ଉଦ୍ରେକ ଲାଗି ପିତାମାତା, ଶିକ୍ଷକ ଓ ଅନ୍ୟାନ୍ୟ ସମ୍ମାନାସ୍ପଦ ବ୍ୟକ୍ତି ମଧ୍ୟ କେତେକାଂଶରେ ଦାୟୀ । ଆଜିକାଲି କ୍ରମେ ପରିବାରରେ ପରସ୍ପର ମଧ୍ୟରେ ଥିବା ନିବିଡ଼ ବନ୍ଧନ ହ୍ରାସ ପାଉଅଛି । ଫଳରେ ପିତାମାତା ଓ ସନ୍ତାନ ସନ୍ତତିମାନଙ୍କ ମଧ୍ୟରେ ପୂର୍ବକାଳର ସେହି ନିବିଡ଼ ବନ୍ଧନ ଆଉ ନାହିଁ । ଏହା ପିତାମାତାଙ୍କର କାର୍ଯ୍ୟବ୍ୟସ୍ତତା ହେତୁ ନୁହେଁ, କାରଣ ଆଜି ଜଣେ ଶ୍ରମିକ ମଧ୍ୟ କଳକାରଖାନାରେ ନିର୍ଦ୍ଦିଷ୍ଟ କେତେ-ଘଣ୍ଟା ବ୍ୟତୀତ ଅଧିକ ସମୟ କାମ କରୁନାହିଁ । ଉଚ୍ଚ ସ୍ତରରେ ରହିଥିବା କର୍ମଚାରୀ-ମାନଙ୍କ ହାତରେ ନିଜ ପାଇଁ ବହୁତ ସମୟ ରହିଅଛି । ଶିଶୁର ଯତ୍ନ ଓ ଶିକ୍ଷାପାଇଁ ବିଭିନ୍ନ ସୁବିଧା ସୁଯୋଗ ମିଳୁଅଛି । ଆଜି ଅନେକଙ୍କ ଘରେ ବିଭିନ୍ନ କାର୍ଯ୍ୟପାଇଁ ବିଭିନ୍ନ ଉପକରଣ ମଧ୍ୟ ରହିଅଛି । ତେଣୁ ପ୍ରକୃତରେ ଘରେ ମା'ମାନେ ମଧ୍ୟ ପୂର୍ବ ଅପେକ୍ଷା ଗୃହକର୍ମ ପାଇଁ କମ୍ ସମୟ ଦେଉଛନ୍ତି । କିନ୍ତୁ ପିତାମାତାଙ୍କର ବଳକା ସମୟ ଅଧିକାଂଶ କ୍ଷେତ୍ରରେ ପୁତ୍ରକନ୍ୟାମାନଙ୍କର ଯତ୍ନ ନେବାରେ ବ୍ୟୟିତ ହେଉନାହିଁ । ଏହି ସମ୍ପର୍କର ହ୍ରାସ ଯୁବ ବିଶୃଙ୍ଖଳାର ଅନ୍ୟତମ କାରଣ । ଜଣେ ଜଣେ ବିଶୃଙ୍ଖଳିତ ଛାତ୍ରଙ୍କର ପାରିବାରିକ ପରିବେଷ୍ଟନୀ ବିଶ୍ଳେଷଣ କଲେ ଦେଖାଯାଏ ଯେ, ଛାତ୍ରଟିର ପ୍ରାୟ କୌଣସି ଦିନ ନିଜର ପିତାଙ୍କ ସହ କଥାବାର୍ତ୍ତାର ସୁଯୋଗ ନ ଥାଏ, କାରଣ ତାହାର ପିତା ଅଫିସରୁ ଫେରି ହୁଏତ ବନ୍ଧୁମାନଙ୍କ ସହ ଖୁସି ଗପରେ ବା କ୍ଲବରେ ବା ତାସ ଖେଳରେ ବା ସିନେମା ଦେଖାରେ ବ୍ୟସ୍ତ ରହି ରାତି ୧୦ଟା ପରେ ଘରକୁ ଫେରନ୍ତି । ଅନେକ ଅଭିଭାବକଙ୍କର ଏହି ପ୍ରକାରର ଜୀବନ ଯାପନ ପ୍ରଣାଳୀ ଛାତ୍ରମାନଙ୍କ ସମ୍ମୁଖରେ କୌଣସି ଆଦର୍ଶର ରେଖାପାତ କରିପାରେ ନାହିଁ; ବରଂ ସେମାନଙ୍କୁ ବିଶୃଙ୍ଖଳ କରିବାରେ ସହାୟକ ହୋଇଥାଏ । ସେହିପରି ଶିକ୍ଷକଙ୍କର ବ୍ୟକ୍ତିଗତ ଆଚରଣ ଓ ବିଭିନ୍ନ ସମସ୍ୟା ପ୍ରତି ତାଙ୍କର ଦୃଷ୍ଟିଭଙ୍ଗୀ ଛାତ୍ରମାନଙ୍କୁ କେତେକାଂଶରେ ପ୍ରଭାବିତ କରେ ।

## ବିଶୃଙ୍ଖଳା ଦୂରୀକରଣ ପାଇଁ କେତେକ ପନ୍ଥା

ଉପଯୁକ୍ତ ଆଲୋଚନାରୁ ଏହା ସୁସ୍ପଷ୍ଟ ଯେ ଛାତ୍ର ବିଶୃଙ୍ଖଳାର କାରଣ ନାନାବିଧ ଘଟଣାବଳୀ ଉପରେ ନିର୍ଭର କରେ । ତେଣୁ ଏହାର ଦୂରୀକରଣ ପାଇଁ ଛାତ୍ର, ଶିକ୍ଷକ, ଅଭିଭାବକ ରାଜନୈତିକ ନେତା, ଶିକ୍ଷା ବିଭାଗୀୟ କର୍ମକର୍ତ୍ତା ସମସ୍ତଙ୍କର କିଛି ନା କିଛି କର୍ତ୍ତବ୍ୟ ରହିଅଛି । ସମସ୍ତେ ନିଜ ନିଜର କର୍ତ୍ତବ୍ୟ ସମ୍ବନ୍ଧରେ ସଚେତନ ନ ହେଲେ ଏହାର ସମାଧାନ ହୋଇପାରିବ ନାହିଁ । ଶିକ୍ଷାର ଲକ୍ଷ୍ୟ ଆଉ ଯାହା ହେଉନା

କାହିଁକି ଉତ୍ତମ ନାଗରିକ ଗଢ଼ିବା ଯେ ଏହାର ଏକ ପ୍ରଧାନ ଲକ୍ଷ୍ୟ—ଏଥିରେ ଦ୍ୱିମତ ହେବାର କିଛି ନାହିଁ । ସୁସଭ୍ୟ ଆଚରଣ ଶିକ୍ଷା କରିବା ଓ ପ୍ରଦର୍ଶନ କରିବାରେ ଅଭ୍ୟସ୍ତ ହେବା ସୁନାଗରିକର ଲକ୍ଷଣ । ଯେଉଁ ନାଗରିକମାନଙ୍କର ସାମାଜିକ ଓ ନୈତିକ ମୂଲ୍ୟ-ବୋଧ ରହିଛି ସେମାନେ ବିଶୃଙ୍ଖଳିତ ହୋଇ ନ ପାରନ୍ତି । ତେଣୁ ଶିକ୍ଷାନୁଷ୍ଠାନଗୁଡ଼ିକରେ ଉପଯୁକ୍ତ ବାତାବରଣ ସୃଷ୍ଟି କରିବା ସଙ୍ଗେ ସଙ୍ଗେ ଶିକ୍ଷାଦାନ ପାଇଁ ଆବଶ୍ୟକାନୁସାରେ ସମସ୍ତ ସୁବିଧା ଓ ସୁଯୋଗର ବ୍ୟବସ୍ଥା କରାଯିବା ଉଚିତ । ଛାତ୍ରମାନଙ୍କର ଅଭାବ ଓ ଅସୁବିଧା ଦୂର କରିବା ପାଇଁ ଆବଶ୍ୟକ ପରାମର୍ଶ ସଂସ୍ଥା ଗଠିତ ହେବା ଉଚିତ ଏବଂ ବିଶୃଙ୍ଖଳାର ପୁନରାବୃତ୍ତି ନ ହେବାପାଇଁ ପ୍ରଶାସନ କଳ ମଧ୍ୟ ସଜାଗ ହେବା ବାଞ୍ଛନୀୟ ।

ଉଚ୍ଚଶିକ୍ଷା ଛାତ୍ରକୁ ଯେଉଁ ଶୃଙ୍ଖଳା ଜ୍ଞାନର ଧାରଣା ଦିଏ ତାହା ପ୍ରକୃତରେ ଆତ୍ମ-ସଂଯମ, ଯାହା ଛାତ୍ରର ଅନ୍ତରରୁ ହିଁ ଅଙ୍କୁରିତ ହୁଏ—ବାହ୍ୟ ପ୍ରଭାବରୁ ନୁହେଁ । ଏହି ପ୍ରକାର ଆତ୍ମସଂଯମ ସମ୍ଭବପର ଯେତେବେଳେ ଜୀବନର ଲକ୍ଷ୍ୟ ସହିତ ଶୃଙ୍ଖଳାଜ୍ଞାନର ଗଭୀର ସମ୍ପର୍କ ସ୍ଥାପିତ ହୁଏ ଏବଂ ଏହି ଲକ୍ଷ୍ୟ ହାସଲ ପାଇଁ ଛାତ୍ର ନିଜେ ଆଗ୍ରହାନ୍ୱିତ ହୁଏ, ଯାହା ଫଳରେ ତାହାର ବିଦ୍ୟାଧ୍ୟୟନ ପ୍ରତି ଆସକ୍ତି ଜାତ ହୁଏ । ତେଣୁ ଶିକ୍ଷାନୁ-ଷ୍ଠାନ ଛାତ୍ରମାନଙ୍କୁ ଯେଉଁପ୍ରକାର ସୁବିଧା-ସୁଯୋଗ ଦିଏ ଏବଂ ଛାତ୍ରମାନଙ୍କଠାରୁ ଯେଉଁପ୍ରକାର ବୌଦ୍ଧିକ ଓ ସାମାଜିକ ବିକାଶ ଆଶାକରେ ତାହାହିଁ ପ୍ରକୃତ ଶୃଙ୍ଖଳାଜ୍ଞାନ ପାଇଁ ଅନେକାଂଶରେ ଦାୟୀ । ଏତଦ୍‌ବ୍ୟତୀତ ସମଗ୍ର ବିଶ୍ୱବିଦ୍ୟାଳୟର ଗୋଟିଏ ପ୍ରାଣ ଥିବା ପରି ସମସ୍ତ କାର୍ଯ୍ୟ ହେବା ଉଚିତ ଯେପରି ଛାତ୍ର, ଶିକ୍ଷକ ଓ ପ୍ରଶାସନିକ ସଂସ୍ଥା ମଧ୍ୟରେ ମତଭେଦର ଅବକାଶ ନ ରହେ । ଏଥିପାଇଁ ଛାତ୍ର ଓ ଶିକ୍ଷକମାନଙ୍କର ଏକ ମିଳିତ ସଂସ୍ଥା ଗଢ଼ାଯାଇପାରେ । କୁଳପତି ବା ଅଧ୍ୟକ୍ଷ, ଅଧ୍ୟାପକ ଓ ଛାତ୍ରମାନଙ୍କଦ୍ୱାରା ଏକ କେନ୍ଦ୍ରୀୟ ସମିତି ମଧ୍ୟ ଗଢ଼ାଯାଇପାରେ । ଛାତ୍ରମାନଙ୍କୁ ବିଶ୍ୱବିଦ୍ୟାଳୟର ବିଭିନ୍ନ ପ୍ରଶାସନିକ ସଂସ୍ଥାର ସଭ୍ୟରୂପେ ଗ୍ରହଣ କରାଯାଇପାରେ । ମୋଟଉପରେ ଏ ସମସ୍ତ ବ୍ୟବସ୍ଥା ଫଳରେ ପରସ୍ପର ପରସ୍ପର ପ୍ରତି ଶ୍ରଦ୍ଧା ଓ ସମ୍ମାନ ପ୍ରଦର୍ଶନ କରି ସମସ୍ୟାର ସମାଧାନ ପାଇଁ ବ୍ରତୀ ହେବା ସହଜସାଧ୍ୟ ହେବ ।

ବିଶୃଙ୍ଖଳାର ଅନ୍ୟ କେତେକ ପ୍ରତିବିଧାନ ପନ୍ଥା ଶିକ୍ଷାନୁଷ୍ଠାନର କର୍ତ୍ତୃତ୍ୱ ବାହାରେ । ଶିକ୍ଷାନୁଷ୍ଠାନରେ ବିଶୃଙ୍ଖଳାର ନିରାକରଣ ପାଇଁ କ'ଣ କରିହେବ ତାହା ଆଲୋଚିତ ହୋଇଅଛି । ପୂର୍ବରୁ ଏହା ମଧ୍ୟ ଆଲୋଚିତ ହୋଇଅଛି ଯେ ସମସ୍ତେ ନିଜ ନିଜର କର୍ତ୍ତବ୍ୟ ନ କଲେ ଏହି ରୋଗର ନିରାକରଣ ସହଜ ନୁହେଁ । ବୋଧହୁଏ ସେହିହେତୁ ବହୁ ସମିତି ଦ୍ୱାରା ବହୁ ଆଲୋଚନା ଓ ଉପାୟ ଉଦ୍ଭାବନ କରାଯିବା ପରେ ମଧ୍ୟ ବିଶୃଙ୍ଖଳା କ୍ରମଶଃ ବଢ଼ିବାରେ ଲାଗିଅଛି । ତେଣୁ ସମାଜର ବିଭିନ୍ନ ସ୍ତରରେ ବିଭିନ୍ନ ଶ୍ରେଣୀର ଲୋକମାନେ ଯଦି ପ୍ରକୃତରେ ଛାତ୍ର ବିଶୃଙ୍ଖଳାକୁ ଏକ ଗୁରୁତର ଘଟଣାରୂପେ ବିବେଚନା କରନ୍ତି ତେବେ ତାହାର ଦୂରୀକରଣ ପାଇଁ ସମସ୍ତଙ୍କୁ ନିଜର କର୍ତ୍ତବ୍ୟ ଅବଶ୍ୟ କରିବାକୁ ପଡ଼ିବ ।

## ପ୍ରଶ୍ନାବଳୀ

୧ । ଆଜକାଲି ଦେଖାଦେଉଥିବା ଛାତ୍ର ବିଶୃଙ୍ଖଳାର କାରଣ ବିଭିନ୍ନ ଦିଗରୁ ବିଚାର କରାଯାଇପାରେ; କିପରି ?

୨ । ଛାତ୍ର ବିଶୃଙ୍ଖଳା ଦୂର କରିବା ପାଇଁ ଶିକ୍ଷାନୁଷ୍ଠାନଗୁଡ଼ିକରେ ଯେଉଁ ଯେଉଁ ପଦକ୍ଷେପ ନିଆଯିବା ବାଞ୍ଛନୀୟ, ତାହା ଆଲୋଚନା କର ।

୩ । ଅନେକ କ୍ଷେତ୍ରରେ ଛାତ୍ର ବିଶୃଙ୍ଖଳା ହେଉଛି ବ୍ୟର୍ଥତା ଓ ମାନସିକ ଦ୍ୱନ୍ଦ୍ୱର ବହିଃପ୍ରକାଶ ମାତ୍ର—ଆଲୋଚନା କର ।

---

# ସପ୍ତମ ଅଧ୍ୟାୟ

## ପରୀକ୍ଷା ପଦ୍ଧତିର ସଂସ୍କାର

ବିଗତ ଦୁଇ ଦଶନ୍ଧିରେ ଭାରତରେ ପ୍ରଚଳିତ ପରୀକ୍ଷା ପଦ୍ଧତିର ତୀବ୍ର ସମାଲୋଚନା କରାଯାଇଅଛି । ଅବଶ୍ୟ ପୂର୍ବରୁ ବହୁ ଶିକ୍ଷା କମିଶନ ପରୀକ୍ଷା ପଦ୍ଧତିର ସମାଲୋଚନା କରିଅଛନ୍ତି; ମାତ୍ର ମାଧ୍ୟମିକ ଶିକ୍ଷା କମିଶନଙ୍କ ରିପୋର୍ଟ ପରେ ଏ ଦିଗରେ ନିର୍ଦ୍ଦିଷ୍ଟ କାର୍ଯ୍ୟାନୁଷ୍ଠାନ ପାଇଁ ବହୁ ପଦକ୍ଷେପ ନିଆଯାଇଅଛି । ଶିକ୍ଷା କ୍ଷେତ୍ରରେ ପରୀକ୍ଷା ତଥା ମୂଲ୍ୟାୟନର ସ୍ଥାନ ଯେ ଅତି ଗୁରୁତ୍ୱପୂର୍ଣ୍ଣ ଏଥିରେ ସନ୍ଦେହ ନାହିଁ । ପିତାମାତା ଓ ଶିକ୍ଷକମାନେ ଥରକୁ ଥର ପିଲାର ଅଗ୍ରଗତି ସମ୍ବନ୍ଧରେ ଅବହିତ ହେବା ଯେପରି ଆବଶ୍ୟକ ସେହିପରି ବିଦ୍ୟାଳୟ ଓ ମହାବିଦ୍ୟାଳୟଗୁଡ଼ିକ ଉପରେ ନ୍ୟସ୍ତ ଦାୟିତ୍ୱ ଠିକ୍ ଭାବରେ ସମ୍ପାଦିତ ହେଉଅଛି କି ନାହିଁ ସେ ସମ୍ବନ୍ଧରେ ସମାଜ ମଧ୍ୟ ନିଶ୍ଚିତ ରହିବା ସେହିପରି ଆବଶ୍ୟକ । ଥରକୁ ଥର ଏହି ଯେଉଁ ସମୀକ୍ଷା ଦରକାର ହୁଏ ତାହା ପରୀକ୍ଷା ମାଧ୍ୟମରେ ହିଁ ହୋଇଥାଏ । କିନ୍ତୁ ଆଜି ଶିକ୍ଷାବିତ୍‌ମାନେ ପରୀକ୍ଷା ପଦ୍ଧତିର ପରୀକ୍ଷା କରି ଏହି ସିଦ୍ଧାନ୍ତରେ ଉପନୀତ ହୋଇଅଛନ୍ତି ଯେ, ଶିକ୍ଷା କ୍ଷେତ୍ରରେ ରହିଥିବା ଅଧିକାଂଶ ଦୋଷ ଓ ତ୍ରୁଟି ଲାଗି ପରୀକ୍ଷା ପଦ୍ଧତିହିଁ ମୁଖ୍ୟତଃ ଦାୟୀ । ସେମାନଙ୍କର ମତ ଯେ ଛାତ୍ର ଓ ଶିକ୍ଷକ ସମସ୍ତେ ଏହି ପରୀକ୍ଷା ପଦ୍ଧତିର ଚାପରେ ନିଜ ନିଜର ଲକ୍ଷ୍ୟ ଭୁଲି ଯାଉଅଛନ୍ତି । ଛାତ୍ରମାନେ ପାଠ ପଢ଼ୁଅଛନ୍ତି ପରୀକ୍ଷାରେ ପାଶ୍ କରିବା ପାଇଁ । ଶିକ୍ଷକମାନେ ପାଠ ପଢ଼ାଉଅଛନ୍ତି ପିଲାମାନଙ୍କୁ ପାଶ୍ କରାଇବା ପାଇଁ । ଶିକ୍ଷାଦାନ ପ୍ରଣାଳୀ ମୁଖ୍ୟତଃ ଏହି ଲକ୍ଷ୍ୟସାଧନ ଦିଗରେ ଉଦ୍ଦିଷ୍ଟ । ଆଜି ଏ ଦେଶରେ ପରୀକ୍ଷା ପଦ୍ଧତି ପାଠ୍ୟକ୍ରମକୁ ଅନୁସରଣ କରିବା ପରିବର୍ତ୍ତେ ନିୟନ୍ତ୍ରଣ କରୁଅଛି । ଶିକ୍ଷା କ୍ଷେତ୍ରରେ ଆବଶ୍ୟକ ଗବେଷଣା ବାଧାପ୍ରାପ୍ତ ହେଉଅଛି । ପାଠ୍ୟକ୍ରମ ବହିର୍ଭୂତ କୌଣସି ବିଷୟ ପାଠ କରିବାକୁ ଛାତ୍ରମାନେ ଆଗ୍ରହୀ ହେଉନାହାନ୍ତି । ବିବିଧ ଦୋଷଯୁକ୍ତ ପରୀକ୍ଷା ପଦ୍ଧତି ଶିକ୍ଷାର ଲକ୍ଷ୍ୟ ଓ ଆଦର୍ଶକୁ ବିପର୍ଯ୍ୟସ୍ତ କରିପକାଉଅଛି ।

ପରୀକ୍ଷା ପଦ୍ଧତି ଯଦି ଅତ୍ୟଧିକ ଦୋଷଯୁକ୍ତ ତାହାହେଲେ ଆମେ ସମ୍ପୂର୍ଣ୍ଣ ଭାବରେ ପରୀକ୍ଷା ଉଠାଇଦେଲେ ଭଲହେବ କି ? ଆମର ମନେରଖିବା ଉଚିତ ଯେ, ଯେ କୌଣସି ଶିକ୍ଷା ପଦ୍ଧତିରେ ପରୀକ୍ଷାର ସ୍ଥାନ ଗୁରୁତ୍ୱପୂର୍ଣ୍ଣ । ଭାରତୀୟ ଶିକ୍ଷା କ୍ଷେତ୍ରରେ ପ୍ରଚଳିତ ପରୀକ୍ଷା ପଦ୍ଧତି ଯେତେ ଦୋଷଯୁକ୍ତ ହେଲେହେଁ ତାହା ପଛରେ ଶହ ଶହ ବର୍ଷର ପରମ୍ପରା

ରହିଅଛି । ଏକ ପକ୍ଷରେ ସାମାଜିକ ପ୍ରତିଷ୍ଠା ଓ ଅନ୍ୟ ପକ୍ଷରେ କର୍ମସଂସ୍ଥାନ ପ୍ରଭୃତି ଅନେକ ବିଷୟ ସହ ଏହି ପରୀକ୍ଷା ପଦ୍ଧତି ଏପରି ଅଙ୍ଗାଙ୍ଗୀଭାବେ ଜଡ଼ିତ ଯେ ଆମେ ପରୀକ୍ଷା ହଟାଇଦେବା କଥା ଚିନ୍ତା ମଧ୍ୟ କରିପାରିବା ନାହିଁ । ତେଣୁ ଏକମାତ୍ର ସମାଧାନ ପନ୍ଥା ହେଉଛି ଏହି ପଦ୍ଧତିକୁ ପରିମାର୍ଜିତ କରିବା । ତାହାହେଲେ ଏହା ଯେଉଁ ଦିଗ ପ୍ରତି ଅଯଥା ଗୁରୁତ୍ୱ ଦେଉଅଛି ତାହାର ସଂଶୋଧନ କରାଯାଇ ପାରିବ । ବର୍ତ୍ତମାନର ପରୀକ୍ଷା ପଦ୍ଧତି ଯେତେ ଦୋଷଯୁକ୍ତ ହେଲେ ମଧ୍ୟ ଏହା ଭାରତୀୟ ଶିକ୍ଷା କ୍ଷେତ୍ରରେ ଏକ ସର୍ବନିମ୍ନ ମାନ ରକ୍ଷା କରିପାରିବାରେ ସମର୍ଥ ହୋଇଅଛି ଏବଂ ଏହି ପରୀକ୍ଷା ଫଳ ଅନୁସାରେ ଶିକ୍ଷାନୁଷ୍ଠାନଗୁଡ଼ିକ ସ୍ୱୀକୃତ ହୋଇ ଆସିଅଛି ।

**ମୂଲ୍ୟାୟନର ଆବଶ୍ୟକତା**

କୌଣସି କାମ୍ୟ ପରିବର୍ତ୍ତନ ପାଇଁ ସୁଚିନ୍ତିତ ଉଦ୍ୟମ ହିଁ ଶିକ୍ଷା । ତେଣୁ ଯେଉଁ ପରିବର୍ତ୍ତନ କାମ୍ୟ ତାହି ହିଁ ଶିକ୍ଷାର ଲକ୍ଷ୍ୟ । ଶିକ୍ଷାଦାନ ପ୍ରଣାଳୀ ସେହି ଲକ୍ଷ୍ୟସାଧନ ପାଇଁ ଆବଶ୍ୟକ ଅଭିଜ୍ଞତା ଯୋଗାଇଦେବା ଉଚିତ । ଶେଷରେ କେତେଦୂର ଲକ୍ଷ୍ୟ ସାଧିତ ହୋଇଅଛି ତାହାର ମୂଲ୍ୟାୟନ (Evaluation)ହିଁ ଆବଶ୍ୟକ । ଜଣେ ପାଠ୍ୟପୁସ୍ତକରୁ କେତେ ପୃଷ୍ଠା ମୁଖସ୍ଥ କରିଅଛି ତାହାର ପରୀକ୍ଷା ଅପେକ୍ଷା ଲକ୍ଷ୍ୟ ସାଧନ ଦିଗରେ କେତେଦୂର ଅଗ୍ରଗତି କରିଅଛି ତାହାର ମୂଲ୍ୟାୟନହିଁ ଅଧିକ ବାଞ୍ଛନୀୟ । ମୂଲ୍ୟାୟନ ପଦ୍ଧତିର ଉପଯୁକ୍ତ ଧାରଣା ଦେବାପାଇଁ ଏକ ତ୍ରିଭୁଜ ନମୁନାରେ ପ୍ରଦତ୍ତ ହେଲା ।




ଏହି ତ୍ରିଭୁଜର ଶୀର୍ଷରେ ଲକ୍ଷ୍ୟ, ଭୂମିର ଦୁଇପାର୍ଶ୍ୱରେ ଶିକ୍ଷାମୂଳକ ଅଭିଜ୍ଞତା ଓ ମୂଲ୍ୟାୟନ ଅବସ୍ଥାପିତ ହୋଇଛି । ଏକଦିଗରେ ଲକ୍ଷ୍ୟସାଧନ ପାଇଁ ଆବଶ୍ୟକ ଶିକ୍ଷାମୂଳକ

ଅଭିଜ୍ଞତା ପ୍ରଦାନ କରାଯିବା ସଙ୍ଗେ ସଙ୍ଗେ ଅନ୍ୟ ଦିଗରେ ଲକ୍ଷ୍ୟ କେତେଦୂର ସାଧିତ ହୋଇଅଛି ସେଥିପାଇଁ ଆବଶ୍ୟକ ମୂଲ୍ୟାୟନର ବ୍ୟବସ୍ଥା କରାଯାଇଥାଏ । ପୁଣି ଆବଶ୍ୟକ ଶିକ୍ଷାମୂଳକ ଅଭିଜ୍ଞତା ପରେ ପରେ ମୂଲ୍ୟାୟନର ବ୍ୟବସ୍ଥା କରିବା ଦ୍ୱାରା ଯଦି ଦେଖାଯାଏ ଯେ, ଅଭିଜ୍ଞତାଗୁଡ଼ିକ ଲକ୍ଷ୍ୟ ସାଧନରେ ଆଦୌ ସାହାଯ୍ୟ କରିପାରି ନାହିଁ ତେବେ ସେହି ଅଭିଜ୍ଞତାଗୁଡ଼ିକ ମାର୍ଜିତ ହେବାପାଇଁ ଆବଶ୍ୟକ ପଦକ୍ଷେପ ନିଆଯାଏ । ତ୍ରିଭୁଜର ଭୂମିରେ ଉଭୟ ଦିଗକୁ ରହିଥିବା ତୀରଚିହ୍ନ ଏହାହିଁ ସୂଚନା ଦିଏ, ଅର୍ଥାତ୍ ଶିକ୍ଷାମୂଳକ ଅଭିଜ୍ଞତା ପରେ ମୂଲ୍ୟାୟନ କରିବା ଯେପରି ପ୍ରୟୋଜନ, ମୂଲ୍ୟାୟନ ପରେ ଶିକ୍ଷାମୂଳକ ଅଭିଜ୍ଞତା ପ୍ରତି ଆବଶ୍ୟକ ହେଲେ ଦୃଷ୍ଟି ଫେରାଇବା ମଧ୍ୟ ସେହିପରି ପ୍ରୟୋଜନ ।

## ପ୍ରଚଳିତ ପରୀକ୍ଷା ପଦ୍ଧତି ମୂଲ୍ୟାୟନ ବ୍ୟବସ୍ଥାର ଏକ ଅଂଶମାତ୍ର

ଉପର୍ଯ୍ୟୁକ୍ତ ଆଲୋଚନାରୁ ଏହା ସୁସ୍ପଷ୍ଟ ଯେ ମୂଲ୍ୟାୟନ ବ୍ୟବସ୍ଥା ପରୀକ୍ଷା ପଦ୍ଧତି ପରି କେବଳ ଶେଷଫଳ (End product) ସହ ସମ୍ପୃକ୍ତ ନୁହେଁ । ମୂଲ୍ୟାୟନ ଏକ ନିରବଚ୍ଛିନ୍ନ ବ୍ୟବସ୍ଥା ଏବଂ ଶିକ୍ଷାର ଏକ ଅବିଚ୍ଛେଦ୍ୟ ଅଙ୍ଗ । ତେଣୁ ଏହା ଛାତ୍ରମାନଙ୍କର ଅଧ୍ୟୟନ ଅଭ୍ୟାସ ଓ ଶିକ୍ଷାଦାନ ପ୍ରଣାଳୀକୁ ପ୍ରଭାବିତ କରି ଆବଶ୍ୟକ ଲକ୍ଷ୍ୟସାଧନ ଦିଗରେ ସହାୟକ ହୁଏ । ଛାତ୍ରମାନେ ବାଞ୍ଛିତ ଦିଗରେ ଅଗ୍ରଗତି କରୁଅଛନ୍ତି କି ନାହିଁ ତାହାର ପ୍ରମାଣ ପାଇବା ପାଇଁ ମୂଲ୍ୟାୟନର କୌଶଳ ପ୍ରୟୋଗ କରାଯାଏ । ପରୀକ୍ଷାପଦ୍ଧତି ମୂଲ୍ୟାୟନ ବ୍ୟବସ୍ଥାର ଅନ୍ତର୍ଭୁକ୍ତ ଏକ କୌଶଳ ମାତ୍ର । ଦୁଃଖର ବିଷୟ ଆମ୍ଭେମାନେ ଏପର୍ଯ୍ୟନ୍ତ ଏହି ଏକମାତ୍ର କୌଶଳକୁ ଆଶ୍ରାକରି ଆସିଅଛୁ । ଶିକ୍ଷାଲାଭ ଦ୍ୱାରା ଛାତ୍ରଟିଏ ଠିକ୍ ମାର୍ଗରେ ପରିବର୍ତ୍ତିତ ହେଉଅଛି କି ନାହିଁ ବା ତାହାର ସର୍ବାଙ୍ଗୀନ ବିକାଶ ହେଉଅଛି କି ନାହିଁ ତାହା କେବଳ କାଗଜ କଲମରେ ହେଉଥିବା ପରୀକ୍ଷା ଦ୍ୱାରା ନିର୍ଣ୍ଣୀତ ହୋଇପାରିବ ନାହିଁ । ଉଦାହରଣସ୍ୱରୂପ, ବିଦ୍ୟାଳୟରେ ବିଜ୍ଞାନ ଶିକ୍ଷାର ବିଭିନ୍ନ ଲକ୍ଷ୍ୟ ଥାଇପାରେ । ପିଲାମାନଙ୍କୁ ବୈଜ୍ଞାନିକ ଶବ୍ଦ, ନିୟମ, ଧାରଣାଗୁଡ଼ିକ ସହ ପରିଚୟ କରାଇଦେବା ଏକ ଲକ୍ଷ୍ୟ ହୋଇପାରେ । ଅଧିତ ନିୟମ ଓ ଧାରଣାଗୁଡ଼ିକ ବାସ୍ତବ କ୍ଷେତ୍ରରେ ଦୈନନ୍ଦିନ କାର୍ଯ୍ୟରେ ପ୍ରୟୋଗ କରିବା ପାଇଁ ପିଲାମାନଙ୍କୁ ସମର୍ଥ କରିବା ବିଜ୍ଞାନ ଶିକ୍ଷାର ଅନ୍ୟ ଏକ ଲକ୍ଷ୍ୟ ହୋଇପାରେ । ସେହିପରି ବିଜ୍ଞାନ ପାଇଁ ଆଗ୍ରହ ସୃଷ୍ଟିକରିବା ଓ ସୌନ୍ଦର୍ଯ୍ୟବୋଧ ଜାଗ୍ରତ କରାଇବା ଅନ୍ୟ ଏକ ଲକ୍ଷ୍ୟ ହୋଇପାରେ । ଏପରି ସ୍ଥଳେ ଜଣେ ଛାତ୍ର କେତେଦୂର ବିଭିନ୍ନ ନିୟମ, ଧାରଣା ଓ ଶବ୍ଦ ସହ ପରିଚିତ ହୋଇଅଛି ବା କେତେଦୂର ଲବ୍ଧ ଜ୍ଞାନ ପ୍ରୟୋଗ କରି ପାରୁଅଛି ତାହା କାଗଜ-କଲମର ପରୀକ୍ଷା ଦ୍ୱାରା ଜଣାଯାଇପାରେ । ମାତ୍ର ପିଲାଟିର କେତେଦୂର ଆଗ୍ରହ ସୃଷ୍ଟି ହୋଇଅଛି ବା ସୌନ୍ଦର୍ଯ୍ୟବୋଧ କେତେମାତ୍ରାରେ ଜାଗ୍ରତ ହୋଇଅଛି ତାହା କାଗଜ-କଲମର ପରୀକ୍ଷା ଦ୍ୱାରା ଜାଣିହେବ ନାହିଁ । ତେଣୁ

ପ୍ରଚଳିତ ପରୀକ୍ଷା ପଦ୍ଧତି ମୂଲ୍ୟାୟନର ଏକ ଅଂଶ ମାତ୍ର । କେତେକ ଲକ୍ଷ୍ୟ ସାଧିତ ହୋଇଅଛି କି ନାହିଁ ତାହା ଜାଣିବା ପାଇଁ ଅନ୍ୟ ପନ୍ଥାର ଆଶ୍ରୟ ନେବାକୁହିଁ ହେବ ।

## ପ୍ରଚଳିତ ପରୀକ୍ଷା ପଦ୍ଧତି ତ୍ରୁଟିପୂର୍ଣ୍ଣ

ଯେଉଁ ପରୀକ୍ଷା ପଦ୍ଧତି ଏବେ ପ୍ରଚଳିତ ତାହା ମଧ୍ୟ ଅତ୍ୟନ୍ତ ତ୍ରୁଟିପୂର୍ଣ୍ଣ । ରଚନା ପ୍ରଣାଳୀରେ ଲିଖିତ ପରୀକ୍ଷାଗୁଡ଼ିକର ମୂଲ୍ୟ ନିରୂପଣ କରିବାପାଇଁ କୌଣସି ନିର୍ଦ୍ଦିଷ୍ଟ ଉପାୟ ନାହିଁ । ଜଣେ ପରୀକ୍ଷକଙ୍କ ଦ୍ୱାରା ପରୀକ୍ଷିତ ଉତ୍ତରଗୁଡ଼ିକ ଅନ୍ୟ ଜଣେ ପରୀକ୍ଷା କଲେ ମୂଲ୍ୟାୟନରେ ନାନା ପାର୍ଥକ୍ୟ ଦେଖାଯିବ । ବିଶ୍ୱବିଦ୍ୟାଳୟ ପ୍ରଦତ୍ତ ଉପାଧିଗୁଡ଼ିକ ଏହି ପ୍ରକାର ମୂଲ୍ୟାୟନ ଉପରେ ପ୍ରତିଷ୍ଠିତ । କିଏ ଜାଣେ ହୁଏତ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ଜଣେ ଛାତ୍ରର ଉତ୍ତରଗୁଡ଼ିକ ଅନ୍ୟ ଜଣେ ପରୀକ୍ଷା କରିଥିଲେ ସେ ଦ୍ୱିତୀୟ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇଥାଆନ୍ତେ ବା ଜଣେ ଦ୍ୱିତୀୟ ଶ୍ରେଣୀରେ ଉତ୍ତୀର୍ଣ୍ଣ ଛାତ୍ରର ଉତ୍ତରଗୁଡ଼ିକ ଅନ୍ୟ ଜଣେ ପରୀକ୍ଷା କରିଥିଲେ ସେ ହୁଏତ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇଥାଆନ୍ତେ । ତେଣୁ ପ୍ରଚଳିତ ପରୀକ୍ଷା ପଦ୍ଧତିର ଏକ ଆମୂଳଚୂଳ ସଂସ୍କାର ଆବଶ୍ୟକ ହେଉଅଛି ।

## ପରୀକ୍ଷା ପଦ୍ଧତିର ସଂସ୍କାରପାଇଁ କେତେକ ନିର୍ଦ୍ଦିଷ୍ଟ ପଦକ୍ଷେପ

ପରୀକ୍ଷାରେ ପ୍ରଶ୍ନପତ୍ରଗୁଡ଼ିକ ଏପରି ହେବା ଉଚିତ ଯେପରି ସେଗୁଡ଼ିକ ଯେ-କୌଣସି ବ୍ୟକ୍ତିଙ୍କ ଦ୍ୱାରା ପରୀକ୍ଷିତ ହେଲେ ମଧ୍ୟ ମୂଲ୍ୟ ସମାନ ରହିବ । ଏହି ପ୍ରକାର ପ୍ରଶ୍ନକୁ ବସ୍ତୁ-ନିଷ୍ଠ ପ୍ରଶ୍ନ (Objective type test) କହନ୍ତି । ଏଥିପାଇଁ ପ୍ରଶ୍ନକର୍ତ୍ତାଙ୍କ ପକ୍ଷରେ ବହୁ ସତର୍କତା ଅବଲମ୍ବନ କରିବା ଆବଶ୍ୟକ । ପ୍ରଶ୍ନ ଏପରି ହେବା ଉଚିତ ଯେ ତାହାର ଗୋଟିଏମାତ୍ର ଉତ୍ତର ସମ୍ଭବପର ହେବ । ସମସ୍ତ ସମୟରେ ଗୋଟିଏ ପ୍ରଶ୍ନପାଇଁ ଚାରି ପାଞ୍ଚ ଗୋଟି ଉତ୍ତର ଯୋଗାଇ ଦିଆଯାଏ ଯାହା ମଧ୍ୟରୁ ଗୋଟିଏ ଠିକ୍ ବା ଉପଯୁକ୍ତ, ଅନ୍ୟଗୁଡ଼ିକ ଭୁଲ ବା ଅନୁପଯୁକ୍ତ । ଛାତ୍ରକୁ ଠିକ୍ ବା ସବୁଠାରୁ ଉପଯୁକ୍ତ ଉତ୍ତରଟି ବାଛିବାକୁ ପଡ଼ିଥାଏ । ମାତ୍ର ଭୁଲ ଉତ୍ତରଗୁଡ଼ିକ ଠିକ୍ ବୋଲି ମନେହେବା ଦରକାର, ତାହାହେଲେ ଛାତ୍ରଟି ବିଚାରବୁଦ୍ଧି ପ୍ରୟୋଗ କରିବା ଦରକାର ହେବ । ଏହି ପ୍ରକାର ବସ୍ତୁ-ନିଷ୍ଠ ପ୍ରଶ୍ନ ତିଆରି କରିବା କଷ୍ଟକର ବ୍ୟାପାର । ତେଣୁ ୧୯୫୮ ମସିହାରେ ଭାରତ ସରକାରଙ୍କ ଦ୍ୱାରା ତାଲିମପ୍ରାପ୍ତ ମୂଲ୍ୟାୟନ ବିଶେଷଜ୍ଞମାନଙ୍କୁ ନେଇ ଗୋଟିଏ କେନ୍ଦ୍ରୀୟ ପରୀକ୍ଷା ସଂସ୍ଥା ସ୍ଥାପିତ ହୋଇଥିଲା । ଏହି ସଂସ୍ଥା ମୂଲ୍ୟାୟନ ପଦ୍ଧତିର ନୂତନ କୌଶଳଗୁଡ଼ିକ ଯେପରି ସର୍ବସାଧାରଣରେ ଅଦ୍ଭୁତ ହୁଏ ସେଥିପାଇଁ ବିଭିନ୍ନ ଦିଗରୁ ବହୁ ଚେଷ୍ଟା କରିଥିଲେ । ଏହି ସଂସ୍ଥା ହଜାର ହଜାର ମାଧ୍ୟମିକ ଶିକ୍ଷକ ଏବଂ ଶହ

ଶିକ୍ଷକ ପ୍ରଶିକ୍ଷଣ ମହାବିଦ୍ୟାଳୟର ଅଧ୍ୟାପକମାନଙ୍କୁ ନୂତନ ପଦ୍ଧତି ସମ୍ବନ୍ଧରେ ଅବଗତ କରାଇଥିଲେ । ବହୁ ସଂଖ୍ୟକ ମାର୍ଜିତ ବସ୍ତୁ-ନିଷ୍ଠ ପ୍ରଶ୍ନ ତିଆରି କରିଥିଲେ । ବିଭିନ୍ନ ମାଧ୍ୟମିକ ଶିକ୍ଷା ପରିଷଦର ପ୍ରଶ୍ନକର୍ତ୍ତାମାନଙ୍କୁ ତାଲିମ ଦେଇଥିଲେ । ମୂଲ୍ୟାୟନ ସମ୍ବନ୍ଧୀୟ ବହୁ ପୁସ୍ତିକା ପ୍ରକାଶ କରିଥିଲେ ଓ ପ୍ରଚଳିତ ପରୀକ୍ଷା ପଦ୍ଧତି ସହ ସଂପୃକ୍ତ କେତେ ସମସ୍ୟାର ଅନୁସନ୍ଧାନ କରାଇଥିଲେ । କ୍ରମେ ଏହି ସଂସ୍ଥାର କାର୍ଯ୍ୟ ସଂପ୍ରସାରିତ ହେବା ଫଳରେ କେନ୍ଦ୍ର ସରକାର ପ୍ରତ୍ୟେକ ରାଜ୍ୟରେ ଗୋଟିଏ ଲେଖାଏଁ ମୂଲ୍ୟାୟନ ସଂସ୍ଥା ସ୍ଥାପନ କରିବାକୁ ସିଦ୍ଧାନ୍ତ କଲେ । ବର୍ତ୍ତମାନ ଦେଶର ଅଧିକାଂଶ ରାଜ୍ୟରେ ଏହି ସଂସ୍ଥା କାର୍ଯ୍ୟ କରୁଅଛି । ଏହା ଫଳରେ ଦେଶର ବହୁ ମାଧ୍ୟମିକ ଶିକ୍ଷା ପରିଷଦ ମାଧ୍ୟମିକ ବା ଉଚ୍ଚତର ମାଧ୍ୟମିକ ପରୀକ୍ଷାର ପ୍ରଶ୍ନପତ୍ରରେ କେତେକାଂଶରେ ବସ୍ତୁ-ନିଷ୍ଠ ପ୍ରଶ୍ନ ଦେଉଅଛନ୍ତି ।

ରଚନା ପ୍ରଣାଳୀରେ ଲିଖିତ ଉତ୍ତରଗୁଡ଼ିକର ବହୁ ତ୍ରୁଟି ଥିବା ସତ୍ତ୍ୱେ କେତେକ କ୍ଷେତ୍ରରେ ଏହାର ପ୍ରୟୋଜନ ମଧ୍ୟ ଅଛି । ଯେଉଁଠାରେ ଚିନ୍ତାଧାରାର ସଙ୍ଗଠନ ଓ ପ୍ରକାଶ କରିବା ଶକ୍ତିର ପରୀକ୍ଷା ଆବଶ୍ୟକ ସେଠାରେ ନିବନ୍ଧମୂଳକ ପ୍ରଶ୍ନ ଅଧିକ ଉପଯୋଗୀ । ତେଣୁ ଆବଶ୍ୟକ ସ୍ଥଳେ ଏହି ପ୍ରକାର ପ୍ରଶ୍ନ ଦିଆଯାଇପାରେ; ମାତ୍ର ଏହାର ମୂଲ୍ୟ ନିର୍ଣ୍ଣୟ ପଦ୍ଧତି ପରୀକ୍ଷା ପୂର୍ବରୁ ନିର୍ଦ୍ଦିଷ୍ଟ ହେବା ଆବଶ୍ୟକ । ଠିକ୍ କେଉଁ କେଉଁ ବିଷୟ ବା ବିବରଣୀ ଉପରେ ଗୁରୁତ୍ୱ ଦିଆଯିବ ଓ ସେହି ଗୁରୁତ୍ୱ ପାଇଁ କେତେ ମୂଲ୍ୟ ଦିଆଯିବ ତାହା ନିର୍ଦ୍ଦିଷ୍ଟ ହେବା ଆବଶ୍ୟକ । ତାହାହେଲେ ରଚନା ପ୍ରଣାଳୀରେ ଲିଖିତ ପରୀକ୍ଷାଗୁଡ଼ିକ କେତେକାଂଶରେ ମାର୍ଜିତ ହୋଇପାରିବ ।

### ଅନ୍ତଃ-ସମୀକ୍ଷାର ଆବଶ୍ୟକତା

ମାଧ୍ୟମିକ ବିଦ୍ୟାଳୟର ଚାରିବର୍ଷର ପାଠ୍ୟକ୍ରମ କିମ୍ବା ମହାବିଦ୍ୟାଳୟର ଦୁଇ ବା ତିନିବର୍ଷର ପାଠ୍ୟକ୍ରମ ଉପରେ ଆଧାରିତ ଗୋଟିଏ ପରୀକ୍ଷାରେ କୃତକାର୍ଯ୍ୟ ବା ଅକୃତକାର୍ଯ୍ୟ ହେବା ଯୋଗ୍ୟତାର ମାନଦଣ୍ଡ ନିର୍ଦ୍ଧାରଣ ପାଇଁ ଏକ ଶେଷ ସିଦ୍ଧାନ୍ତରୂପେ ବିବେଚିତ ହୋଇ ଆସୁଅଛି । ଏହି ଭ୍ରମାତ୍ମକ ସିଦ୍ଧାନ୍ତର କୌଣସି ଯଥାର୍ଥତା ନାହିଁ; ବରଂ ଏହି ପ୍ରକାରର ପରୀକ୍ଷା ଛାତ୍ରମାନଙ୍କୁ କେବଳ ଉଦ୍‌ଭ୍ରାନ୍ତ କରାଇବାରେ ପ୍ରକାରାନ୍ତରେ ସାହାଯ୍ୟ କରେ । ଛାତ୍ର ଯେତେବେଳେ ବୁଝେ ଯେ, ତିନି ବା ଚାରିବର୍ଷ ପରେ ହେଉଥିବା ପରୀକ୍ଷା ହିଁ ପ୍ରକୃତ ପରୀକ୍ଷା ସେତେବେଳେ ସେ କେବଳ ସେହି ପରୀକ୍ଷା ପ୍ରତି ଲକ୍ଷ୍ୟ ରଖି ପାଠ ପଢ଼େ । ତେଣୁ ଶ୍ରେଣୀ ପରୀକ୍ଷା ପ୍ରତି ଅନେକ ଛାତ୍ର ଯତ୍ନବାନ ହୁଅନ୍ତି ନାହିଁ ବା ଶ୍ରେଣୀ ପରୀକ୍ଷାରେ ଦକ୍ଷତା ପ୍ରଦର୍ଶନ ପାଇଁ ସେମାନଙ୍କର ଆକାଙ୍‌କ୍ଷା ନ ଥାଏ । ଅନେକ ମେଧାବୀ ଛାତ୍ର ଶ୍ରେଣୀ ପରୀକ୍ଷାର ଉପଯୋଗିତା ସମ୍ବନ୍ଧରେ ସନ୍ଦିହାନ ହୋଇ ଅଧ୍ୟୟନରେ ମନୋନିବେଶ ନ କରି ବିଶୃଙ୍ଖଳିତ କାର୍ଯ୍ୟକଳାପରେ ଲାଗି ରହନ୍ତି । ଶିକ୍ଷାଦାନକାରୀ ଶିକ୍ଷକମାନଙ୍କର ଛାତ୍ରର କୃତିତ୍ୱ

ନିର୍ଣ୍ଣୟ କରିବାରେ ଯେ କୌଣସି ନୀତି ନାହିଁ ତାହା ଜାଣି ଛାତ୍ରମାନେ ସେମାନଙ୍କ ପ୍ରତି ଉପଯୁକ୍ତ ସମ୍ମାନ ମଧ୍ୟ ପ୍ରଦର୍ଶନ କରନ୍ତି ନାହିଁ । ଏ ସବୁ ଅନେକ ସ୍ଥଳରେ ବିଶୃଙ୍ଖଳାର ଏକ ଏକ କାରଣ ହୁଏ । ଏତଦ୍‌ବ୍ୟତୀତ, ଏହା ମଧ୍ୟ ସମ୍ଭବପର ଯେ ଜଣେ ଜଣେ କୃତୀ ଛାତ୍ର ସମସ୍ତ ଶ୍ରେଣୀ ପରୀକ୍ଷାରେ ଅଭୂତପୂର୍ବ ସାଫଲ୍ୟ ଅର୍ଜନ କରି ବ୍ୟକ୍ତିଗତ ଶାରୀରିକ ବା ମାନସିକ ଅସୁସ୍ଥତା ହେତୁ ଶେଷ ପରୀକ୍ଷାରେ କୃତିତ୍ୱ ଅର୍ଜନ କରିବାର ସୁଯୋଗରୁ ବଞ୍ଚିତ ହୁଅନ୍ତି । ଏହି ସମସ୍ୟାର ସମାଧାନ ପାଇଁ ଶ୍ରେଣୀ ପରୀକ୍ଷାଗୁଡ଼ିକ ପ୍ରତି ସମାନ ଗୁରୁତ୍ୱ ଆରୋପ କରାଯିବା ବାଞ୍ଛନୀୟ । କୌଣସି କୌଣସି ଶିକ୍ଷାବିତ୍‌ଙ୍କ ମତରେ କେବଳ ଏହି ବ୍ୟବସ୍ଥାହିଁ ଛାତ୍ର ବିଶୃଙ୍ଖଳାକୁ ବହୁ ପରିମାଣରେ କମାଇଦେବ । ଅବଶ୍ୟ କେହି କେହି ଆଶଙ୍କା କରନ୍ତି ଯେ, ଶିକ୍ଷକମାନେ ଅନେକ କ୍ଷେତ୍ରରେ କ୍ଷମତାର ଅପପ୍ରୟୋଗ କରିବେ ଯାହା ଫଳରେ ଶିକ୍ଷାନୁଷ୍ଠାନରେ ପ୍ରିୟାପ୍ରୀତି ତୋଷଣ ସୃଷ୍ଟିହେବ । ପ୍ରତ୍ୟେକ ବ୍ୟବସ୍ଥାର କେତେକ କୁପରିଣାମ ଥାଇପାରେ, ମାତ୍ର ବର୍ତ୍ତମାନ ପରିସ୍ଥିତିରେ ଅନ୍ତଃ-ସମୀକ୍ଷା (Internal assessment) ପ୍ରଚଳନ କରାଗଲେ କୁପରିଣାମଠାରୁ ସୁପରିଣାମ ଯଥେଷ୍ଟ ଅଧିକ ହେବ । ଅନ୍ତଃ-ସମୀକ୍ଷାର କୁପରିଣାମ ଏକ ଆଶଙ୍କା ମାତ୍ର । ଗବେଷଣା ବା ଅନୁସନ୍ଧାନ ଦ୍ୱାରା ଏହାର ସତ୍ୟତା ସୁପ୍ରତିଷ୍ଠିତ ହୋଇନାହିଁ । କୌଣସି କୌଣସି ସ୍ଥାନରେ ପ୍ରଥମାବସ୍ଥାରେ କେତେକ ଅସୁବିଧା ଉପୁଜି ଥାଇପାରେ; ମାତ୍ର ଏହା ଏକ ସ୍ଥାୟୀ ଅବ୍ୟବସ୍ଥା ରୂପେ ରହିପାରିବ ନାହିଁ । ମୁଦାଲିୟର କମିଶନଙ୍କ ମତରେ, "ଶିକ୍ଷକମାନଙ୍କ ଉପରେ ଆସ୍ଥା ସ୍ଥାପନ କରିବାହିଁ ହେଉଛି ସେମାନଙ୍କୁ ବିଶ୍ୱସ୍ତ କରିବାର ଏକମାତ୍ର ପନ୍ଥା ।"

### ଉନ୍ନତ ମୂଲ୍ୟାୟନ ପଦ୍ଧତିର ଅନ୍ୟ କେତେକ ଦିଗ

ବାହ୍ୟ ପରୀକ୍ଷା ଓ ଅନ୍ତଃ-ସମୀକ୍ଷା ଉଭୟ ମିଳିତ ଭାବରେ ଛାତ୍ରର ସର୍ବଦିଗର ଅଗ୍ରଗତି ସମ୍ବନ୍ଧରେ ଏକ ସମ୍ପୂର୍ଣ୍ଣ ଚିତ୍ର ଦେଇପାରିବେ ନାହିଁ । ଛାତ୍ରର ଆଗ୍ରହ (Interest), ଅଭିକ୍ଷମତା (Aptitude), ବ୍ୟକ୍ତିତ୍ୱ (Personality), ସାମାଜିକ ବୃତ୍ତିର ବିକାଶ ଓ ପାଠ୍ୟକ୍ରମ ବହିର୍ଭୂତ କାର୍ଯ୍ୟକ୍ରମରେ କୃତିତ୍ୱ ଇତ୍ୟାଦିର ଲିପିବଦ୍ଧ ବିବରଣୀ ଉନ୍ନତ ମୂଲ୍ୟାୟନ ପଦ୍ଧତିର ଅନ୍ତର୍ଭୁକ୍ତ । କାରଣ କେବଳ ପାଠ୍ୟ ବିଷୟଗୁଡ଼ିକରେ କୃତିତ୍ୱଲାଭ କରିବା ହେତୁ ଜଣେ ଛାତ୍ର ସୁନାଗରିକ ଭାବରେ ପ୍ରତିଷ୍ଠିତ ହୋଇପାରିବେ ନାହିଁ । ଉଦାହରଣସ୍ୱରୂପ, ବିଶ୍ୱବିଦ୍ୟାଳୟରେ ଉଚ୍ଚସ୍ଥାନ ଅଧିକାର କରି ଡାକ୍ତରୀ ପରୀକ୍ଷାରେ କୃତିତ୍ୱ ଅର୍ଜନ କରିଥିବା ଜଣେ ଛାତ୍ର ତାଙ୍କ ଜୀବନରେ ହୁଏତ ଡାକ୍ତର ହିସାବରେ ବିଫଳ ହୋଇପାରନ୍ତି କାରଣ ଲୋକମାନଙ୍କ ପ୍ରତି ତାଙ୍କର ଦୁର୍ବ୍ୟବହାର ହେତୁ କୌଣସି ରୋଗୀ ତାଙ୍କ ପାଖକୁ ପରାମର୍ଶ କରିବାକୁ ଆସି ନ ପାରନ୍ତି । ସେହିପରି ଭାବ ପ୍ରକାଶର ସାମର୍ଥ୍ୟ ଅଭାବରୁ ବିଶ୍ୱବିଦ୍ୟାଳୟର ଜଣେ କୃତୀଛାତ୍ର ଶିକ୍ଷକ ହିସାବରେ ଅଯୋଗ୍ୟ ବିବେଚିତ ହୋଇପାରନ୍ତି । ତେଣୁ ନିଯୁକ୍ତି ଓ କର୍ମସଂସ୍ଥାନର ବିଷୟ ଚିନ୍ତାକଲେ ବାହ୍ୟ-

ପରୀକ୍ଷା ବା ଅନ୍ତଃସମୀକ୍ଷା ବହିର୍ଭୁକ୍ତ ଅନେକ ବିଷୟର ଯେ ଗୁରୁତ୍ୱ ରହିଅଛି ଏଥିରେ ସନ୍ଦେହ ନାହିଁ । ଏଥିପାଇଁ ପ୍ରତ୍ୟେକ ବିଦ୍ୟାଳୟ ବା ମହାବିଦ୍ୟାଳୟରେ ଛାତ୍ରମାନଙ୍କର ବିଭିନ୍ନ ଦିଗରେ ଅଭିବୃଦ୍ଧି ସମ୍ବନ୍ଧୀୟ ବିବରଣୀ ଲିପିବଦ୍ଧ କରାଯିବା ଉଚିତ ଏବଂ ଏହି କାର୍ଯ୍ୟ ଶିକ୍ଷାନୁଷ୍ଠାନଗୁଡ଼ିକର ଏକ ଅତ୍ୟାବଶ୍ୟକ କାର୍ଯ୍ୟକ୍ରମରୂପେ ବିବେଚିତ ହେବା ଉଚିତ । ଏହି କାର୍ଯ୍ୟକ୍ରମ ଶିକ୍ଷାକାଳ ମଧ୍ୟରେ ଛାତ୍ରର ବିଭିନ୍ନ ଅସୁବିଧା ଦୂର କରିବାରେ ଓ ପରେ ଉପଯୁକ୍ତ କର୍ମସଂସ୍ଥାନରେ ବିଶେଷ ସହାୟକ ହେବ ।

ବିଭିନ୍ନ ମାଧ୍ୟମିକ ଶିକ୍ଷାପରିଷଦର ଫଳାଫଳ ସମୀକ୍ଷା କଲେ ଜଣାଯାଏ ଯେ ପ୍ରତ୍ୟେକ ବର୍ଷ ପ୍ରାୟ ଅର୍ଦ୍ଧାଧିକ ଛାତ୍ର ଶେଷ ପରୀକ୍ଷାରେ ଅକୃତକାର୍ଯ୍ୟ ହେଉଅଛନ୍ତି । ପ୍ରତିବର୍ଷ ପରୀକ୍ଷା କରି ଛାତ୍ରମାନଙ୍କୁ ଉପର ଶ୍ରେଣୀକୁ ଉତ୍ତୀର୍ଣ୍ଣ କରାଯାଉଥିଲେ ମଧ୍ୟ ଶେଷ ପରୀକ୍ଷାରେ ଏତେ ଅଧିକ ସଂଖ୍ୟକ ପିଲା ଅକୃତକାର୍ଯ୍ୟ ହେବା ଆମର ଶିକ୍ଷା ତଥା ପରୀକ୍ଷା ପଦ୍ଧତିର ବିଫଳତାର ଏକ ଶୋଚନୀୟ ପ୍ରତିଫଳନ । ଏହା ନିଃସନ୍ଦେହ ଭାବରେ କୁହାଯାଇପାରେ ଯେ ପ୍ରଚଳିତ ପରୀକ୍ଷା ପଦ୍ଧତି ଦୋଷଯୁକ୍ତ । ଏକ ଦୋଷଯୁକ୍ତ ପଦ୍ଧତି ଦେଶର ଲକ୍ଷ ଲକ୍ଷ ତରୁଣ ତରୁଣୀଙ୍କର ଭାଗ୍ୟ ନିରୂପଣ କରିବା ଅତ୍ୟନ୍ତ ଦୁଃଖର କଥା । ପୁଣି ପରୀକ୍ଷାର୍ଥୀମାନଙ୍କ ସଂଖ୍ୟା ଯେଉଁ ହାରରେ ବଢ଼ିଚାଲିଅଛି ସେଥିରେ ଉପଯୁକ୍ତ, ନିର୍ଭୁଲ ଓ ନିରପେକ୍ଷ ପରୀକ୍ଷା ପଦ୍ଧତି ପ୍ରଚଳନ ନ କଲେ ଲକ୍ଷ ଲକ୍ଷ ରଚନା ପ୍ରଣାଳୀରେ ଲିଖିତ ଉତ୍ତର ଖାତା ସଂଶୋଧନ କରାଇବା ମଧ୍ୟ ଏକ ଦୁରୂହ ବ୍ୟାପାରରେ ପରିଣତ ହେବ ।

ପରୀକ୍ଷା ପଦ୍ଧତି ସଂସ୍କାରର ପରିଣତି ସୁଦୂରପ୍ରସାରୀ । ଆଗରୁ କୁହାଯାଇଅଛି ଯେ ଏହି ପରୀକ୍ଷାହିଁ ଶିକ୍ଷାଦାନ ପଦ୍ଧତି ତଥା ଛାତ୍ରମାନଙ୍କର ଅଧ୍ୟୟନ ରୀତି ଉପରେ ଗୁରୁତର ପ୍ରଭାବ ପକାଉଅଛି । ଦୁଇ ତିନିବର୍ଷର ପ୍ରଶ୍ନପତ୍ର ଦେଖି ପ୍ରଶ୍ନ ବାଛି କୌଣସିମତେ ଉତ୍ତର ଘୋଷି ପରୀକ୍ଷାରେ କୃତକାର୍ଯ୍ୟ ହେବାର ସମ୍ଭାବନା ରହିଥିବା ପର୍ଯ୍ୟନ୍ତ ଛାତ୍ରମାନେ କେବଳ ଶେଷ ବର୍ଷହିଁ କଠିନ ପରିଶ୍ରମ କରୁଥିବେ ଓ ଅନ୍ୟ ସମୟର ଅପବ୍ୟବହାର କରୁଥିବେ । ଏହି କାରଣରୁ ବଜାରରେ ବହୁ ପ୍ରଶ୍ନୋତ୍ତର ପୁସ୍ତକର ପ୍ରସାର ସମ୍ଭବପର ହୋଇପାରିଅଛି । ଯଦି ପ୍ରଶ୍ନପତ୍ର ଭିନ୍ନ ପ୍ରକାରର ହୁଏ ଅର୍ଥାତ୍ ପାଞ୍ଚ ବା ସାତଗୋଟି ପ୍ରଶ୍ନ ପରିବର୍ତ୍ତେ ଦୁଇଶହ କ୍ଷୁଦ୍ର ପ୍ରଶ୍ନ ବା ବସ୍ତୁ-ନିଷ୍ଠ ପ୍ରଶ୍ନ ଦିଆଯାଏ ତେବେ ପ୍ରଶ୍ନ ବାଛି ମୁଖସ୍ଥ କରିବାର ସମ୍ଭାବନା ଦୂର ହେବ । ଫଳରେ ଛାତ୍ରମାନେ ସାରାବର୍ଷ ମନୋଯୋଗୀ ହୋଇ ପାଠ ପଢ଼ିବାକୁ ବାଧ୍ୟ ହେବେ । ଛାତ୍ରମାନେ ନିଜ ନିଜର କର୍ତ୍ତବ୍ୟ ପାଳନରେ ବ୍ରତୀ ହେଲେ ବିଶୃଙ୍ଖଳା ନିଶ୍ଚୟ ହ୍ରାସ ପାଇବ ।

## କୋଠାରୀ କମିଶନଙ୍କ ଅନ୍ୟ କେତୋଟି ପ୍ରସ୍ତାବ

ଉଲ୍ଲିଖିତ ପରିଚ୍ଛେଦଗୁଡ଼ିକରେ ପରୀକ୍ଷା ପଦ୍ଧତିର ତ୍ରୁଟି ସମ୍ବନ୍ଧରେ ବିଭିନ୍ନ ଦିଗରୁ ଆଲୋଚନା କରାଯାଇଅଛି ଏବଂ ତ୍ରୁଟି ଦୂର କରିବାକୁ କେତେକ ଅବଶ୍ୟକ କାର୍ଯ୍ୟାନୁଷ୍ଠାନର

ସୂଚନା ମଧ୍ଯ ଦିଆଯାଇଅଛି । ଏତଦ୍‌ବ୍ୟତୀତ, କୋଠାରି କମିଶନଙ୍କ ଦ୍ୱାରା ପ୍ରସ୍ତାବିତ ଆଉ କେତେକ ପନ୍ଥାର ସୂଚନା ଏଠାରେ ଦିଆଯାଇପାରେ । କମିଶନଙ୍କ ମତରେ ନିମ୍ନପ୍ରାଥମିକ ସ୍ତରରେ ପିଲାମାନଙ୍କର ଉପଯୁକ୍ତ ଅଭ୍ୟାସ ଓ ମନୋବୃତ୍ତିର ଉନ୍ନତି ପାଇଁ ଏବଂ କେତେକ ମୌଳିକ ଦକ୍ଷତା (Basic skills) ହାସଲ କରିବା ପାଇଁ ମୂଲ୍ୟାୟନ ପଦ୍ଧତି ସହାୟକ ହେବା ବାଞ୍ଛନୀୟ । ମୌଳିକ ଦକ୍ଷତା, ଅଭ୍ୟାସ ଓ ମନୋବୃତ୍ତି ଆଦିର ଅଭିବୃଦ୍ଧିର ବେଗ ଭିନ୍ନ ଭିନ୍ନ ପିଲାଙ୍କ ପାଇଁ ଭିନ୍ନ ଭିନ୍ନ ହେବା ସ୍ୱାଭାବିକ । ତେଣୁ ପ୍ରଥମ ଚାରିଗୋଟି ଶ୍ରେଣୀ ଗୋଟିଏ ଏକକରୂପେ କମ୍ବା ଯେଉଁଠାରେ ଏହା ସମ୍ଭବପର ହେବନାହିଁ ସେଠାରେ ପ୍ରଥମ ଦୁଇଟି ଶ୍ରେଣୀ ଗୋଟିଏ ଏକକରୂପେ ବିବେଚିତ ହେବା ଦରକାର । ଏହି ବ୍ୟବସ୍ଥା ଅନୁସାରେ ପିଲାମାନେ ନିଜ ନିଜର ଶକ୍ତି ଅନୁଯାୟୀ ଅଗ୍ରଗତି କରିପାରିବେ । ପ୍ରଥମ ଶ୍ରେଣୀରେ ଅକୃତକାର୍ଯ୍ୟ ହୋଇ କେହି ରହିବେ ନାହିଁ । ଉଚ୍ଚ ପ୍ରାଥମିକ ସ୍ତରରେ ଲିଖିତ ପରୀକ୍ଷା ସହ ଅନ୍ତଃ ସମୀକ୍ଷା ପାଇଁ କରାଯାଉଥିବା ମୌଖିକ ପରୀକ୍ଷାକୁ ମଧ୍ଯ ଗୁରୁତ୍ୱ ଦିଆଯିବା ଉଚିତ । ଛାତ୍ରର ବିଭିନ୍ନ ଦିଗର ଅଗ୍ରଗତି ସମ୍ବନ୍ଧରେ ଧାରଣା ଦେବାପାଇଁ ସମନ୍ୱିତ ବିବରଣୀମାନ (Cumulative records) ବିଦ୍ୟାଳୟଗୁଡ଼ିକରେ ପ୍ରଚଳିତ ହେବା ଆବଶ୍ୟକ । ଏହି ଅଭିଲେଖଗୁଡ଼ିକ ସହଜବୋଧ୍ୟ ହେବା ଉଚିତ ଏବଂ ଏଗୁଡ଼ିକ ପର୍ଯ୍ୟାୟକ୍ରମେ ପ୍ରଚଳନ କରାଯିବା ଉଚିତ ।

ପ୍ରାଥମିକ ଶିକ୍ଷା ଶେଷ ହେବା ପରେ ଜିଲ୍ଲା ଶିକ୍ଷା କର୍ତ୍ତୃପକ୍ଷ ତାଙ୍କ ଅଧୀନସ୍ଥ ସମସ୍ତ ବିଦ୍ୟାଳୟପାଇଁ ଗୋଟିଏ ସାଧାରଣ ପରୀକ୍ଷା କରିପାରନ୍ତି । ଶିକ୍ଷାର ଉପଯୁକ୍ତ ମାନ ରକ୍ଷା କରାଯାଉଅଛି କି ନାହିଁ ଏବଂ ବିଦ୍ୟାଳୟ ବିଦ୍ୟାଳୟ ମଧ୍ୟରେ ଅଗ୍ରଗତିର ହାର ସମାନ ରହୁଛି କି ନାହିଁ, ଏସବୁ ଏହି ପରୀକ୍ଷାଦ୍ୱାରା ନିର୍ଣ୍ଣୀତ ହୋଇପାରିବ । ମାତ୍ର ଏହି ପରୀକ୍ଷା-ଗୁଡ଼ିକ ବିଶେଷ ନିର୍ଭରଯୋଗ୍ୟ ନ ହେଲେ ବିଦ୍ୟାଳୟଗୁଡ଼ିକର ଏକ ତୁଳନାତ୍ମକ ଚିତ୍ର ଦେଇପାରିବ ନାହିଁ । ବିଦ୍ୟାଳୟଗୁଡ଼ିକ ପରୀକ୍ଷା ଶେଷରେ ପ୍ରମାଣପତ୍ର ଦେବା ଉଚିତ । ସେହି ପ୍ରମାଣପତ୍ର ସହ ବିଦ୍ୟାଳୟରେ ଲିପିବଦ୍ଧ ହେଉଥିବା ଅଭିଲେଖ ସଂଯୁକ୍ତ ହେବା ଦରକାର । ଏତଦ୍‌ବ୍ୟତୀତ ସାଧାରଣ ପରୀକ୍ଷାରେ ପିଲାର କୃତିତ୍ୱ ସମ୍ବନ୍ଧରେ ମଧ୍ଯ ସୂଚନା ଦିଆଯାଇପାରେ । ପ୍ରତିଭାବାନ ଛାତ୍ରମାନଙ୍କ ସନ୍ଧାନ ପାଇଁ କିମ୍ବା ଛାତ୍ରବୃତ୍ତି ଦେବାପାଇଁ ସ୍ୱତନ୍ତ୍ର ପରୀକ୍ଷାମାନ କରାଯାଇପାରେ ।

ପ୍ରଶ୍ନକର୍ତ୍ତାମାନଙ୍କର ବୈଷୟିକ ଦକ୍ଷତା (Technical competence) ବୃଦ୍ଧି କରି, ପ୍ରଶ୍ନଗୁଡ଼ିକ ଲକ୍ଷ୍ୟାଭିମୁଖୀ କରି, ଉନ୍ନତ ଧରଣର ପ୍ରଶ୍ନ ତିଆରିକରି, ବୈଜ୍ଞାନିକ ପଦ୍ଧତିରେ ମୂଲ୍ୟ ନିରୂପଣର ବ୍ୟବସ୍ଥା କରି, ଯାନ୍ତ୍ରିକ ଉପାୟରେ ମୂଲ୍ୟ ନିରୂପଣ ଏବଂ ଫଳାଫଳକୁ ବିଶ୍ଳେଷଣ କରିବାର ବ୍ୟବସ୍ଥା କରି ବାହ୍ୟ ପରୀକ୍ଷାର ଉନ୍ନତି କରାଯାଇ ପାରେ ।

ବିଦ୍ୟାଳୟ ଶିକ୍ଷା ପରିଷଦ ଦ୍ୱାରା ପ୍ରଦତ୍ତ ପ୍ରମାଣପତ୍ରରେ ଛାତ୍ରର କୃତିତ୍ୱ କେବଳ ଲିପିବଦ୍ଧ ହେବା ଆବଶ୍ୟକ, ମାତ୍ର ସେଥିରେ ସେ କୃତକାର୍ଯ୍ୟ ହୋଇଅଛି ବା ଅକୃତକାର୍ଯ୍ୟ ହୋଇଅଛି ତାହାର କୌଣସି ସୂଚନା ରହିବା ଉଚିତ ନୁହେଁ । ଯେଉଁ ଛାତ୍ର ଇଚ୍ଛା କରିବେ ସେ ଆଉଥରେ ସମସ୍ତ ପରୀକ୍ଷା ଦେଇ ପାରନ୍ତି । ଏହାଦ୍ୱାରା ସେ ନିଜର ଶିକ୍ଷାଗତ ମାନ ଉନ୍ନତ କରିବାପାଇଁ ସୁଯୋଗ ପାଇପାରିବେ । ବିଦ୍ୟାଳୟର ଅନ୍ତଃ-ସମୀକ୍ଷା ଓ ଅନ୍ୟାନ୍ୟ କାର୍ଯ୍ୟକଳାପର ଲିପିବଦ୍ଧ ଅଭିଲେଖ ଶିକ୍ଷା ପରିଷଦଙ୍କଦ୍ୱାରା ପ୍ରଦତ୍ତ ପ୍ରମାଣ ପତ୍ରରେ ସଂଯୁକ୍ତ ହେବା ବାଞ୍ଛନୀୟ । ଏହି ଦୁଇଟି ପ୍ରମାଣପତ୍ର ଛାତ୍ରର ସର୍ବାଙ୍ଗୀନ ଉନ୍ନତି ସମ୍ବନ୍ଧରେ ଶିକ୍ଷକ ଓ ପିତାମାତାଙ୍କୁ ଅବଗତ କରାଇବା ସଙ୍ଗେ ସଙ୍ଗେ କର୍ମ-ଯୋଗାଣ ସଂସ୍ଥାଗୁଡ଼ିକୁ ଉପଯୁକ୍ତ ପ୍ରାର୍ଥୀ ନିର୍ବାଚନରେ ସାହାଯ୍ୟ କରିପାରିବ ।

ପରୀକ୍ଷା ପଦ୍ଧତିର ସଂସ୍କାର ସମ୍ବନ୍ଧୀୟ ଅନ୍ୟାନ୍ୟ ବିଷୟଗୁଡ଼ିକ ପୂର୍ବରୁ ଆଲୋଚିତ ହୋଇଅଛି ।

## ପ୍ରଶ୍ନାବଳୀ

୧ । "ମୂଲ୍ୟାୟନ ଏକ ନିରବଚ୍ଛିନ୍ନ ବ୍ୟବସ୍ଥା ଏବଂ ଶିକ୍ଷାର ଏକ ଅବିଚ୍ଛେଦ୍ୟ ଅଙ୍ଗ ।" କିପରି ?

୨ । କେଉଁ କେଉଁ କାରଣରୁ ପ୍ରଚଳିତ ପରୀକ୍ଷା ପଦ୍ଧତି ତ୍ରୁଟିପୂର୍ଣ୍ଣ ? ଆଲୋଚନା କର ।

୩ । ଅନେକଙ୍କ ମତରେ ଛାତ୍ର ବିଶୃଙ୍ଖଳା କମାଇବା ଦିଗରେ ଅନ୍ତଃସମୀକ୍ଷା ବିଶେଷ ସହାୟକ ହେବ । ନିଜର ମତାମତ ଦିଅ ।

୪ । ଉପଯୁକ୍ତ ମୂଲ୍ୟାୟନ ପାଇଁ କି କି ନୂତନ ପଦ୍ଧତି ଅନୁସୃତ ହେବା ବାଞ୍ଛନୀୟ ? କାହିଁକି ?

୫ । ପ୍ରାଥମିକ ଶିକ୍ଷାକ୍ଷେତ୍ରରେ ପରୀକ୍ଷା ପଦ୍ଧତିର କି ସଂସ୍କାର ଅଣାଯାଇପାରିବ ?

---

# ଅଷ୍ଟମ ଅଧ୍ୟାୟ

## ଦୃଶ୍ୟ-ଶ୍ରବ୍ୟ ପ୍ରଣାଳୀ (Audiovisual Method)ରେ ଶିକ୍ଷାଦାନ ବ୍ୟବସ୍ଥା

ଶିକ୍ଷାଦାନ ସମୟରେ ଶ୍ରେଣୀ ଗୃହକୁ ସରସ, ସୁନ୍ଦର ଓ ଜୀବନ୍ତ କରିବା ପାଇଁ କେତେକ ଉପକରଣ ଏକାନ୍ତ ଆବଶ୍ୟକ । ଶିକ୍ଷାଦାନ ସମୟରେ ଶିକ୍ଷକ ଏପରି ଅନେକ ବିଷୟରେ ଆଲୋଚନା କରନ୍ତି ଯାହାର କୌଣସି ପ୍ରତ୍ୟକ୍ଷ ଅନୁଭୂତି ସେ ଛାତ୍ରମାନଙ୍କୁ ଦେଇ ପାରିବା ସମ୍ଭବପର ନୁହେଁ କିମ୍ବା ଛାତ୍ରମାନେ ଇଚ୍ଛାକଲେ ସହଜରେ ବା ଅଳ୍ପ ସମୟ ମଧ୍ୟରେ ସେହି ପ୍ରତ୍ୟକ୍ଷ ଅନୁଭୂତି ଲାଭ କରିବା ମଧ୍ୟ ସମ୍ଭବପର ନୁହେଁ । ଅନେକ ସ୍ଥଳରେ ପ୍ରତ୍ୟକ୍ଷ ଅନୁଭୂତିଗୁଡ଼ିକ ପରୋକ୍ଷରେ ଦିଆଯାଇପାରେ ଅର୍ଥାତ୍ କୌଣସି ବସ୍ତୁ ବା ସ୍ଥାନର ଧାରଣା ଆଲୋକଚିତ୍ର (Photograph) ଦ୍ୱାରା, କୌଣସି ଯନ୍ତ୍ରର କାର୍ଯ୍ୟ ବା ବିଜ୍ଞାନାଗାରରେ ଖୁବ୍ କଷ୍ଟ ହେଉଥିବା ଏକ ପରୀକ୍ଷା ସମ୍ବନ୍ଧରେ ଧାରଣା ଚଳଚ୍ଚିତ୍ର ଦ୍ୱାରା, ଅନ୍ୟ ଦେଶରେ ଫୁଟୁଥିବା ଏକ ଫୁଲର ବା ମନୁଷ୍ୟ ଦେହ ଭିତରେ ଥିବା ବିଭିନ୍ନ ଯନ୍ତ୍ରର ଧାରଣା ଚିତ୍ର ଦ୍ୱାରା ଦିଆଯାଇ ପାରେ ।

ପ୍ରକୃତ ବସ୍ତୁ, ଯନ୍ତ୍ର ବା ଫୁଲ ପରିବର୍ତ୍ତେ ଆମେ ବସ୍ତୁର ଆଲୋକଚିତ୍ର, ଯନ୍ତ୍ରର ଚଳଚ୍ଚିତ୍ର ଓ ଫୁଲର ଚିତ୍ର ଦେଖି ପ୍ରକୃତ ବିଷୟଟିର ଏକ ଧାରଣା କରୁ । ଏଥିପାଇଁ ଆମେ ଅନେକ ସମୟରେ ଦର୍ଶନ ବା ଶ୍ରବଣ କିମ୍ବା ଉଭୟର ସାହାଯ୍ୟ ନେଉ, ଯାହା ହେତୁ ଏହି ପ୍ରକାର ଶିକ୍ଷାଦାନ ବ୍ୟବସ୍ଥାକୁ "ଦୃଶ୍ୟ-ଶ୍ରବ୍ୟ ପଦ୍ଧତିରେ ଶିକ୍ଷାଦାନ ବ୍ୟବସ୍ଥା" କୁହାଯାଏ । ଅବଶ୍ୟ ଶ୍ରେଣୀ ଗୃହରେ ଶିକ୍ଷାର୍ଥୀ ଦର୍ଶନ ବା ଶ୍ରବଣ ଦ୍ୱାରା ହୋଇଥାଏ; ମାତ୍ର ଶିକ୍ଷାଦାନ ବ୍ୟବସ୍ଥାରେ "ଦୃଶ୍ୟ-ଶ୍ରବ୍ୟ ପଦ୍ଧତି" ଏହି ସୀମିତ ଅର୍ଥରେ ବ୍ୟବହୃତ ହୁଏ । ଯାହା ହେଉ ଏହା ସୁନିଶ୍ଚିତ ଯେ ଜଣେ ଶିକ୍ଷକ ଶିକ୍ଷାଦାନ କାଳରେ ବିବିଧ ଉପକରଣ ବ୍ୟବହାର କରିବା ଫଳରେ ତାଙ୍କର ଶିକ୍ଷା ଛାତ୍ରମାନଙ୍କ ପାଇଁ ଅଧିକ ଫଳପ୍ରଦ ହୋଇଥାଏ ।

### ସୀମିତ ସମ୍ବଳ ଓ ନୂତନ ଶିକ୍ଷାଦାନ ପଦ୍ଧତି

ଆଜି ଉନ୍ନତ ଦେଶଗୁଡ଼ିକରେ ଶିକ୍ଷାଦାନ ପ୍ରଣାଳୀରେ ବହୁ ନୂତନ କୌଶଳ ପ୍ରୟୋଗ କରାଯାଉଛି । ନୂତନ ପଦ୍ଧତିରେ ଶିକ୍ଷାଦାନ ପାଇଁ ଚଳଚ୍ଚିତ୍ର, ରେଡ଼ିଓ, ଟେପ୍-

ଟେଲିଭିଜନର ପ୍ରଭୂତ ପର୍ଯ୍ୟାପ୍ତ ବ୍ୟବହାର ହେଉଅଛି । ଭାରତରେ ଏସବୁ କରାଯାଇପାରିଲେ ଶିକ୍ଷାଦାନ ପ୍ରଣାଳୀରେ ଯେ ଏକ ବୈପ୍ଳବିକ ପରିବର୍ତ୍ତନ ଆଣି ହେବ ଏଥିରେ ସନ୍ଦେହ ନାହିଁ । ମାତ୍ର ଏହା କ'ଣ ସମ୍ଭବପର ? ଯେଉଁ ଦେଶର ହଜାର ହଜାର ବିଦ୍ୟାଳୟରେ ସର୍ବନିମ୍ନ ପାଠୋପକରଣର ଅଭାବ, ଯେଉଁଠାରେ ଛାତ୍ରମାନେ ଶିକ୍ଷାନୁଷ୍ଠାନଗୁଡ଼ିକର ଆର୍ଥିକ ଦୁର୍ଗତି ହେତୁ ବିଜ୍ଞାନାଗାରରେ ପାଠ୍ୟକ୍ରମ ଅନ୍ତର୍ଭୁକ୍ତ ପରୀକ୍ଷା-ନିରୀକ୍ଷା କରିବା ପାଇଁ ଆବଶ୍ୟକ ଯନ୍ତ୍ରପାତି ପାଆନ୍ତି ନାହିଁ—ସେଠାରେ ନୂତନ ଶିକ୍ଷାଦାନ-ପଦ୍ଧତି ତଥା ବୈପ୍ଳବିକ ପରିବର୍ତ୍ତନ କିପରି ସମ୍ଭବପର ହୋଇପାରିବ ତାହାହିଁ ଏକ ସମସ୍ୟା ।

ଦୃଶ୍ୟ-ଶ୍ରବ୍ୟ ପଦ୍ଧତିରେ ଶିକ୍ଷାଦାନର ଉପଯୋଗିତା ସମ୍ବନ୍ଧରେ କେହି ଦ୍ୱିମତ ନୁହଁନ୍ତି; ମାତ୍ର ଆମର ସୀମିତ ସମ୍ବଳ ମଧ୍ୟରେ ଆମେ କ'ଣ କରିପାରିବୁ—ତାହାହିଁ ପ୍ରଶ୍ନ । ଏକ ଦିଗରେ ସୀମିତ ସମ୍ବଳର ଉପଯୋଗିତା ସମ୍ବନ୍ଧରେ ଚିନ୍ତା କରିବା ସମୟରେ ଏହା ମଧ୍ୟ ଭୁଲିଯିବା ଉଚିତ ନୁହେଁ ଯେ ଦେଶର ବହୁ ଶିକ୍ଷାନୁଷ୍ଠାନରେ ପାଠୋପକରଣର ପ୍ରାଚୁର୍ଯ୍ୟ ଏପରି ଯେ ବର୍ଷ ବର୍ଷ ଧରି ଅନେକ ଯନ୍ତ୍ରପାତି ଅବ୍ୟବହୃତ ହୋଇ ନଷ୍ଟ ହୋଇ ଯାଉଅଛି । କୋଠାରି କମିଶନଙ୍କ ମତରେ ବିଭିନ୍ନ ପ୍ରକାରର ବିଦ୍ୟାଳୟ ପାଇଁ ସର୍ବନିମ୍ନ ପାଠୋପକରଣର ଏକ ତାଲିକା ପ୍ରସ୍ତୁତ କରାଯିବା ଉଚିତ । ଏହି ତାଲିକାରେ ଥିବା ଉପକରଣଗୁଡ଼ିକ ଯେତେ କମ ଖର୍ଚ୍ଚରେ କରାଯାଇ ପାରିବ ସେଥିପ୍ରତି ଦୃଷ୍ଟି ଦିଆଯିବା ଦରକାର; ମାତ୍ର ଥରେ ସର୍ବନିମ୍ନ ଆବଶ୍ୟକତା ନିର୍ଦ୍ଧାରିତ ହୋଇଯିବା ପରେ ତଦାରଖ କର୍ତ୍ତୃପକ୍ଷ ଦେଖିବା ଉଚିତ ଯେ ପ୍ରତ୍ୟେକ ବିଦ୍ୟାଳୟ ଯେପରି ସେ ସବୁ ଉପକରଣର ଅଧିକାରୀ ହୁଅନ୍ତି ।

### କେତେକ ପରିକଳ୍ପିତ ଯୋଜନା

ଚଳଚ୍ଚିତ୍ର ଶିକ୍ଷାର ଏକ ମାଧ୍ୟମରୂପେ ଅଧିକରୁ ଅଧିକତର ବ୍ୟବହୃତ ହେଉଛି । ଆଜି ଦେଶର ବହୁ ବିଦ୍ୟାଳୟରେ ଚଳଚ୍ଚିତ୍ର ଦେଖାଇବା ପାଇଁ ଆବଶ୍ୟକ ସମସ୍ତ ଯନ୍ତ୍ରପାତି ଓ ଉପକରଣ ରହିଅଛି ; ମାତ୍ର ଏହି ପ୍ରକାର ବିଦ୍ୟାଳୟ ସଂଖ୍ୟା ଖୁବ୍ କମ । ଏହି ସମସ୍ୟାର ସମାଧାନ ପାଇଁ କୋଠାରି କମିଶନଙ୍କ ପରିକଳ୍ପିତ ଯୋଜନା ପ୍ରତି ଦୃଷ୍ଟି ଦିଆଯାଇପାରେ । ଏହି ଯୋଜନା ଅନୁସାରେ ଗୋଟିଏ ଉଚ୍ଚ ବା ଉଚ୍ଚତର ମାଧ୍ୟମିକ ବିଦ୍ୟାଳୟ ସେହି ଅଞ୍ଚଳର ଅନ୍ୟ ସମସ୍ତ ନିମ୍ନମାଧ୍ୟମିକ ଓ ପ୍ରାଥମିକ ବିଦ୍ୟାଳୟର ମାନ ଉନ୍ନତ କରିବାରେ ସହାୟକ ହେବା ଉଚିତ । ତେଣୁ କେବଳ ଉଚ୍ଚ ବା ଉଚ୍ଚତର ମାଧ୍ୟମିକ ବିଦ୍ୟାଳୟଗୁଡ଼ିକୁ ଗୋଟିଏ ଲେଖାଏଁ ଚଳଚ୍ଚିତ୍ର ଦେଖାଇବା ଯନ୍ତ୍ର ଯୋଗାଇ ଦିଆଯାଇପାରେ । ଅନ୍ୟାନ୍ୟ ବିଦ୍ୟାଳୟ ସେଠାରୁ ଯନ୍ତ୍ରପାତି ନେଇ ନିଜର ସୁବିଧା ଅନୁସାରେ ଚଳଚ୍ଚିତ୍ର ଦେଖାଇବାର ବ୍ୟବସ୍ଥା କରିବେ । ଯେଉଁଠାରେ ଗ୍ରାମ ପାଞ୍ଚ ଗୋଟି

ମାଧ୍ୟମିକ ବିଦ୍ୟାଳୟ ଅଳ୍ପ ଅଳ୍ପ ଦୂରତା ମଧ୍ୟରେ ରହିଅଛି ସେଠାରେ ଗୋଟିଏ ମାତ୍ର ଚଳଚ୍ଚିତ୍ର ଦେଖାଇବା ଯନ୍ତ୍ର ରଖାଯାଇ ପାରେ । ଏହିପରି ଏକ ଯୋଜନା କାର୍ଯ୍ୟକାରୀ କରିବା ପାଇଁ ବିଦ୍ୟାଳୟ ବିଦ୍ୟାଳୟ ମଧ୍ୟରେ ଆବଶ୍ୟକ ସହଯୋଗ ଓ ସମନ୍ୱୟ ସ୍ଥାପିତ ହେବା ଉଚିତ ।

ଅଧିକାଂଶ ପ୍ରାଥମିକ ଓ ମାଧ୍ୟମିକ ବିଦ୍ୟାଳୟକୁ ଅଳ୍ପ ଦାମରେ ଗୋଟିଏ ଗୋଟିଏ ରେଡ଼ିଓ ଯୋଗାଇ ଦିଆଯାଇପାରେ । ରେଡିଓ ମାଧ୍ୟମରେ ବିଦ୍ୟାଳୟ କାର୍ଯ୍ୟକ୍ରମ ପାଇଁ ପ୍ରସ୍ତରର ଏକ ସୁଚିନ୍ତିତ ଯୋଜନା କରାଯାଇପାରେ । କେଉଁ କେଉଁ ସମୟରେ ବିଦ୍ୟାଳୟ କାର୍ଯ୍ୟକ୍ରମ ପ୍ରସାରିତ ହେଲେ ବିଦ୍ୟାଳୟଗୁଡ଼ିକ ପାଇଁ ବିଶେଷ ଉପଯୋଗୀ ହୋଇପାରିବ ତାହା ଶିକ୍ଷା ବିଭାଗ ଓ ଆକାଶବାଣୀ ମିଳିତ ଭାବରେ ସ୍ଥିର କରିବା ଆବଶ୍ୟକ । କୋଠାରି କମିଶନଙ୍କର ମତ ଯେ ଶିକ୍ଷକମାନଙ୍କ ପାଇଁ ବିଶେଷ ରେଡ଼ିଓ କାର୍ଯ୍ୟକ୍ରମ ଖୁବ ସକାଳେ ବା ରାତ୍ରିରେ ପ୍ରସାରିତ ହେବା ଉଚିତ ଯାହା ସେମାନଙ୍କୁ ସେମାନଙ୍କର ବିଷୟ ଜ୍ଞାନ (Subject Knowledge) ବୃଦ୍ଧିରେ ସାହାଯ୍ୟ କରିବ ଓ ପରବର୍ତ୍ତୀ ପାଠ୍ୟ ପ୍ରସ୍ତୁତ କରିବାରେ ସହାୟକ ହେବ ।

ଶିକ୍ଷାଦାନ ପଦ୍ଧତିରେ ଅନେକ ପ୍ରକାର ଜଟିଳ ଯନ୍ତ୍ରପାତି ବ୍ୟବହାର କରାଯାଇ-ପାରେ; ମାତ୍ର ଏ ସବୁର ବ୍ୟବହାର ଓ ସଦୁପଯୋଗ କରିବାପାଇଁ ତାଲିମପ୍ରାପ୍ତ ଶିକ୍ଷକ ମଧ୍ୟ ଆବଶ୍ୟକ, ନଚେତ୍ ଏଗୁଡ଼ିକ ବ୍ୟବହୃତ ନ ହୋଇ ପଡ଼ିରହିବ ଓ ଏଥିପାଇଁ ଖର୍ଚ୍ଚ ହୋଇଥିବା ଅର୍ଥ କେବଳ ନଷ୍ଟ ହେବାହିଁ ସାରହେବ । ଅବଶ୍ୟ କେତେକ ଉନ୍ନତ ଓ ଅଗ୍ରଗାମୀ ବିଦ୍ୟାଳୟରେ ଭାଷାପରୀକ୍ଷାଗାର (Language Laboratory) ଏବଂ ଶିକ୍ଷାଦାନ କଳ (Teaching Machines)ର ବ୍ୟବହାର କରାଯାଇପାରେ; ମାତ୍ର ଏ ସବୁ ପ୍ରଥମେ ଶିକ୍ଷକ-ପ୍ରଶିକ୍ଷଣ ମହାବିଦ୍ୟାଳୟଗୁଡ଼ିକରେ ବ୍ୟବହୃତ ହେବା ଦରକାର । ତହିଁହେଲେ ତାଲିମପ୍ରାପ୍ତ ଶିକ୍ଷକମାନେ କ୍ରମେ ଏହିସବୁ ଯନ୍ତ୍ରପାତି ନିଜ ନିଜ ବିଦ୍ୟାଳୟରେ ରଖିବାକୁ ଓ ବ୍ୟବହାର କରିବାକୁ ଆଗ୍ରହୀ ହେବେ ।

ଆମର ଅଧିକାଂଶ ଶିକ୍ଷକଙ୍କୁ ଅଳ୍ପ ଖର୍ଚ୍ଚରେ ପ୍ରସ୍ତୁତ ଯନ୍ତ୍ରପାତି ଓ ଉପକରଣ ଉପରେ ନିର୍ଭର କରିବାକୁହିଁ ପଡ଼ିବ । ଏ ଦିଗରେ ପ୍ରଶିକ୍ଷଣ ମହାବିଦ୍ୟାଳୟଗୁଡ଼ିକର ସ୍ୱତନ୍ତ୍ର ଦାୟିତ୍ୱ ରହିଛି । ସେଠାରେହିଁ ପ୍ରଥମେ ଶିକ୍ଷକମାନଙ୍କୁ ସହଜରେ ଓ ଅଳ୍ପ ଖର୍ଚ୍ଚରେ ମିଳୁଥିବା ଜିନିଷପତ୍ରରୁ ଆବଶ୍ୟକ ଉପକରଣ ପ୍ରସ୍ତୁତ କରିବାପାଇଁ (Improvised teaching aids) ଶିକ୍ଷା ଓ ପ୍ରେରଣା ଦିଆଯିବା ଉଚିତ । କେତେକ ବିଦ୍ୟାଳୟର କର୍ମଶାଳା (work shop)ରେ କର୍ମାଭିଜ୍ଞତାର ଏକ ଅଙ୍ଗରୂପେ ବିଭିନ୍ନ ଉପକରଣ ପ୍ରସ୍ତୁତ କରାଯାଇପାରେ । ଏହି ଉପକରଣଗୁଡ଼ିକ ସେହି ବିଦ୍ୟାଳୟରେ

ବ୍ୟବହୃତ ହୋଇପାରିବ ଏବଂ ଆବଶ୍ୟକ ହେଲେ ଅନ୍ୟ ବିଦ୍ୟାଳୟକୁ ମଧ୍ୟ ଯୋଗାଇ ଦିଆଯାଇ ପାରିବ । ଏହା ବ୍ୟତୀତ ସରକାରୀ ପ୍ରଚେଷ୍ଟାରେ, ଅଳ୍ପ ଖର୍ଚ୍ଚରେ ବହୁସଂଖ୍ୟକ ସରଳ ଯନ୍ତ୍ରପାତି ଓ ପାଠୋପକରଣର ଉତ୍ପାଦନ ପାଇଁ କାରଖାନାମାନ ସ୍ଥାପିତ ହୋଇପାରେ ।

ଦୃଶ୍ୟ-ଶ୍ରବ୍ୟ ପଦ୍ଧତିରେ ଶିକ୍ଷାଦାନ ପାଇଁ ଉଲ୍ଲିଖିତ ପରିଚ୍ଛେଦଗୁଡ଼ିକରେ ବର୍ଣ୍ଣିତ ଉପକରଣଗୁଡ଼ିକ ବ୍ୟତୀତ ପ୍ରତ୍ୟେକ ବିଦ୍ୟାଳୟରେ ଯଥେଷ୍ଟ ସଂଖ୍ୟକ ମାନଚିତ୍ର, ଚାର୍ଟ, ପ୍ରତିକୃତି (Model) ଇତ୍ୟାଦି ରଖାଯିବା ବାଞ୍ଛନୀୟ । ମ୍ୟାଜିକ ଲଣ୍ଠନ ସାହାଯ୍ୟରେ ବହୁ ଜିନିଷର ସ୍ଥିରଚିତ୍ର ପରଦା ଉପରେ ପକାଇ ପାଠ୍ୟବିଷୟକୁ ଆକର୍ଷଣୀୟ କରାଯାଇ ପାରେ । ସେହିପରି ଏପିଡ଼ାୟାସ୍କୋପ (Epidiascope) ସାହାଯ୍ୟରେ ଯେ କୌଣସି ପୁସ୍ତକ ବା ପତ୍ରପତ୍ରିକାରେ ଥିବା ଚିତ୍ରର ପ୍ରତିଛବି କିମ୍ବା ଅନ୍ୟ କୌଣସି ଅସ୍ୱଚ୍ଛ ପଦାର୍ଥର ପ୍ରତିଛବି ପରଦା ଉପରେ ପକାଇ ଦିଆଯାଇପାରେ । ଏହା ଫଳରେ ପାଠ୍ୟବିଷୟ ଆକର୍ଷଣୀୟ ହେବା ସଙ୍ଗେ ସଙ୍ଗେ ଶ୍ରେଣୀର ସମସ୍ତ ଛାତ୍ର ଏକସଙ୍ଗେ ଚିତ୍ରଗୁଡ଼ିକ ସ୍ପଷ୍ଟ-ଭାବରେ ଦେଖିବାର ସୁଯୋଗ ପାଇପାରିବେ । ବିଜ୍ଞାନ ଶ୍ରେଣୀଗୃହରେ ହେଉଥିବା ପରୀକ୍ଷାଗୁଡ଼ିକ ସେହି ଗୃହରେ ଅଳ୍ପ ଉଚ୍ଚରେ ବଙ୍କାଇହୋଇ ରଖାଯାଇଥିବା ଏକ ବଡ଼ ଦର୍ପଣ ଉପରେ ପ୍ରତିଫଳନ କରାଇ ପିଲାମାନଙ୍କୁ ସହଜରେ ଦେଖାଇ ଦିଆଯାଇପାରେ । ଶିକ୍ଷକଙ୍କର ଆଗ୍ରହ ଓ ଉତ୍ସାହ ଥିଲେ ସେ ବିଭିନ୍ନ ଉପକରଣ ବ୍ୟବହାର କରି ଶ୍ରେଣୀରେ ଶିକ୍ଷାଦାନ ବ୍ୟବସ୍ଥାକୁ ଅତ୍ୟନ୍ତ ସରସ, ସଜୀବ ଓ ଆକର୍ଷଣୀୟ କରିପାରିବେ ।

## ପ୍ରଶ୍ନାବଳୀ

୧ । ଶିକ୍ଷାଦାନ ପ୍ରଣାଳୀରେ ଦୃଶ୍ୟ-ଶ୍ରବ୍ୟ ପଦ୍ଧତିର ଆବଶ୍ୟକତା ବୁଝାଇଦିଅ ।

୨ । ଆମର ସୀମିତ ସମ୍ବଳ ମଧ୍ୟରେ ଦୃଶ୍ୟ-ଶ୍ରବ୍ୟ ପଦ୍ଧତି କିପରି କାର୍ଯ୍ୟକାରୀ ହୋଇପାରିବ ଲେଖ ।

୩ । ଆମର ବିଦ୍ୟାଳୟଗୁଡ଼ିକରେ ଯେଉଁ ଯେଉଁ ଯନ୍ତ୍ରପାତି ବା ଉପକରଣଦ୍ୱାରା ଦୃଶ୍ୟ-ଶ୍ରବ୍ୟ ପଦ୍ଧତିରେ ଶିକ୍ଷାଦାନ ସମ୍ଭବପର ହୋଇପାରିବ ତାହା ଲେଖ ।

---

# ନବମ ଅଧ୍ୟାୟ

## ସମାଜରେ ବିଦ୍ୟାଳୟର ସ୍ଥିତି

## (Place of School in Society)

### ଶିକ୍ଷାର ବ୍ୟକ୍ତିଗତ ଓ ସାମାଜିକ ଲକ୍ଷ୍ୟ

ସମସ୍ତେ ଜାଣନ୍ତି, ବିଦ୍ୟାଳୟ ଶିକ୍ଷାଦାନ ପାଇଁ ଉଦ୍ଦିଷ୍ଟ । ଶିକ୍ଷା କାହିଁକି ଦିଆଯିବା ଉଚିତ; ଅର୍ଥାତ୍ ଶିକ୍ଷାର ଲକ୍ଷ୍ୟ କ'ଣ ହେବା ଉଚିତ ଏହି ସମ୍ବନ୍ଧରେ ସମ୍ୟକ୍ ଆଲୋଚନା କଲେ ସମାଜରେ ବିଦ୍ୟାଳୟର ସ୍ଥିତି ନିର୍ଣ୍ଣୀତ ହୋଇଯିବ । ଶିକ୍ଷାବିତ୍‌ମାନେ ଶିକ୍ଷାର ଲକ୍ଷ୍ୟ ସମ୍ବନ୍ଧରେ ବିଭିନ୍ନ ମତ ଦେଇଅଛନ୍ତି । ସେ ସବୁକୁ ପର୍ଯ୍ୟାଲୋଚନା କଲେ ଜଣାଯାଏ ଯେ, ବ୍ୟାପକ ଦୃଷ୍ଟିକୋଣରୁ ଶିକ୍ଷାର ଲକ୍ଷ୍ୟକୁ ଦୁଇ ଭାଗରେ ବିଭକ୍ତ କରାଯାଇପାରେ । ତାହାହେଲା ବ୍ୟକ୍ତିଗତ ଲକ୍ଷ୍ୟ ଓ ସାମାଜିକ ଲକ୍ଷ୍ୟ । ଏହି ଦୁଇ ପ୍ରକାର ଲକ୍ଷ୍ୟ ମଧ୍ୟରେ କୌଣସି ଦ୍ୱନ୍ଦ୍ୱ ବା ବିରୋଧ ନାହିଁ । ଏଥିପାଇଁ କେବଳ ବ୍ୟକ୍ତି ବା କେବଳ ସମାଜକୁ ପ୍ରାଧାନ୍ୟ ଦିଆଯିବାର ପ୍ରଶ୍ନ ନାହିଁ । ପ୍ରଧାନ କଥା ହେଉଛି ଏହି ଦୁଇଟି ଲକ୍ଷ୍ୟ ମଧ୍ୟରୁ କାହାକୁ ମୁଖ୍ୟ ଓ କାହାକୁ ଗୌଣସ୍ଥାନ ଦିଆଯିବ । ସ୍ଥଳ ବିଶେଷରେ ବ୍ୟକ୍ତିର ଆବଶ୍ୟକତା ଓ ଅଭିଳାଷ ସମାଜର ଆବଶ୍ୟକତା ଓ ଆକାଙ୍‌କ୍ଷାଠାରୁ ଅଧିକ ବା ସମାଜର ଆବଶ୍ୟକତା ବ୍ୟକ୍ତିଠାରୁ ଅଧିକ । କିନ୍ତୁ ବ୍ୟକ୍ତି ଓ ସମାଜର ଦାବି ସମସ୍ତ କ୍ଷେତ୍ରରେ ପରସ୍ପର ବିରୋଧୀ ନୁହେଁ; ବରଂ ଅଧିକାଂଶ କ୍ଷେତ୍ରରେ ଏହା ପରସ୍ପର ପରିପୂରକ । କେତେକ କ୍ଷେତ୍ରରେ ଅବଶ୍ୟ ସମାଜ ଓ ବ୍ୟକ୍ତିର ଦାବି ପରସ୍ପରଠାରୁ ସମ୍ପୂର୍ଣ୍ଣ ଭିନ୍ନ । ହୁଏତ କେବେ ସମାଜ ଲାଗି ବ୍ୟକ୍ତିଗତ ସ୍ୱାର୍ଥ ବଳି ଦିଆଯାଇପାରେ ବା କେବେ ସାମାଜିକ ଅଭିବୃଦ୍ଧି ଅପେକ୍ଷା, ବ୍ୟକ୍ତି ଜୀବନର ଉତ୍କର୍ଷ ସାଧନ ଅଧିକ ପ୍ରୟୋଜନ ମନେହୁଏ ।

ଶିକ୍ଷାର ବ୍ୟକ୍ତିଗତ ଲକ୍ଷ୍ୟ ଗ୍ରହଣକଲେ ଆମକୁ ସ୍ୱୀକାର କରିବାକୁ ହେବ ଯେ; ବିଦ୍ୟାଳୟ ଓ ଅନ୍ୟାନ୍ୟ ସାମାଜିକ ଅନୁଷ୍ଠାନର ସ୍ଥିତି ବ୍ୟକ୍ତିଗତ ଜୀବନକୁ ଉନ୍ନତ, ସୁଖକର

ଓ ସମୃଦ୍ଧିବିନ୍ତ କରିବାପାଇଁ ଉଦ୍ଦିଷ୍ଟ । ଏହାର ମୂଳତତ୍ତ୍ୱ ହେଲା; ଯେଉଁ ବ୍ୟକ୍ତିମାନଙ୍କୁ ନେଇ ସମାଜ ଗଠିତ ସେମାନଙ୍କର ସୁଖ ସମୃଦ୍ଧି ବିନା ସମାଜ ଆପଣାଛାଏଁ ତିଷ୍ଠି ପାରିବ ନାହିଁ । ବିବର୍ତ୍ତନର ଧାରା ଅନୁଯାୟୀରେ ମନୁଷ୍ୟ ସମାଜ ଗଠନ କରିଛି—ଏକ ସୁରକ୍ଷିତ ଜୀବନଯାପନ ପାଇଁ ଏବଂ ବର୍ଷା, ଶୀତ, ତାପ ପ୍ରଭୃତି ନାନା ପ୍ରାକୃତିକ ବିପଦ ବିରୁଦ୍ଧରେ ସମବେତ ଭାବରେ ସଫଳତାର ସହ ଲଢ଼ାଇ କରିବା ପାଇଁ । ତେଣୁ ପୃଥିବୀରେ ବ୍ୟକ୍ତିର ସ୍ଥାନ ସବୁଠାରୁ ଊର୍ଦ୍ଧ୍ୱରେ । ଏହି ପରିପ୍ରେକ୍ଷୀରେ ବିଦ୍ୟାଳୟର କାର୍ଯ୍ୟ ହେଉଛି ବ୍ୟକ୍ତି ମଧ୍ୟରେ ଥିବା ଅନ୍ତର୍ନିହିତ ଶକ୍ତିର ପୂର୍ଣ୍ଣ ପ୍ରକାଶ କରିବା । ବିଦ୍ୟାଳୟର ମୁକ୍ତ ଓ ରୁଚିସମ୍ପନ୍ନ ପରିବେଷ୍ଟନୀ ମଧ୍ୟରେ ଏହି କାର୍ଯ୍ୟ ସଫଳତାର ସହ କରାଯାଇପାରେ ।

ଶିକ୍ଷାର ସାମାଜିକ ଲକ୍ଷ୍ୟ ଦୃଷ୍ଟିରୁ ବିଚାର କଲେ ଆମକୁ ପ୍ରଥମେ ସମାଜର ସ୍ୱରୂପ ଉପଲବ୍ଧି କରିବାକୁ ହେବ । ସମାଜ କେବଳ ବ୍ୟକ୍ତି ବିଶେଷଙ୍କ ସମଷ୍ଟି ନୁହେଁ—ତାହାଠାରୁ ବହୁତ ବେଶୀ । ସମାଜ ହେଉଛି ମନୁଷ୍ୟର ଆଧ୍ୟାତ୍ମିକ ସ୍ଥିତି (Spiritual being)ର ଜନକ । କ୍ରମବିକାଶର ଏକ ସୋପାନରେ ସମାଜ ରାଷ୍ଟ୍ରରେ ପରିଣତ ହୋଇଅଛି । ଏହି ରାଷ୍ଟ୍ରର ସ୍ଥାନ ବ୍ୟକ୍ତିବିଶେଷଙ୍କ ଠାରୁ ବହୁ ଊର୍ଦ୍ଧ୍ୱରେ । ରାଷ୍ଟ୍ରର ଏହି ପରିକଳ୍ପନା ଜନସାଧାରଣଙ୍କୁ ସାମାଜିକ ନ୍ୟାୟ ଓ ପ୍ରତିଷ୍ଠା ଦେବାରେ ଯେତିକି ସହାୟକ ବ୍ୟକ୍ତି-ସ୍ୱାଧୀନତା ଖର୍ବକରି ସ୍ୱେଚ୍ଛାଚାରୀ ଶାସନ ଜାରି କରିବାରେ ମଧ୍ୟ ସେତିକି ସହାୟକ । ଯଦି ବ୍ୟକ୍ତି ସ୍ୱାଧୀନତା ନ ରହି ରାଷ୍ଟ୍ର ଏକଛତ୍ର ଶାସନ ଆଡକୁ ଗତି କରେ ତେବେ ବିଦ୍ୟାଳୟର ପ୍ରତ୍ୟେକ କାର୍ଯ୍ୟକ୍ରମ ରାଷ୍ଟ୍ରର ନିର୍ଦ୍ଦେଶାନୁଯାୟୀ ନିୟନ୍ତ୍ରିତ ହେବ ଏବଂ ଛାତ୍ରମାନେ ବିଦ୍ୟାଳୟରେ ଅଧ୍ୟୟନ ସମାପ୍ତ କଲାପରେ ସେମାନଙ୍କର ଚିନ୍ତାଧାରା ଏପରି ସଙ୍କୁଚିତ ହୋଇଯାଇଥିବ ଯେ ସେମାନେ କେବଳ ସେହି ଏକଛତ୍ରବାଦର ସ୍ଥାୟିତ୍ୱ ଦିଗରେ ସହାୟକ ହେବେ । ଅନ୍ୟପକ୍ଷରେ ଗଣତାନ୍ତ୍ରିକ ରାଷ୍ଟ୍ରରେ ମଧ୍ୟ ଗଣତାନ୍ତ୍ରିକ ମୂଲ୍ୟବୋଧ ଜାଗ୍ରତ କରାଇବା ପାଇଁ ଶିକ୍ଷା ଏକ ଆୟୁଧ ରୂପେ ବ୍ୟବହୃତ ହେବ, କାରଣ ଏପରି ରାଷ୍ଟ୍ର ବା ସମାଜରେ ନାଗରିକମାନଙ୍କ ଠାରୁ ଏକ ନୂ୍ୟନତମ ମୂଲ୍ୟବୋଧ ଆଶା କରାଯାଏ । ତେଣୁ ପ୍ରତ୍ୟେକ ପ୍ରକାର ରାଷ୍ଟ୍ର ବା ସମାଜରେ ଶିକ୍ଷାର ଏକ ସାମାଜିକ ଲକ୍ଷ୍ୟ ରହିଅଛି ଏବଂ ଏହି ଲକ୍ଷ୍ୟ ପୂରଣ ଦିଗରେ ବିଦ୍ୟାଳୟର ନିର୍ଦ୍ଦିଷ୍ଟ ଭୂମିକା ମଧ୍ୟ ରହିଅଛି ।

ଆମ ଦେଶର ବିଦ୍ୟାଳୟଗୁଡ଼ିକର ଛାତ୍ରବହୁଳ ଶ୍ରେଣୀଗୁଡ଼ିକରେ ଗଣଶିକ୍ଷାଦ୍ୱାରା ଯେପରି ଭାବରେ ଏକକାଳୀନ ବହୁ ଶିକ୍ଷିତ ବ୍ୟକ୍ତି କଳକାରଖାନାର ଉତ୍ପାଦିତ ଦ୍ରବ୍ୟପରି ବାହାରୁଅଛନ୍ତି ତାହାଦ୍ୱାରା ପିଲାମାନଙ୍କର ମନର ସ୍ୱାଧୀନଭାବ ଉଦ୍ଭବ ହେଉନାହିଁ ବା କୌଣସି ନୂତନତ୍ୱର ସନ୍ଧାନ ଦିଗରେ ଶିକ୍ଷା ପଥ ପ୍ରଦର୍ଶନ କରୁନାହିଁ । ଏହା ଫଳରେ ଏକ ଗଣତାନ୍ତ୍ରିକ ସମାଜର ଲକ୍ଷ୍ୟପୂରଣ ହେଉନାହିଁ । ଆମସମାଜରେ ବିଦ୍ୟାଳୟଗୁଡ଼ିକ

ଛାତ୍ରଛାତ୍ରୀମାନଙ୍କ ମଧ୍ୟରେ ସମାଜସେବା ଓ ସାମୂହିକ କର୍ମ ପ୍ରଚେଷ୍ଟା ପାଇଁ ପ୍ରେରଣା ଯୋଗାଇଦେବା ଉଚିତ । କିନ୍ତୁ ଆମେ ଏ ପର୍ଯ୍ୟନ୍ତ ବିଦ୍ୟାଳୟଠାରୁ କେବଳ ଏତିକି ଆଶା କରିଥାଉ ଯେ ପିଲାମାନେ ଶିକ୍ଷାଲାଭ କରି ଅଙ୍କ, ସାହିତ୍ୟ, ଇତିହାସ ପ୍ରଭୃତି କେତେକ ବିଷୟରେ ପ୍ରବୀଣ ହୁଅନ୍ତୁ ।

ତେଣୁ ସମାଜରେ ବିଦ୍ୟାଳୟଗୁଡ଼ିକର ସ୍ଥିତି ଏପରି ହେବା ବାଞ୍ଛନୀୟ ଯାହା ଫଳରେ ଛାତ୍ରଛାତ୍ରୀମାନଙ୍କ ମଧ୍ୟରେ ଥିବା ଅନ୍ତର୍ନିହିତ ଶକ୍ତିର ବିକାଶ ହେବା ସଙ୍ଗେ ସଙ୍ଗେ ସେମାନେ ସାମାଜିକ-ସେବା ଓ ସାମୂହିକ କର୍ମପ୍ରଚେଷ୍ଟା ପାଇଁ ଉପଯୁକ୍ତ ପ୍ରେରଣା ପାଇପାରିବେ । ଏହାଦ୍ୱାରା ବ୍ୟକ୍ତିଗତ ଜୀବନ ସୁଖମୟ ହେବ ଓ ସାମାଜିକ ଜୀବନ ଫଳପ୍ରଦ ହେବ ।

## ପ୍ରଚଳିତ ବିଦ୍ୟାଳୟ କାର୍ଯ୍ୟକ୍ରମର ପୃଷ୍ଠଭୂମି

ଶତାବ୍ଦୀ ଶତାବ୍ଦୀ ଧରି ବିଦ୍ୟାଳୟ ଏକ ପୀଠରୂପେ ପରିଗଣିତ ହୋଇ ଆସିଅଛି, ଯେଉଁଠାରେ ପିଲାମାନେ ଲିଖନ, ପଠନ, ଗଣିତ ଓ ଅନ୍ୟାନ୍ୟ କେତେକ ବିଷୟରେ ଶିକ୍ଷାଲାଭ କରିଥାଆନ୍ତି । ଜ୍ଞାନର ବିସ୍ଫୋରଣ ତଥା ସାହିତ୍ୟ, କଳା, ବିଜ୍ଞାନ ଇତ୍ୟାଦିର ଅଭୂତପୂର୍ବ ଅଗ୍ରଗତି ଫଳରେ ପ୍ରାଥମିକ ଓ ମାଧ୍ୟମିକ ଶିକ୍ଷାକ୍ଷେତ୍ରରେ ଅନେକ ନୂତନ ବିଷୟ ମଧ୍ୟ ବିଦ୍ୟାଳୟ ପାଠ୍ୟକ୍ରମରେ ସ୍ଥାନ ପାଇଅଛି । ପୂର୍ବେ ଯେଉଁମାନଙ୍କୁ ଜୀବିକା ନିର୍ବାହ ପାଇଁ ଆଦୌ ପରିଶ୍ରମ କରିବାକୁ ପଡୁ ନ ଥିଲା ସେଉଁମାନେ ହିଁ ମୁଖ୍ୟତଃ ସେମାନଙ୍କର ସମୟ ଜ୍ଞାନାନ୍ୱେଷଣରେ ତଥା ସାହିତ୍ୟ, କଳା, ସଂସ୍କୃତିର ବିକାଶ ଦିଗରେ ବ୍ୟୟ କରୁଥିଲେ । ଏହିମାନେ ମୁଖ୍ୟତଃ ଶାସକଗୋଷ୍ଠୀର ବା ସେମାନଙ୍କର ସମ୍ପର୍କୀୟ ଥିଲେ । ତେଣୁ ବିଦ୍ୟାଳୟରେ ଶିକ୍ଷା ଲାଭ କରିବାର ସୌଭାଗ୍ୟ ପ୍ରଧାନତଃ ଏହି ଶାସକଗୋଷ୍ଠୀର ବା ସେମାନଙ୍କ ଦ୍ୱାରା ଅନୁଗୃହୀତ ବ୍ୟକ୍ତିମାନଙ୍କ ସନ୍ତାନସନ୍ତତିମାନଙ୍କର ଏକ ଏକଚାଟିଆ ସୁଯୋଗରୂପେ ରହି ଆସିଥିଲା । ପୁନଶ୍ଚ ଶିକ୍ଷାଲାଭ କରିଥିବା ହେତୁ ଏହି ଶ୍ରେଣୀର ବ୍ୟକ୍ତିମାନଙ୍କପାଇଁ ମର୍ଯ୍ୟାଦାସମ୍ପନ୍ନ ଚାକିରି ବା ବୃତ୍ତି ଅବଲମ୍ବନ କରିବାର ପଥ ଉନ୍ମୁକ୍ତ ହୋଇଯାଉଥିଲା । ଶିକ୍ଷା ଏପରି ଭାବରେ ସାମାଜିକ ପରିଷ୍ଥିତି ସହ କାଳେ କାଳେ ଓତଃପ୍ରୋତ ଭାବରେ ଜଡ଼ିତ ହୋଇ ଆସିଅଛି । ଆଜି ବିଦ୍ୟାଳୟଗୁଡ଼ିକରେ ଯେଉଁସବୁ ବିଷୟ ଶିକ୍ଷା ଦିଆ-ଯାଉଅଛି ତାହା ସେହି ସ୍ୱତନ୍ତ୍ର ସୁଯୋଗପ୍ରାପ୍ତ ଶ୍ରେଣୀର ପ୍ରତିଷ୍ଠା ପାଇଁ ରହିଥିବା ସୁଯୋଗର ପରମ୍ପରାକୁ ଦୃଢ଼ୀଭୂତ କରୁଅଛି ବୋଲି ମନେହୁଏ, ବିଶେଷତଃ ମାଧ୍ୟମିକ ଓ ବିଶ୍ୱବିଦ୍ୟାଳୟ ଶିକ୍ଷା ସ୍ତରରେ ଏହି ପରମ୍ପରା ଅଧିକତ୍ୟ ବେଶ୍ ସ୍ପଷ୍ଟ । ଏବେ ମଧ୍ୟ ମାଧ୍ୟମିକ ଶିକ୍ଷା ପାଠ୍ୟକ୍ରମରେ କୌଣସି ବାଧ୍ୟତାମୂଳକ ବିଷୟ ନାହିଁ ଯାହା ଶିକ୍ଷା କରିବାପାଇଁ କୌଣସି ଦୈହିକ ପରିଶ୍ରମର ଆବଶ୍ୟକତା ପଡ଼େ । ଅବଶ୍ୟ ନିକଟରେ

କେତେକ ରାଜ୍ୟରେ ଏହି ପରମ୍ପରା ଭାଙ୍ଗିଦେବା ଅଭିପ୍ରାୟରେ ବିଦ୍ୟାଳୟରେ କେତେକ ନୂତନ ପାଠ୍ୟକ୍ରମ ଅନ୍ତର୍ଭୁକ୍ତ ହୋଇଅଛି । କିନ୍ତୁ ସେହିସବୁ ନୂତନ ଅଭିମୁଖ୍ୟର ନିଷ୍ଫଳତା କେବଳ ପୂର୍ବ ପରମ୍ପରାର ସ୍ଥାୟିତ୍ୱହିଁ ପ୍ରତିପାଦନ କରିଅଛି । ଉଦାହରଣ-ସ୍ୱରୂପ, ଆମ ରାଜ୍ୟର ଷଷ୍ଠଶ୍ରେଣୀରେ କୃଷି ଏକ ବିଷୟରୂପେ ପ୍ରଚଳନ କରାଯାଇ-ଥିଲେ ମଧ୍ୟ ଏହାର ଶିକ୍ଷାପାଇଁ ଛାତ୍ରଛାତ୍ରୀମାନଙ୍କୁ ଶ୍ରେଣୀ ପ୍ରକୋଷ୍ଠର ସୀମା ଟପି ବାହାରକୁ ଯିବା ପ୍ରୟୋଜନ ହୋଇନାହିଁ । କାରିଗରି ବିଦ୍ୟା (Craft) ଶିକ୍ଷାଦାନର ବ୍ୟବସ୍ଥା ଅଧିକାଂଶ ମାଧ୍ୟମିକ ବିଦ୍ୟାଳୟରେ ବହୁବର୍ଷ ହେଲା ପ୍ରଚଳିତ ହୋଇ ଆସିଅଛି । ଏହି ବ୍ୟବସ୍ଥା ଫଳପ୍ରଦ ହୋଇପାରି ନାହିଁ ବୋଲି ଆମକୁ ମୁକ୍ତ କଣ୍ଠରେ ସ୍ୱୀକାର କରିବାକୁ ହେବ । ବୋଧହୁଏ ଏହି ପ୍ରକାରର ଶିକ୍ଷାପାଇଁ ଶିକ୍ଷାଦାନ ଓ ଶିକ୍ଷାଗ୍ରହଣ ଉଭୟ ସ୍ତରରେ ଆନ୍ତରିକତାର ଘୋର ଅଭାବ ରହିଅଛି । ପୁଣି ପ୍ରଚଳିତ ପରୀକ୍ଷା ପ୍ରଣାଳୀ ଏହି ବ୍ୟବସ୍ଥାକୁ କାର୍ଯ୍ୟକାରୀ କରାଇ ଦେବାରେ ଏକ ପ୍ରଧାନ ଅନ୍ତରାୟ । ମାଧ୍ୟମିକ ଶିକ୍ଷା ପରିଷଦ ଦ୍ୱାରା ପରିଚାଳିତ ହାଇସ୍କୁଲ ସାର୍ଟିଫିକେଟ୍ ପରୀକ୍ଷାରେ କାରିଗରି ବିଦ୍ୟାର ପରୀକ୍ଷା ହୁଏ ନାହିଁ । ଆମେ ପରୀକ୍ଷାକୁ ଅତ୍ୟଧିକ ଅଯଥା ପ୍ରାଧାନ୍ୟ ଦେବାରେ ଏତେ ଅଭ୍ୟସ୍ତ ଯେ, କୌଣସି ବିଷୟ ଯଦି ଶେଷ ପରୀକ୍ଷାର ଅନ୍ତର୍ଭୁକ୍ତ ନ ହୁଏ ତେବେ ତାହାପ୍ରତି ଛାତ୍ର, ଶିକ୍ଷକ ଓ ଅଭିଭାବକ କେହି କୌଣସି ଗୁରୁତ୍ୱ ଆରୋପ କରନ୍ତି ନାହିଁ । ଏହି ମନୋବୃତ୍ତିରେ ପରୀକ୍ଷା କାର୍ଯ୍ୟକ୍ରମରେ ସ୍ଥାନ ପାଇ ନ ଥିବା ବିଷୟଗୁଡ଼ିକର ଶିକ୍ଷାଲାଭ ବିଦ୍ୟାଳୟସ୍ତରରେ ସମ୍ଭବପର ନୁହେଁ । ମୋଟଉପରେ ଆମକୁ ସ୍ୱୀକାର କରିବାକୁ ହେବ ଯେ, ବିଦ୍ୟାୟତନର ପାଠ ବିଦ୍ୟାଳୟ ବହୁ ଶତାବ୍ଦୀ ଧରି କେବଳ ମୁଷ୍ଟିମେୟ ଲୋକଙ୍କର ଆଶା ଆକାଙ୍କ୍ଷା ଚରିତାର୍ଥ କରିବାରେ ଅର୍ଥାତ୍ ସେମାନଙ୍କର ସୁଖସମୃଦ୍ଧିର କ୍ରମଉନ୍ନତିରେ ସହାୟକ ହୋଇ ଆସିଅଛି, ଯଦିଚ ଏହା କେତେକାଂଶରେ ଜ୍ଞାନଲାଭର ପିପାସା ମଧ୍ୟ ମେଣ୍ଟାଇଅଛି ।

## ଏକ କ୍ଷୁଦ୍ର ସମାଜରୂପେ ବିଦ୍ୟାଳୟର ରୂପାନ୍ତର

ଆଜି ଅବସ୍ଥାର ଅନେକ ପରିବର୍ତ୍ତନ ଘଟିଅଛି । ସମାଜର ବହୁ ଲୋକ ଅଶିକ୍ଷିତ ବୋଲି ମୁଷ୍ଟିମେୟ ଶିକ୍ଷିତ ଲୋକେ ଆଗେ ଯେଉଁ ଆତ୍ମସନ୍ତୋଷ ଲାଭ କରୁଥିଲେ ଆଜି ତାହା ପ୍ରାୟ ନାହିଁ, ବରଂ ସେପରି ଚିନ୍ତାଧାରା ଅବାସ୍ତବ, ଅନାବଶ୍ୟକ ଓ ଯୁଗୋନୁପଯୋଗୀ ହୋଇପଡ଼ିଅଛି । ଅଧିକନ୍ତୁ ଦେଶ ଓ ଜାତିପାଇଁ ସାର୍ବଜନୀନ ଶିକ୍ଷାର ଆବଶ୍ୟକତା ସମସ୍ତେ ଉପଲବ୍ଧି କରୁଅଛନ୍ତି । ଏପରିକି ବର୍ତ୍ତମାନ ଦେଶର ଶିଳ୍ପ ଉତ୍ପାଦନ ବୃଦ୍ଧିଲାଗି, ସବୁଜ ବିପ୍ଳବର ସଫଳତା ନିମନ୍ତେ ଶିଳ୍ପ ଓ କୃଷିକ୍ଷେତ୍ରରେ କାର୍ଯ୍ୟ କରୁଥିବା ଶ୍ରମିକମାନଙ୍କ ପାଇଁ ଏକ ସର୍ବନିମ୍ନ ଶିକ୍ଷାର ଆବଶ୍ୟକତା ଅନୁଭୂତ ହେଉଅଛି । ସମ୍ବିଧାନ ନିର୍ମାତାମାନେ ଶିକ୍ଷାର ଗୁରୁତ୍ୱ ଉପଲବ୍ଧି କରି ଚଉଦ ବର୍ଷ ପର୍ଯ୍ୟନ୍ତ ସମସ୍ତ ବାଳକବାଳିକାମାନଙ୍କ ପାଇଁ ସରକାରୀ

ପ୍ରଚେଷ୍ଟାରେ ଅବୈତନିକ ପ୍ରାଥମିକ ଶିକ୍ଷାର ବ୍ୟବସ୍ଥା କରିବାଲାଗି ନିର୍ଦ୍ଦେଶନାମା ରଖିଯାଇଅଛନ୍ତି । ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ଶିକ୍ଷାକ୍ଷେତ୍ରରେ ସମସ୍ତଙ୍କ ପାଇଁ ସମାନ ସୁଯୋଗର ବ୍ୟବସ୍ଥା କରିବା ହେଉଛି ଗଣତନ୍ତ୍ରର ନୀତି । ତେଣୁ ଏହି ନୀତି ସଫଳତାର ସହ କାର୍ଯ୍ୟକାରୀ କରିବାପାଇଁ ବିଦ୍ୟାଳୟ ବାସ୍ତବ କ୍ଷେତ୍ରରେ ଏକ କ୍ଷୁଦ୍ର ସମାଜରେ ରୂପାନ୍ତରିତ ହେବା ଅତ୍ୟାବଶ୍ୟକ । ଏହି ବିଦ୍ୟାଳୟରୂପକ ସମାଜରେ ବାସ୍ତବ ସମାଜ ଜୀବନର ପ୍ରତ୍ୟେକ ଦିଗ ପ୍ରତିଫଳିତ ହେବା ଆବଶ୍ୟକ ଏପରିକି କାୟିକ ଶ୍ରମ ମଧ୍ୟ ଏଥିରେ ସ୍ଥାନ ପାଇବା ଉଚିତ ।

## ବିଦ୍ୟାଳୟ ଓ ପରିବାର ଉପରେ ନ୍ୟସ୍ତ ସାମାଜିକ ଦାୟିତ୍ୱ

ବାଳକବାଳିକାମାନଙ୍କର ଉତ୍ତମ ଆଚରଣ, ଶୃଙ୍ଖଳାଜ୍ଞାନ, ଦାୟିତ୍ୱବୋଧ ଇତ୍ୟାଦି ବହୁ ବିଷୟରେ ପରିବାର ତଥା ପିତାମାତାଙ୍କର ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଅଛି— ଏହା କେହି ଅସ୍ୱୀକାର କରିପାରିବେ ନାହିଁ । କିନ୍ତୁ ଆଜି ଛାତ୍ର-ବିଶୃଙ୍ଖଳା ତଥା ବିଭିନ୍ନ କ୍ଷେତ୍ରରେ ଛାତ୍ରମାନଙ୍କ ଦ୍ୱାରା ପ୍ରଦର୍ଶିତ ଅଶୋଭନୀୟ ଆଚରଣ ଲାଗି ଅନେକ ପିତାମାତା ଭାବୁଛନ୍ତି ଯେ ବିଦ୍ୟାଳୟରେ ଛାତ୍ରଛାତ୍ରୀମାନଙ୍କୁ ଶୃଙ୍ଖଳାବୋଧ ସମ୍ବନ୍ଧୀୟ କୌଣସି ଶିକ୍ଷା ଦିଆଯାଉନାହିଁ; ଅର୍ଥାତ୍ ଆଧୁନିକ ସମାଜ ଆଶାକରେ ଯେ, ପରିବାର ଉପରେ ନ୍ୟସ୍ତ ଦାୟିତ୍ୱ ବିଦ୍ୟାଳୟ ଦ୍ୱାରା ସମ୍ପାଦିତ ହେଉ । ବିଦ୍ୟାଳୟ ମଧ୍ୟ ଏହି ଦାୟିତ୍ୱ ଯେ କେତେକାଂଶରେ ବହନ ନ କରୁଛି ସେହିପରି ନୁହେଁ । ବାଳିକାମାନେ ଉପଯୁକ୍ତ ଗୃହିଣୀ ହେବା ପାଇଁ ସହାୟକ ହେବା ଭଳି ବିଷୟ; ଯଥା - ଗାର୍ହସ୍ଥ୍ୟବିଜ୍ଞାନ ମାଧ୍ୟମିକ ସ୍ତରରେ ପ୍ରଚଳିତ କରାଯାଇଅଛି । ବିଦ୍ୟାଳୟରେ ଶିକ୍ଷାଦାନ ସଙ୍ଗେ ସଙ୍ଗେ ସ୍ୱାସ୍ଥ୍ୟର ଉନ୍ନତି ପାଇଁ ଶାରୀରିକ ଶିକ୍ଷା ଓ କ୍ରୀଡ଼ା କସରତ୍ ଆଦି ଉପରେ ମଧ୍ୟ ଗୁରୁତ୍ୱ ଆରୋପ କରାଯାଉଅଛି । ମୋଟଉପରେ ଆଧୁନିକ ସମାଜ ଚାହେଁ ଯେ ପିଲାମାନଙ୍କର ଚାଲିଚଳନ-ଠାରୁ କ୍ରୀଡ଼ା କସରତ୍ ପର୍ଯ୍ୟନ୍ତ ସମସ୍ତ ବିଷୟର ଶିକ୍ଷା ଭାର ବିଦ୍ୟାଳୟ ବହନ କରୁ । ସେଥିପାଇଁ ଏ ପର୍ଯ୍ୟନ୍ତ ପିତାମାତା ବା ପରିବାର ବହନ କରୁଥିବା ଦାୟିତ୍ୱ ବିଦ୍ୟାଳୟ ଉପରେ ନ୍ୟସ୍ତ ହେଉଅଛି । ତେଣୁ ଆଜିର ବିଦ୍ୟାଳୟ କେବଳ ପୁସ୍ତକ ଅଧ୍ୟୟନ ପାଇଁ ଉଦ୍ଦିଷ୍ଟ ନୁହେଁ । ସମାଜରେ ଅନ୍ୟମାନଙ୍କ ସହ ଉତ୍ତମ ସମ୍ପର୍କ ସ୍ଥାପନ କରି ଉପଯୁକ୍ତ ନାଗରିକ ଭାବରେ ଚଳିବାପାଇଁ ବ୍ୟାବହାରିକ ଜ୍ଞାନ ଓ ଦକ୍ଷତାର ବିକାଶ ବିଦ୍ୟାଳୟରେ ହେବା ଉଚିତ ବୋଲି ସମାଜ ଆଶାକରେ ।

## ବିଦ୍ୟାଳୟରେ ଛାତ୍ରଛାତ୍ରୀମାନଙ୍କ ପାଇଁ ସୁବିଧା ସୁଯୋଗ

ବିକାଶଶୀଳ, ଉଦୀୟମାନ ଛାତ୍ରଛାତ୍ରୀମାନଙ୍କର କ୍ରମବର୍ଦ୍ଧିଷ୍ଣୁ ଆବଶ୍ୟକତା ମେଣ୍ଟାଇବା ପାଇଁ ଓ ସେମାନଙ୍କର ଆଗ୍ରହକୁ ପ୍ରସ୍ଫୁଟ କରାଇବା ପାଇଁ ବିଦ୍ୟାଳୟରେ ଯଥେଷ୍ଟ ସୁବିଧା

ସୁଯୋଗ ଥିବା ଦରକାର । ବିଦ୍ୟାଳୟଗୁଡ଼ିକରେ ସ୍ୱାଧୀନ କାର୍ଯ୍ୟକଳାପ ଓ ଆତ୍ମଅଭିବ୍ୟକ୍ତି (Self expression) ପାଇଁ ପ୍ରଶସ୍ତ କ୍ଷେତ୍ର ଥିଲେ ସେଠାରେ ବିଭିନ୍ନ ଛାତ୍ରଙ୍କର ଭିନ୍ନ ଭିନ୍ନ ଢଙ୍ଗରେ ଥିବା ଆଗ୍ରହ (Interest) ନିରୂପିତ ଓ ବିକଶିତ ହୋଇପାରିବ । ଆଗ୍ରହର ବିକାଶ ପାଇଁ ସ୍ୱାଧୀନ ଭାବରେ କାର୍ଯ୍ୟକରିବାକୁ ସୁଯୋଗ ଦେବା ଅର୍ଥ ନୁହେଁ ଯେ ସେହି ସ୍ୱାଧୀନ କାର୍ଯ୍ୟକଳାପ ଅନ୍ୟର କାର୍ଯ୍ୟକଳାପ ପାଇଁ ଅନ୍ତରାୟ ହେବ । ବିଦ୍ୟାଳୟରେ ସୁବିଧା ସୁଯୋଗ ପାଇଁ କ୍ଷେତ୍ର ରହିବା ଯେପରି ଆବଶ୍ୟକ ସମସ୍ତ କାର୍ଯ୍ୟକଳାପର ସମନ୍ୱୟକରଣ ମଧ୍ୟ ସେହିପରି ଆବଶ୍ୟକ ।

ବିଦ୍ୟାଳୟର ଦୈନନ୍ଦିନ କାର୍ଯ୍ୟକ୍ରମ ଏପରି ହେବା ଉଚିତ ଯେପରି ଛାତ୍ରଛାତ୍ରୀମାନଙ୍କ ମଧ୍ୟରେ ଗଭୀର ଆତ୍ମପ୍ରତ୍ୟୟ ଜାତ ହେବ । ବିଦ୍ୟାଳୟର ପରିବେଷ୍ଟନୀ ସୁଖପ୍ରଦ ହେଲେ ଏବଂ ଛାତ୍ରମାନେ ବିଦ୍ୟାଳୟକୁ ଗୃହପରି ମନେକଲେ କେବଳ ଏହା ସମ୍ଭବପର ହୋଇପାରିବ । ପୁନଶ୍ଚ ଶିକ୍ଷକମାନଙ୍କ ବ୍ୟବହାରରୁ ଛାତ୍ରମାନଙ୍କର ଅନ୍ତତଃ ବିଶ୍ୱାସ ଜାତହେବା ଆବଶ୍ୟକ ଯେ ପ୍ରକୃତରେ ଶିକ୍ଷକମାନେ ସେମାନଙ୍କର ସୁବିଧା ଅସୁବିଧା ଇତ୍ୟାଦି ବୁଝିବାକୁ ଅଗ୍ରହୀ । ସେମାନଙ୍କର ମଧ୍ୟ ବିଶ୍ୱାସ ହେବା ଉଚିତ ଯେ ବିଦ୍ୟାଳୟ ସେମାନଙ୍କର ଏକ ଅନୁଷ୍ଠାନ ଯେଉଁଠାରେ ସେମାନଙ୍କର ଏକ ନ୍ୟାଯ୍ୟ ସ୍ଥାନ ରହିଅଛି ।

ଛାତ୍ରମାନଙ୍କର ବ୍ୟକ୍ତିଗତ ଉନ୍ନତି ଲାଗି ଶିକ୍ଷକମାନଙ୍କର ଚେଷ୍ଟା ଅବ୍ୟାହତ ରଖାଯିବା ଉଚିତ; ମାତ୍ର ବ୍ୟକ୍ତିବାଦର ଅଭିବୃଦ୍ଧି ଯେପରି ନ ଘଟେ ସେଥିପ୍ରତି ମଧ୍ୟ ଶିକ୍ଷକ ସତର୍କ ଦୃଷ୍ଟି ଦେବା ଆବଶ୍ୟକ । ତେଣୁ ବିଦ୍ୟାଳୟରେ ଏପରି ଅନେକ କାର୍ଯ୍ୟକ୍ରମ ସ୍ଥାନ ପାଇବା ଉଚିତ ଯାହା ସାମୂହିକ ସ୍ୱାର୍ଥସାଧନ କରିପାରୁଥିବ ଏବଂ ସେଥିଲାଗି ଛାତ୍ରଛାତ୍ରୀମାନଙ୍କୁ ସାମୂହିକ ଭାବରେ ଓ ସୌହାର୍ଦ୍ଦ୍ୟପୂର୍ଣ୍ଣ ବାତାବରଣ ମଧ୍ୟରେ କାର୍ଯ୍ୟ କରିବାକୁ ପଡ଼ୁଥିବ । ସାମାଜିକ ପରିବେଷ୍ଟନୀ ମଧ୍ୟରେ ମନୁଷ୍ୟକୁ କିପରି ବିଭିନ୍ନ ପରିସ୍ଥିତି ସହ ଖାପଖୁଆଇ ଚଳିବାକୁ ପଡ଼େ ତାହା ବସ୍ତୁତଃ ଛାତ୍ରମାନେ ବିଦ୍ୟାଳୟ କାର୍ଯ୍ୟକ୍ରମରୁ ହିଁ ଶିକ୍ଷା କରିବା ଉଚିତ । ବିଦ୍ୟାଳୟର ପରିବେଷ୍ଟନୀ ମଧ୍ୟରେ ସେମାନେ କ୍ରମଶଃ ହୃଦୟଙ୍ଗମ କରିବା ଉଚିତ ଯେ, ବ୍ୟକ୍ତିଗତ ସ୍ୱାର୍ଥଲାଗି ଏପରି କିଛି କରାଯିବା ଉଚିତ ନୁହେଁ ଯାହା ସମୂହ ସ୍ୱାର୍ଥର ଅନ୍ତରାୟ ହେବ; ବରଂ ଆବଶ୍ୟକ ସ୍ଥଳେ ସାମୂହିକ ମଙ୍ଗଳ ଦୃଷ୍ଟିରୁ ବ୍ୟକ୍ତିଗତ ସ୍ୱାର୍ଥର ଜଳାଞ୍ଜଳି ଦେବା ଅଧିକ ଶ୍ରେୟସ୍କର ହେବ ।

## ସମାଜ ଅନୁରୂପ ବିଦ୍ୟାଳୟ

ବିଦ୍ୟାଳୟ ପରିବାର ଭଳି ଏକ ସାମାଜିକ ସଂସ୍ଥା । ଏହାର ଏକ ସ୍ୱକୀୟ ସଂଗଠନ ଓ ଆଚାର ବ୍ୟବହାର ପ୍ରଣାଳୀ ଅଛି ଯେଉଁ ଅନୁସାରେ ଏହା ସହିତ ସଂପୃକ୍ତ ସମସ୍ତ ବ୍ୟକ୍ତିଙ୍କର

ଅର୍ଥାତ୍ ଶାସକ, ଶିକ୍ଷକ ଓ ଛାତ୍ରମାନଙ୍କର ଆଚରଣ ନିୟନ୍ତ୍ରିତ ହୁଏ । ଅନ୍ୟାନ୍ୟ ସାମାଜିକ ସଂସ୍ଥା ପରି ବିଦ୍ୟାଳୟରେ ମଧ୍ୟ ସଭା, ସମିତି, ସମ୍ମେଳନ, କ୍ରୀଡ଼ା ପ୍ରତିଯୋଗିତା, ପୁରସ୍କାର ବିତରଣ ଉତ୍ସବାଦି ଅନୁଷ୍ଠାନିକ ଉତ୍ସବ ଓ ବିଧିବିଧାନ ପାଳିତ ହୁଏ । ପ୍ରତ୍ୟେକ ନିଜ ନିଜର ଅଧିକାର ଓ କର୍ତ୍ତବ୍ୟ ପ୍ରତି ସଚେତନ ଅଛନ୍ତି କି ନାହିଁ ତାହା ଦେଖିବାକୁ ବିଦ୍ୟାଳୟରେ ମଧ୍ୟ ଜଣେ ସ୍ୱୀକୃତିପ୍ରାପ୍ତ କର୍ମକର୍ତ୍ତା ଥାଆନ୍ତି । ମୋଟ ଉପରେ ବିଦ୍ୟାଳୟର ଅନ୍ତର୍ଭୁକ୍ତ ସମସ୍ତ ବ୍ୟକ୍ତି ନିଜ ନିଜର ସାମାଜିକ ଭୂମିକା ଗ୍ରହଣ କରି ତଦନୁଯାୟୀ କାର୍ଯ୍ୟ କରିବା ଫଳରେ ବିଦ୍ୟାଳୟର ସାମାଜିକ ସଂଗଠନ ଓ ବ୍ୟବସ୍ଥା ଗଢ଼ିଉଠେ ।

ବିଦ୍ୟାଳୟ ରୂପକ ସମାଜରେ ବିଭିନ୍ନ ଶ୍ରେଣୀର ବ୍ୟକ୍ତି ଥାଆନ୍ତି ଓ ସେମାନଙ୍କ ମଧ୍ୟରେ ଅଧିକାଂଶ ସ୍ଥଳରେ ପରସ୍ପର ସହ ସୁସମ୍ପର୍କ ପ୍ରତିଷ୍ଠିତ ହୋଇଥାଏ । ପ୍ରଧାନ ଶିକ୍ଷକ ଓ ଅନ୍ୟାନ୍ୟ ଶିକ୍ଷକମାନଙ୍କ ମଧ୍ୟରେ, ଶିକ୍ଷକ-ଶିକ୍ଷକ ମଧ୍ୟରେ, ଶିକ୍ଷକ ଓ ଛାତ୍ରମାନଙ୍କ ମଧ୍ୟରେ ଏବଂ ଛାତ୍ର-ଛାତ୍ର ମଧ୍ୟରେ ରହିଥିବା ସମ୍ପର୍କ ଉପରେ ବିଦ୍ୟାଳୟର କାର୍ଯ୍ୟଦକ୍ଷତା ଓ ସୁନାମ ନିର୍ଭର କରେ । ଉପର୍ଯ୍ୟୁକ୍ତ ପ୍ରତ୍ୟେକ ସ୍ତରରେ ରହିଥିବା ସଂପର୍କ ଅନ୍ୟ ସ୍ତରରେ ରହିଥିବା ସଂପର୍କକୁ ପ୍ରଭାବିତ କରିଏ ଏବଂ ବିଭିନ୍ନ ପ୍ରକାର ପାରସ୍ପରିକ ପ୍ରକ୍ରିୟା (Interaction) ଫଳରେ ବିଦ୍ୟାଳୟ ଜୀବନ ବିକଶିତ ହୁଏ । କିନ୍ତୁ ଏହି ବିଭିନ୍ନ ପାରସ୍ପରିକ ପ୍ରକ୍ରିୟା ପ୍ରତ୍ୟକ୍ଷ ଓ ପରୋକ୍ଷଭାବରେ ଛାତ୍ରମାନଙ୍କୁ ଓ ସେମାନଙ୍କର ଆଗ୍ରହ ବ୍ୟବହାରକୁ ପ୍ରଭାବିତ କରେ ।

ବିଶିଷ୍ଟ ଶିକ୍ଷାବିତ୍ ଟି. ପି. ନନ୍ (T. P. Nunn) ବିଦ୍ୟାଳୟକୁ ଏକ ସମାଜରୂପେ ଭିନ୍ନ ଦୃଷ୍ଟିକୋଣରୁ ବିଚାର କରିଅଛନ୍ତି । ତାଙ୍କ ମତରେ ବିଦ୍ୟାଳୟ ଏକ ପ୍ରାକୃତିକ ସମାଜ ହେବା ସଙ୍ଗେ ସଙ୍ଗେ ଏହା ମଧ୍ୟ ଏକ କୃତ୍ରିମ ସମାଜ ହେବା ଆବଶ୍ୟକ । ଏକ ପ୍ରାକୃତିକ ସମାଜ ହେବା ଅର୍ଥ ବିଦ୍ୟାଳୟ ରୂପକ କ୍ଷୁଦ୍ର ସମାଜ ଓ ବାହାରର ବୃହତ୍ତର ସମାଜ ମଧ୍ୟରେ କୌଣସି ବିଶେଷ ପାର୍ଥକ୍ୟ ଓ ବ୍ୟବଧାନ ରହିବା ଉଚିତ ନୁହେଁ । କୌଣସି ଗତାନୁଗତିକ ବିଧି ବା ପରମ୍ପରା ବିଦ୍ୟାଳୟରେ ବାଧ୍ୟତାମୂଳକ ଭାବେ ପ୍ରଚଳନ କରାଯିବା ଉଚିତ ନୁହେଁ । ଯେଉଁ ନିୟମାବଳୀ ଓ ଆଦର୍ଶ ସର୍ବଜନସମ୍ମତ ତାହା କେବଳ ବିଦ୍ୟାଳୟ ଜୀବନରେ ଅନୁସୃତ ହେବା ଆବଶ୍ୟକ । ବିଦ୍ୟାଳୟ ମଧ୍ୟ ଏକ କୃତ୍ରିମ ସମାଜ ହେବା ଆବଶ୍ୟକ, ଅର୍ଥାତ୍ ପୃଥିବୀରେ ଅନ୍ୟ ଯେଉଁ ବିଷୟଗୁଡ଼ିକ ଗୁରୁତ୍ୱପୂର୍ଣ୍ଣ ତାହା ମଧ୍ୟ ବିଦ୍ୟାଳୟ ଜୀବନରେ ପ୍ରତିଫଳିତ ହେବା ଆବଶ୍ୟକ । କେବଳ ସର୍ବଜନସମ୍ମତ ଆଦର୍ଶ ଅନୁସରଣ କରିବା ଯଥେଷ୍ଟ ନୁହେଁ । ମୋଟ ଉପରେ, "ଗୋଟିଏ ଦେଶ ବା ଜାତିର ବିଦ୍ୟାଳୟଗୁଡ଼ିକ ତାହାର ଜୀବନର ଏକ ଅଙ୍ଗ ବୋଲି ଆମେ କହିପାରୁ । ଏହି ଅଙ୍ଗ ଏକ ସ୍ୱତନ୍ତ୍ର କାର୍ଯ୍ୟ ସମ୍ପାଦନ କରେ, ଅର୍ଥାତ୍ ଏହା ଜାତିର ଆଧ୍ୟାତ୍ମିକ ବଳ ସୁଦୃଢ଼ କରେ,

ଐତିହାସିକ ନିରବଚ୍ଛିନ୍ନତା ରକ୍ଷାକରେ, ଅତୀତର କୃତିତ୍ୱଗୁଡ଼ିକୁ ସୁରକ୍ଷା କରେ ଏବଂ ଭବିଷ୍ୟତ୍ ସମ୍ବନ୍ଧରେ ନିଶ୍ଚିତ ରଖେ ।'' ଏକ ସର୍ବଶ୍ରେଷ୍ଠ ଆଦର୍ଶ ସମାଜରୂପେ ବିଦ୍ୟାଳୟର ଏହାହିଁ ଏକ ଚିତ୍ର । ଏହି ଆଦର୍ଶ ସମାଜ ଏକ ବିଶ୍ୱସମାଜରୂପେ ପରିକଳ୍ପିତ ହୋଇ-ପାରେ, ଯେଉଁ ସମାଜ କୌଣସି ସୀମା ମଧ୍ୟରେ ଆବଦ୍ଧ ନୁହେଁ ବା ଯେଉଁ ସମାଜ ସମଗ୍ର ମାନବ ଜାତିର ଦେହ ଓ ଅସ୍ଥିର ତଥା ଅତୀତ, ବର୍ତ୍ତମାନ ଓ ଭବିଷ୍ୟତର ।

## ବିଦ୍ୟାଳୟ କାର୍ଯ୍ୟକ୍ରମର ପ୍ରଭାବ

ବିଦ୍ୟାଳୟକୁ ଏକ ସମାଜରେ ପରିଣତ କରିବାକୁ ହେଲେ ବାସ୍ତବ କ୍ଷେତ୍ରରେ ବିଦ୍ୟାଳୟର କାର୍ଯ୍ୟକ୍ରମଗୁଡ଼ିକ ମଧ୍ୟ ତଦନୁରୂପ ହେବା ଉଚିତ । ସାମାଜିକ ଚେତନା, ସହଯୋଗ ମନୋବୃତ୍ତି ଆଦି ବଢାଇବାପାଇଁ ବିଦ୍ୟାଳୟରେ ବିଭିନ୍ନ କାର୍ଯ୍ୟକ୍ରମର ସ୍ପଷ୍ଟ ଅବଦାନ ରହିଅଛି । ପ୍ରତ୍ୟହ ବିଦ୍ୟାଳୟର କାର୍ଯ୍ୟ ଆରମ୍ଭ ସମୟରେ ହେଉଥିବା ସମ୍ମେଳନ, ପୁରସ୍କାର ବିତରଣ ଉତ୍ସବ, ବାର୍ଷିକ କ୍ରୀଡ଼ା ପ୍ରତିଯୋଗିତା; ଶାରୀରିକ ଶିକ୍ଷା କାର୍ଯ୍ୟକ୍ରମ ଇତ୍ୟାଦି ଗୋଷ୍ଠୀ ମନୋଭାବର ଅଭିବୃଦ୍ଧି ଘଟାଏ । ଇତିହାସ, ସାହିତ୍ୟ, ସଙ୍ଗୀତ, କଳା ଆଦିର ପ୍ରେରଣାତ୍ମକ ଶିକ୍ଷା ଶ୍ରେଣୀଗୁଡ଼ିକରେ ଗୋଷ୍ଠୀଭାବ ଜାଗ୍ରତ କରିବାରେ ସହାୟକ ହୁଏ । ପ୍ରତ୍ୟେକ ପ୍ରକାର ବିଦ୍ୟାଳୟରେ ଗୃହ-ବ୍ୟବସ୍ଥା (House System) ସଫଳତାର ସହ ପ୍ରଚଳନ କରାଯାଇପାରେ । ଗୃହ-ବ୍ୟବସ୍ଥା କରିବା ଦ୍ୱାରା ଗୋଟିଏ ପରିବାରର ବିଭିନ୍ନ ବ୍ୟକ୍ତି ଯେପରି ନିର୍ଦ୍ଦିଷ୍ଟ ନିୟମ ମାନି ଚଳନ୍ତି ଓ ସୁସଙ୍ଗତ ଆଚରଣ ଦେଖାନ୍ତି ସେହିପରି ଗୃହର ସଭ୍ୟମାନେ ଶୃଙ୍ଖଳିତ ଭାବେ ଅନୁମୋଦିତ ଆଦର୍ଶ ଆଚରଣମାନ ମାନି ଚଳନ୍ତି । ସଭ୍ୟମାନେ ମିଳିତ ଭାବରେ ଯାହା କରିଥାନ୍ତି ବା ଯାହା କରିବାପାଇଁ ଠିକ୍ କରନ୍ତି ସେ ସବୁ ଦଳଗତ ଭାବରେ ଗ୍ରହଣ କରିନିଅନ୍ତି । ଛାତ୍ରମାନଙ୍କ ମଧ୍ୟରେ ସ୍ୱାୟତ୍ତଶାସନ (Self Government) ବ୍ୟବସ୍ଥା ପ୍ରଚଳନ କରାଯିବା ଦ୍ୱାରା ଏହା ସେମାନଙ୍କ ପକ୍ଷରେ ଭବିଷ୍ୟତ୍‌ରେ ନେତୃତ୍ୱ ନେବା-ପାଇଁ ଏକ ତାଲିମ୍ କାର୍ଯ୍ୟକ୍ରମ ରୂପେ ବିବେଚିତ ହୁଏ । ଏହି ବ୍ୟବସ୍ଥା ଫଳରେ ଅନେକ ଛାତ୍ର ବିଶେଷତଃ ଯେଉଁମାନେ ପାଠ୍ୟ ବିଷୟବସ୍ତୁରେ କୃତିତ୍ୱ ଅର୍ଜନ କରିପାରନ୍ତି ନାହିଁ ସେମାନେ ସେମାନଙ୍କର ନେତୃତ୍ୱ ନେବା ପ୍ରତିଭାର ବିକାଶ ପାଇଁ ଉପଯୁକ୍ତ କ୍ଷେତ୍ର ପାଇପାରନ୍ତି । ଯେଉଁ ବିଦ୍ୟାଳୟରେ ସ୍ୱାୟତ୍ତଶାସନ ପ୍ରଚଳନ କରାଯାଉନାହିଁ ସେଠାରେ ବହୁ ଛାତ୍ରଙ୍କର ବଳିଷ୍ଠ ବ୍ୟକ୍ତିତ୍ୱ ଓ ଅନ୍ୟାନ୍ୟ ଅନ୍ତର୍ନିହିତ ଦକ୍ଷତା ଯେ ଉପଯୁକ୍ତ ସୁଯୋଗ ଅଭାବରୁ ବିକଶିତ ନ ହୋଇ ମଉଳି ନ ଯାଉଅଛି ତାହା କିଏ କହିପାରିବ ? ଛାତ୍ରମାନେ ବିଦ୍ୟାଳୟରେ ନେତୃତ୍ୱ ଦେବାରେ ଯେଉଁ ସୁଯୋଗ ପାଇବେ ତାହାହେଲେ ଭବିଷ୍ୟତ୍‌ରେ ସେମାନେ ସେମାନଙ୍କର ପ୍ରତିଭା ନାନା ଗଠନମୂଳକ କାର୍ଯ୍ୟରେ ମଧ୍ୟ ବିନିଯୋଗ କରିପାରିବେ । ଅନ୍ୟଥା ସେମାନଙ୍କର ଶକ୍ତି ଅନ୍ୟାନ୍ୟ ମନ୍ଦ ଉଦ୍ଦେଶ୍ୟରେ ବିକ୍ଷେପିତ ହୋଇଥାଆନ୍ତି ।

## ଶିକ୍ଷାଦାନ କାର୍ଯ୍ୟରେ ବିଦ୍ୟାଳୟର ଭୂମିକା

ପ୍ରାୟ ସମସ୍ତେ ଏକମତ ଯେ, ଶିକ୍ଷା ହେଉଛି ଏକ କର୍ମ ପ୍ରକ୍ରିୟା (Process) ଯାହାଦ୍ୱାରା କୌଣସି ଦଳ ବା ଗୋଷ୍ଠୀର ସଂସ୍କୃତି ତାହାର ପରବର୍ତ୍ତୀ ବଂଶଧରମାନଙ୍କୁ ହସ୍ତାନ୍ତର କରାଯାଏ । କିନ୍ତୁ ପ୍ରକୃତରେ ଦଳ ବା ଗୋଷ୍ଠୀର ସଂସ୍କୃତି କ'ଣ ? ଏହାର ଯଦି ଏକ ବିଶ୍ଳେଷଣ କରାଯାଏ ତାହାହେଲେ ଦେଖାଯିବ ଯେ ସର୍ବଦା ଗୋଷ୍ଠୀର ସଂସ୍କୃତି ତାହାର ଶାସକମାନଙ୍କର ବିଚାରଧାରା, ବିଶ୍ୱାସ ଓ ଅନ୍ୟାନ୍ୟ ସ୍ୱାର୍ଥ ସମ୍ପୃକ୍ତ ବିଷୟରେ ପରିପୂର୍ଣ୍ଣ । ଶିକ୍ଷା ପ୍ରସାରିତ ହେବାପାଇଁ ବିଦ୍ୟାଳୟ, ଧର୍ମାନୁଷ୍ଠାନ, ବେତାର, ସମ୍ବାଦପତ୍ର ଆଦି ଯେଉଁସବୁ ଅନୁଷ୍ଠାନ ବା ମାଧ୍ୟମ ରହିଅଛି ସେସବୁକୁ ଶାସକମାନେ ନିଜ ସ୍ୱାର୍ଥଦୃଷ୍ଟିରୁ ଗୋଷ୍ଠୀର ଆଚରଣ ଶୃଙ୍ଖଳାବଦ୍ଧ କରିବାପାଇଁ ଓ ନିୟନ୍ତ୍ରଣ କରିବା ପାଇଁ ବ୍ୟବହାର କରିଥାଆନ୍ତି ।

ଏହି ପରିପ୍ରେକ୍ଷୀରେ ବିଗ୍ଭର କଲେ କୌଣସି ପ୍ରକାର ଶିକ୍ଷା ନିରପେକ୍ଷ ନୁହେଁ । ଅନେକ କ୍ଷେତ୍ରରେ ଏହା ଗୋଷ୍ଠୀର ହିତସାଧନ କରିବାଠାରୁ ଶାସକମାନଙ୍କର ନୀତି ଓ ବିଚାରଧାରାକୁ ସ୍ଥାୟୀ କରିବାରେ ଏକ ଅସ୍ତ୍ରରୂପେ ବ୍ୟବହୃତ ହୁଏ । ଶାସକମାନଙ୍କର ଗଣତନ୍ତ୍ର, ସମାଜବାଦ, କମ୍ୟୁନିଷ୍ଟ ମତବାଦ, ହିଟଲରବାଦ ପ୍ରଭୃତି ଯେ କୌଣସି ସାମାଜିକ ରାଜନୈତିକ ଦୃଷ୍ଟିଭଙ୍ଗୀ ଥାଉ ପଛକେ ସେମାନେ ଯେ ନିଜ ମତବାଦକୁ ସ୍ଥାୟୀ କରିବାଭଳି ଶିକ୍ଷାବ୍ୟବସ୍ଥା ପ୍ରଚଳନ କରିବେ, ଏଥିରେ ସନ୍ଦେହ ନାହିଁ । ଶିକ୍ଷକ ନିଜର ଜ୍ଞାତସାରରେ ହେଉ ବା ଅଜ୍ଞାତସାରରେ ହେଉ ସେହି ଚିନ୍ତାଧାରାର ସ୍ଥାୟିତ୍ୱ ଲାଗି ପାଠ୍ୟଦାନ ମାଧ୍ୟମରେ ସାହାଯ୍ୟ କରିଥାଆନ୍ତି । ତେଣୁ ପ୍ରତ୍ୟେକ ଶିକ୍ଷକ ସଚେତନ ହେବା ଆବଶ୍ୟକ ଯେ ସେ ଏକ ପୂର୍ବ ପରିକଳ୍ପିତ ସାମାଜିକ-ରାଜନୈତିକ ଚିନ୍ତାଧାରାର ପ୍ରଭାବରୁ ମୁକ୍ତ ନୁହଁନ୍ତି । ଏହାକୁ ହୃଦୟଙ୍ଗମ କରି-ପାରିଲେ ଶିକ୍ଷକମାନେ ବିନାବିଗ୍ଭରରେ କୌଣସି କଥା ଗ୍ରହଣ ନ କରି ପ୍ରଚଳିତ ସାଂସ୍କୃତିକ ଚିନ୍ତାଧାରା ଓ ରୀତିନୀତିଗୁଡ଼ିକ ଭଲଭାବରେ ପରୀକ୍ଷାକରି ଦେଖିବାକୁ ଚେଷ୍ଟା କରିବେ । ତା'ପରେ ସେମାନେ ସେମାନଙ୍କର ନିଜ ଅନୁଭୂତି ଓ ଲବ୍ଧ ତଥ୍ୟ ଅନୁଯାୟୀ ପ୍ରଚଳିତ ନୀତିଗୁଡ଼ିକ ବିଶ୍ଳେଷଣ କରାଇବାରେ ଛାତ୍ରମାନଙ୍କୁ ସାହାଯ୍ୟ କରିପାରିବେ । କେବଳ ଏହି ପଦ୍ଧତିରେହିଁ ଛାତ୍ରମାନେ ସାମାଜିକ ପ୍ରଥା ଓ ସମସ୍ୟାଗୁଡ଼ିକ ସମ୍ବନ୍ଧରେ ଅବହିତ ହୋଇପାରିବେ ।

ଏହା ଏକ ସ୍ୱୀକୃତ ତଥ୍ୟ ଯେ ଶିକ୍ଷାର ପ୍ରସାର ଲାଗି ଆର୍ଥିକ ସମ୍ବଳ ଯୋଗାଇଦେବାର ଅର୍ଥ ଶିକ୍ଷାନୀତିକୁ ନିୟନ୍ତ୍ରଣ କରିବାରେ ଅଧିକାରପ୍ରାପ୍ତ ହେବା । ଆଜିକାଲି ସବୁ ସ୍ତରରେ ଶିକ୍ଷାର ସଙ୍ଗଠନ ଓ ପରିଚାଳନା ସମେତ ସରକାରଙ୍କ ଦାୟିତ୍ୱ ପରିସର ମଧ୍ୟକୁ ଆସି-

ଯାଉଅଛି । ପ୍ରକାରାନ୍ତରେ ଶାସନକର୍ତ୍ତାମାନେ ଶିକ୍ଷା ଉପରେ ଅଧିକରୁ ଅଧିକ ନିୟନ୍ତ୍ରଣ ଜାରି କରିପାରୁଅଛନ୍ତି । ଶିକ୍ଷାକ୍ଷେତ୍ରରେ ଏହା ଏକ ପ୍ରକୃତ ଆଶଙ୍କାରେ ପରିଣତ ହେବାକୁ ଯାଉଅଛି; କାରଣ ଶିକ୍ଷା ରାଷ୍ଟ୍ରାୟତ୍ତ ହେଲେ ବିଦ୍ୟାଳୟଗୁଡ଼ିକରେ କ'ଣ କରାଯିବା ଉଚିତ ବା ଅନୁଚିତ ତାହା କେବଳ ସରକାର ସ୍ଥିର କରିବେ । ଫଳତଃ ଶିକ୍ଷା ହିଁ ଧୀରେ ଧୀରେ ଏକଛତ୍ରବାଦ ବଜାୟ ରଖିବାକୁ ସାହାଯ୍ୟ କରିବ । ଏହା ହିଁ ଆଶଙ୍କା କରି ବିଶ୍ୱବିଦ୍ୟାଳୟ ଶିକ୍ଷା କମିଶନ (୧୯୪୮) ମତ ଦେଇଥିଲେ ଯେ, "ଆମ ନିଜର ଗଣତନ୍ତ୍ରର ସ୍ୱାର୍ଥଦୃଷ୍ଟିରୁ ଶିକ୍ଷାପଦ୍ଧତିରେ ସରକାରୀ ଆଧିପତ୍ୟ ବିସ୍ତାର ହେବା ପ୍ରବୃତ୍ତିକୁ ଆମକୁ ଅବଶ୍ୟ ବିରୋଧ କରିବାକୁ ହେବ ।" ବାସ୍ତବ ଦୃଷ୍ଟିଭଙ୍ଗୀରୁ ବିଚାର କଲେ ଆମେ ଦେଖିବା ଯେ ଶିକ୍ଷକମାନେ ପାଠ୍ୟ ବିଷୟବସ୍ତୁ, ଶିକ୍ଷାଦାନ ପ୍ରଣାଳୀ, ଶିକ୍ଷାଗତ ସାଂଗଠନିକ କାର୍ଯ୍ୟକ୍ରମ ଇତ୍ୟାଦି ଧାର୍ଯ୍ୟ କରିପାରିବେ । କିନ୍ତୁ ଏସବୁ ଉପଯୁକ୍ତ ଭାବରେ କାର୍ଯ୍ୟକାରୀ ହେବା ପାଇଁ ସରକାର ହିଁ ଆର୍ଥିକ ସାହାଯ୍ୟ ଦେବେ । ଫଳରେ ସରକାର ଯେଉଁ କାର୍ଯ୍ୟକ୍ରମ ପାଇଁ ବ୍ୟୟ କରିପାରିବେ ବା କରିବାକୁ ଚାହିଁବେ ତଦନୁଯାୟୀ ତାହାର ବିକାଶ ସମ୍ଭବପର ହେବ । ତେଣୁ ସାଧାରଣ ଶିକ୍ଷା ନିୟନ୍ତ୍ରଣ କ୍ଷେତ୍ରରେ ବାସ୍ତବିକ ଶିକ୍ଷକମାନଙ୍କର ଭୂମିକା ଅତ୍ୟନ୍ତ ସୀମିତ ।

ଗଣତାନ୍ତ୍ରିକ ସମାଜରେ ଶିକ୍ଷକ ଓ ଛାତ୍ରମାନେ ସେମାନଙ୍କର ମତ ଅନୁଯାୟୀ ଶିକ୍ଷାନୀତି ପରିଚାଳିତ ହେଉ ବୋଲି ଦାବି କରିପାରନ୍ତି, ମାତ୍ର ଗଣତାନ୍ତ୍ରିକ ଶାସନ ପଦ୍ଧତିରେ ଯେ କୌଣସି ରାଜନୈତିକ ଦଳ କ୍ଷମତାକୁ ଆସିଲେ ମଧ୍ୟ ଶିକ୍ଷା ଉପରୁ ତାଙ୍କର କର୍ତ୍ତୃତ୍ୱ ତ୍ୟାଗକରି ଶିକ୍ଷକ ଓ ଛାତ୍ରମାନଙ୍କୁ ତାହା ସମର୍ପି ଦେବାକୁ ଚାହିଁବେ ନାହିଁ । ଏପରି ସ୍ଥଳେ ଶିକ୍ଷା ପଦ୍ଧତି ଏପରି ହେବା ଉଚିତ ଯେପରି ଆବଶ୍ୟକ ହେଲେ କେତେକ ପରିମାଣରେ ପରିବର୍ତ୍ତନ କରିବା କଷ୍ଟସାଧ୍ୟ ହେବନାହିଁ । ଯଦି ଦେଶବାସୀ ପ୍ରତ୍ୟକ୍ଷ ଭାବରେ ବା ସେମାନଙ୍କର ପ୍ରତିନିଧିମାନଙ୍କ ଜରିଆରେ ପରୋକ୍ଷ ଭାବରେ ଶିକ୍ଷାପଦ୍ଧତିରେ କେତେକ ପରିବର୍ତ୍ତନ ଅବଶ୍ୟମ୍ଭାବୀ ବୋଲି ବିଚାରୁଥାଆନ୍ତି ତେବେ ଶିକ୍ଷକ, ଛାତ୍ର ଓ ଅଭିଭାବକମାନଙ୍କର ମିଳିତ ଉଦ୍ୟମରେ ଏକ ସୀମିତ ପରିସର ମଧ୍ୟରେ କେତେକ ପରିବର୍ତ୍ତନ କରାଯିବା ପ୍ରମାଦପୂର୍ଣ୍ଣ ନୁହେଁ । କୌଣସି ଶିକ୍ଷାପଦ୍ଧତି ଯୁଗ ଯୁଗ ଧରି ଉପଯୋଗୀ ହୋଇ ନ ପାରେ ଏକଥା ଭୁଲିଯିବା ଉଚିତ ନୁହେଁ ।

## ପ୍ରଶ୍ନାବଳୀ

୧ । ଶିକ୍ଷାର ବ୍ୟକ୍ତିଗତ ଓ ସାମାଜିକ ଲକ୍ଷ୍ୟଗୁଡ଼ିକ ମଧ୍ୟରୁ କେଉଁଟି ଅଧିକ ଗ୍ରହଣୀୟ ବୋଲି ମନେ କରୁଅଛ କାହିଁକି ?

୨ । ଏକ କ୍ଷୁଦ୍ର ସମାଜରୂପେ ବିଦ୍ୟାଳୟ ରୂପାନ୍ତରିତ ହେବା ଆବଶ୍ୟକ । ଏହା କିପରି ସମ୍ଭବପର ?

୩ । ବିଦ୍ୟାଳୟର ବିଭିନ୍ନ କାର୍ଯ୍ୟକ୍ରମ ଗ୍ରୁପମାନଙ୍କ ଉପରେ କି କି ପ୍ରଭାବ ପକାଏ ଲେଖ ।

୪ । କୌଣସି ପ୍ରକାରର ଶିକ୍ଷା ନିରପେକ୍ଷ ନୁହେଁ ବୋଲି ଅନେକଙ୍କର ମତ । ଏ ସମ୍ବନ୍ଧରେ ନିଜର ମତାମତ ଦିଅ ।

୫ । ବିଦ୍ୟାଳୟର ଯେଉଁ କାର୍ଯ୍ୟଗୁଡ଼ିକ ଗୋଷ୍ଠୀଗତ ମନୋଭାବ ଜାଗ୍ରତ କରିବାରେ ସହାୟକ ହୁଏ, ତାହାର ଏକ ବିବରଣୀ ଦିଅ ।

୬ । "ବିଦ୍ୟାଳୟ ପରିବାର ଭଳି ଏକ ଅନୁଆଧାରିତ ସଂସ୍ଥା ।" ଏହି ଉକ୍ତିର ଯଥାର୍ଥତା ପ୍ରତିପାଦନ କର ।

୭ । ବହୁ ଶତାବ୍ଦୀ ଧରି ବିଦ୍ୟାଳୟ କେବଳ ମୁଷ୍ଟିମେୟ ଲୋକଙ୍କର ଆଶା ଆକାଂକ୍ଷା ଚରିତାର୍ଥ କରିବାରେ ସହାୟକ ହୋଇ ଆସିଛି, କିପରି ?

---

# ଦଶମ ଅଧ୍ୟାୟ

## ବିଦ୍ୟାଳୟ ପାଇଁ ଗୃହ, ଉପକରଣ ଓ ଶିକ୍ଷକ ନିଯୁକ୍ତି

ପୂର୍ବ ଅଧ୍ୟାୟରେ ସମାଜର ଆବଶ୍ୟକତା ଓ ଆକାଙ୍କ୍ଷା ପୂରଣ ଦିଗରେ ବିଦ୍ୟାଳୟର ଭୂମିକା କ'ଣ ତାହା ଆଲୋଚିତ ହୋଇଅଛି । ଯେ କୌଣସି କାର୍ଯ୍ୟକ୍ରମ ସୁଷ୍ଠୁରୂପେ ସମ୍ପାଦିତ ହେବାପାଇଁ ବିଦ୍ୟାଳୟରେ କେତେକ ସର୍ବନିମ୍ନ ସୁବିଧା ରହିବା ଆବଶ୍ୟକ । ସେଥିମଧ୍ୟରୁ ଆବଶ୍ୟକ ଗୃହ, ଉପକରଣ ଓ ଶିକ୍ଷକ ନିଯୁକ୍ତି ସର୍ବାଗ୍ରେ ବିବେଚିତ ହେବା ଉଚିତ ।

### ବିଦ୍ୟାଳୟ ପାଇଁ ଗୃହର ଆବଶ୍ୟକତା

କୋଠାରି କମିଶନଙ୍କ ମତରେ ବର୍ତ୍ତମାନ ବିଦ୍ୟାଳୟ ପାଇଁ ରହିଥିବା ଗୃହ ବ୍ୟବସ୍ଥା ଅତ୍ୟନ୍ତ ଅସନ୍ତୋଷଜନକ । ମାତ୍ର ଶତକଡ଼ା ୩୦ ଭାଗ ପ୍ରାଥମିକ ବିଦ୍ୟାଳୟ ଓ ଶତକଡ଼ା ୫୦ ଭାଗ ମାଧ୍ୟମିକ ବିଦ୍ୟାଳୟ ଗୃହଗୁଡ଼ିକ ସନ୍ତୋଷଜନକ । ତେଣୁ ଯେତେ ଶୀଘ୍ର ସମ୍ଭବ ବିଦ୍ୟାଳୟଗୁଡ଼ିକର ଏ ଦୁରବସ୍ଥା ଦୂରୀକରଣ ଦିଗରେ ଉପଯୁକ୍ତ ପଦକ୍ଷେପ ନିଆଯିବା ଦରକାର ।

କେହି କେହି ବିଦ୍ୟାଳୟ ପାଇଁ ଲକ୍ଷ ଲକ୍ଷ ଟଙ୍କା ଖର୍ଚ୍ଚ କରି ମଞ୍ଜୁରିପ୍ରାପ୍ତ ନକ୍ସା ଅନୁସାରେ ଗୃହ ନିର୍ମାଣ କରିବାକୁ ଘୋର ସମାଲୋଚନା କରିଥାଆନ୍ତି । ସେମାନଙ୍କର ମତ ଯେ ମୁକ୍ତ ଆକାଶ ତଳେ ବୃକ୍ଷ ଛାୟାରେ ବସି ପିଲମାନେ ପାଠ ପଢ଼ିବା ଅବସ୍ଥାକୁ ପ୍ରୋତ୍ସାହିତ କରାଯିବା ଉଚିତ ଏବଂ ଭାରତ ପରି ଏକ ଦରିଦ୍ର ଦେଶରେ ବିଦ୍ୟାଳୟ ଗୃହ ନିର୍ମାଣ ପାଇଁ ବହୁ ଅର୍ଥ ବ୍ୟୟ କରିବାରେ କୌଣସି ଆବଶ୍ୟକତା ନାହିଁ । ମୁଦାଲିୟର କମିଶନ ( ମାଧ୍ୟମିକ ଶିକ୍ଷା କମିଶନ, ୧୯୫୨-୫୩ ) ଏହିପରି କେତେକ ବିଦ୍ୟାଳୟ

ପରିଦର୍ଶନ କରି ମତ ଦେଇଅଛନ୍ତି ଯେ କେତେକ ପରିସ୍ଥିତିରେ ବିଦ୍ୟାଳୟର କେତେକ କାର୍ଯ୍ୟକ୍ରମ ବେଳେ ବେଳେ ମୁକ୍ତ ଆକାଶ ତଳେ କରାଯାଇପାରେ । ଏ ଦେଶର ଜଳ-ବାୟୁରେ ଏ ପ୍ରକାର ବିଦ୍ୟାଳୟ ବିଧିବଦ୍ଧ ନିର୍ମିତ ଗୃହଥିବା ବିଦ୍ୟାଳୟର ସ୍ଥାନ ପୂରଣ କରି ନ ପାରେ । ଅବଶ୍ୟ କେତେକ ରୋଗଗ୍ରସ୍ତ, ଶାରୀରିକ ଅକ୍ଷମ ଛାତ୍ରମାନଙ୍କ ପାଇଁ ମୁକ୍ତ ଆକାଶ ବିଦ୍ୟାଳୟ କରାଯାଇପାରେ । ଏ ସଂକ୍ରାନ୍ତରେ ଆଉ କେତୋଟି ବିଷୟ ଦେଖିବା କଥା—ତାହା ହେଉଛି ମୁକ୍ତ-ଆକାଶ ବିଦ୍ୟାଳୟରେ କମ୍ ସଂଖ୍ୟକ ଛାତ୍ର ଥିବା ଶ୍ରେଣୀଗୁଡ଼ିକରେ ଅଧ୍ୟାପନା ସମ୍ଭବପର । ଏଥିପାଇଁ ଗାଢ଼ ଛାୟା ପ୍ରଦାନ କରୁଥିବା ବୃକ୍ଷାଦି ଓ ବିସ୍ତୃତ ଅଞ୍ଚଳ ମଧ୍ୟ ଆବଶ୍ୟକ । ପୁନଶ୍ଚ ମୌଖିକ ପଢ଼ାଯାଉଥିବା ପାଠ୍ୟକ୍ରମ ଏହି ପ୍ରକାର ବିଦ୍ୟାଳୟରେ ପଢ଼ାଯାଇପାରେ; ମାତ୍ର ଯେଉଁ ପାଠ୍ୟକ୍ରମରେ ପ୍ରୟୋଗିକ ଶିକ୍ଷା ବ୍ୟବସ୍ଥା ପ୍ରଚଳନ ଅଛି ତାହା ପଢ଼ାଇବା ସମ୍ଭବପର ନୁହେଁ । ପରୀକ୍ଷାଗାର, ପାଠାଗାର, କର୍ମଶାଳା (Work shop) ପ୍ରଭୃତି ପାଇଁ ସୁନିର୍ମିତ ଗୃହ ଯେ ଅତ୍ୟାବଶ୍ୟକ ଏହା ଅନସ୍ୱୀକାର୍ଯ୍ୟ । ମୁକ୍ତ-ଆକାଶ ବିଦ୍ୟାଳୟ ସପକ୍ଷରେ ଯେତେ ଯାହା କୁହାଗଲେ ମଧ୍ୟ ବିଦ୍ୟାଳୟ ପାଇଁ ଉପଯୁକ୍ତ ଗୃହ ବ୍ୟବସ୍ଥା କରିବାର ପ୍ରୟୋଜନ ରହିଅଛି । ତେଣୁ ବିଦ୍ୟାଳୟର ଗୃହ ନିର୍ମାଣ ପାଇଁ (୧) ଆବଶ୍ୟକ ଅର୍ଥଯୋଗାଣ (୨) ସର୍ବନିମ୍ନ ଖର୍ଚ୍ଚରେ ଗୃହ ନିର୍ମାଣର ସମ୍ଭାବନା ଓ (୩) ମିତବ୍ୟୟିତା ଅବଲମ୍ବନ ପୂର୍ବକ ଏହି କାର୍ଯ୍ୟ ଦ୍ରୁତଗତିରେ କରାଇନେବାକୁ ଏକ ଉପଯୁକ୍ତ ସଂସ୍ଥା ସମ୍ବନ୍ଧରେ ଚିନ୍ତା କରିବା ଅଧିକ ସ୍ପୃହଣୀୟ ହେବ ।

## ସ୍ଥାନ ନିର୍ବାଚନ

ବିଦ୍ୟାଳୟ ଉପଯୁକ୍ତ ସ୍ଥାନରେ ଅବସ୍ଥାପିତ ହେବା ଏକାନ୍ତ ପ୍ରୟୋଜନ । ଯେତେ-ଦୂର ସମ୍ଭବ ସହର ବାହାରେ ବିଦ୍ୟାଳୟର ସ୍ଥାନ ନିରୂପିତ ହେବା ଆବଶ୍ୟକ । ଅବଶ୍ୟ ବଡ଼ ବଡ଼ ସହରରେ ଏହା ସମ୍ଭବପର ହୋଇ ନ ପାରେ । ତେବେ କୌଣସି ପ୍ରକାରେ ବିଦ୍ୟାଳୟ କଳକାରଖାନା ନିକଟରେ ବା ସହରର ଅତ୍ୟନ୍ତ ଜନଗହଳି ଅଂଶରେ ସ୍ଥାପିତ ହେବା ଉଚିତ ନୁହେଁ । ସହରର ଗୋଟିଏ ମୁଣ୍ଡରେ ବିଦ୍ୟାଳୟ ପାଇଁ ସ୍ଥାନ ନିର୍ବାଚନ କଲାବେଳେ ବିଦ୍ୟାର୍ଥୀମାନଙ୍କ ସ୍ୱାସ୍ଥ୍ୟପ୍ରତି ଦୃଷ୍ଟିଦେବା ମଧ୍ୟ ବାଞ୍ଛନୀୟ । ସହରର ଗୋଳମାଳ ଠାରୁ ଦୂରରେ ମୁକ୍ତବାୟୁ ମିଳୁଥିବା ଖୋଲା ସ୍ଥାନରେ ବିଦ୍ୟାଳୟ ଅବସ୍ଥାପିତ ହେଲେ ମଧ୍ୟ ତାହା ଅବଶ୍ୟ ରାସ୍ତାଘାଟ ଦ୍ୱାରା ସହର ସହ ସଂଯୁକ୍ତ ହେବା ଦରକାର ଏବଂ ଉପଯୁକ୍ତ ଯାତାୟତ ବ୍ୟବସ୍ଥା ଥିବା ଆବଶ୍ୟକ । ଆଜିକାଲି ସହରର ବହୁ ବିଦ୍ୟାଳୟ ସେମାନଙ୍କର ନିଜ ନିଜର ବସ ଚଳାଇଥାନ୍ତି । ଅନେକ ସରକାରୀ ଓ ଘରୋଇ ବସରେ କମ୍ ମୂଲ୍ୟ ଦେଇ ଛାତ୍ରମାନଙ୍କ ପାଇଁ ଯାତାୟତ କରିବାର ସୁବିଧା ଥାଏ । ଏତଦ୍ବ୍ୟତୀତ

ବିଦ୍ୟାଳୟରେ ଅଧ୍ୟୟନ କରିବା ପାଇଁ ଛାତ୍ରମାନେ ଯଦି ପ୍ରତିଦିନ କିଛିବାଟ ଚାଲନ୍ତି ସେଥିରେ ମଧ୍ୟ ବିଚଳିତ ହେବାର କିଛି ନାହିଁ । ସହର ବାହାରେ ବିଦ୍ୟାଳୟ ଅବସ୍ଥାପିତ ହେଲେ ପ୍ରଚୁର ମୁକ୍ତବାୟୁ ମିଳିବା ସଙ୍ଗେ ସଙ୍ଗେ ଖୋଲା ପଡ଼ିଆ ଖେଳାବୁଲା ପାଇଁ ମିଳିବ । ବିଦ୍ୟାଳୟ ପାଇଁ ଏକ ପ୍ରଶସ୍ତ ହତା ମିଳିବ । ରୋଗ ସଂକ୍ରମଣର ନିରୋଧ କରିବା ସହଜ ହେବ । ଭଲ ଛାତ୍ରାବାସ ନିର୍ମାଣ କରିବା ପାଇଁ ଯଥେଷ୍ଟ ସ୍ଥାନ ମିଳିବ । ସର୍ବୋପରି ସହର ବାହାରେ ଜମି ଅପେକ୍ଷାକୃତ ସୁଲଭ ମୂଲ୍ୟରେ ମିଳିପାରିବ ଏବଂ ଦୁଇ ମହଲା ବା ତିନି ମହଲା କୋଠାଘର ତିଆରି କରିବାର ପ୍ରଲୋଭନ ଏଡ଼ାଇ ଦେଇ ହେବ । ବାଳିକା ବିଦ୍ୟାଳୟ ପାଇଁ ସ୍ଥାନ ନିରୂପଣ କରିବାବେଳେ ଅବଶ୍ୟ ଅନ୍ୟାନ୍ୟ କେତେକ ବିଷୟ ବିଚାର କରିବାକୁ ହେବ; ମାତ୍ର ଏହା ମଧ୍ୟ ସହର ବାହାରେ ଅବସ୍ଥାପିତ ହେଲେ ଉତ୍ତମ ।

ରାସ୍ତା ନିକଟରେ ବିଦ୍ୟାଳୟ ଅବସ୍ଥାପିତ ହେଲେ ମଧ୍ୟ ଗୃହଗୁଡ଼ିକ ରାସ୍ତାଠାରୁ କିଛିଏ ଦୂରରେ ତିଆରି କଲେ ଧୂଳିଧାଳିରୁ ରକ୍ଷା ମିଳିବ । ସହର କେଉଁ ଦିଗକୁ ଦ୍ରୁତ ଗତିରେ ବଢ଼ି ଚାଲିଛି ତା' ବିଚାରକୁ ନ ନେଲେ ଦଶବର୍ଷ ପରେ ହୁଏତ ବିଦ୍ୟାଳୟଟି ସହରଦ୍ୱାରା ପରିବେଷ୍ଟିତ ହୋଇଯିବ । ବିଦ୍ୟାଳୟଟି କିଛିଏ ଉଚ୍ଚରେ ତିଆରି କଲେ ତାହା ସର୍ବଦା ଶୁଷ୍କ ରହିବ । ପାଖରେ ପୋଖରୀ ବା ସନ୍ତସନ୍ତିଆ ସ୍ଥାନ ରହିବା ଉଚିତ ନୁହେଁ । ଜଳ ଯୋଗାଣର ସୁବ୍ୟବସ୍ଥା ହେବା ଦରକାର । ବିଦ୍ୟାଳୟଟି ତିଆରି ହେଉଥିବା ସ୍ଥାନରେ ବୃକ୍ଷଲତା ନ ଥିଲେ ଶୀଘ୍ର ବୃକ୍ଷରୋପଣ ଆରମ୍ଭ କରିଦେବା ଉଚିତ ଯେପରି ବିଦ୍ୟାଳୟ ହତା କେତେଟା ବର୍ଷ ମଧ୍ୟରେ ବହୁ ସଂଖ୍ୟକ ବୃକ୍ଷ ଦ୍ୱାରା ଆଚ୍ଛାଦିତ ହୋଇ ମନୋଜ୍ଞ ହୋଇପାରିବ । ବୃକ୍ଷରୋପଣ ସମୟରେ ଫଳଗଛ ଲଗାଇବାକୁ ଭୁଲିଯିବା ଉଚିତ ନୁହେଁ ।

ଗ୍ରାମାଞ୍ଚଳରେ ବିଦ୍ୟାଳୟଗୁଡ଼ିକ ଜନବହୁଳ ଗ୍ରାମରେ ଅବସ୍ଥାପିତ ହେବା ଦରକାର ଏବଂ ନିକଟବର୍ତ୍ତୀ ଗ୍ରାମମାନଙ୍କରୁ ଯେପରି ପିଲାମାନେ ଆସି ପଢ଼ିପାରିବେ ତାହାର ସୁବିଧା ଥିବା ମଧ୍ୟ ଦରକାର । ଗ୍ରାମାଞ୍ଚଳର ବିଦ୍ୟାଳୟଗୁଡ଼ିକ ଗ୍ରାମଗୋଷ୍ଠୀର ସାମାଜିକ, ବୌଦ୍ଧିକ ତଥା ଶାରୀରିକ କାର୍ଯ୍ୟକଳାପର ଏକ କେନ୍ଦ୍ରରେ ପରିଣତ ହେବା ଉଚିତ । ଏଥିପାଇଁ ବିଦ୍ୟାଳୟକୁ ଯିବା ଆସିବାରେ କୌଣସି ଅସୁବିଧା ରହିବା ଉଚିତ ନୁହେଁ । ଏବଂ ବିଭିନ୍ନ କାର୍ଯ୍ୟକ୍ରମ ପାଇଁ ଯଥେଷ୍ଟ ଖୋଲାସ୍ଥାନ ରହିଥିବା ଦରକାର ।

## ଗୃହ ନିର୍ମାଣ

ବିଦ୍ୟାଳୟ ଗୃହ ନିର୍ମାଣପାଇଁ ଅନୁମୋଦିତ ନକ୍‌ସା ପ୍ରାୟ ପ୍ରତ୍ୟେକ ପ୍ରଦେଶର ଶିକ୍ଷା ବିଭାଗୀୟ କର୍ତ୍ତୃପକ୍ଷଙ୍କ ଦ୍ୱାରା ପ୍ରସ୍ତୁତ ହୋଇଅଛି । ସେହି ଅନୁସାରେ ସରକାରୀ ବିଦ୍ୟାଳୟ-ଗୁଡ଼ିକର ଗୃହ ନିର୍ମିତ ହେଉଛି । ମାତ୍ର ଦେଶରେ ହଜାର ହଜାର ବିଦ୍ୟାଳୟ ପୂର୍ବରୁ

ନିର୍ମିତ ହୋଇଅଛି ଏବଂ ଏବେ ମଧ୍ୟ ବହୁ ବେସରକାରୀ ବିଦ୍ୟାଳୟ ପ୍ରତିଷ୍ଠିତ ହେଉ-ଅଛି ଯେଉଁଠାରେ ବିଧିବଦ୍ଧ ନକ୍ସା ଅନୁସାରେ ଗୃହନିର୍ମାଣ କରିବା ଆର୍ଥିକ ସମ୍ବଳ ଅଭାବରୁ ସମ୍ଭବପର ହୋଇପାରୁ ନାହିଁ । ସମସ୍ତ ବିଦ୍ୟାଳୟ ପାଇଁ ମିଳୁଥିବା ସ୍ଥାନ ମଧ୍ୟ ଏକ ପ୍ରକାରର ନୁହେଁ । ଯାହାହେଉ ଗ୍ରାମାଞ୍ଚଳ ଓ ସହରାଞ୍ଚଳରେ ଏକ ପଦ୍ଧତିରେ ଗୃହନିର୍ମାଣର ଆବଶ୍ୟକତା ନାହିଁ ବୋଲି ବହୁ ବିଶେଷଜ୍ଞଙ୍କର ମତ । ସହରାଞ୍ଚଳରେ ଜମିର ମୂଲ୍ୟ ଅତ୍ୟଧିକ ହେତୁ ସେଠାରେ ଆଧୁନିକ ରୁଚିସମ୍ପନ୍ନ ଉପଯୋଗୀ କୋଠାବାଡ଼ି ତିଆରି କରାଯାଇପାରେ; ଅନ୍ତତଃ ପରିବେଷ୍ଟନୀ ସହ ଏହାର ସାଦୃଶ୍ୟ ରକ୍ଷା କରିବା ପାଇଁ । ଗ୍ରାମାଞ୍ଚଳରେ ଅତ୍ୟାଧୁନିକ ଶୈଳୀରେ ଗୃହ ନିର୍ମାଣ କଲେ ଏହା ଗ୍ରାମ୍ୟ ପରିବେଷ୍ଟନୀରେ କିମ୍ଭୂତକିମାକାର ଦେଖାଯାଇପାରେ । ବିଦ୍ୟାଳୟ ଗୃହର ଗଠନଶୈଳୀ ଯାହା ହେଉନା କାହିଁକି କେତେକ ମୂଳନୀତି ବିଷୟରେ ସଚେତନ ହେବା ଆବଶ୍ୟକ ।

ଗୃହଗୁଡ଼ିକରେ ଉତ୍ତମ ବାୟୁ ଓ ଆଲୋକ ଚଳାଚଳ କରିବା ପାଇଁ ବ୍ୟବସ୍ଥା କରାଯିବା ଏକ ଅତି ସାଧାରଣ କଥା । ଭାରତର ଅଧିକାଂଶ ଅଞ୍ଚଳର ବିଦ୍ୟାଳୟ ଗୃହଗୁଡ଼ିକ ଦକ୍ଷିଣମୁହାଁ ହେବା ଆବଶ୍ୟକ । ଗୃହଗୁଡ଼ିକର ଉଭୟ ପାର୍ଶ୍ୱରେ ବାରଣ୍ଡା ରହିବା ଆବଶ୍ୟକତା ଅନେକ କ୍ଷେତ୍ରରେ ଯଥାର୍ଥ ହୋଇ ନ ପାରେ । ଅତ୍ୟନ୍ତ ଅସୁବିଧା ନ ଥିଲେ ଘରଗୁଡ଼ିକ ଏକମହଲା ରଖାଯିବା ଉଚିତ । ଛାତ୍ରାବାସ ମଧ୍ୟ ଏକମହଲା ହେବା ବାଞ୍ଛନୀୟ ଏବଂ ବିଦ୍ୟାଳୟ ଠାରୁ ଟିକିଏ ଦୂରରେ ଅବସ୍ଥାପିତ ହେବା ଦରକାର । ଶ୍ରେଣୀଗୃହର ଆକାର ଏପରି ହେବା ଉଚିତ ଯେପରି ଅନ୍ତତଃ ପ୍ରତ୍ୟେକ ଛାତ୍ର ପାଇଁ ଏକ ବର୍ଗ ମିଟର ସ୍ଥାନ ମିଳିପାରିବ । ଆଜିକାଲି ବିଦ୍ୟାଳୟଗୁଡ଼ିକରେ ସ୍ଥାନାଭାବ ହେତୁ କୌଣସି କୌଣସି ସ୍ଥଳରେ ଗୋଟିଏ ଗୋଟିଏ ଶ୍ରେଣୀରେ ୫୦।୬୦ ଜଣ ପିଲା ମଧ୍ୟ ବସିଥାଆନ୍ତି । ଏକ ଦିଗରେ ଛାତ୍ରମାନଙ୍କୁ ବ୍ୟକ୍ତିଗତ ଭାବରେ ଜାଣିବାର ଆବଶ୍ୟକତା ଉପଲବ୍ଧି କରିବା ଏବଂ ଅନ୍ୟ ଦିଗରେ ଛାତ୍ର ସଂଖ୍ୟା ସୀମାତୀତ ଭାବରେ ବଢାଇଦେବା ଅର୍ଥହୀନ । ବିଦ୍ୟାଳୟର ଶ୍ରେଣୀଗୁଡ଼ିକରେ ୪୦ରୁ ଅଧିକ ପିଲା ରହିବା ଅନୁଚିତ ଏବଂ ଶ୍ରେଣୀଗୃହର କ୍ଷେତ୍ରଫଳ ତଦନୁଯାୟୀ ଅନ୍ୟୂନ ୪୦ ବର୍ଗମିଟର ହେବା ଆବଶ୍ୟକ । ଶ୍ରେଣୀଗୃହର ଉଚ୍ଚତା ଅନ୍ତତଃ ୫ ମିଟର ହେବା ବାଞ୍ଛନୀୟ ଏବଂ କାନ୍ଥ-ଗୁଡ଼ିକର ଉପରଭାଗରେ ଯଥେଷ୍ଟ ସଂଖ୍ୟକ ବାୟୁ ସଞ୍ଚାଳକ ଯନ୍ତ୍ର (Ventilators) ରହିବା ବିଧେୟ । ପ୍ରତ୍ୟେକ ଗୃହରେ ଗୋଟିଏ ମାତ୍ର ଦ୍ୱାର ରହିବା ଉଚିତ ଏବଂ ଏହି ଦ୍ୱାର କାନ୍ଥର ଗୋଟିଏ ପାର୍ଶ୍ୱରେ ରହିବା ଉଚିତ । ଶ୍ରେଣୀଗୃହଗୁଡ଼ିକ ପରସ୍ପର ସହ ଦ୍ୱାର ଦ୍ୱାରା ସଂଯୁକ୍ତ ହେବା ଉଚିତ ନୁହେଁ ।

ଶ୍ରେଣୀଗୃହ ବ୍ୟତୀତ ବିଦ୍ୟାଳୟରେ ଛାତ୍ରଛାତ୍ରୀମାନଙ୍କର ସୁବିଧା ଲାଗି ଆହୁ କେତେ-ଗୁଡ଼ିଏ ଗୃହ ରହିବା ଉଚିତ । ଆବଶ୍ୟକ ସଂଖ୍ୟକ ପରିସ୍ରାଗାର, ପାଇଖାନା, ଛାତ୍ରୀମାନଙ୍କ

ପାଇଁ ସ୍ୱତନ୍ତ୍ର ବିଶ୍ରାମାଗାର, ଶିକ୍ଷକମାନଙ୍କ ପାଇଁ ବିଶ୍ରାମାଗାର, ପାଠାଗାର, ପୁସ୍ତକାଗାର, ପ୍ରଧାନ ଶିକ୍ଷକଙ୍କ ପ୍ରକୋଷ୍ଠ, ବିଦ୍ୟାଳୟର ଦପ୍ତର, ବିଜ୍ଞାନାଗାର, କର୍ମଶାଳା, ସମ୍ଭବ ହେଲେ ଏକ ପରିଦର୍ଶନାଗାର ପ୍ରତ୍ୟେକ ବିଦ୍ୟାଳୟରେ ରହିବା ବାଞ୍ଛନୀୟ । ଛାତ୍ରାବାସ ବିଦ୍ୟାଳୟଠାରୁ ପୃଥକଭାବରେ କିଛିଏ ଦୂରରେ ନିର୍ମିତ ହେବା ବିଷୟ ଆଗରୁ କୁହାଯାଇଅଛି । ଆଜିକାଲି ଅଧିକାଂଶ ବିଦ୍ୟାଳୟରେ ସାଇକେଲ ରଖିବା ପାଇଁ ମଧ୍ୟ ଗୋଟିଏ ଗୃହ ଆବଶ୍ୟକ ହେଉଅଛି ।

## ବିଜ୍ଞାନାଗାରରେ ଆବଶ୍ୟକ ବ୍ୟବସ୍ଥା

ଭାରତର ପ୍ରତ୍ୟେକ ପ୍ରାନ୍ତରେ ବିଜ୍ଞାନ ବିଦ୍ୟାଳୟ ସ୍ତରରେ ପାଠ୍ୟ ବିଷୟ ରୂପେ ସ୍ଥାନ ପାଇଥିଲେ ହେଁ ଅଧିକାଂଶ ବିଦ୍ୟାଳୟରେ ବିଜ୍ଞାନ ପଢ଼ାଇବାର ସୁବିଧା ସୁଯୋଗର ଘୋର ଅଭାବ ପରିଲକ୍ଷିତ ହେଉଅଛି । ଉନ୍ନତ ରାଷ୍ଟ୍ରଗୁଡ଼ିକରେ ବିଦ୍ୟାଳୟରେ ବିଜ୍ଞାନାଗାର ରହିବା ଏକ ସାଧାରଣ କଥା ହେଲେ ହେଁ ଆମ ଦେଶର ଅଧିକାଂଶ ବିଦ୍ୟାଳୟରେ ଏଥିପାଇଁ ଏକ ସ୍ୱତନ୍ତ୍ର ପ୍ରକୋଷ୍ଠ ମଧ୍ୟ ନାହିଁ । ବିଜ୍ଞାନର ଅଗ୍ରଗତି ସଙ୍ଗେ ସଙ୍ଗେ ବିଜ୍ଞାନ ପାଠ୍ୟର ପ୍ରାଧାନ୍ୟ କ୍ରମଶଃ ଅଧିକ ଅନୁଭୂତ ହେଉଅଛି ଏବଂ ବହୁ ବିଦ୍ୟାଳୟ ସେମାନଙ୍କର ପୂର୍ବନିର୍ମିତ ଗୃହଗୁଡ଼ିକରେ ଧୀରେ ଧୀରେ ଗୋଟିଏ ଗୋଟିଏ ବିଜ୍ଞାନାଗାର ଯୋଗ କରିବାର ବ୍ୟବସ୍ଥା କରୁଅଛନ୍ତି । ତେଣୁ ଏଠାରେ ବିଜ୍ଞାନାଗାରର ଆକାର ପ୍ରକାର ସମ୍ବନ୍ଧରେ କିଞ୍ଚିତ ଆଲୋଚନା କରିବା ଯଥାର୍ଥ ମନେହୁଏ ।

ଜାତିସଂଘର ଶିକ୍ଷା-ବିଜ୍ଞାନ-ସାଂସ୍କୃତିକ ସଂସ୍ଥା (U.N.E.S.C.O)ର ବିଶେଷଜ୍ଞମାନେ ୧୯୬୪ ମସିହାରେ ଭାରତ ସରକାର ଶିକ୍ଷା ମନ୍ତ୍ରଣାଳୟ ଦ୍ୱାରା ନିମନ୍ତ୍ରିତ ହୋଇ ଭାରତରେ ବିଜ୍ଞାନ ଶିକ୍ଷାର ବିଭିନ୍ନ ଦିଗ ସମ୍ବନ୍ଧରେ ଅଧ୍ୟୟନ କରିଥିଲେ । ସେମାନେ ଭାରତୀୟ ବିଦ୍ୟାଳୟଗୃହଗୁଡ଼ିକରେ ବିଜ୍ଞାନାଗାର ସ୍ଥାପନ ସମ୍ବନ୍ଧରେ କେତେକ ମୂଲ୍ୟବାନ ସୁପାରିଶ କରିଥିଲେ । ପରେ ଏହି ସୁପାରିଶଗୁଡ଼ିକ ସାମାନ୍ୟ ପରିବର୍ତ୍ତିତ ହୋଇ ସ୍ଥିର ହେଲା ଯେ ବିଜ୍ଞାନାଗାରର ନକ୍ସା ପାଇଁ କୌଣସି କଠୋରତା ଅବଲମ୍ବନ ନ କରି ବିଦ୍ୟାଳୟ-ଗୁଡ଼ିକର ସ୍ୱତନ୍ତ୍ର ଆବଶ୍ୟକତା ଦୃଷ୍ଟିରୁ ଆବଶ୍ୟକ ପରିବର୍ତ୍ତନ ପାଇଁ ବ୍ୟବସ୍ଥା ରହିବା ଦରକାର ଯେପରି ବିଦ୍ୟାଳୟଗୁଡ଼ିକ ସେ ସବୁ ସହଜରେ କାର୍ଯ୍ୟକାରୀ କରିପାରିବେ । ମିତବ୍ୟୟିତା ପ୍ରତି ଦୃଷ୍ଟି ରଖି ବିଶେଷଜ୍ଞମାନେ ପରାମର୍ଶ ଦେଲେ ଯେ ଉଭୟ ପାଠପଢ଼ା ଓ ପରୀକ୍ଷାକାର୍ଯ୍ୟ କରିବାପାଇଁ ୪୨ ଜଣ ଛାତ୍ରଙ୍କ ପାଇଁ ୭୨.୮ ବର୍ଗମିଟର ବା ୮୨୫ ବର୍ଗ ଫୁଟ ସ୍ଥାନ ଯଥେଷ୍ଟ ହେବ । ଏଥିରେ ପ୍ରତ୍ୟେକ ଛାତ୍ର ପାଇଁ ପ୍ରାୟ ୧.୮ ବର୍ଗମିଟର କ୍ଷେତ୍ରଫଳ ବିଶିଷ୍ଟ ସ୍ଥାନ ମିଳିପାରିବ । ବିଜ୍ଞାନାଗାରର ଏକ ନକ୍ସା ପରପୃଷ୍ଠାରେ ଦିଆଯାଇଅଛି । ଏଥିରେ ବିଜ୍ଞାନାଗାର ସହିତ ୧୫ ବର୍ଗ ମିଟର ବା ୧୬୦ ବର୍ଗ ଫୁଟର ଏକ

ଭବିଷ୍ୟତରେ ସଂପ୍ରସାରଣ ପାଇଁ ସ୍ଥାନ




(ମାଧ୍ୟମିକ ବିଦ୍ୟାଳୟ ପାଇଁ ବିଜ୍ଞାନାଗାରର ନକ୍‌ସା, T—ବିଜ୍ଞାନ ସମ୍ବନ୍ଧୀୟ ପରୀକ୍ଷଣ ଟେବୁଲ. S—ଜଳନିଷ୍କାସନ ପାତ୍ର, C ଓ O ଛାତ୍ରଙ୍କ ବସିବା ସ୍ଥାନ, D,T—ପ୍ରଦର୍ଶନ ଟେବୁଲ, V—ବାୟୁ ସଞ୍ଚାଳକ, D—ଦ୍ୱାର, W—ଝରକା)

ଭଣ୍ଡାର ତଥା ପ୍ରସ୍ତୁତ ଗୃହ (Store-cum-Preparation room) ସଂଲଗ୍ନ । ଭବିଷ୍ୟତରେ ବିଜ୍ଞାନାଗାରର ସମ୍ପ୍ରସାରଣ ପାଇଁ (୪୫·୭ ବର୍ଗମିଟର ବା ୪୯୦ ବର୍ଗଫୁଟ) ମଧ୍ୟ ଏଥିରେ ବ୍ୟବସ୍ଥା ରହିଅଛି ଯେପରି ସେହି ଭଣ୍ଡାର-ତଥା-ପ୍ରସ୍ତୁତ ଘର ଉଭୟ ବିଜ୍ଞାନାଗାର ପାଇଁ ବ୍ୟବହୃତ ହୋଇପାରିବ ।

ବିଶେଷଜ୍ଞମାନେ ମତ ଦେଇଥିଲେ ଯେ ବିଜ୍ଞାନାଗାରରେ ପ୍ରତି ଦୁଇଜଣ ଛାତ୍ରଙ୍କପାଇଁ ଉଦ୍ଦିଷ୍ଟ ଟେବୁଲର ଆକାର ୧୨୨ × ୫୩ ସେ. ମି. ହେବା ଆବଶ୍ୟକ । ଏହାର ତଳେ ଗୋଟିଏ ଥାକ ରଖାଗଲେ ଛାତ୍ରମାନେ ବହିପତ୍ର ରଖିପାରିବେ । ଅନେକ ଥାକ ଖଞ୍ଜା ଯାଇଥିବା ବଡ଼ ବଡ଼ ମେଜ କେବଳ ଖର୍ଚ୍ଚ ବଢ଼ାଇବା ବ୍ୟତୀତ ଅନ୍ୟ କୌଣସି ଉଦ୍ଦେଶ୍ୟ ସାଧନ କରୁନାହିଁ ବୋଲି ବିଶେଷଜ୍ଞମାନଙ୍କର ମତ । ଶିକ୍ଷକଙ୍କ ଟେବୁଲ ବା ପ୍ରଦର୍ଶନ ଟେବୁଲ (Demonstration table)ର ମାପ ୨୫୦×୮୫×୭୦ ସେ. ମି ହେବା ଉଚିତ ଏବଂ ଏହା ଶ୍ରେଣୀଗୃହରେ ୧୮ ସେ. ମି. ଉଚ୍ଚ ଗୋଟିଏ ମଞ୍ଚ ଉପରେ ସ୍ଥାପିତ ହେବା ଆବଶ୍ୟକ । ଏହି ଟେବୁଲରେ କେତେକ ଥାକ ଓ ଜଳ ନିଷ୍କାସନ ପାତ୍ର (Sink) ରହିବା ଆବଶ୍ୟକ । ଉକ୍ତ ନକ୍ସାରେ ଭଣ୍ଡାର ତଥା ପ୍ରସ୍ତୁତ ଗୃହରେ ଜଳ ନିଷ୍କାସନ ପାତ୍ର ପାଇଁ ବ୍ୟବସ୍ଥା ରହିଅଛି; ମାତ୍ର ବିଜ୍ଞାନାଗାରରେ ପ୍ରତ୍ୟେକ ଟେବୁଲ ଉପରେ ଜଳ-ନିଷ୍କାସନ ପାତ୍ର ଖଞ୍ଜା ନ ଯାଇ ପାର୍ଶ୍ୱସ୍ଥ କାନ୍ଥରେ କେତେଗୁଡିଏ ପାତ୍ର ଖଞ୍ଜା ଯାଇଅଛି । କାନ୍ଥରେ ୨୪୪ × ୯୦ ସେ. ମି.ର କଳାପଟା ଖଞ୍ଜିବାର ବ୍ୟବସ୍ଥା ଅଛି । ଉକ୍ତ ନକ୍ସାରେ ଗୃହ ଅନ୍ଧକାର କରିବାର ବ୍ୟବସ୍ଥା ନାହିଁ । ବିଶେଷଜ୍ଞମାନଙ୍କର ମତ ଯେ, ଏଥିପାଇଁ ମୋଟା ପରଦା ବ୍ୟବହାର କରାଯାଇପାରିବ । ଆଲୋକର ବ୍ୟବସ୍ଥା ସମ୍ବନ୍ଧରେ ସେମାନେ ମତ ଦେଇଅଛନ୍ତି ଯେ ଉପଯୁକ୍ତ ସ୍ଥାନରେ କବାଟ, ଝରକା ଇତ୍ୟାଦି ଲଗାଇ ଦିବାଲୋକର ସର୍ବାଧିକ ବ୍ୟବହାର କରାଯାଇ ପାରିବ । କେବଳ ମେଘାଚ୍ଛନ୍ନ ଦିବସ ଓ ଶୀତ ଋତୁର କେତେକ ସମୟରେ କୃତ୍ରିମ ଆଲୋକର ବ୍ୟବହାର କରାଯାଇପାରେ ।

## ଶିକ୍ଷକମାନଙ୍କ ପାଇଁ ବାସଗୃହ ବ୍ୟବସ୍ଥା

ଶିକ୍ଷକମାନଙ୍କର ଦକ୍ଷତାର ସର୍ବାଧିକ ଉପଯୋଗିତା ପାଇଁ ବିଦ୍ୟାଳୟ କର୍ତ୍ତୃପକ୍ଷ ସେମାନଙ୍କପାଇଁ ଉପଯୁକ୍ତ ବାସଗୃହର ବ୍ୟବସ୍ଥା କରିବା ଏକାନ୍ତ ପ୍ରୟୋଜନ । ସହରାଞ୍ଚଳରେ ଶିକ୍ଷକମାନେ ବିକ୍ଷିପ୍ତ ଭାବରେ ଏଣେ ତେଣେ ରହନ୍ତି ଏବଂ ଗ୍ରାମାଞ୍ଚଳରେ ବାସଗୃହ ଭଡ଼ାରେ ମିଳିବା ମଧ୍ୟ ଅତ୍ୟନ୍ତ କଷ୍ଟକର ହୁଏ । ତେଣୁ ପ୍ରତ୍ୟେକ ବିଦ୍ୟାଳୟରେ ସମସ୍ତ ଶିକ୍ଷକଙ୍କ ପାଇଁ ବ୍ୟବସ୍ଥା କରାଯାଇ ନ ପାରିଲେ ଅନ୍ତତଃ ପ୍ରଧାନ ଶିକ୍ଷକଙ୍କ ସମେତ ଅଧିକାଂଶ ଶିକ୍ଷକଙ୍କ ପାଇଁ ବାସଗୃହ ବିଦ୍ୟାଳୟ ନିକଟରେ ନିର୍ମିତ ହେବା ଉଚିତ ।

ବିଶେଷତଃ ବାଳିକା ବିଦ୍ୟାଳୟଗୁଡ଼ିକରେ ଶିକ୍ଷୟିତ୍ରୀମାନଙ୍କୁ ବାସଗୃହ ଯୋଗାଇଦେବା ଏକ ସର୍ବନିମ୍ନ ବ୍ୟବସ୍ଥା ରୂପେ ଗୃହୀତ ହେବା ଉଚିତ । ପ୍ରଥମ ଅବସ୍ଥାରେ ବାସଗୃହ ନିର୍ମାଣ ବ୍ୟୟସାପେକ୍ଷ ହେଲେ ମଧ୍ୟ ଏହାର ଚରମ ପରିଣତି ଅତ୍ୟନ୍ତ ଉତ୍ସାହପ୍ରଦ । ବିଦ୍ୟାଳୟଗୁଡ଼ିକ ଶେଷରେ ବ୍ୟୟ ହୋଇଥିବା ଅର୍ଥ ତୁଳନାରେ ନିଶ୍ଚୟ ଅଧିକ ଲାଭବାନ ହେବେ । ବାସଗୃହର ବ୍ୟବସ୍ଥା ଥିବା ବିଦ୍ୟାଳୟ ଯୋଗ୍ୟ ଶିକ୍ଷକମାନଙ୍କୁ ଆକର୍ଷଣ କରେ । ଏକ ସ୍ଥାନରେ ରହିବା ଫଳରେ ଶିକ୍ଷକମାନଙ୍କର ଗୋଷ୍ଠୀଗତ ଜୀବନ ସମ୍ଭବ ହୁଏ । ବିଦ୍ୟାଳୟ କାର୍ଯ୍ୟକ୍ରମ ପାଇଁ ଆବଶ୍ୟକ ଅନୁସାରେ ଅଧିକ ସମୟ ଦେବାକୁ ଶିକ୍ଷକମାନେ କୁଣ୍ଠିତ ହୁଅନ୍ତି ନାହିଁ । ବିଦ୍ୟାଳୟ ନିକଟରେ ପ୍ରଧାନ ଶିକ୍ଷକ ଓ ଶିକ୍ଷକ-ମଣ୍ଡଳୀ ବାସକଲେ ବିଦ୍ୟାଳୟ ଜୀବନ ଅଧିକ ଶୃଙ୍ଖଳିତ ଓ ଫଳପ୍ରଦ ହୁଏ । ଏହିପରି ନାନା ପ୍ରତ୍ୟକ୍ଷ ଓ ପରୋକ୍ଷ ପ୍ରଭାବ ଦୃଷ୍ଟିରୁ ଶିକ୍ଷକମାନଙ୍କ ପାଇଁ ବାସଗୃହ ଯୋଗାଇ ଦେବା ଏକ ଅତ୍ୟାବଶ୍ୟକ ଯୋଜନା ରୂପେ ଗୃହୀତ ହେବା ଉଚିତ ।

ଆଜିକାଲି ଶସ୍ତାରେ ଗୃହ ନିର୍ମାଣ ପାଇଁ ବହୁ ନୂତନ ପଦ୍ଧତି ପ୍ରଚଳିତ ହେଉଅଛି । କେନ୍ଦ୍ରୀୟ ଗୃହ ଗବେଷଣା ଅନୁଷ୍ଠାନ (Central Building Research Institute) ଓ ଅନ୍ୟାନ୍ୟ ଗବେଷଣା ପରିଷଦଗୁଡ଼ିକ ଏ ଦିଗରେ ଅନେକ ନୂତନ ବିଷୟ ଉଦ୍ଭାବନ କରିଅଛନ୍ତି । ତେଣୁ ସେ ସବୁର ସୁବିଧା ସୁଯୋଗ ନିଆଯାଇପାରିଲେ ଖର୍ଚ୍ଚ ହେଉଥିବା ଅର୍ଥର ସର୍ବାଧିକ ସଦୁପଯୋଗ କରିହେବ ।

## ଉପକରଣ

ଶିକ୍ଷାଦାନ ପ୍ରଣାଳୀକୁ ସରସ, ସୁନ୍ଦର ଓ ଚିତ୍ତାକର୍ଷକ କରିବାପାଇଁ ବିଦ୍ୟାଳୟରେ ବିଭିନ୍ନ ଉପକରଣର ପ୍ରୟୋଜନୀୟତା ଅନୁଭୂତ ହୁଏ । ଏକଥା ସତ ଯେ, କେବଳ ମୁହଁରୁ ଶୁଣିବାଠାରୁ ଯଦି କୌଣସି ତଥ୍ୟର ପ୍ରୟୋଗ ସହିତ ପରୀକ୍ଷା ଛାତ୍ରମାନେ ଶ୍ରେଣୀରେ ଦେଖିବାର ସୁଯୋଗ ପାଆନ୍ତି ତାହାହେଲେ ତାହାର ପ୍ରଭାବ ସେମାନଙ୍କ ମନରେ ଗଭୀର ରେଖାପାତ କରେ ଓ ଅନୁଭୂତି ଅଧିକ ସ୍ଥାୟୀ ହୁଏ । ବିଶେଷତଃ ଆଜିକାଲି ଭୂଗୋଳ, ବିଜ୍ଞାନ ଆଦି କେତେକ ବିଷୟ ବିଦ୍ୟାଳୟ ପାଠ୍ୟକ୍ରମରେ ଅନ୍ତର୍ଭୁକ୍ତ ଯାହାର ସଫଳ ଶିକ୍ଷାଦାନ ପାଇଁ ବିଭିନ୍ନ ଉପକରଣ ଅତ୍ୟାବଶ୍ୟକ । କେବଳ ବିଦ୍ୟାଳୟରେ ଆବଶ୍ୟକ ଉପକରଣ ରହିବା ଯଥେଷ୍ଟ ନୁହେଁ, ସେ ସବୁର ସଦୁପଯୋଗ କରିବା ହେଉଛି ପ୍ରଧାନ କଥା । ଭୂଗୋଳ ଶିକ୍ଷକ ଶ୍ରେଣୀକୁ ମାନଚିତ୍ର ନ ନେଇ ପଢ଼ାଇବାକୁ ଗଲେ ବା ବିଜ୍ଞାନ ଶିକ୍ଷକ ପୂର୍ବରୁ ବିଜ୍ଞାନାଗାରରେ ପରୀକ୍ଷା ପ୍ରସ୍ତୁତ ନ କରି ବିଷୟଟି କେବଳ ମୌଖିକ ପଢ଼ାଇଦେଲେ ଉପକରଣଗୁଡ଼ିକ ଭଣ୍ଡାରଘରର ସାମଗ୍ରୀ ହୋଇ ରହିବ । ଶିକ୍ଷକ-ମାନଙ୍କର ଉପକରଣଗୁଡ଼ିକ ବ୍ୟବହାର କରିବା ଦାୟିତ୍ୱ ଯେପରି ରହିଅଛି ବିଦ୍ୟାଳୟ

କର୍ତ୍ତୃପକ୍ଷଙ୍କର ମଧ୍ୟ ଉପକରଣଗୁଡ଼ିକ ସଦ୍‌ବ୍ୟବହାର ହେଉଛି କି ନାହିଁ ତାହା ମଝିରେ ମଝିରେ ଯାଞ୍ଚ କରିନେବାର ଦାୟିତ୍ୱ ସେହିପରି ରହିଅଛି । ଗୋଟିଏ ବିଦ୍ୟାଳୟରେ ବିଭିନ୍ନ ପ୍ରକାରର ଉପକରଣ ସାଧାରଣତଃ ଆବଶ୍ୟକ ହୋଇଥାଏ । ସେ ସବୁରୁ କେତେକ ନିମ୍ନରେ ପ୍ରଦତ୍ତ ହେଲା ।

**ବିଜ୍ଞାନ ଉପକରଣ**

ମାତ୍ର ଦୁଇ ଦଶନ୍ଧିରୁ କିଛି ଅଧିକ କାଳ ହେଲା ବିଜ୍ଞାନ ଏକ ବାଧ୍ୟତାମୂଳକ ବିଷୟରୂପେ ବିଦ୍ୟାଳୟ ପାଠ୍ୟକ୍ରମରେ ସ୍ଥାନ ପାଇଅଛି । ଆଧୁନିକ ବିଜ୍ଞାନ ଯୁଗରେ ଛାତ୍ରମାନଙ୍କୁ ବିଜ୍ଞାନ ସମ୍ବନ୍ଧରେ କେତେକ ଅତ୍ୟାବଶ୍ୟକ ସଂକ୍ରାନ୍ତ ମୂଳ ତଥ୍ୟ ଯେ ଜାଣି ଦେବା ଏହି ଶିକ୍ଷାଦାନର ଉଦ୍ଦେଶ୍ୟ । କିନ୍ତୁ ଏହି ଶିକ୍ଷା ସଫଳ ହେବାପାଇଁ କେବଳ ଶିକ୍ଷକଙ୍କଠାରୁ ଶୁଣିବା ଯଥେଷ୍ଟ ନୁହେଁ । ଅନେକ ବିଷୟ ନିଜ ଆଖିରେ ଦେଖିଲେ ଧାରଣା ସ୍ପଷ୍ଟ ହୁଏ । ଆର୍ଥିକ ଅସୁବିଧା ହେତୁ କେତେକ ବିଦ୍ୟାଳୟରେ ଆବଶ୍ୟକ ବିଜ୍ଞାନ ଉପକରଣ ନାହିଁ ବା ଯେଉଁ କେତେକ ବିଦ୍ୟାଳୟରେ ଯଥେଷ୍ଟ ଉପକରଣ ଅଛି ସେଠାରେ ସମ୍ପୃକ୍ତ ଶିକ୍ଷକଙ୍କର ଶିଥିଳତା ହେତୁ ସେଗୁଡ଼ିକର ସଦୁପଯୋଗ ହେଉନାହିଁ । ଏହି ଉଭୟ ଦିଗ ସମ୍ବନ୍ଧରେ ସତର୍କ ହେବା ବାଞ୍ଛନୀୟ । ସମସ୍ତ ସମୟରେ ବିଜ୍ଞାନ ଶିକ୍ଷକଙ୍କର ଦୂରଦୃଷ୍ଟି ଅଭାବରୁ ଏପରି ଅନେକ ଉପକରଣ ଖରିଦ କରାଯାଇଥାଏ ଯାହାର ବିଦ୍ୟାଳୟ ସ୍ତରରେ କୌଣସି ଉପଯୋଗିତା ନ ଥାଏ । ସୁଖର କଥା ବିଭିନ୍ନ ପ୍ରଦେଶରେ ପ୍ରଚଳିତ ପାଠ୍ୟକ୍ରମ ଅନୁଯାୟୀ ସଂକ୍ରାନ୍ତ ଆବଶ୍ୟକ ବିଜ୍ଞାନ ଉପକରଣର ତାଲିକା ପ୍ରସ୍ତୁତ ହୋଇଅଛି । ତେଣୁ ଅନୁପଯୋଗୀ ଉପକରଣ ଖରିଦ କରିବାର ସମ୍ଭାବନା ଅନେକାଂଶରେ କମିଯାଇଅଛି । ଏବେ ଦେଶରେ ଶସ୍ତାରେ ବିଜ୍ଞାନ ଉପକରଣ ତିଆରି କରି ବିଦ୍ୟାଳୟଗୁଡ଼ିକୁ ଯୋଗାଇ ଦେବାର ଚେଷ୍ଟା ଚାଲିଅଛି । ଆଶା କରାଯାଏ ମାତ୍ର କେତେ ବର୍ଷ ମଧ୍ୟରେ ସମସ୍ତ ବିଦ୍ୟାଳୟ ସଂକ୍ରାନ୍ତ ଉପକରଣର ଅଧିକାରୀ ହେବେ ।

ଆମ ଦେଶରେ, ବିଶେଷତଃ ଆମ ପ୍ରଦେଶରେ ସାଧାରଣ ବିଜ୍ଞାନ ପଢ଼ାହେଉଥିବାରୁ ଏବଂ ବିଦ୍ୟାଳୟଗୁଡ଼ିକରେ (ଯେଉଁଠାରେ ଅଛି) ମାତ୍ର ଗୋଟିଏ ବିଜ୍ଞାନାଗାର ରହୁଥିବାରୁ ଜଣେ ଶିକ୍ଷକ ପଦାର୍ଥ ବିଜ୍ଞାନ, ରସାୟନ ବିଦ୍ୟା, ଉଦ୍ଭିଦ ବିଜ୍ଞାନ, ପ୍ରାଣୀ ବିଜ୍ଞାନ ଇତ୍ୟାଦି ବିଭାଗର ଉପକରଣଗୁଡ଼ିକର ଦାୟିତ୍ୱରେ ଥାଆନ୍ତି । ଯେତେଦୂର ସମ୍ଭବ ଏ ସବୁ ଉପକରଣ ପୃଥକ୍ ଭାବରେ ବିଜ୍ଞାନାଗାରରେ ସୁରକ୍ଷିତ ହୋଇ ରହିବା ଆବଶ୍ୟକ ।

ବିଜ୍ଞାନ ଉପକରଣର ଯୋଗାଣ ଓ ବ୍ୟବହାର ବ୍ୟତୀତ ସେ ସବୁର ରକ୍ଷଣାବେକ୍ଷଣ ମଧ୍ୟ ଆଉ ଗୋଟିଏ କଥା । ଉପଯୁକ୍ତ ଭାବରେ ଯନ୍ତ୍ରପାତିଗୁଡ଼ିକ ରଖି ନ ପାରିଲେ ବହୁ

ମୂଲ୍ୟବାନ ଯନ୍ତ୍ରପାତି ଅଳ୍ପଦିନରେ ଅକାମୀ ହୋଇଯିବ । କିପରି ଯନ୍ତ୍ରପାତି ସୁରକ୍ଷିତ ହେବ ତାହା ଏଠାରେ ଆଲୋଚନା କରିବା ସମ୍ଭବ ନୁହେଁ, ତେବେ ଉପକରଣ-ଗୁଡ଼ିକର ରକ୍ଷଣାବେକ୍ଷଣ ଉପକରଣର ଯୋଗାଣ ପରି ଏକ ଅତ୍ୟାବଶ୍ୟକ ବିଷୟ ଏବଂ ଏଥିପାଇଁ ସତର୍କ ଦୃଷ୍ଟି ଦିଆଯିବା ବିଧେୟ ।

## ଭୂଗୋଳ ଉପକରଣ

ଆମ ପ୍ରଦେଶରେ ଓ ଅନ୍ୟାନ୍ୟ କେତେକ ପ୍ରଦେଶରେ ଭୂଗୋଳ ବିଦ୍ୟାଳୟ ସ୍ତରରେ ବାଧ୍ୟତାମୂଳକ ବିଷୟ ରୂପେ ଶିକ୍ଷା ଦିଆଯାଏ; ନଚେତ୍ ଅନେକ ଭୌଗୋଳିକ ତଥ୍ୟ ସାମାଜିକ ଶିକ୍ଷାର ଏକ ଅଂଶରୂପେ ଶିକ୍ଷା ଦିଆଯାଏ; ଭୂଗୋଳ ଶିକ୍ଷାପାଇଁ ମାନଚିତ୍ର, ଗ୍ଲୋବ ମଡେଲ ପ୍ରଭୃତି ଏକାନ୍ତ ଆବଶ୍ୟକ । ମାନଚିତ୍ର ବିନା ଗ୍ରହମାନଙ୍କ ବିଭିନ୍ନ ଦେଶର ସ୍ଥିତି, ନଦନଦୀ, ପାହାଡ଼ ପର୍ବତ, ସମୁଦ୍ର ଓ ସ୍ଥଳଭାଗ, ଜଳବାୟୁ, ବୃଷ୍ଟିପାତ ଇତ୍ୟାଦି ସମ୍ବନ୍ଧରେ ସ୍ପଷ୍ଟ ଧାରଣା ଦେବା ଆଦୌ ସମ୍ଭବପର ନୁହେଁ । ତେଣୁ ଏକ ସର୍ବନିମ୍ନ ଆବଶ୍ୟକତା ରୂପେ ବିଦ୍ୟାଳୟରେ ଭୂଗୋଳ ଉପକରଣଗୁଡ଼ିକ ଅଗ୍ରାଧିକାର ଭିତ୍ତିରେ ଖରିଦ କରାଯିବା ବାଞ୍ଛନୀୟ ।

## ଗଣିତ ଶିକ୍ଷାପାଇଁ ଉପକରଣ ଓ ଗଣିତ ପରୀକ୍ଷାଗାର

ଆମ ଦେଶର ବିଦ୍ୟାଳୟଗୁଡ଼ିକରେ ଗଣିତ ଶିକ୍ଷା ପାଇଁ ବିଶେଷତଃ ଜ୍ୟାମିତି ଶିକ୍ଷାପାଇଁ ସ୍କେଲ, ପ୍ରୋଟ୍ରାକ୍ଟର, ସେଟ୍‌ସ୍କୋୟାର ପ୍ରଭୃତି ୩।୪ ଗୋଟି ଜିନିଷ ବ୍ୟତୀତ ଆଉ କିଛି ନ ଥାଏ । ତାହା ପୁଣି ସାଧାରଣତଃ ଉଚ୍ଚଶ୍ରେଣୀରେ ପଢ଼ାଉଥିବା ଶିକ୍ଷକ ଆଦୌ ବ୍ୟବହାର କରନ୍ତି ନାହିଁ । ଯଦି ଶିକ୍ଷକ କଳାପଟାରେ ଚିତ୍ରାଙ୍କନ କରିବାରେ ଏପରି ସିଦ୍ଧହସ୍ତ ଯେ ସେ ଯେକୌଣସି ଜ୍ୟାମିତିକ ଚିତ୍ର ବିନା ଉପକରଣରେ ଟାଣି ବିଭିନ୍ନ ଅଂଶର ଅନୁପାତ ଠିକଭାବରେ ନିର୍ଣ୍ଣୟ କରିପାରିବେ ତେବେ ସେ ଏହି ଉପକରଣ ଶ୍ରେଣୀକୁ ନ ନେଇ ପଢ଼ାଇବାକୁ ଯାଇପାରନ୍ତି; ମାତ୍ର ଅଧିକାଂଶ ଶିକ୍ଷକ ଏହି ଯୋଗ୍ୟତାର ଅଧିକାରୀ ନୁହଁନ୍ତି । ତେଣୁ ବିଦ୍ୟାଳୟରେ ଗଣିତ ଶିକ୍ଷାଦାନ ପାଇଁ ଥିବା ଉପକରଣଗୁଡ଼ିକର ଉପଯୋଗ ହେବା ବାଞ୍ଛନୀୟ ।

ଏଠାରେ ଆଉ ଗୋଟିଏ ବିଷୟ ବିଚାର କରିବାର କଥା । ଆଜିକାଲି ଉନ୍ନତ ଦେଶଗୁଡ଼ିକରେ ଏବଂ ଆମ ଦେଶର କେତେକାଂଶରେ ଗଣିତ ପରୀକ୍ଷାଗାର ପାଇଁ ଦାବୀ ହେଉଅଛି । ଠିକ ପଦାର୍ଥ ବିଜ୍ଞାନର ପଦାର୍ଥ ବିଜ୍ଞାନାଗାର ସହ ଯେଉଁ ସମ୍ପର୍କ, ଗଣିତର ଗଣିତ ପରୀକ୍ଷାଗାର ସହ ସେହି ସମ୍ପର୍କ । ଏ ସମ୍ବନ୍ଧରେ ଆଜିକାଲି ଶିକ୍ଷକମାନଙ୍କ ପାଇଁ

ନିର୍ଦ୍ଦିଷ୍ଟ ପତ୍ରପତ୍ରିକାରେ ବହୁ ଦାମୀ ଉନ୍ନଆପନ କରାଯାଉଅଛି । ଛାତ୍ରମାନେ ଗଣିତା-ଗାରରେ ଗଣିତ ସମ୍ବନ୍ଧୀୟ ବିଭିନ୍ନ ଯନ୍ତ୍ରପାତିର ବ୍ୟବହାର ସମ୍ବନ୍ଧରେ ଅଭ୍ୟସ୍ତ ହେବା ସଙ୍ଗେ ସଙ୍ଗେ ଗାଣିତିକ ମୂଳତତ୍ତ୍ୱଗୁଡ଼ିକ ନିଜେ ବିଭିନ୍ନ ଚିତ୍ର ମଡ଼େଲ ଆଦି ତିଆରି କରି ଭଲ ଭାବରେ ହୃଦୟଙ୍ଗମ କରିପାରିବେ । ଶ୍ରେଣୀରେ କେବଳ ଶିକ୍ଷକଙ୍କଠାରୁ ଶୁଣିବା ଅପେକ୍ଷା ଗାଣିତିକ ସୂତ୍ରଗୁଡ଼ିକର ପ୍ରୟୋଗାତ୍ମକ କାର୍ଯ୍ୟ ସେମାନଙ୍କ ମନରେ ସ୍ଥାୟୀ ରେଖାପାତ କରିପାରିବ ।

## ଶାରୀରିକ ଶିକ୍ଷାପାଇଁ ଉପକରଣ

ଶାରୀରିକ ଶିକ୍ଷା ସମ୍ବନ୍ଧରେ ପରେ ଆଲୋଚନା କରାଯାଇଅଛି । ଛାତ୍ରର ବୌଦ୍ଧିକ ବିକାଶ ସଙ୍ଗେ ସଙ୍ଗେ ଶାରୀରିକ ଦକ୍ଷତାର ବିକାଶ ପାଇଁ ବିଦ୍ୟାଳୟର ମଧ୍ୟ ଦାୟିତ୍ୱ ରହିଅଛି । ଆଜକାଲି ଶାରୀରିକ ଶିକ୍ଷା ସହ ପାଠ୍ୟକ୍ରମ କାର୍ଯ୍ୟାବଳୀ (Co-curricular activities)ର ଅନ୍ତର୍ଭୁକ୍ତ । ବିଦ୍ୟାଳୟର ପାଠ୍ୟ ନିର୍ଘଣ୍ଟରେ ମଧ୍ୟ ଏଥିପାଇଁ ନିର୍ଦ୍ଦିଷ୍ଟ ପିରିଅଡ ରହିଅଛି । ତେଣୁ ଏହି କାର୍ଯ୍ୟକ୍ରମର ସଫଳତା ଲାଗି ବିଦ୍ୟାର୍ଥୀମାନଙ୍କୁ ବିଭିନ୍ନ ଦଳଭୁକ୍ତ କରି ଶିକ୍ଷା ଦେବାପାଇଁ ବିଭିନ୍ନ ଖେଳୋପକରଣ ମଧ୍ୟ ଆବଶ୍ୟକ । ବିସ୍ତୃତ ଖେଳ ପଡ଼ିଆର ବ୍ୟବସ୍ଥା କରିବା ସଙ୍ଗେ ସଙ୍ଗେ ଫୁଟବଲ, ଭଲିବଲ, ହକି, ବ୍ୟାଡମିଣ୍ଟନ ଆଦି ଖେଳପାଇଁ ଛାତ୍ରମାନଙ୍କୁ ଯଥେଷ୍ଟ ଉପକରଣ ମଧ୍ୟ ଯୋଗାଇ ଦେବାକୁ ପଡ଼ିବ । ଏଥି ସଙ୍ଗେ ସଙ୍ଗେ ବ୍ୟାୟାମ ଶିକ୍ଷକ ସୁସଙ୍ଗଠିତ ଭାବରେ ଏହି କାର୍ଯ୍ୟକ୍ରମ ଫଳପ୍ରଦ କରିପାରିବେ ।

## ଗୃହ ବିଜ୍ଞାନ ଉପକରଣ

ବାଳିକା ବିଦ୍ୟାଳୟଗୁଡ଼ିକରେ ଅନେକ ଛାତ୍ରୀ ଗୃହ ବିଜ୍ଞାନ ଅଧ୍ୟୟନ କରିଥାଆନ୍ତି । ଗୃହ ବିଜ୍ଞାନ ପାଇଁ ଗୋଟିଏ ସ୍ୱତନ୍ତ୍ର ଗୃହର ବ୍ୟବସ୍ଥା କରିବା ସଙ୍ଗେ ସଙ୍ଗେ ସେଠାରେ ସିଲାଇ କାମ, ଲୁଗା ସଫା, ପ୍ରାଥମିକ ଚିକିତ୍ସା, ରୋଷେଇ କାମ ଆଦି ଶିକ୍ଷା କରିବା ପାଇଁ ଆବଶ୍ୟକ ଉପକରଣ ବ୍ୟବସ୍ଥା କରାଯିବା ଉଚିତ । ଗୃହ ବିଜ୍ଞାନ ବିଷୟଟିର ଶିକ୍ଷାଦାନ ପାଇଁ ସିଲାଇ କଳ, କପଡ଼ା, ସାବୁନ, ନୀଳ, ଇସ୍ତ୍ରୀ, ବେଞ୍ଜିନ, ଆଇଓଡିନ, ଚୂନ ପ୍ରଭୃତି ଅନେକ ସାଧାରଣ ଜିନିଷ ଦରକାର ହେଉଥିଲେହେଁ ତାହା ମଧ୍ୟ ଅନେକ ବିଦ୍ୟାଳୟରେ ଆବଶ୍ୟକ ଅନୁସାରେ ନ ଥାଏ ।

## ଅନ୍ୟାନ୍ୟ ଉପକରଣ

ଶରୀରବିଜ୍ଞାନ ଓ ସ୍ୱାସ୍ଥ୍ୟରକ୍ଷା ପ୍ରାୟ ସମସ୍ତ ମାଧ୍ୟମିକ ବିଦ୍ୟାଳୟରେ ଗୋଟିଏ ଇଚ୍ଛାଧୀନ ଅତିରିକ୍ତ ବିଷୟରୂପେ ରହିଅଛି । ଅନେକ ଛାତ୍ର ଏହି ଅତିରିକ୍ତ ବିଷୟ ନେଇ

ମାଧ୍ୟମିକ ପରୀକ୍ଷା ଦିଅନ୍ତି । ଏଥିପାଇଁ କେତେଗୁଡ଼ିଏ ଚାର୍ଟ ଗୋଟିଏ ନରକଙ୍କାଳ ଓ ଆଖି, କାନ ଇତ୍ୟାଦିର ମଡ଼େଲମାନ ଦରକାର । ତଥାପି ବହୁ ବିଦ୍ୟାଳୟ ଏତିକ ମାତ୍ର ଉପକରଣ ନ କିଣି ଏହି ବିଷୟ ଶିକ୍ଷାଦାନ ପାଇଁ ନ୍ୟୂନତମ ଆବଶ୍ୟକତା ପୂରଣ କରନ୍ତି ନାହିଁ । ପୁଣି ଏହି ଉପକରଣଗୁଡ଼ିକ ସାଧାରଣ ବିଜ୍ଞାନର ଶାରୀରିକଶିକ୍ଷା ଓ ସ୍ୱାସ୍ଥ୍ୟରକ୍ଷା ବିଷୟ ପଢାଇବା ପାଇଁ ଆବଶ୍ୟକ । ତେଣୁ ବିଜ୍ଞାନ ଉପକରଣ ହିସାବରେ ହେଉ ବା ଏହି ବିଷୟରେ ପଢ଼ାଇବା ପାଇଁ ସ୍ୱତନ୍ତ୍ର ବ୍ୟବସ୍ଥାରୂପେ ହେଉ—ଉପରୋକ୍ତ ପଦାର୍ଥଗୁଡ଼ିକ ଅତ୍ୟାବଶ୍ୟକ ।

ବିଦ୍ୟାଳୟରେ ବାଣିଜ୍ୟ ଏକ ଅତିରିକ୍ତ ବିଷୟରୂପେ ଥିଲେ ସେଠାରେ ଆବଶ୍ୟକ ସଂଖ୍ୟକ ଟାଇପ୍ ଯନ୍ତ୍ର, ସଙ୍ଗୀତ ଏକ ଅତିରିକ୍ତ ବିଷୟ ହୋଇଥିଲେ ଦରକାରୀ ବାଦ୍ୟଯନ୍ତ୍ର ଏବଂ ଏହି ବିଷୟଗୁଡ଼ିକ ପଢ଼ାହେବା ପାଇଁ ସ୍ୱତନ୍ତ୍ର ଗୃହ ଆବଶ୍ୟକ ।

କାରିଗରି ବିଦ୍ୟା (Craft) ଏପର୍ଯ୍ୟନ୍ତ ପରୀକ୍ଷା ହେଉଥିବା ବିଷୟଗୁଡ଼ିକରେ ଅନ୍ତର୍ଭୁକ୍ତ ନ ହେଲେ ମଧ୍ୟ ଅଧିକାଂଶ ବିଦ୍ୟାଳୟରେ କୌଣସି ନା କୌଣସି କାରିଗରି ଶିକ୍ଷା ଦିଆଯିବାର ବ୍ୟବସ୍ଥା କରାଯାଇଅଛି । ସିଲାଇ କାମ, କାଠ କାମ, ବୟନ, ଚମଡ଼ା କାମ, ବେତ କାମ—ଯେ କୌଣସି ବିଷୟ ହେଉନା କାହିଁକି ଥରକେ ଅନ୍ତତଃ ୩୦।୪୦ ଜଣ ପିଲା କାର୍ଯ୍ୟ କରିବା ପାଇଁ ଆବଶ୍ୟକ ଉପକରଣ ଥିବା ବାଞ୍ଛନୀୟ । ଏହି ଯନ୍ତ୍ରପାତି-ଗୁଡ଼ିକ ମଧ୍ୟ ସ୍ୱତନ୍ତ୍ର ପ୍ରକୋଷ୍ଠ ବା କର୍ମଶାଳାରେ ରଖାଯାଇ ଶିକ୍ଷାଦାନର ବ୍ୟବସ୍ଥା କରାଯିବା ଉଚିତ ।

ଛାତ୍ରଛାତ୍ରୀମାନେ ଇଂରାଜୀ ଅଧ୍ୟୟନ କଲାବେଳେ ସେମାନେ କେବଳ ଶବ୍ଦାର୍ଥ ବୁଝିବା ଯଥେଷ୍ଟ ନୁହେଁ । ଉପଯୁକ୍ତ ଭାବରେ ଶବ୍ଦଗୁଡ଼ିକ ଉଚ୍ଚାରଣକରି ଶିଖିବା ପାଇଁ ଧ୍ୱନିତତ୍ତ୍ୱ ବା ସ୍ୱରବିଜ୍ଞାନ ସମ୍ବନ୍ଧୀୟ ରେକର୍ଡ ଦ୍ୱାରା ଶିକ୍ଷାଦାନ ବ୍ୟବସ୍ଥା କରାଯାଇପାରେ । ଏଥିପାଇଁ ବିଦ୍ୟାଳୟରେ ଫନୋଗ୍ରାଫ୍ ଓ ଆବଶ୍ୟକ ସଂଖ୍ୟକ ରେକର୍ଡ ରଖାଯାଇ ଇଂରାଜୀ ଶିକ୍ଷାଦାନ ଅଧିକ ସରସ ଓ ଜୀବନ୍ତ କରାଯାଇପାରେ ।

ନିର୍ଦ୍ଦିଷ୍ଟ ବିଷୟଗୁଡ଼ିକର ଶିକ୍ଷା ପାଇଁ ଦରକାର ହେଉଥିବା ଉପକରଣ ବ୍ୟତୀତ କଳାପଟା ଚକ୍ ପ୍ରଭୃତି ଅତି ସାଧାରଣ ଉପକରଣଗୁଡ଼ିକର ଅତ୍ୟାବଶ୍ୟକତା ଭୁଲିଯିବା ଉଚିତ ନୁହେଁ । ପ୍ରତ୍ୟେକ ଶିକ୍ଷାଦାନ ପାଇଁ ଶିକ୍ଷକଙ୍କୁ କିଛି ନା କିଛି କଳାପଟାରେ ଲେଖିବା ଆବଶ୍ୟକ ହୁଏ । ଆଜିକାଲି ପ୍ରାୟ ସମସ୍ତ ବିଦ୍ୟାଳୟରେ କାନ୍ଥ କଳାପଟା (Wall black-board) ଖଞ୍ଜାଯାଇଅଛି । ବିଭିନ୍ନ ଦିଗରୁ ଆସୁଥିବା ଆଲୋକର ପ୍ରଭାବରୁ ଏହି ପ୍ରକାର କଳାପଟାର କିଛି ନା କିଛି ଅଂଶ କେତେକ ଛାତ୍ରମାନଙ୍କ ପକ୍ଷରେ ସ୍ପଷ୍ଟ ଦେଖିବା କଷ୍ଟକର ହୁଏ । ଶିକ୍ଷକମାନେ ଏହି ପ୍ରକାର କଳାପଟାର ନିମ୍ନାଂଶରେ ସହଜରେ ଲେଖି

ପାରନ୍ତି ନାହିଁ । ତେଣୁ କେତେକ ସ୍ଥଳରେ ଷ୍ଟାଣ୍ଡରେ ରଖାଯାଇଥିବା କଳାପଟା ବା ଉପରୁ ତଳ ହୋଇପାରୁଥିବା କଳାପଟା ଅଧିକ ଉପଯୋଗୀ ମନେହୁଏ ।

## ଶିକ୍ଷକ ନିଯୁକ୍ତି

ପ୍ରଚଳିତ ଶିକ୍ଷାପଦ୍ଧତି ଯୁଗୋପଯୋଗୀ ନୁହେଁ—ଏହାର ଆମୂଳଚୂଳ ପରିବର୍ତ୍ତନ ଓ ସଂସ୍କାର ଆବଶ୍ୟକ ବୋଲି ଆଜି ଛାତ୍ର, ଅଭିଭାବକ, ଶିକ୍ଷାବିତ୍, ରାଜନୀତିଜ୍ଞ ସମସ୍ତେ ସ୍ୱର ଉତ୍ତୋଳନ କରୁଅଛନ୍ତି । ମାତ୍ର ଶିକ୍ଷାକ୍ଷେତ୍ରରେ କୌଣସି ପରିବର୍ତ୍ତନ ବା ସଂସ୍କାର ସମ୍ଭବପର ନୁହେଁ ଯଦି ବିଦ୍ୟାଳୟଗୁଡ଼ିକରେ ଉପଯୁକ୍ତ ଓ ଆବଶ୍ୟକ ସଂଖ୍ୟକ ଶିକ୍ଷକ ନିଯୁକ୍ତ ନ ହୁଅନ୍ତି । ବିଦ୍ୟାଳୟର ସୁନାମ ଓ ପାରିପାର୍ଶ୍ୱିକ ସମାଜ ଉପରେ ଏହାର ପ୍ରଭାବ ଶିକ୍ଷକମାନଙ୍କ ଉପରେ ମୁଖ୍ୟତଃ ନିର୍ଭର କରେ । ସେମାନଙ୍କର ବ୍ୟକ୍ତିଗତ ଗୁଣ, ଶିକ୍ଷାଗତ ଯୋଗ୍ୟତା ଓ ବୃତ୍ତିଗତ ତାଲିମ ବିଦ୍ୟାଳୟର କାର୍ଯ୍ୟକ୍ରମକୁ ପ୍ରଭାବିତ କରେ । ତେଣୁ କେବଳ ଶିକ୍ଷକ ନିର୍ବାଚନ ନୁହେଁ ଉପଯୁକ୍ତ ଶିକ୍ଷକ ନିର୍ବାଚନ ଓ ନିଯୁକ୍ତି ପାଇଁ ବିଶେଷ ଦୃଷ୍ଟି ଦିଆଯିବା ଉଚିତ—ତା' ନ ହେଲେ ଶିକ୍ଷା କ୍ଷେତ୍ରରେ ସଂସ୍କାର ତ ଦୂରର କଥା, ନିୟମିତ ଶିକ୍ଷାଦାନ ମଧ୍ୟ ଫଳପ୍ରଦ ହୋଇପାରିବ ନାହିଁ ।

ଆମ ଦେଶରେ ଶିକ୍ଷକ ନିଯୁକ୍ତି ପଦ୍ଧତି ଭିନ୍ନ ଭିନ୍ନ ପ୍ରଦେଶରେ ଭିନ୍ନ ଭିନ୍ନ । ସରକାର ତାଙ୍କ ଅଧୀନସ୍ଥ ବିଦ୍ୟାଳୟଗୁଡ଼ିକ ପାଇଁ ଶିକ୍ଷକ ମନୋନୟନ କରନ୍ତି । କେଉଁଠାରେ ଏହା ଶିକ୍ଷା ପରିଦର୍ଶକଙ୍କଦ୍ୱାରା, କେଉଁଠାରେ ବା ଶିକ୍ଷା ନିର୍ଦ୍ଦେଶକଙ୍କ ଦ୍ୱାରା ବା କେଉଁଠାରେ ପବ୍ଲିକ୍ ସର୍ଭିସ କମିଶନଙ୍କ ଦ୍ୱାରା ହୋଇଥାଏ । ବେସରକାରୀ ଶିକ୍ଷାନୁଷ୍ଠାନଗୁଡ଼ିକ ପାଇଁ ପରିଚାଳନା କମିଟି ଶିକ୍ଷକ ମନୋନୟନ କରିଥାଆନ୍ତି ।

୧୯୫୨-୫୩ ମସିହାରେ ମାଧ୍ୟମିକ ଶିକ୍ଷା କମିଶନ ଲେଖିଥିଲେ, "ଅନେକ ବିଦ୍ୟାଳୟରେ ବହୁ ସଂଖ୍ୟକ ତାଲିମପ୍ରାପ୍ତ ହୋଇ ନ ଥିବା ଶିକ୍ଷକ ଏବେ ଅଛନ୍ତି ଏବଂ ଏ ପ୍ରକାର ଶିକ୍ଷକମାନଙ୍କ ଦ୍ୱାରା ଛାତ୍ରମାନଙ୍କୁ ଶିକ୍ଷା ଦେବା ଯେ ଅନୁଚିତ ଏକଥା ପରିଚାଳନା ସଂସ୍ଥା ବୁଝିପାରିବା ପରି ଜଣାଯାଉ ନାହିଁ । କେତେକ ପରିଚାଳନା ସଂସ୍ଥା ଅଣତାଲିମ ଶିକ୍ଷକ-ମାନଙ୍କୁ କିଛିଦିନ ପାଇଁ କାମରେ ଲଗାଇ ତା ପରେ ବାହାର କରିଦିଅନ୍ତି ଏବଂ ଏହିପରି ଭାବରେ ଅଣତାଲିମ ଶିକ୍ଷକ ନିଯୁକ୍ତି ପାଇଁ ରହିଥିବା ବିଭାଗୀୟ ନିୟମ ଫାଙ୍କି ଦିଅନ୍ତି ।" କୋଡ଼ିଏ ବର୍ଷ ପରେ ଏବେ ମଧ୍ୟ ଠିକ୍ ସେହି ପନ୍ଥା ବହୁ ପରିଚାଳନା ସଂସ୍ଥା ଦ୍ୱାରା ଅନୁସୃତ ହେଉଅଛି । ତେଣୁ ଏହି ମନୋବୃତ୍ତିରେ ଶିକ୍ଷକ ନିଯୁକ୍ତ ହେଲେ ଅଧିକାଂଶ ଶିକ୍ଷାନୁଷ୍ଠାନ ଉପଯୁକ୍ତ ଶିକ୍ଷକ ପାଇପାରିବେ ନାହିଁ । ଏଥିପାଇଁ ପ୍ରଥମେ ସରକାରୀ ଓ ବେସରକାରୀ ବିଦ୍ୟାଳୟଗୁଡ଼ିକରେ ପ୍ରାୟ ଏକ ପ୍ରକାର ଶିକ୍ଷକ ନିଯୁକ୍ତି ପଦ୍ଧତି ଅନୁସୃତ ହେବା ଦରକାର ।

ପ୍ରତ୍ୟେକ ପରିଚାଳନା ସଂସ୍ଥାରେ ପ୍ରଧାନ ଶିକ୍ଷକ ସଭ୍ୟ ଥାଇ ଏକ କ୍ଷୁଦ୍ର ନିଯୁକ୍ତି କମିଟି ରହିବା ଦରକାର ଏବଂ ପ୍ରତ୍ୟେକ ପରିଚାଳନା ବୋର୍ଡରେ ଜଣେ ଜଣେ ଶିକ୍ଷା ବିଭାଗ ପ୍ରତିନିଧି ରହିବା ଉଚିତ । ତାହାହେଲେ ଶିକ୍ଷକମାନଙ୍କ ପ୍ରତି କରାଯାଉଥିବା ଅନ୍ୟାୟ ଅନେକାଂଶରେ କମିଯିବ । ମ୍ୟୁନିସିପାଲିଟି ପ୍ରଭୃତି ସ୍ୱାୟତ୍ତଶାସନ ସଂସ୍ଥା ଦ୍ୱାରା ପରିଚାଳିତ ବିଦ୍ୟାଳୟଗୁଡ଼ିକ ପାଇଁ ନିଯୁକ୍ତି ପଦ୍ଧତି ସନ୍ତୋଷଜନକ ହେଲେ ମଧ୍ୟ ଏହାର ନିୟମାବଳୀ ପରିମାର୍ଜିତ ହେବା ଦରକାର । ଗୋଟିଏ ପ୍ରଦେଶରେ ସମସ୍ତ ଶିକ୍ଷାପରିଦର୍ଶକ ଏକ ପଦ୍ଧତିରେ ଶିକ୍ଷକ ନିଯୁକ୍ତି କରିବା ଉଚିତ ବା ଶିକ୍ଷା ନିର୍ଦ୍ଦେଶକ ଏକ କମିଟିଦ୍ୱାରା ଶିକ୍ଷକ ମନୋନୟନ କରିବା ଉଚିତ । ଆଜିକାଲି ବହୁ ତାଲିମପ୍ରାପ୍ତ ଶିକ୍ଷକ ବେକାରରହୁଥିବା ସ୍ଥଳେ ଅନ୍ତତଃ ସରକାରୀ କ୍ଷେତ୍ରରେ କୌଣସି ଅଣତାଲିମ ଶିକ୍ଷକ ନିଯୁକ୍ତି କରିବା ଆଦୌ ଯୁକ୍ତିଯୁକ୍ତ ନୁହେଁ । ଶିକ୍ଷା ବିଭାଗରେ ଅଣଶିକ୍ଷକ କେରାଣୀ ଓ ଅଣତାଲିମ କର୍ମକର୍ତ୍ତାମାନେ ଶିକ୍ଷାଗତ ତାଲିମର ଗୁରୁତ୍ୱ ସମୟେ ସମୟେ ଉପଲବ୍ଧି କରିପାରନ୍ତି ନାହିଁ; ତେଣୁ ସେମାନଙ୍କ ଦ୍ୱାରା ପ୍ରସ୍ତୁତ କେତେକ ଅବାଞ୍ଛିତ ନିଯୁକ୍ତି ସର୍ତ୍ତ, ହେତୁ ତାଲିମ୍ ପ୍ରାପ୍ତ ଶିକ୍ଷକଙ୍କ ସ୍ଥାନରେ ଅଣତାଲିମ ଶିକ୍ଷକ ନିଯୁକ୍ତ ହୋଇଯାଆନ୍ତି ।

ଯେ ଯେପରି ପ୍ରଣାଳୀରେ ଶିକ୍ଷକ ନିଯୁକ୍ତି କରନ୍ତୁ ନା କାହିଁକି ଯେଉଁ ବିଦ୍ୟାଳୟ ପାଇଁ ଶିକ୍ଷକ ନିଯୁକ୍ତ ହେବେ ତାହାର ପ୍ରଧାନ ଶିକ୍ଷକଙ୍କ ମତାମତ ନେବା ଏକାନ୍ତ ଆବଶ୍ୟକ ଏବଂ ଅତ୍ୟନ୍ତ ଅସୁବିଧା ନ ଥିଲେ ତାଙ୍କ ପରାମର୍ଶ ଅନୁସାରେ ମନୋନୟନ ହେବା ଦରକାର । ବିଦ୍ୟାଳୟରେ କେଉଁ ବିଷୟ ପଢ଼ାଇବା ପାଇଁ ସ୍ଥାନ ଖାଲିଅଛି, ସେଥିପାଇଁ ଶିକ୍ଷକଙ୍କର କି କି ବିଶେଷ ଜ୍ଞାନ ବା ଅଭିଜ୍ଞତା ଥିବା ଦରକାର ଏକଥା କେବଳ ପ୍ରଧାନ ଶିକ୍ଷକ ଜାଣନ୍ତି । କାହାକୁ ମନୋନୟନ କରାଯିବ ତାହା କମିଟି ସ୍ଥିର କରିପାରନ୍ତି, କିନ୍ତୁ ଯୋଗ୍ୟତା, ଅଭିଜ୍ଞତା ଆଦି ଦୃଷ୍ଟିରୁ ପ୍ରଧାନ ଶିକ୍ଷକଙ୍କର ନିଶ୍ଚୟ ମତାମତ ଦେବାର ଅଧିକାର ଅଛି । ସରକାରୀ ବିଦ୍ୟାଳୟଗୁଡ଼ିକ ପାଇଁ ଶିକ୍ଷକ ମନୋନୟନ ଶିକ୍ଷାପରିଦର୍ଶକ କରନ୍ତୁ ବା ଶିକ୍ଷା ନିର୍ଦ୍ଦେଶକ କରନ୍ତୁ, ସ୍ଥାନ ଖାଲିଥିବା ବିଦ୍ୟାଳୟଗୁଡ଼ିକର ପ୍ରଧାନ ଶିକ୍ଷକ କି ପ୍ରକାର ଶିକ୍ଷକ ଆବଶ୍ୟକ କରନ୍ତି ତାହାର ଏକ ପୁଙ୍ଖାନୁପୁଙ୍ଖ ବିବରଣୀ ସଂଗ୍ରହ କରି ତଦନୁସାରୀ କାର୍ଯ୍ୟକରିବା ଉଚିତ । ଆବଶ୍ୟକ ହେଲେ ମନୋନୟନ କମିଟିରେ ଜଣେ ଦୁଇଜଣ ପ୍ରଧାନ ଶିକ୍ଷକ ଅନ୍ତର୍ଭୁକ୍ତ ହେବା ବାଞ୍ଛନୀୟ । ସରକାରୀ ବିଦ୍ୟାଳୟ ପାଇଁ ମନୋନୟନ ପଦ୍ଧତିରେ ଏହି ନୀତି ସାଧାରଣତଃ ଅନୁସୃତ ହେଉ ନ ଥିବାରୁ ଆମ୍ଭେମାନେ ସମୟେ ସମୟେ ଗୋଟିଏ ସରକାରୀ ବିଦ୍ୟାଳୟରେ ପାଞ୍ଚଜଣ ବିଜ୍ଞାନ ଶିକ୍ଷକ ଥିବାବେଳେ ଅନ୍ୟ ବିଦ୍ୟାଳୟରେ ଜଣେ ମାତ୍ର ଥିବାର ଦେଖୁ । ପରେ ଅବଶ୍ୟ ଶିକ୍ଷକ ପରିବର୍ତ୍ତନ କରି ଏହି ତ୍ରୁଟି ସଂଶୋଧନ କରାଯାଏ, ମାତ୍ର ଅଯଥା ଚିଠିପତ୍ର ଆଦାନ ପ୍ରଦାନରେ ସେତେବେଳକୁ ଛଅମାସ ଅତିବାହିତ ହୋଇ ଯାଇଥାଏ । ସମୟେ

ସମସ୍ତେ ଶିକ୍ଷା ପରିଦର୍ଶକ ଶିକ୍ଷକ ନିଯୁକ୍ତ କରି ତାଙ୍କୁ ଗୋଟିଏ ବିଦ୍ୟାଳୟକୁ ପଠାଇବା ସମୟରେ ନିଜ ଦପ୍ତରରେ ଥିବା ଶିକ୍ଷକ ତାଲିକା ସଙ୍ଗେ ମିଳାଇ କି ପ୍ରକାର ଶିକ୍ଷକ ଦରକାର ତାହା ଦେଖି ନିଅନ୍ତି ନାହିଁ । ଫଳରେ ପ୍ରଧାନ ଶିକ୍ଷକ ଭୂଗୋଳ ଶିକ୍ଷକ ଦରକାର କରୁଥିବାବେଳେ ନବାଗତ ଇତିହାସ ଶିକ୍ଷକଙ୍କୁ ପ୍ରଥମେ ଗ୍ରହଣକରି ତା'ପରେ ଲେଖାଲେଖି କରନ୍ତି । ବିଦ୍ୟାଳୟର ପାଠପଢ଼ା ଅସୁବିଧାରେ ଏଥିପାଇଁ କ୍ଷତିଗ୍ରସ୍ତ ହୁଏ ଏବଂ ଉପଯୁକ୍ତ ଶିକ୍ଷକ ତାଙ୍କର ଦକ୍ଷତା ଥିବା ବିଷୟ ପଢ଼ାଇବାକୁ ସୁବିଧା ନ ପାଇ ଶିକ୍ଷାଦାନ କରିବାକୁ ବିତୃଷ୍ଣ ହୁଅନ୍ତି । ଏହି ସବୁ ସାମୂହିକ ଅସୁବିଧା ଓ ମାନସିକ ଅଶାନ୍ତି ସମ୍ବନ୍ଧରେ ନିଯୁକ୍ତିକାରୀ କର୍ମକର୍ତ୍ତାମାନେ ସଚେତନ ହେବା ଆବଶ୍ୟକ ।

## ଶିକ୍ଷକଙ୍କ ଯୋଗ୍ୟତା

ମାଧ୍ୟମିକ ଶିକ୍ଷା କମିଶନ ମନ୍ତବ୍ୟ ଦେଇଥିଲେ, "ଆମେ ବର୍ତ୍ତମାନ ଲକ୍ଷ୍ୟ କରୁଛୁ ଯେ ଅଧିକାଂଶ ବିଦ୍ୟାଳୟରେ କେବଳ ସର୍ବନିମ୍ନ ଶିକ୍ଷାଗତ ଯୋଗ୍ୟତା ପୂରଣ କରୁଥିବା ଶିକ୍ଷକ ନିଯୁକ୍ତ ହୋଇଅଛନ୍ତି । ଉଭୟ ସାଧାରଣ ଶିକ୍ଷା ଓ ତାଲିମରେ ଉଚ୍ଚତର ଯୋଗ୍ୟତା ଥିବା କେତେଜଣ ଶିକ୍ଷକ ଅନ୍ତତଃ ରହିବା ବିଶେଷ ଦରକାର ।" ଆଜି ଅନେକ ବିଦ୍ୟାଳୟରେ ଶିକ୍ଷକମାନଙ୍କର ଯୋଗ୍ୟତା ବିଶ୍ଳେଷଣ କଲେ ଦେଖାଯିବ ଯେ କମ ଯୋଗ୍ୟତା ସମ୍ପନ୍ନ ଶିକ୍ଷକ ଅନେକ କ୍ଷେତ୍ରରେ ଉଚ୍ଚତର ଯୋଗ୍ୟତା ସମ୍ପନ୍ନ ଶିକ୍ଷକଙ୍କ ସ୍ଥାନରେ ଶିକ୍ଷାଦାନ କରୁଅଛନ୍ତି । ଏହା ବିଶେଷତଃ ବେସରକାରୀ ବିଦ୍ୟାଳୟଗୁଡ଼ିକରେ ହେଉଅଛି ଯେଉଁଠାରେ ପରିଚାଳନା ସମିତି ଏହି ପଦ୍ଧତିଦ୍ୱାରା କମ୍ ବ୍ୟୟରେ କାମ ଚଳାଇ ନେଉଅଛନ୍ତି । ତେଣୁ ପ୍ରତ୍ୟେକ ବିଦ୍ୟାଳୟରେ ଅନୁମୋଦିତ ଯୋଗ୍ୟତା ସମ୍ପନ୍ନ ଆବଶ୍ୟକ ସଂଖ୍ୟକ ଶିକ୍ଷକ ରହିବା ବିଧେୟ । ପ୍ରତ୍ୟେକ ବିଦ୍ୟାଳୟରେ ଉଚ୍ଚଯୋଗ୍ୟତା ସମ୍ପନ୍ନ ଶିକ୍ଷକଙ୍କ ପାଇଁ ଅଧିକ ବେତନର ବ୍ୟବସ୍ଥା କରାଗଲେ ଶିକ୍ଷାର ଗୁଣାତ୍ମକ ଅଭିବୃଦ୍ଧି ସହଜ ହୋଇପାରିବ । ମୁଦାଲିୟର କମିଶନ ଓ କୋଠାରୀ କମିଶନ ଉଭୟ ଉଚ୍ଚ-ଯୋଗ୍ୟତା ସମ୍ପନ୍ନ ବ୍ୟକ୍ତିଙ୍କ ପାଇଁ ଅଧିକ ବେତନର ସୁପାରିଶ କରିଅଛନ୍ତି । ଅନେକ ରାଜ୍ୟରେ ସରକାରୀ ସ୍ତରରେ ମଧ୍ୟ ବିଶେଷ ଯୋଗ୍ୟତା ସମ୍ପନ୍ନ ବ୍ୟକ୍ତିଙ୍କ ପାଇଁ କୌଣସି ଆର୍ଥିକ ଆକର୍ଷଣର ବ୍ୟବସ୍ଥା କରାଯାଇ ନାହିଁ ଯଦିଓ ସମସ୍ତେ ଗୁଣାତ୍ମକ ଅଭିବୃଦ୍ଧି ପାଇଁ ଅତ୍ୟନ୍ତ ଆଗ୍ରହୀ ଭଳି ଜଣା ପଡୁଅଛନ୍ତି ।

## ଶିକ୍ଷାନବିସ କାଳ ( Probation Period )

ନବ ନିଯୁକ୍ତିପ୍ରାପ୍ତ ଶିକ୍ଷକମାନେ କେତେକାଳ ପର୍ଯ୍ୟନ୍ତ ଶିକ୍ଷାନବିସ ଭାବରେ କାର୍ଯ୍ୟ କରିବେ, ସେସମ୍ବନ୍ଧରେ ସବୁ ରାଜ୍ୟରେ ସମାନ ନୀତି ଅନୁସୃତ ହେଉନାହିଁ । ତେବେ ଯଦି

ଖାଲି ପଡ଼ିଥିବା କୌଣସି ସ୍ଥାୟୀ ସ୍ବୀକୃତିରେ ନିଯୁକ୍ତି ଦିଆଯାଏ, ସେ କ୍ଷେତ୍ରରେ ଏହି ଶିକ୍ଷାନବିଶ କାଳ ଏକ ବର୍ଷ ହେବା ଆବଶ୍ୟକ । ଏକ ବର୍ଷ ପରେ ଶିକ୍ଷକଙ୍କୁ ସ୍ଥାୟୀ କରାଯିବା ଉଚିତ । ଅବଶ୍ୟ ଶିକ୍ଷକ ଆଶାନୁରୂପ ପାରଦର୍ଶିତା ଦେଖାଇ ନ ପାରିଲେ ଏହି ଅସ୍ଥାୟୀ ସ୍ବୀକୃତି କାଳ ଆଉ ଏକବର୍ଷ ପାଇଁ ବଢ଼ାଇ ଦିଆଯାଇପାରେ । ଆଜିକାଲି ଯେପରି ବହୁବର୍ଷ ସ୍ବୀକୃତି କରି ମଧ୍ୟ ଶିକ୍ଷକମାନେ ସ୍ଥାୟୀଭାବରେ ମୁକରର ହୋଇପାରୁ ନାହାଁନ୍ତି ଏବଂ ଜଣେ ସ୍ଥାୟୀ କର୍ମଚାରୀର ସୁବିଧା ସୁଯୋଗ ଲାଭ କରିବାର ସୌଭାଗ୍ୟରୁ ବହୁଦିନ ବଞ୍ଚିତ ହୋଇଥିଛନ୍ତି ତାହାର ଆଶୁ ନିରାକରଣ ଆବଶ୍ୟକ । ଏ ଦିଗରେ ସରକାରୀ ଶିଥିଳତା ବା ଅପାରଗତାକୁ ସର୍ବଦା ନିରୁତ୍ସାହିତ କରାଯିବା ଉଚିତ ।

ଶିକ୍ଷକମାନଙ୍କ ନିଯୁକ୍ତି ପତ୍ରରେ ଶିକ୍ଷାନବିଶ କାଳ ସମ୍ବନ୍ଧରେ ସ୍ପଷ୍ଟ ଉଲ୍ଲେଖ ଥିବା ଆବଶ୍ୟକ । ସ୍ବୀକୃତିରେ ନିର୍ଦ୍ଦିଷ୍ଟ ସର୍ତ୍ତଗୁଡ଼ିକ ମଧ୍ୟ ନିଯୁକ୍ତିପତ୍ରରେ ରହିବା ଉଚିତ । ଶିକ୍ଷକମାନେ ମଧ୍ୟ ପ୍ରଥମ ନିଯୁକ୍ତିବେଳେ ସେମାନଙ୍କର ଶିକ୍ଷାନବିଶ କାଳ ଓ ସ୍ବୀକୃତି ସର୍ତ୍ତ କ'ଣ ତାହା ଜାଣିବାକୁ ଦାବୀ କରିବା ଉଚିତ । ବିଶେଷତଃ ବେସରକାରୀ ବିଦ୍ୟାଳୟରେ ଏଥିପାଇଁ ଅଧିକ ଗୁରୁତ୍ୱ ଦିଆଯିବା ଉଚିତ ।

ଶିକ୍ଷାନବିଶ କାଳ ଏକ ବର୍ଷ ରଖାଯିବା ଅତ୍ୟନ୍ତ ଯୁକ୍ତିଯୁକ୍ତ । ନୂତନ ନିଯୁକ୍ତିପ୍ରାପ୍ତ ଜଣେ ଶିକ୍ଷକଙ୍କୁ ତାଙ୍କ ପ୍ରଧାନ ଶିକ୍ଷକ ଓ ସହକର୍ମୀମାନଙ୍କୁ ଜାଣିବାକୁ ଅନ୍ତତଃ କିଛିଦିନ ଲାଗିବ । ଠିକ୍ ସେହିପରି ଜଣେ ଶିକ୍ଷକ ଗୋଟିଏ ବିଦ୍ୟାଳୟ ପାଇଁ ଉପଯୁକ୍ତ କି ନାହିଁ ତାହା ଅଳ୍ପଦିନ ମଧ୍ୟରେ କହିହେବ ନାହିଁ । ଗୋଟିଏ ବର୍ଷ ମଧ୍ୟରେ ନୂତନ ଶିକ୍ଷକଙ୍କର କାର୍ଯ୍ୟର ମୂଲ୍ୟାୟନ କରିବାକୁ ପ୍ରଧାନ ଶିକ୍ଷକଙ୍କୁ ସୁଯୋଗ ମିଳିବ । ଅନ୍ତତଃ ବର୍ଷକ ମଧ୍ୟରେ ପ୍ରଧାନ ଶିକ୍ଷକ ଜାଣିପାରିବେ ଯେ ଯେଉଁ ଉଦ୍ଦେଶ୍ୟରେ ଶିକ୍ଷକଙ୍କୁ ନିଯୁକ୍ତି କରାଯାଇଥିଲା ତାହା ସାଧିତ ହୋଇଅଛି କି ନାହିଁ । ଶିକ୍ଷାନବିଶ କାଳ ମଧ୍ୟରେ ଅଳ୍ପଦିନ ଆଗରୁ ଜଣାଇ ଦେଇ ବିଦ୍ୟାଳୟ ପରିତ୍ୟାଗ କରିବାର ଅଧିକାର ଶିକ୍ଷକଙ୍କର ରହିଅଛି । ସେହିପରି ପରିଚାଳନା କମିଟି ଶିକ୍ଷକଙ୍କୁ ବିଦ୍ୟାଳୟ ପରିତ୍ୟାଗ କରିବାକୁ ଅଳ୍ପଦିନ ଆଗରୁ ଜଣାଇ ଦେଇପାରନ୍ତି । ଏ ଅଧିକାର ମଧ୍ୟ ପରିଚାଳନା କମିଟିର ଅଛି । ଶିକ୍ଷାନବିଶ କାଳ ଶେଷହେବା ପରେ ଓ ଶିକ୍ଷକଙ୍କୁ ସ୍ଥାୟୀ ମୁକରର କଲାବେଳେ ପୁଣି ପ୍ରଧାନ ଶିକ୍ଷକଙ୍କର ପରାମର୍ଶ ନେବା ଉଚିତ ।

## ଶିକ୍ଷକ ମନୋନୟନ ପଦ୍ଧତି

ଶିକ୍ଷକ ମନୋନୟନ କଲାବେଳେ କେତେଗୁଡ଼ିଏ ଦିଗପ୍ରତି ଦୃଷ୍ଟି ଦେବାକୁ ହେବ । ସେଥିମଧ୍ୟରୁ ପ୍ରଥମ ଓ ସର୍ବପ୍ରଧାନ ବିଷୟ ହେଲା—ମନୋନୀତ ହେବାକୁ ଯାଉଥିବା ଶିକ୍ଷକ

ଜଣେ ଅତ୍ୟନ୍ତ ଚରିତ୍ରବାନ ବ୍ୟକ୍ତି ହେବା ଦରକାର । ଅବଶ୍ୟ ସାକ୍ଷାତ୍କାର ବେଳେ ଜଣେ ବ୍ୟକ୍ତିର ଚରିତ୍ର ସମ୍ବନ୍ଧରେ ଜାଣିବା ସହଜ ନୁହେଁ, ତଥାପି ଯାହାର ଚରିତ୍ର ସମ୍ବନ୍ଧରେ ଅଣୁମାତ୍ର ସନ୍ଦେହ ଥିବ ତାଙ୍କୁ ଶିକ୍ଷାନୁଷ୍ଠାନରେ କାର୍ଯ୍ୟ ଯୋଗାଇଦେବା ଆଦୌ ଉଚିତ ନୁହେଁ । ଦ୍ୱିତୀୟତଃ, ତାଙ୍କର ଛାତ୍ରମାନଙ୍କୁ ବୁଝିପାରିବାର ଓ ସେମାନଙ୍କ ସଙ୍ଗରେ ଉତ୍ତମ ବୁଝାମଣା କରିବାର ଦକ୍ଷତା ଥିବା ଉଚିତ । ଶିକ୍ଷାଦାନ ପାଇଁ ଆଗ୍ରହ, ଦକ୍ଷତା ଓ ସାମର୍ଥ୍ୟ ଥିବା ସଙ୍ଗେ ସଙ୍ଗେ ସହଯୋଗ ମନୋବୃତ୍ତି ଥିବା ଦରକାର । ଶିକ୍ଷକ ଜଣକ ପୂର୍ବରୁ ଅନ୍ୟ ବିଦ୍ୟାଳୟରେ ଚାକିରି କରୁଥିଲେ ସେ କାହାର କାହାର ସୁପାରିଶ ସଙ୍ଗରେ ଆଣି ପାରିଥାଆନ୍ତି କିମ୍ବା ଚାକିରି କରି ନ ଥିଲେ ପ୍ରଶିକ୍ଷଣ ମହାବିଦ୍ୟାଳୟ ବା ବିଦ୍ୟାଳୟର ସୁପାରିଶ ମଧ୍ୟ ସଙ୍ଗରେ ଆଇପାରେ । କିନ୍ତୁ କୌଣସି ସୁପାରିଶ ଅନୁସାରେ ପ୍ରଭାବିତ ନ ହୋଇ ସାକ୍ଷାତ୍କାର ବେଳର ଅବସ୍ଥା ଅନୁଯାୟୀ ବିଶେଷଜ୍ଞମାନେ ନିଜ ନିଜର ମତାମତ ଠିକ୍ କରିବା ଭଲ । ପ୍ରାର୍ଥୀଙ୍କସହ କେବଳ ସାକ୍ଷାତ୍କାର ନୁହେଁ, ଦରକାର ହେଲେ ତାଙ୍କୁ ଦୁଇ ତିନ ଗୋଟି ଶ୍ରେଣୀରେ ପାଠ ପଢ଼ାଇବାକୁ କହି ତାଙ୍କ ସମ୍ବନ୍ଧରେ ଆହୁରି ନିରପେକ୍ଷ ମତ ଗଠନ କରାଯାଇପାରେ । ଶିକ୍ଷାନବିସ କାଳରେ ଯେଉଁ ଭିତ୍ତିରେ ଶିକ୍ଷକ ମନୋନୟନ କରାଗଲା ତାହା ଠିକ କି ଭୁଲ ଜାଣିବା ପାଇଁ ଯଥେଷ୍ଟ ସୁଯୋଗ ମିଳିବ । ବିଦ୍ୟାଳୟଗୁଡ଼ିକର ସ୍ଥାନୀୟ ପରିବେଶ ଭିନ୍ନ ଭିନ୍ନ ହୋଇଥିବାରୁ ଜଣଙ୍କର ଗୋଟିଏ ବିଦ୍ୟାଳୟରେ ଶିକ୍ଷକରୂପେ ସୁନାମ ଥିଲେ, ସେ ଯେ କୌଣସି ବିଦ୍ୟାଳୟର ପରିବେଶ ମଧ୍ୟରେ କୃତକାର୍ଯ୍ୟ ହୋଇପାରିବେ ସେପରି ନୁହେଁ । ତେଣୁ ସର୍ବଦା ବିଶେଷଜ୍ଞମାନେ ସୁପାରିଶ ଠାରୁ ସ୍ୱକୀୟ ମତାମତ ଉପରେ ଅଧିକ ଗୁରୁତ୍ୱ ଦେବା ଆବଶ୍ୟକ ।

## ଶିକ୍ଷକମଣ୍ଡଳୀର ଗଠନ ପଦ୍ଧତି

ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ସରକାରୀ ବିଦ୍ୟାଳୟଗୁଡ଼ିକ ପାଇଁ ସାଧାରଣତଃ ଶିକ୍ଷକ ନିଯୁକ୍ତ ହୋଇଥାଆନ୍ତି; କିନ୍ତୁ ନିର୍ଦ୍ଦିଷ୍ଟ ଧର୍ମ, ସମ୍ପ୍ରଦାୟ ଦ୍ୱାରା ସ୍ଥାପିତ ଓ ପରିଚାଳିତ ଘରୋଇ ବିଦ୍ୟାଳୟଗୁଡ଼ିକରେ ଏହି ନିୟମର ବ୍ୟତିକ୍ରମ ହୋଇଥାଏ । ଯେଉଁ ସମ୍ପ୍ରଦାୟ ଦ୍ୱାରା ବିଦ୍ୟାଳୟଟି ପରିଚାଳିତ ହୁଏ ସେହି ସମ୍ପ୍ରଦାୟର ବ୍ୟକ୍ତିମାନଙ୍କୁ ଶିକ୍ଷକତା କରିବା ପାଇଁ ଅଗ୍ରାଧିକାର ଦିଆଯାଏ । କେତେକ ଦୃଷ୍ଟିରୁ ଏହା ସୁବିଧାଜନକ ହୋଇପାରେ; ମାତ୍ର ଭାରତଭଳି ଧର୍ମନିରପେକ୍ଷ ରାଷ୍ଟ୍ରରେ ଏହା ଏକ ନିୟମରୂପେ କଠୋରତାର ସହ ଅବଲମ୍ବନ କରିବା ଉଚିତ ନୁହେଁ । ନିର୍ଦ୍ଦିଷ୍ଟ ସମ୍ପ୍ରଦାୟର ବ୍ୟକ୍ତିମାନଙ୍କ ପ୍ରାଧାନ୍ୟ ବା କର୍ତ୍ତୃତ୍ୱ ରହିବା କ୍ଷତିକାରକ ହୋଇ ନ ପାରେ, କିନ୍ତୁ ଶିକ୍ଷକମଣ୍ଡଳୀର ସମସ୍ତ ସଭ୍ୟ ଗୋଟିଏ ସମ୍ପ୍ରଦାୟର ହେବା ଅନୁଚିତ । ମୁସଲମାନ ଗୋଷ୍ଠୀର ବିଦ୍ୟାଳୟରେ କେତେକ ହିନ୍ଦୁ ବା ଖ୍ରୀଷ୍ଟିଆନ

ଶିକ୍ଷକ ଏବଂ ଖ୍ରୀଷ୍ଟିଆନ ଗୋଷ୍ଠୀର ବିଦ୍ୟାଳୟରେ କେତେକ ମୁସଲମାନ ବା ହିନ୍ଦୁ ଶିକ୍ଷକ ରହିବା ଏକାନ୍ତ ବାଞ୍ଛନୀୟ । ଶତକଡ଼ା କେତେଗୁଡ଼ିଏ ଶିକ୍ଷକ ପରିଚାଳକ ସମ୍ପ୍ରଦାୟର ଓ କେତେ ଅନ୍ୟ ସମ୍ପ୍ରଦାୟର ହେବେ ତାହା ସମ୍ପୂର୍ଣ୍ଣ ଭାବରେ ପରିଚାଳନା କମିଟିର ଉପରେ ନିର୍ଭର କରେ; ମାତ୍ର ଅନ୍ୟ ସମ୍ପ୍ରଦାୟର କେତେଜଣ ଶିକ୍ଷକ ରହିବା ଅତ୍ୟାବଶ୍ୟକ ।

ଅନ୍ୟୂନ ଦୁଇଟି କାରଣରୁ ସମସ୍ତ ଶିକ୍ଷକ ଗୋଟିଏ ସମ୍ପ୍ରଦାୟର ନ ହେବା ଉଚିତ । ପ୍ରଥମତଃ, ବିଦ୍ୟାଳୟଟି କୌଣସି ଏକ ସଂପ୍ରଦାୟର ହୋଇପାରେ ମାତ୍ର ଏପରି କୌଣସି ବିଦ୍ୟାଳୟ ନାହିଁ ଯେଉଁଠାରେ କେବଳ ଗୋଟିଏ ସଂପ୍ରଦାୟର ପିଲା ପାଠ ପଢ଼ୁଅଛନ୍ତି । ସେହି ଦୃଷ୍ଟିରୁ ଅନ୍ୟ ସମ୍ପ୍ରଦାୟର ଜଣେ ବା ଦୁଇଜଣ ଶିକ୍ଷକ ରହିବା ପ୍ରଧାନ ଶିକ୍ଷକଙ୍କ ପକ୍ଷରେ ଅତ୍ୟନ୍ତ ସୁବିଧାଜନକ । ଅନ୍ୟ ସଂପ୍ରଦାୟର ପିଲାମାନଙ୍କର ସୁବିଧା ଅସୁବିଧା ହେଲେ ବା ସେମାନଙ୍କ ହେତୁ କୌଣସି ଅସୁବିଧା ଉପୁଜିଲେ ପ୍ରଧାନ ଶିକ୍ଷକଙ୍କୁ ଏହି ଶିକ୍ଷକମାନେ ଉପଯୁକ୍ତ ପରାମର୍ଶ ଦେଇପାରିବେ ବା ପରିସ୍ଥିତିକୁ ଅାୟତ୍ତ କରିବାରେ ତାହାଙ୍କୁ ସାହାଯ୍ୟ ମଧ୍ୟ କରିପାରିବେ । ଦ୍ୱିତୀୟତଃ, ଗୋଟିଏ ପ୍ରଭାବଶାଳୀ ସଂପ୍ରଦାୟର ବ୍ୟକ୍ତିମାନଙ୍କ ସଂସ୍ପର୍ଶରେ ଆସିଲେ ସେମାନଙ୍କର ଚିନ୍ତାଧାରାର ପରିପ୍ରକାଶ ଘଟିଥାଏ ଓ ସଙ୍କୁଚିତ ମନୋଭାବ ଦୂରୀଭୂତ ହୋଇଥାଏ । ବାସ୍ତବ ଜୀବନ କ୍ଷେତ୍ରରେ ଏହି ଛାତ୍ରମାନେ ନିଶ୍ଚୟ ଅନ୍ୟ ସଂପ୍ରଦାୟର ବିଭିନ୍ନ ବ୍ୟକ୍ତିମାନଙ୍କ ସଂସ୍ପର୍ଶରେ ଆସିବେ ଓ ସେମାନଙ୍କ ସହ ଉତ୍ତମ ବୁଝାମଣା ରଖି କାର୍ଯ୍ୟ କରିବେ । ତେବେ ବିଦ୍ୟାଳୟ ଜୀବନରେ ଅନ୍ୟ ସମ୍ପ୍ରଦାୟର ଶିକ୍ଷକଙ୍କଠାରୁ ତାଙ୍କର ଧର୍ମ ବା ସମ୍ପ୍ରଦାୟରେ କାକ ଉନ୍ନତ ଓ ମାର୍ଜିତ ଭାବଧାରା ତଥା ପରମ୍ପରା ଅଛି, ସେ ସମ୍ବନ୍ଧରେ ନ ଜାଣିବେ କାହିଁକି ?

## ପ୍ରଶ୍ନାବଳୀ

୧ । ବିଦ୍ୟାଳୟର ଗୃହ ନିର୍ମାଣ ପାଇଁ ସ୍ଥାନ ନିର୍ବାଚନ କଲାବେଳେ କେଉଁ କେଉଁ ସୁବିଧା ପ୍ରତି ଦୃଷ୍ଟିଦେବା ବାଞ୍ଛନୀୟ ?

୨ । ବିଜ୍ଞାନାଗାର ନିର୍ମାଣ ପାଇଁ ଗୋଟିଏ ନକ୍ସା ଦିଅ । ଏହି ଗୃହରେ ରଖାଯାଉଥିବା ସରଞ୍ଜାମଗୁଡ଼ିକ ସମ୍ବନ୍ଧରେ ଏକ ସ୍ଥୂଳ ଧାରଣା ଦିଅ ।

୩ । ବିଭିନ୍ନ ବିଷୟ ପଢ଼ାହେବା ପାଇଁ ଉପକରଣଗୁଡ଼ିକର ଆବଶ୍ୟକତା ସମ୍ବନ୍ଧରେ ଲେଖ ।

୪ । କେଉଁ କେଉଁ ନୀତି ଅନୁଯାୟୀ ବିଦ୍ୟାଳୟରେ ଶିକ୍ଷକ ନିଯୁକ୍ତି କରାଯିବା ଉଚିତ ?

୫ । ଶିକ୍ଷକ ମନୋନୟନ ପଦ୍ଧତିରେ ପ୍ରଧାନ ଶିକ୍ଷକଙ୍କର ଭୂମିକା ସମ୍ବନ୍ଧରେ ଲେଖ ।

୬ । ଶିକ୍ଷକ-ମଣ୍ଡଳୀ ଗଠନ ପଦ୍ଧତି କି ପ୍ରକାର ହେବା ଉଚିତ, ତାହାର ଏକ ଚିତ୍ର ଦିଅ ।

୭ । ଭାରତ ଭଳି ଏକ ଦରିଦ୍ର ଦେଶରେ ବିଦ୍ୟାଳୟ ଗୃହ ନିର୍ମାଣ ପାଇଁ ଲକ୍ଷ ଲକ୍ଷ ଟଙ୍କା ଖର୍ଚ୍ଚ ହେବା ଅନୁଚିତ ବୋଲି କେତେକଙ୍କର ମତ । ଏହି ବିଷୟରେ ନିଜର ମତାମତ ଦିଅ ।

୮ । ଯଦି କୌଣସି ଧର୍ମ ବା ସମ୍ପ୍ରଦାୟ ତରଫରୁ ବିଦ୍ୟାଳୟ ପ୍ରତିଷ୍ଠିତ ହୋଇଥାଏ ତେବେ ସେଠାରେ ଅନ୍ୟ ଧର୍ମ ବା ସମ୍ପ୍ରଦାୟର ବ୍ୟକ୍ତି ଶିକ୍ଷକତା କରିବା ଉଚିତ । ଏ ସମ୍ବନ୍ଧରେ ନିଜର ମତାମତ ଦିଅ ।

୯ । ଭାରତୀୟ ବିଦ୍ୟାଳୟଗୁଡ଼ିକରେ ଗୃହ ଓ ଉପକରଣ ବ୍ୟବସ୍ଥା ଅସନ୍ତୋଷଜନକ । ବିଭିନ୍ନ ଦିଗରୁ ଏହାର ଆଲୋଚନା କର ।

---

# ଏକାଦଶ ଅଧ୍ୟାୟ

## ପ୍ରଧାନ ଶିକ୍ଷକଙ୍କର ଦାୟିତ୍ୱ ଓ କର୍ତ୍ତବ୍ୟ

### ପ୍ରଧାନ ଶିକ୍ଷକଙ୍କର କେତେକ ଅତ୍ୟାବଶ୍ୟକ ଗୁଣ

ବିଦ୍ୟାଳୟରେ ପ୍ରଧାନ ଶିକ୍ଷକଙ୍କର ସ୍ଥାନ ସବୁଠାରୁ ବଡ଼ ଗୁରୁତ୍ୱପୂର୍ଣ୍ଣ । ବିଦ୍ୟାଳୟରେ ଚାଲିଥିବା ବିଭିନ୍ନ ପ୍ରକାର କାର୍ଯ୍ୟକଳାପ ମଧ୍ୟରେ ପ୍ରଧାନ ଶିକ୍ଷକହିଁ ସମନ୍ୱୟ ସ୍ଥାପନ କରିଥାଆନ୍ତି । ପ୍ରଧାନ ଶିକ୍ଷକ ବିଦ୍ୟାଳୟର ମର୍ଯ୍ୟାଦା ବଢ଼ାଇଥାନ୍ତି ଏବଂ କ୍ରମେ କ୍ରମେ ତାଙ୍କରି ଉଦ୍ୟମରେହିଁ ଏକ ଉଚ୍ଚ ପରମ୍ପରା ଗଢ଼ିଉଠିଥାଏ । ଆଜି ଜୀବନର ବିଭିନ୍ନ କ୍ଷେତ୍ରରେ ଶୀର୍ଷସ୍ଥାନ ଅଧିକାର କରିଥିବା ଅନେକ ବ୍ୟକ୍ତି ସେମାନଙ୍କର ପୂର୍ବତନ ପ୍ରଧାନ ଶିକ୍ଷକ ତଥା ଶିକ୍ଷକଙ୍କ ପାଇଁ ଗର୍ବ ଅନୁଭବ କରନ୍ତି । ଅଭିଭାବକ ସେମାନଙ୍କର ପିଲମାନଙ୍କୁ କୌଣସି କୌଣସି ନିର୍ଦ୍ଦିଷ୍ଟ ବିଦ୍ୟାଳୟରେ ଶିକ୍ଷା ଦେବାକୁ ଆଗ୍ରହୀ ହୁଅନ୍ତି, କେବଳ ସେହି ବିଦ୍ୟାଳୟର ପ୍ରଧାନ ଶିକ୍ଷକଙ୍କର ସୁନାମ ହେତୁହିଁ ତାହା ହୋଇଥାଏ । ତେଣୁ ପ୍ରଧାନ ଶିକ୍ଷକ ଯେ କେବଳ ଜଣେ ସାଧୁ ଓ ସଚ୍ଚରିତ୍ର ବ୍ୟକ୍ତି ହେବା ଆବଶ୍ୟକ, ସେତିକି ନୁହେଁ, ତାଙ୍କର ଗଭୀର ଆତ୍ମପ୍ରତ୍ୟୟ ଥିବା ଆବଶ୍ୟକ । ପ୍ରଥମେ ତାଙ୍କର ନିଜ ବୃତ୍ତିରେ ନିଜର ଗଭୀର ଆସ୍ଥା ଥିବା ଦରକାର । ଯେଉଁ ପ୍ରଧାନ ଶିକ୍ଷକ ବିଦ୍ୟାଳୟର ଦୈନନ୍ଦିନ କାର୍ଯ୍ୟ ଚଳାଇବା ସଙ୍ଗେ ସଙ୍ଗେ ଅନ୍ୟାନ୍ୟ ବୃତ୍ତି ସଙ୍ଗେ ନିଜ ବୃତ୍ତିର ତୁଳନା କରି ହୀନମନ୍ୟତା ପୋଷଣ କରନ୍ତି ବା ଅନ୍ୟ କୌଣସି ବୃତ୍ତିର ଅନୁସନ୍ଧାନରେ ସତତ ମନ ବଳାଉଥାନ୍ତି, ସେ ପ୍ରଧାନ ଶିକ୍ଷକ ରୂପେ ବିଦ୍ୟାଳୟ ପରିଚାଳନା କରିପାରନ୍ତି ; ମାତ୍ର ପ୍ରତିଷ୍ଠା ଲାଭ କରିପାରିବେ ନାହିଁ । ଅନ୍ତତଃ କୌଣସି ପ୍ରଧାନ ଶିକ୍ଷକଙ୍କ ପକ୍ଷେ ଏ ମନୋବୃତ୍ତି ସ୍ପୃହଣୀୟ ନୁହେଁ । ନିଜର ବୃତ୍ତି ପାଇଁ ଗର୍ବ ଅନୁଭବ କରୁଥିବା ଏବଂ ନିଜର ବୃତ୍ତିରେ ଗଭୀର ଆସ୍ଥା ସ୍ଥାପନ କରୁଥିବା ପ୍ରଧାନ ଶିକ୍ଷକହିଁ କାଳକ୍ରମେ ଜଣେ କୃତୀ ପ୍ରଧାନ ଶିକ୍ଷକ ରୂପେ ପରିଚିତ, ପ୍ରଶଂସିତ ଓ ସମ୍ମାନିତ ହେବେ ।

ନିଜର ବୃତ୍ତିରେ ଆସ୍ଥା ଥିବା ସଙ୍ଗେ ସଙ୍ଗେ ପ୍ରଧାନ ଶିକ୍ଷକଙ୍କର ପିଲାମାନଙ୍କ ଉପରେ ଗଭୀର ବିଶ୍ୱାସ ରହିବା ଦରକାର । ଯେଉଁ ପ୍ରଧାନ ଶିକ୍ଷକ ନିଜର ଛାତ୍ରମାନଙ୍କୁ ପ୍ରତି ମୁହୂର୍ତ୍ତରେ ଅବିଶ୍ୱାସ କରିଥାଆନ୍ତି ସେ କେବେ ବିଦ୍ୟାଳୟ ପରିଚାଳନାରେ କୃତକାର୍ଯ୍ୟ ହୋଇପାରିବେ ନାହିଁ । ଏହି ବିଶ୍ୱାସ ସ୍ଥାପନ କରିବା ପାଇଁ ସେ ନିଜେ ମଣିଷର ପ୍ରକୃତି ଉପରେ ଆସ୍ଥା ରଖିବା ଉଚିତ । ମଣିଷର ପ୍ରକୃତି ଉପଯୁକ୍ତ ପରିବେଷ୍ଟନୀ ମଧ୍ୟରେ ମାର୍ଜିତ ହୋଇପାରେ ଏବଂ ଉପଯୁକ୍ତ ସୁବିଧା ସୁଯୋଗ ପାଇଲେ ବହୁ ସୁପ୍ତ ପ୍ରତିଭା ପୂର୍ଣ୍ଣ ବିକଶିତ ହୋଇପାରେ—ଏ ଆତ୍ମପ୍ରତ୍ୟୟ ନ ରହିଲେ ପ୍ରଧାନ ଶିକ୍ଷକ ଛାତ୍ରମାନଙ୍କ ଉପରେ ବିଶ୍ୱାସ ରଖିପାରିବେ ନାହିଁ । ପୁଣି କେବଳ ବିଶ୍ୱାସ ରଖିବାଠାରୁ ପ୍ରଧାନ ଶିକ୍ଷକଙ୍କ ପକ୍ଷରେ ଯେଉଁ ଗୁଣ ଅଧିକ କାମ୍ୟ ତାହା ହେଉଛି ତାଙ୍କର ପ୍ରେରଣା ଦେବାର ଶକ୍ତି । ସେ ନିଜେ ଗୋଟିଏ ପ୍ରେରଣାର ଉତ୍ସସ୍ୱରୂପ ହେବା ଉଚିତ ଯାହା ଫଳରେ ତାଙ୍କର ପ୍ରେରଣାରେ କେବଳ ଛାତ୍ରମାନେ ନୁହଁନ୍ତି, ଶିକ୍ଷକମଣ୍ଡଳୀ ମଧ୍ୟ ଅନୁପ୍ରାଣିତ ହୋଇ-ପାରିବେ । ଏହି ପ୍ରେରଣାର ପ୍ରଭାବରେ ଛାତ୍ରମାନେ ବିଦ୍ୟାଳୟରେ ମିଳୁଥିବା ସୁବିଧା ସୁଯୋଗର ସମ୍ପୂର୍ଣ୍ଣ ବିନିଯୋଗ କରିପାରିବେ ଏବଂ ଏହାର ଫଳରେ ସେମାନଙ୍କର ପ୍ରତିଭାର ପୂର୍ଣ୍ଣ ବିକାଶ ସମ୍ଭବପର ହୋଇପାରିବ । ପ୍ରଧାନ ଶିକ୍ଷକଙ୍କର ଜ୍ଞାନ, ଉପଦେଶ, ସଦିଚ୍ଛାରେ ଅନୁପ୍ରାଣିତ ହେବାପାଇଁ କ୍ରମେ ଛାତ୍ରମାନେ ଯେପରି ସ୍ୱତଃସ୍ଫୂର୍ତ୍ତି ଭାବରେ ଆଗେଇ ଆସିବେ ଏବଂ ଶିକ୍ଷକମଣ୍ଡଳୀ ସେମାନଙ୍କ ମଧ୍ୟରେ ପରସ୍ପର ସହ ସଦିଚ୍ଛା ରଖିବା ସଙ୍ଗେ ସଙ୍ଗେ ତାଙ୍କର ଉପରେହିଁ କ୍ରମେ ଯେପରି ଦଳର ନେତାରୂପେ ଆସ୍ଥା ସ୍ଥାପନ କରିବେ ତାହାହିଁ ପ୍ରଧାନ ଶିକ୍ଷକଙ୍କର ବିଶେଷତ୍ୱ ହେବା ଆବଶ୍ୟକ ।

ଯେ କୌଣସି ବିଦ୍ୟାଳୟର ସଫଳତା ଲାଗି ପ୍ରଧାନ ଶିକ୍ଷକଙ୍କଠାରେ ଆସ୍ଥା ସ୍ଥାପନ କରିବା ହେଉଛି ଏକ ଅତ୍ୟାବଶ୍ୟକ ଉପାଦାନ । ଯେଉଁ ବିଦ୍ୟାଳୟରେ ଏହି ଉପାଦାନର ଅଭାବ ପରିଲକ୍ଷିତ ହୁଏ ଅର୍ଥାତ୍ ପ୍ରଧାନ ଶିକ୍ଷକ ନିଜ ଶିକ୍ଷକମଣ୍ଡଳୀର ଆସ୍ଥାଭାଜନ ହେବା ପାଇଁ ଅସମର୍ଥ ହୋଇଥାଆନ୍ତି ସେଠାରେ ବିଭିନ୍ନ କାର୍ଯ୍ୟକ୍ରମକୁ ସଫଳ କରାଇବାରେ ଘନ ଘନ ବାଧା ସୃଷ୍ଟି ହୁଏ । ଅବଶ୍ୟ ଏ କଥା ମଧ୍ୟ ସତ ଯେ କେହି ଅନ୍ୟର ଆସ୍ଥାଭାଜନ ହୋଇପାରିବେ ନାହିଁ ଯଦି ଆସ୍ଥାଭାଜନ ହେବା ପାଇଁ ନିଜର ଯୋଗ୍ୟତା ନ ଥାଏ । ତଥାପି ସମୟ ସମୟରେ ଏପରି ହୋଇଥାଏ ଯେ ଆସ୍ଥାଭାଜନ ହେବାପାଇଁ ସମସ୍ତ ଯୋଗ୍ୟତା ଥିବା ସତ୍ତ୍ୱେ ପ୍ରଧାନ ଶିକ୍ଷକ, ଶିକ୍ଷକମଣ୍ଡଳୀ ଓ ଛାତ୍ରମାନଙ୍କର ଆସ୍ଥାଭାଜନ ହୋଇପାରନ୍ତି ନାହିଁ, କାରଣ ସେମାନେ ଆସ୍ଥା ସ୍ଥାପନ କରିବା ପାଇଁ ଯେଉଁ ପ୍ରେରଣା ଆବଶ୍ୟକ ତାହା ଯୋଗାଇ ଦେବା ପାଇଁ ସେ ଅକ୍ଷମ ହୋଇଥାଆନ୍ତି । ତେଣୁ ଆସ୍ଥାଭାଜନ ହେବାପାଇଁ ଯୋଗ୍ୟତା ଥିବା ଅର୍ଥ ନୁହେଁ ଯେ ସେ ଅନ୍ୟର ଆସ୍ଥାଭାଜନ

ହୋଇପାରିବେ । ଅନ୍ତତଃ ପ୍ରଥମେ ଯୋଗ୍ୟତା ଥିଲେ ପରେ ଆସ୍ଥାଭାଜନ ହେବା କାର୍ଯ୍ୟ ହାସଲ କରିବାକୁ ହେବ ।

## ସହାନୁଭୂତିମୂଳକ ବାତାବରଣ

ଛାତ୍ର ଓ ଶିକ୍ଷକମାନଙ୍କସହ ଆଚରଣ ବ୍ୟବହାରରେ ପ୍ରଧାନ ଶିକ୍ଷକ ଏକ ସହାନୁଭୂତିମୂଳକ ବାତାବରଣ ସୃଷ୍ଟି କରିବା ଆବଶ୍ୟକ । ପ୍ରଥମତଃ ଶିକ୍ଷକମାନଙ୍କ କଥା ଦେଖାଯାଉ । ଗୋଟିଏ ବିଦ୍ୟାଳୟରେ କାର୍ଯ୍ୟ କରୁଥିବା ଶିକ୍ଷକମାନଙ୍କର ଶିକ୍ଷାଗତ ଯୋଗ୍ୟତା ଭିନ୍ନ ଭିନ୍ନ । ଯେଉଁମାନଙ୍କର ଯୋଗ୍ୟତା ସମାନ ସେମାନଙ୍କର ଶିକ୍ଷାର ମାନ ମଧ୍ୟ ଭିନ୍ନ ଭିନ୍ନ । କେହି ହୁଏତ ଆରମ୍ଭରୁ ଶେଷ ପର୍ଯ୍ୟନ୍ତ କୃତୀ ଛାତ୍ରରୂପେ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇ ଆସିଛନ୍ତି । ଅଥଚ ଅନ୍ୟ ଜଣେ କୌଣସି ସ୍ତରରେ ମଧ୍ୟ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହେବାର ସୌଭାଗ୍ୟ ଅର୍ଜନ କରିନାହାନ୍ତି । କେହି କେହି ଅଳ୍ପ ପାଠ ପଢ଼ି ଚାକିରିରେ ପ୍ରବେଶ କରି କରିବଛନ୍ତି ସାଧନା ଓ ଅଧ୍ୟବସାୟ ବଳରେ ବିଶ୍ୱବିଦ୍ୟାଳୟର ସ୍ନାତକ ଓ ସ୍ନାତକୋତ୍ତର ପଦବୀ ଲାଭ କରିଅଛନ୍ତି । ଏ ସବୁ ବ୍ୟତୀତ ଶିକ୍ଷକମାନଙ୍କର ସାମାଜିକ ଓ ସାଂସ୍କୃତିକ ପୃଷ୍ଠଭୂମି ମଧ୍ୟ ଭିନ୍ନ ପ୍ରକାର । ଏହା ମଧ୍ୟ ସମ୍ଭବପର ଯେ ବିଦ୍ୟାଳୟରେ ବହୁଧର୍ମାବଲମ୍ବୀ ଶିକ୍ଷକ ଥାଇପାରନ୍ତି । ସର୍ବୋପରି ଶିକ୍ଷକମାନଙ୍କର ଜୀବନର ଆଦର୍ଶ ଓ ମୂଲ୍ୟବୋଧ ମଧ୍ୟ ଭିନ୍ନ ଭିନ୍ନ ପ୍ରକାରର ହୋଇ ପାରିଥାଏ । ଏପରି ସ୍ଥଳେ ପ୍ରଧାନ ଶିକ୍ଷକଙ୍କର କାମ ହେଉଅଛି ଯେ, ସେ ତାଙ୍କର ସହ-କର୍ମୀମାନଙ୍କୁ ପ୍ରଥମେ ଭଲ ଭାବରେ ଜାଣିବାକୁ ଚେଷ୍ଟା କରିବା ଉଚିତ । ସେମାନଙ୍କର ବ୍ୟକ୍ତିଗତ ଜୀବନ ସହ ପରିଚିତ ନ ହେଲେ ଏବଂ ସେମାନଙ୍କର ଶିକ୍ଷାଗତ ଓ ସାମାଜିକ ପୃଷ୍ଠଭୂମି ସମ୍ବନ୍ଧରେ ଅବଗତ ନ ହେଲେ, ପ୍ରଧାନ ଶିକ୍ଷକ କେବେହେଲେ ଶିକ୍ଷକମାନଙ୍କର ପ୍ରକୃତ ଅସୁବିଧା ବୁଝିପାରିବେ ନାହିଁ, ତେଣୁ ସେସବୁ ସମାଧାନ କରିବାପାଇଁ ସମର୍ଥ ହୋଇପାରିବେ ନାହିଁ । ଏହାର ଅର୍ଥ ନୁହେଁ ଯେ ପ୍ରଧାନ ଶିକ୍ଷକ-ଜଣଜଣଙ୍କୁ ଡାକି ପ୍ରଶ୍ନ ପଚାରି ସେମାନଙ୍କର ବ୍ୟକ୍ତିଗତ ଜୀବନ ସହ ପରିଚିତ ହେବେ । ଏହି କାର୍ଯ୍ୟ ସମୟସାପେକ୍ଷ ହୋଇପାରୁଥିବାରୁ ପ୍ରଧାନ ଶିକ୍ଷକ ପ୍ରତ୍ୟେକ ଶିକ୍ଷକଙ୍କ ସଙ୍ଗେ ବନ୍ଧୁତା ସ୍ଥାପନ କରି ଧୀରେ ଧୀରେ ସମସ୍ତ ବିଷୟ ଜାଣିବାର ସୁଯୋଗ ହାସଲ କରିବେ । କୌଣସି ଲୋକ ପକ୍ଷେ ସମସ୍ତଙ୍କ ସଙ୍ଗେ ସମାନ ପ୍ରକାର ବନ୍ଧୁତା ସ୍ଥାପନ କରିବା ବା ରକ୍ଷା କରିବା ସମ୍ଭବପର ନୁହେଁ—ତେଣୁ ପ୍ରଧାନ ଶିକ୍ଷକ ସମାନ ପ୍ରକାରର ବନ୍ଧୁତା ସମସ୍ତଙ୍କ ସଙ୍ଗେ ହାସଲ କରିପାରିବେ ନାହିଁ । କେତେକ ଶିକ୍ଷକ ତାଙ୍କର କାର୍ଯ୍ୟକଳାପ, ଆଚରଣ ବ୍ୟବହାର ଯୋଗୁଁ ଅଧିକ ପ୍ରିୟପାତ୍ର ହେବା ସ୍ୱାଭାବିକ । ତେବେ ପ୍ରଧାନ ଶିକ୍ଷକ ଅନ୍ତତଃ ସମସ୍ତଙ୍କ ସଙ୍ଗେ ଏପରି ବନ୍ଧୁଭାବ ରକ୍ଷା କରିପାରିବେ ଯାହା ହେତୁ ସମସ୍ତଙ୍କର ଧାରଣା ହେବ ଓ ପ୍ରତ୍ୟୟ ଜାତ ହେବ ଯେ ସେ ସମସ୍ତଙ୍କର

କଥା ବୁଝିବାକୁ ଓ ଅସୁବିଧା ଦୂର କରିବାକୁ ପ୍ରକୃତରେ ଆଗ୍ରହୀ । ମୋଟ ଉପରେ ଏହି ବନ୍ଧୁଭାବାପନ୍ନ ମନୋଭାବ ଓ ସହାନୁଭୂତିମୂଳକ ବାତାବରଣ ସୃଷ୍ଟି କରିବା ଦାୟିତ୍ୱ ହେଉଛି ପ୍ରଧାନ ଶିକ୍ଷକଙ୍କର—ଏହା ତାଙ୍କର ଏକ ଅତି ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ ।

## ସହଯୋଗମୂଳକ ନୀତି

ଦ୍ୱିତୀୟତଃ, ପ୍ରଧାନ ଶିକ୍ଷକ ଚେଷ୍ଟା କରିବା ଦରକାର ଯେପରି ବିଦ୍ୟାଳୟର ସମସ୍ତ କାର୍ଯ୍ୟପାଇଁ ସେ ସହକର୍ମୀମାନଙ୍କଠାରୁ ପୂର୍ଣ୍ଣ ସହଯୋଗ ଲାଭ କରନ୍ତି ଅର୍ଥାତ୍ ଏକ ସହଯୋଗମୂଳକ ନୀତି ଉପରେ ସମସ୍ତ କାର୍ଯ୍ୟକଳାପ ପରିଚାଳିତ ହେବା ଦରକାର । ପୂର୍ବ ଅନୁଚ୍ଛେଦରେ ବର୍ଣ୍ଣିତ ବନ୍ଧୁଭାବାପନ୍ନ ମନୋବୃତ୍ତିରୁ ଏହି ସହଯୋଗମୂଳକ ନୀତିର ଉଦ୍ଭବ ହେବା ସ୍ୱାଭାବିକ । ତେଣୁ ପ୍ରଧାନ ଶିକ୍ଷକ କେବେହେଲେ ନିଜକୁ ଜଣେ ଏକଚ୍ଛତ୍ରାଧିକାରୀର ଆସନରେ ବସାଇ ନିର୍ଦ୍ଦେଶନାମା ଜାରି କରିବା ଉଚିତ ନୁହେଁ । ସେ କେବେହେଲେ ଭାବିବା ଉଚିତ ନୁହେଁ ଯେ ଶିକ୍ଷକମଣ୍ଡଳୀ ବିନା ବିଗ୍ରହରେ ବିନା ଦ୍ୱିଧାରେ ତାଙ୍କ ଆଦେଶ ମାନିନେବା ପାଇଁ ଅଛନ୍ତି । ବରଂ ସେ ଭାବିବା ଉଚିତ ଯେ ସେ ଗୋଟିଏ ଦଳର ନେତା ଯେଉଁ ଦଳର ସମସ୍ତ ସଭ୍ୟ ଏକା ଉଦ୍ଦେଶ୍ୟ ସାଧନ ଲାଗି କାର୍ଯ୍ୟ କରୁଅଛନ୍ତି । ତେଣୁ ଦଳର ନେତା ହିସାବରେ ନିର୍ଦ୍ଦେଶନାମା ଜାରି କରିବା ପରିବର୍ତ୍ତେ ସମସ୍ତଙ୍କର ସହଯୋଗ କାମନା କରିବା ବାଞ୍ଛନୀୟ । ତେଣୁ ପ୍ରତ୍ୟେକ ନୂତନ କାର୍ଯ୍ୟକ୍ରମ ପ୍ରବର୍ତ୍ତନ କରାଇବା ପାଇଁ କିମ୍ବା କୌଣସି ପ୍ରବର୍ତ୍ତିତ ବିଷୟର ପରିବର୍ତ୍ତନ କରାଇବା ପାଇଁ ସେ ସହକର୍ମୀମାନଙ୍କର ପରାମର୍ଶ ନେବା ଉଚିତ । ପରାମର୍ଶର ଅର୍ଥ ନୁହେଁ ଯେ ସେ ସମସ୍ତଙ୍କୁ ଡାକି ସେ କ'ଣ କରିବାକୁ ଯାଉଅଛନ୍ତି ସେ ବିଷୟ ଭଲ ଭାବରେ ବୁଝାଇ ଦେବେ ଯେପରି କେହି ତାଙ୍କ ସାଙ୍ଗରେ ଅସମ୍ମତ ନ ହୁଅନ୍ତି ବା ତାଙ୍କର ପ୍ରସ୍ତାବିତ କାର୍ଯ୍ୟକ୍ରମର ବିରୋଧ ବା ସମାଲୋଚନା ନ କରନ୍ତି । ସହକର୍ମୀମାନଙ୍କଠାରୁ ସହଯୋଗ ଲାଭ କରିବା ସହଜ କଥା ନୁହେଁ ଏବଂ ଅନେକ କ୍ଷେତ୍ରରେ ସହକର୍ମୀମାନେ ପ୍ରଧାନ ଶିକ୍ଷକଙ୍କୁ ସନ୍ଦେହାତ୍ମକ ଦୃଷ୍ଟିରେ ଦେଖିବା ଅସମ୍ଭବ ନୁହେଁ । ସାଧାରଣତଃ ଅଧିକାଂଶ ବିଦ୍ୟାଳୟରେ ଶିକ୍ଷକମାନେ ପ୍ରଧାନ ଶିକ୍ଷକଙ୍କର ଏକଚ୍ଛତ୍ର ମନୋଭାବ ସହ ଏପରି ଅଭ୍ୟସ୍ତ ଯେ ସେମାନେ ସମାଲୋଚନା କରିବା ତ ଦୂରର କଥା ପ୍ରଧାନ ଶିକ୍ଷକ ପ୍ରବର୍ତ୍ତନ କରିବାକୁ ଚାହୁଁଥିବା କୌଣସି ବିଷୟର ଯଥାଯଥ ଅନୁଶୀଳନ କରି ନିଜର ମତାମତ ବ୍ୟକ୍ତ କରିବାକୁ ମଧ୍ୟ ଚାହାନ୍ତି ନାହିଁ । କେତେକ ଭାବନ୍ତି ଯେ ସେମାନଙ୍କର ମତ ଯେ ମତର କୌଣସି ମୂଲ୍ୟ ରହିବ ନାହିଁ ଯେହେତୁ ପ୍ରଧାନ ଶିକ୍ଷକ କ'ଣ କରିବାକୁ ହେବ ଠିକ୍ କରି-ନେଇଅଛନ୍ତି । ପ୍ରାୟ ପ୍ରତ୍ୟେକ ବିଦ୍ୟାଳୟରେ ଏପରି କେତେକ ଶିକ୍ଷକ ମଧ୍ୟ ଥାଆନ୍ତି ଯେଉଁମାନେ ସେମାନଙ୍କ ପାଇଁ ଅନ୍ୟ କେତେକ ଶିକ୍ଷକ ଭାବିଚନ୍ତି ଯାହା ଉଚିତ ତାହା ଠିକ୍

କରିବେ ବୋଲି ଧରି ନେଇଥାନ୍ତି । ବସ୍ତୁତଃ ଏହି ଶ୍ରେଣୀର ଶିକ୍ଷକଗୋଷ୍ଠୀ କାଳକ୍ରମେ ନିଜର ଭାବନାଶକ୍ତି ମଧ୍ୟ ହରାଇଥା'ନ୍ତି । ଏହି ପରିପ୍ରେକ୍ଷୀରେ ପ୍ରଧାନ ଶିକ୍ଷକଙ୍କର ସହଯୋଗ କାମନା ଏକ ଜଟିଳ ସମସ୍ୟା ସୃଷ୍ଟି କରିଥାଏ । ତଥାପି ଯାହାକିଛି ଅସୁବିଧା ହେଲେ ମଧ୍ୟ ପ୍ରଧାନ ଶିକ୍ଷକ ତାଙ୍କର ସହକର୍ମୀମାନଙ୍କର ସହଯୋଗ କାମନା କରିବା ବାଞ୍ଛନୀୟ । ଏପରି ହେଲେ ସମସ୍ତଙ୍କର ମତାମତ ଜାଣିବାର ଅବକାଶ ମିଳିବା ସଙ୍ଗେ ସଙ୍ଗେ ବିଦ୍ୟାଳୟର ଉନ୍ନତି ସାଧନ ଦିଗରେ ସମସ୍ତଙ୍କର ଅଭିଜ୍ଞତା ଓ ମତାମତର ପୂର୍ଣ୍ଣ ସଦୁପଯୋଗ କରିହେବ । ପ୍ରଧାନ ଶିକ୍ଷକ ଯେତେ ଅଭିଜ୍ଞ ହେଲେ ମଧ୍ୟ ଅନ୍ୟମାନଙ୍କର ଅଭିଜ୍ଞତାର ମୂଲ୍ୟବୋଧ ବିଚାରକୁ ନେବାକୁ ସେ ପ୍ରସ୍ତୁତ ହେବା ଦରକାର । କେହି ଯେପରି ଭାବିବେ ନାହିଁ ଯେ ସେ ଯାହା କରୁଅଛନ୍ତି ତାହା ତାଙ୍କର ଅନିଚ୍ଛାସତ୍ତ୍ୱେ ତାଙ୍କ ଉପରେ ଜୋର୍ ଜବରଦସ୍ତି ଲଦି ଦିଆଯାଇଛି । ସହଯୋଗ ମନୋବୃତ୍ତି ଓ ଏକଛତ୍ରବାଦ ଏକ ସଙ୍ଗେ କାର୍ଯ୍ୟ କରି ନ ପାରେ । ପ୍ରଧାନ ଶିକ୍ଷକ ପ୍ରକୃତରେ ସମସ୍ତଙ୍କ ସହଯୋଗ କାମନା କରିବା ଉଚିତ ଏବଂ ସେଥିପାଇଁ ଏକଛତ୍ର ମନୋବୃତ୍ତିରୁ ଦୂରରେ ରହିବା ବାଞ୍ଛନୀୟ । ସହଯୋଗ କାମନା କରୁଥିବା ପ୍ରଧାନ ଶିକ୍ଷକ ଯେ ସ୍ଥଳବିଶେଷରେ ଏଥିପାଇଁ ଅସୁବିଧାର ସମ୍ମୁଖୀନ ନ ହେବେ, ସେପରି ନୁହେଁ । ଉଦାହରଣସ୍ୱରୂପ, ପ୍ରଧାନ ଶିକ୍ଷକ କୌଣସି ଏକ ନୂତନ କାର୍ଯ୍ୟକ୍ରମର ସଫଳତା ସମ୍ବନ୍ଧରେ ସ୍ଥିର ନିଶ୍ଚିତ ହେଲେ ମଧ୍ୟ ଶିକ୍ଷକମଣ୍ଡଳୀ ତାହାର ଘୋର ବିରୋଧ କରିପାରନ୍ତି । ଏପରି ପରିସ୍ଥିତି ଉପୁଜିବା ଅସ୍ୱାଭାବିକ ନୁହେଁ; ମାତ୍ର ଏ କ୍ଷେତ୍ରରେ ପ୍ରଧାନ ଶିକ୍ଷକଙ୍କ କର୍ତ୍ତବ୍ୟ କ'ଣ ତାହାହିଁ ଚିନ୍ତା କରିବାର କଥା । ଯଦି ବିଦ୍ୟାଳୟର ମଙ୍ଗଳ କାମନା କରୁଥିବା ବହୁ ଶିକ୍ଷକ ପ୍ରକୃତରେ ଭାବୁଥା'ନ୍ତି ଯେ ନୂତନ କାର୍ଯ୍ୟକ୍ରମ ଦ୍ୱାରା କୌଣସି ସୁଫଳ ମିଳିବ ନାହିଁ, ସେପରି କ୍ଷେତ୍ରରେ ପ୍ରଧାନ ଶିକ୍ଷକ ତାଙ୍କ ପ୍ରସ୍ତାବର ପୁନର୍ବିଚାର କରିବା ଆବଶ୍ୟକ । ଅଧିକାଂଶ ଶିକ୍ଷକ ପ୍ରସ୍ତାବର ବିରୋଧ କରିବା ଅର୍ଥ ପ୍ରସ୍ତାବଟି ତ୍ରୁଟିଯୁକ୍ତ ହୋଇଥିବାର ସମ୍ଭାବନା ଅଧିକ । ତଥାପି ଯଦି ପୁନର୍ବିଚାର ପରେ ପ୍ରଧାନ ଶିକ୍ଷକଙ୍କର ହୃଦ୍‌ବୋଧ ହୁଏ ଯେ ପ୍ରସ୍ତାବଟି କାର୍ଯ୍ୟକାରୀ ହେଲେ ତାହା ବିଦ୍ୟାଳୟ ପକ୍ଷେ ମଙ୍ଗଳକର ହେବ ତେବେ ସେ ଏହାକୁ କାର୍ଯ୍ୟକାରୀ କରିବା ସମୟ କିଛିଦିନ ପାଇଁ ଗଡ଼ାଇ ଦେଇପାରନ୍ତି । ଏପରି ହେଲେ ପ୍ରସ୍ତାବଟିର ନୂତନତା ରହିବ ନାହିଁ ଏବଂ ଏଥି ସଙ୍ଗେ ସଙ୍ଗେ ବିରୋଧ ମନୋଭାବ ମଧ୍ୟ କମିଯିବ । ଯାହାହେଉ ପ୍ରଧାନ ଶିକ୍ଷକ ପ୍ରସ୍ତାବଟି କେତେମାସ ପାଇଁ ଆଲୋଚନା ସ୍ତରରେ ଜୀବନ୍ତ ରଖିପାରନ୍ତି ; ମାତ୍ର କୌଣସି ସିଦ୍ଧାନ୍ତ ବାଧ୍ୟତାମୂଳକ ଭାବେ ଲଦିଦେବା ଉଚିତ ନୁହେଁ । ଏହି ସମସ୍ୟାର ସମାଧାନର ଅନ୍ୟ ଏକ ପନ୍ଥା ଅଛି । ତାହା ହେଉଛି ପ୍ରଧାନ ଶିକ୍ଷକ ଶିକ୍ଷକମଣ୍ଡଳୀଙ୍କୁ ରାଜି କରାଇ ପୂର୍ବରୁ ପ୍ରତିଶ୍ରୁତି ଦେବା ଉଚିତ ଯେ ଯଦି ପ୍ରସ୍ତାବଟି କାର୍ଯ୍ୟକାରୀ ହେଲେ କୌଣସି ସୁଫଳ ମିଳିବ ନାହିଁ ତେବେ ସେ ତାହାର କାର୍ଯ୍ୟକାରିତା ସଙ୍ଗେ ସଙ୍ଗେ ବନ୍ଦ କରିଦେବେ । ଅଧିକାଂଶ ଶିକ୍ଷକ ଏପରି ପ୍ରସ୍ତାବରେ ରାଜି ହୋଇଯିବାକୁ କୌଣସି ଆପତ୍ତି କରିବେ ନାହିଁ । କେତେକ

ବିଦ୍ୟାଳୟରେ କେହି ପ୍ରଧାନ ଶିକ୍ଷକ ଭାବେ କାର୍ଯ୍ୟଭାର ଗ୍ରହଣ କଲାପରେ ତାଙ୍କର ନୂତନ କର୍ମକ୍ଷେତ୍ରରେ ସେହିପରି କେତେକ ପରିସ୍ଥିତିର ସମ୍ମୁଖୀନ ହୋଇଥାଆନ୍ତି, ଯେଉଁଠାରେ ତାଙ୍କ କ୍ଷମତା ପ୍ରୟୋଗ କରିବାକୁ ହିଁ ପଡ଼ିଥାଏ । କିନ୍ତୁ କ୍ରମେ କ୍ରମେ ସେ ସହକର୍ମୀମାନଙ୍କ ସହ ଏକ ସ୍ୱେଚ୍ଛା ସହଯୋଗର ବାତାବରଣ ସୃଷ୍ଟି କରି ନକଲେ ଅନ୍ୟମାନଙ୍କର ଅସନ୍ତୋଷଭାଜନ ହୋଇଥାଆନ୍ତି । ତେଣୁ ପ୍ରତ୍ୟେକ ପ୍ରଧାନ ଶିକ୍ଷକ ଯେ କୌଣସି ବିଦ୍ୟାଳୟର କାର୍ଯ୍ୟଭାର ଗ୍ରହଣ କଲା ପରେ ପରେ ପରିସ୍ଥିତି ଦେଖି ଧୀରେ ଧୀରେ ଅଗ୍ରସର ହେବା ଉଚିତ । ତାଙ୍କର ଅନେକ ପ୍ରଗତିବାଦୀ ଧାରଣା ଥାଇପାରେ ଏବଂ ସେ ବିଭିନ୍ନ ବୈପ୍ଳବିକ ପରିବର୍ତ୍ତନ ଆଣିବା ପାଇଁ ଇଚ୍ଛା କରୁଥାଆନ୍ତି । ବିଦ୍ୟାଳୟର ବିଭିନ୍ନ କାର୍ଯ୍ୟକ୍ରମ ପରିବର୍ତ୍ତିତ ତଥା ପରିମାର୍ଜିତ ହେବାର ସମ୍ଭାବନା ମଧ୍ୟ ଯଥେଷ୍ଟ ଥାଇପାରେ । ତଥାପି ପ୍ରଧାନ ଶିକ୍ଷକ ତାଙ୍କର ଆଦର୍ଶ ଓ ଯୋଜନାଗୁଡ଼ିକୁ ବାସ୍ତବ ରୂପରେଖ ଦେବା ପୂର୍ବରୁ କିଛିଦିନ ଅପେକ୍ଷା କରିବା ଦରକାର । ଶିକ୍ଷକ, ଛାତ୍ର ଓ ଅଭିଭାବକମାନେ ପ୍ରଥମେ ତାଙ୍କୁ ଜାଣିବା ଓ ତାଙ୍କ କାର୍ଯ୍ୟକଳାପ ସହ ପରିଚିତ ହେବା ଦରକାର । ଯଦି ପ୍ରକୃତରେ ତାଙ୍କର ଯୋଜନାରେ ନୂତନତା ଥାଏ ଏବଂ ବିଦ୍ୟାଳୟ ପାଇଁ ତାହା ଅପରିହାର୍ଯ୍ୟ ହୋଇଥାଏ ତେବେ ସେ ସବୁକୁ ରୂପରେଖ ଦେବା ତାଙ୍କପକ୍ଷେ କ୍ରମେ ସହଜ ହୋଇଯିବ; ମାତ୍ର ପ୍ରଥମେ ଧୈର୍ଯ୍ୟ ଓ ଅପେକ୍ଷା ଦରକାର । ଯେ କୌଣସି ବ୍ୟାପକ କାର୍ଯ୍ୟକ୍ରମ ସମୟସାପେକ୍ଷ ହେତୁ ପ୍ରଥମରୁ ଠିକ୍ ନୀତି ଅନୁସରଣ କଲେ ପରେ କାର୍ଯ୍ୟକ୍ରମର ଗତି କ୍ଷିପ୍ରତର ହୋଇପାରିବ ଓ ନିଶ୍ଚିତ ଭାବରେ ସଫଳ ହେବ । ଯେଉଁ ବିଦ୍ୟାଳୟ ପରିଦର୍ଶକ (Inspector of Schools) ମାନେ ବ୍ୟାପକ କାର୍ଯ୍ୟକ୍ରମ ଜରିଆରେ ବିଭିନ୍ନ ସଂସ୍କାର ଆଣିବାକୁ ଆଗ୍ରହୀ ସେମାନଙ୍କ ପାଇଁ ମଧ୍ୟ ଏହି ନୀତି ପ୍ରଯୁଜ୍ୟ ।

ପ୍ରଧାନ ଶିକ୍ଷକଙ୍କ ପକ୍ଷେ ବନ୍ଧୁଭାବାପନ୍ନ ମନୋଭାବ ପୋଷଣ କରିବା ବା ସହକର୍ମୀମାନଙ୍କର ସହଯୋଗ କାମନା କରିବା ଇତ୍ୟାଦି ଯେଉଁ ସବୁ ବିଷୟ ପୂର୍ବବର୍ତ୍ତୀ ଅନୁଚ୍ଛେଦଗୁଡ଼ିକରେ ବର୍ଣ୍ଣନା କରାଯାଇଅଛି ସେଥିରୁ କେହି ଯେପରି ନ ବୁଝନ୍ତି ଯେ ପ୍ରଧାନ ଶିକ୍ଷକ ଲୋକଙ୍କୁ କିଛି କହିବେ ନାହିଁ ବା ଆବଶ୍ୟକ ହେଲେ କାହାପ୍ରତି କୌଣସି ଉପଯୁକ୍ତ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବେ ନାହିଁ । ସ୍ଥଳବିଶେଷରେ ଏ ସବୁ ପଦକ୍ଷେପ ନେବାକୁ ହିଁ ହେବ କାରଣ ବନ୍ଧୁଭାବରେ ମଧ୍ୟ ପ୍ରଧାନ ଶିକ୍ଷକଙ୍କର କର୍ତ୍ତବ୍ୟ ହେଉଛି ସହକର୍ମୀମାନଙ୍କୁ ସେମାନଙ୍କର ଦୋଷ ତ୍ରୁଟି ସମ୍ବନ୍ଧରେ ସଚେତନ କରାଇଦେବା । ତେଣୁ ଶିକ୍ଷକମାନଙ୍କ ପ୍ରତି ବନ୍ଧୁଭାବାପନ୍ନ ହୋଇ ମଧ୍ୟ ଯଦି ପ୍ରଧାନ ଶିକ୍ଷକ ଅନୁଭବ କରନ୍ତି ଯେ କାର୍ଯ୍ୟକ୍ଷେତ୍ରରେ ଅନିୟମିତତା, ଅସାବଧାନତା ଓ ସନ୍ଦେହଜନକ କାର୍ଯ୍ୟକଳାପ ଚାଲୁଅଛି ତେବେ ସେ ସାହସର ସହିତ ପରିସ୍ଥିତିର ସମ୍ମୁଖୀନ ହେବା ଉଚିତ ଓ ଆବଶ୍ୟକ

ପଦକ୍ଷେପ ନେବାକୁ ଉଦ୍‌ଯୋଗ କୁଣ୍ଠିତ ହେବା ଉଚିତ ନୁହେଁ । ପ୍ରକୃତ ବନ୍ଧୁତା ଓ ସହଯୋଗ ଥିଲେ ଏ ପ୍ରକାର ପରିସ୍ଥିତିର ଉଦ୍ଭବ ହୋଇ ନ ପାରେ ; ମାତ୍ର ଯେକୌଣସି ଅବାଞ୍ଛିତ ପରିସ୍ଥିତିର ଉଦ୍ଭବ ହେଲେ ତୁରନ୍ତ କଠୋର କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବା ଉଚିତ । ତଥାପି ଯେ କୌଣସି ପଦକ୍ଷେପ ନେବା ପୂର୍ବରୁ କି ପରିସ୍ଥିତିରେ କେଉଁ ଅବସ୍ଥାରେ କି ପ୍ରକାରର ବ୍ୟତିକ୍ରମ ଘଟିଲା ତାହା ସହାନୁଭୂତି ସହକାରେ ବିଚାର କରି ଦୋଷଯାବ୍ୟସ୍ତ କରାଯିବା ଉଚିତ । ଯଦି ଉତ୍ତମ ବୁଝାମଣା ଥାଏ ତେବେ ସାମାନ୍ୟ ଭର୍ତ୍ସନା ମଧ୍ୟ ଦୋଷୀ ସାବ୍ୟସ୍ତ ହୋଇଥିବା ଶିକ୍ଷକଙ୍କ ଉପରେ ଗୁରୁତର ପ୍ରଭାବ ପକାଇବ ।

## ଚଳନ୍ତି ଘଟଣା ପ୍ରବାହ ସହ ପ୍ରଧାନ ଶିକ୍ଷକଙ୍କର ସମ୍ପର୍କ

କେବଳ ଶିକ୍ଷକମାନଙ୍କ ସହ ସୁସମ୍ପର୍କ ସ୍ଥାପନ କରି ବା ଉତ୍ତମ ସହଯୋଗ ସ୍ଥାପନ କରି ଜଣେ ଖ୍ୟାତନାମା ପ୍ରଧାନ ଶିକ୍ଷକ ହୋଇ ପାରିବେ ନାହିଁ ଯଦି ତାଙ୍କର ବିଦ୍ୟାବୁଦ୍ଧି ଉଚ୍ଚକୋଟୀର ନ ହୁଏ । ଏଥିପାଇଁ କେବଳ ବିଶ୍ୱବିଦ୍ୟାଳୟର ଉପାଧି ବା ଉତ୍ତମ ଶିକ୍ଷାଦାନ ପ୍ରଣାଳୀ ମଧ୍ୟ ଯଥେଷ୍ଟ ନୁହେଁ । ବିଗତ କେତେକ ବର୍ଷ ମଧ୍ୟରେ ଜ୍ଞାନର ବିସ୍ଫୋରଣ ଫଳରେ ଶିକ୍ଷା କ୍ଷେତ୍ରରେ ଯେଉଁ ଦ୍ରୁତ ପରିବର୍ତ୍ତନ ଘଟିଯାଉଅଛି, ସେ ସମ୍ବନ୍ଧରେ ପ୍ରଧାନ ଶିକ୍ଷକ ହିଁ ପ୍ରଥମେ ଅଭିଜ୍ଞ ହେବା ବାଞ୍ଛନୀୟ । ଯଦି ତା ନ ହୁଏ, ତେବେ ଅନ୍ଧ ଅନ୍ଧକୁ ବାଟ କଢ଼ାଇବା ପରି ଅଜ୍ଞ ପ୍ରଧାନ ଶିକ୍ଷକ କେତେକ ଅଜ୍ଞ ଶିକ୍ଷକଙ୍କର ଦଳପତି ହେବାହିଁ ସାର ହେବ । ତେଣୁ ପ୍ରଧାନ ଶିକ୍ଷକ ଚଳନ୍ତି ଘଟଣା ପ୍ରବାହ ଓ ଶିକ୍ଷାକ୍ଷେତ୍ରରେ ଦେଶ ବିଦେଶରେ ଘଟି ଯାଉଥିବା ପରିବର୍ତ୍ତନ ସମ୍ବନ୍ଧରେ ସଚେତନ ହେବା ଦରକାର । ନଚେତ୍ ସେ ଅନ୍ୟମାନଙ୍କର ପଥପ୍ରଦର୍ଶକ ହୋଇପାରିବେ ନାହିଁ । ସାଧାରଣତଃ ଅନେକ ଶିକ୍ଷକ ହେବା ପରେ ପରେ ସେମାନଙ୍କର ପାଠପଢ଼ାରେ ପୂର୍ଣ୍ଣଚ୍ଛେଦ ପଡ଼ିଯାଇଥାଏ । ପ୍ରଧାନ ଶିକ୍ଷକ ହେବା ପରେ ଆଉ ପାଠ ପଢ଼ିବା ବା ଶିକ୍ଷାକ୍ଷେତ୍ରରେ ନୂତନ ଚିନ୍ତାଧାରା ସମ୍ବନ୍ଧରେ ଅବଗତ ହେବା ବ୍ୟକ୍ତିଙ୍କ ଫଇଶ୍ୟ ଅତ୍ୟନ୍ତ ନଗଣ୍ୟ କହିଲେ ଚଳେ । ନିଜେ ବିଦ୍ୟାଧ୍ୟୟନ କରୁ ନ ଥିଲେ ଶିକ୍ଷକ କେବେହେଲେ ତାଙ୍କର ପବିତ୍ର କର୍ତ୍ତବ୍ୟ ସମ୍ପାଦନ କରିପାରିବେ ନାହିଁ । "ଯେଉଁ ଦୀପ ଜଳୁନାହିଁ ସେ ଦୀପ ଅନ୍ୟ କୌଣସି ଦୀପକୁ ଜଳାଇପାରିବ ନାହିଁ ।" ଶିକ୍ଷକ ବିଶେଷତଃ ପ୍ରଧାନ ଶିକ୍ଷକ ଏହି ଉକ୍ତିର ତାତ୍ପର୍ଯ୍ୟ ହୃଦୟଙ୍ଗମ କରିବା ଉଚିତ । ନିଜେ ଯେତେଦୂର ସମ୍ଭବ ଅନେକଗୁଡ଼ିଏ ଶିକ୍ଷା ଓ ମନୋବିଜ୍ଞାନ ସମ୍ବନ୍ଧୀୟ ପତ୍ରପତ୍ରିକା ମଗାଇ ଶିକ୍ଷକମାନଙ୍କୁ ସେସବୁ ପଢ଼ିବା ପାଇଁ ଉତ୍ସାହିତ କରିବା ଉଚିତ । ବିଦ୍ୟାଳୟର ପାଠାଗାରରେ ଶିକ୍ଷା ସମ୍ବନ୍ଧୀୟ ଅଧିକ ପୁସ୍ତକ ପୁସ୍ତିକା ସ୍ଥାନ ପାଇବା ଉଚିତ । ନିଜେ ପ୍ରଧାନ ଶିକ୍ଷକ ପ୍ରତ୍ୟେକ ମାସରେ ନିଜ ଦରମାର କିୟଦଂଶ ପୁସ୍ତକ ପୁସ୍ତିକା, ପତ୍ର ପତ୍ରିକା କିଣିବା ପାଇଁ ବ୍ୟୟ କରିବା ଉଚିତ । ରାଜ୍ୟ ସ୍ତରରେ ବା ଜାତୀୟ ସ୍ତରରେ ଅନୁଷ୍ଠିତ ହେଉଥିବା ସେମିନାର, ଏକ୍ସଟେନସନ୍ ବୋର୍ଡ, ଗ୍ରୀଷ୍ମ ଶିକ୍ଷା-

ସିବର ଅନ୍ତରେ ଯୋଗଦେବାର ସୁଯୋଗ ଯେତେବେଳେ ମିଳିବ ପ୍ରଧାନ ଶିକ୍ଷକ ନିଜେ ସେ ସୁଯୋଗ ଗ୍ରହଣ କରିବେ ବା ନିଜର ଶିକ୍ଷକମାନଙ୍କୁ ପଠାଇ ତାହାର ସଦୁପଯୋଗ କରିବେ । ଆଜିକାଲି କେନ୍ଦ୍ର ଶିକ୍ଷା ମନ୍ତ୍ରଣାଳୟ ରାଜ୍ୟ ଶିକ୍ଷା ବିଭାଗ, ମାଧ୍ୟମିକ ଶିକ୍ଷାବୋର୍ଡ, ଜାତୀୟ ଶିକ୍ଷା ଗବେଷଣା ଓ ତାଲିମ ପରିଷଦ ଏବଂ ପ୍ରାୟ ସମସ୍ତ ପ୍ରଶିକ୍ଷଣ ମହାବିଦ୍ୟାଳୟର ସଂପ୍ରସାରଣ ସେବା ବିଭାଗ ଦ୍ୱାରା ବିଭିନ୍ନ କାର୍ଯ୍ୟକ୍ରମ କରିଥାରେ ଶିକ୍ଷକମାନଙ୍କୁ ଶିକ୍ଷା-କ୍ଷେତ୍ରରେ ନୂତନ ପଦ୍ଧତି ଓ ବିଷୟଜ୍ଞାନ ସହ ପରିଚିତ କରାଇ ଦିଆଯାଉଅଛି । ଏ ସବୁର ପୂର୍ଣ୍ଣ ସୁଯୋଗ ନେବା ବା ଶିକ୍ଷକମାନଙ୍କୁ ସୁଯୋଗ ଦେବାର ଦାୟିତ୍ୱ ପ୍ରଧାନ ଶିକ୍ଷକଙ୍କର । ପ୍ରଧାନ ଶିକ୍ଷକ ସମୟ ସମୟରେ ଜଣାଶୁଣା କେତେକ ଆଦର୍ଶ ବିଦ୍ୟାଳୟ ପରିଦର୍ଶନ କରି ସେଠାରେ ଶିକ୍ଷା ସମ୍ବନ୍ଧୀୟ ଯେଉଁ ଯେଉଁ ନୂତନ ପରୀକ୍ଷା ଚାଲିଅଛି ସେ ସବୁର ପ୍ରତ୍ୟକ୍ଷ ଜ୍ଞାନଲାଭ କରିବା ଉଚିତ । ଏଥି ସଙ୍ଗେ ସଙ୍ଗେ ସେ ନିଜ ବିଦ୍ୟାଳୟର ଶ୍ରେଣୀ-ଭୁକ୍ତ ବିଦ୍ୟାଳୟ ମଧ୍ୟ ପରିଦର୍ଶନ କରିବା ଉଚିତ ଯାହା ଫଳରେ ସେ ନିଜର ଧାରଣାର ଉଭୟ ଭଲ ମନ୍ଦ ଦିଗ ସମ୍ବନ୍ଧରେ ସମ୍ୟକ୍ ଧାରଣା କରି ପାରିବେ । ଶିକ୍ଷା ସମ୍ବନ୍ଧୀୟ ସମସ୍ୟା ଉପରେ ଆଲୋକପାତ କରି ପାରୁଥିବା ସୁବକ୍ତାମାନଙ୍କୁ ମଝିରେ ମଝିରେ ପ୍ରଧାନ ଶିକ୍ଷକ ନିମନ୍ତ୍ରଣ କରି ବିଦ୍ୟାଳୟରେ ସଭାସମିତିର ଆୟୋଜନ କରିବା ଉଚିତ ଏବଂ ଛାତ୍ର-ମାନଙ୍କ ସହ ଶିକ୍ଷକମଣ୍ଡଳୀ ସେହି ସଭାରେ ଯୋଗଦାନ କରିବା ଉଚିତ । ମୋଟ ଉପରେ ଶିକ୍ଷକମାନେ ଯେପରି ଶିକ୍ଷା କ୍ଷେତ୍ରରେ ବିଭିନ୍ନ ଦିଗର ପ୍ରଗତି ସମ୍ବନ୍ଧରେ ସଚେତନ ରହନ୍ତି, ଏ ଦାୟିତ୍ୱ ପ୍ରଧାନ ଶିକ୍ଷକଙ୍କର ଓ ଏଥିପାଇଁ ସେ ନିଜେ ଚେଷ୍ଟା କରିବା ସର୍ବାଦୌ ବାଞ୍ଛନୀୟ ।

## ଛାତ୍ରମାନଙ୍କ ସହ ସମ୍ପର୍କ

ପ୍ରଧାନ ଶିକ୍ଷକଙ୍କର ଶିକ୍ଷକମଣ୍ଡଳୀ ସହ ଯେପରି ସମ୍ପର୍କ ଛାତ୍ରମାନଙ୍କସହ ଠିକ୍ ସେହିପରି ସୁସମ୍ପର୍କ ରହିବା ଉଚିତ । ତାଙ୍କର ପ୍ରେରଣାରେ ଛାତ୍ରମାନେ ଉଦ୍‌ବୁଦ୍ଧ ହୋଇ ତାଙ୍କ ଉପରେ ଯେପରି ବିଶେଷ ଆସ୍ଥା ସ୍ଥାପନ କରନ୍ତି ସେଥିପାଇଁ ପ୍ରଧାନ ଶିକ୍ଷକ ଧ୍ୟାନ ଦେବା ଆବଶ୍ୟକ । ଏହା କରିବାକୁ ସେ ଛାତ୍ରବିଚ୍ଛୁ ସଦ୍‌ଗୁଣ କାର୍ଯ୍ୟ କରିବା ଉଚିତ । ପ୍ରଧାନ ଶିକ୍ଷକଙ୍କର ଛାତ୍ରମାନଙ୍କ ଉପରେ ବିଶ୍ୱାସ ଓ ଛାତ୍ରମାନଙ୍କର ପ୍ରଧାନ ଶିକ୍ଷକଙ୍କ ଉପରେ ଆସ୍ଥା ଯେ କୌଣସି ବିଦ୍ୟାଳୟର ଅଗ୍ରଗତି ଲାଗି ଏକାନ୍ତ ଆବଶ୍ୟକ । ଯେଉଁ ବିଦ୍ୟାଳୟରେ ଏହାର ଅଭାବ ପରିଲକ୍ଷିତ ହୁଏ ସେଠାରେ ବିଦ୍ୟାଳୟ ସାମାଜିକ ପରିବର୍ତ୍ତନ ଆଣିବାରେ ଏକ ଅସ୍ତ୍ରରୂପେ କାର୍ଯ୍ୟ କରିପାରେ ନାହିଁ ଯାହା ପ୍ରତ୍ୟେକ ଆଦର୍ଶ ବିଦ୍ୟାଳୟର ଏକ ଲକ୍ଷ୍ୟ ହେବା ଉଚିତ । ଏଥିପାଇଁ ପ୍ରଧାନ ଶିକ୍ଷକ ଯେତେଦୂର ସମ୍ଭବ ତାଙ୍କର ଛାତ୍ରମାନଙ୍କୁ ଜାଣିବା ଉଚିତ । ଅବଶ୍ୟ ଆଜିକାଲି ଅଧିକାଂଶ ବିଦ୍ୟାଳୟରେ ଛାତ୍ରସଂଖ୍ୟା ଏପରି ଦ୍ରୁତ ଗତିରେ ବଢ଼ିଚାଲିଛି ଯାହାଫଳରେ

ପ୍ରଧାନ ଶିକ୍ଷକଙ୍କ ପକ୍ଷେ ସମସ୍ତ ଛାତ୍ରଙ୍କୁ ଜାଣିବା ଏକ ଅସମ୍ଭବ ବ୍ୟାପାର ହୋଇଉଠିଅଛି, ତଥାପି ସମସ୍ତଙ୍କୁ ଜାଣିବା ହିଁ ଲକ୍ଷ୍ୟ ହେବା ଉଚିତ । ବିଦ୍ୟାଳୟର ଛାତ୍ରସଂଖ୍ୟା ଛଅଶହ ପଚାଶରୁ ଊର୍ଦ୍ଧ୍ୱ ହୋଇଗଲେ ସମସ୍ତଙ୍କୁ ଜାଣିବା ବାସ୍ତବିକ ଏକ ସମସ୍ୟା ହୋଇପଡ଼େ । ଛାତ୍ର ଓ ଶିକ୍ଷକ ତଥା ପ୍ରଧାନ ଶିକ୍ଷକଙ୍କ ମଧ୍ୟରେ ଘନିଷ୍ଠ ସମ୍ପର୍କ ରହିବା ଦୃଷ୍ଟିରୁ ଅନେକ ମନେକରନ୍ତି ଯେ ବିଦ୍ୟାଳୟଗୁଡ଼ିକର ଛାତ୍ରସଂଖ୍ୟା ଗୋଟିଏ ନିର୍ଦ୍ଦିଷ୍ଟ ସୀମା ଟପିବା ଉଚିତ ନୁହେଁ । ଏହି ନୀତି କାର୍ଯ୍ୟକାରୀ ହେଲେ ବିଦ୍ୟାଳୟ ସଂଖ୍ୟା ଅଧିକ ବୃଦ୍ଧି କରିବାକୁ ହେବ ଏବଂ ତାହା ସରକାର ତଥା ଜନସାଧାରଣଙ୍କ ପକ୍ଷେ ବ୍ୟୟସାପେକ୍ଷ ହେବ । ମାତ୍ର ଆମ୍ଭେମାନେ ଏ ସବୁର ଗୁରୁତ୍ୱ ଆର୍ଥିକ ଦୃଷ୍ଟିରୁ ବିଚାର କଲେ ଗୁଣାତ୍ମକ ଦୃଷ୍ଟିରୁ ଆମକୁ ଅନେକ ବିଷୟ ତ୍ୟାଗ କରିବାକୁ ହେବ ।

ଅନେକ ମନେକରନ୍ତି ଯେ ପ୍ରଧାନ ଶିକ୍ଷକ ଛାତ୍ରମାନଙ୍କ ପ୍ରତି ବନ୍ଧୁତ୍ୱ ଆଚରଣ ଦେଖାଇଲେ ତାହାଦ୍ୱାରା ବିଦ୍ୟାଳୟର ଶୃଙ୍ଖଳା ବାଧାପ୍ରାପ୍ତ ହେବ । କ୍ରମେ ଛାତ୍ରମାନେ ଆଉ ପ୍ରଧାନ ଶିକ୍ଷକଙ୍କୁ ଭୟ କରିବେ ନାହିଁ ଏବଂ ଭକ୍ତି ଦେଖାଇବେ ନାହିଁ । ଏ ପ୍ରକାର ଧାରଣା ସମ୍ପୂର୍ଣ୍ଣ ଭୁଲ । ବିଦ୍ୟାଳୟ ଜୀବନରେ ଶିକ୍ଷାଗତ ଆଦର୍ଶଗୁଡ଼ିକର ସଫଳ ରୂପାୟନ ହୋଇପାରିବ କେବଳ ଯେତେବେଳେ ଛାତ୍ରମାନେ କାର୍ଯ୍ୟକ୍ରମଗୁଡ଼ିକ ସଫଳ କରାଇବା ପାଇଁ ଆନ୍ତରିକତା ଦେଖାଇବେ ଓ ଆଗ୍ରହୀ ହେବେ । ଯଦି ପ୍ରଧାନ ଶିକ୍ଷକ ତାଙ୍କର ନୀତିଦ୍ୱାରା ଛାତ୍ରମାନଙ୍କୁ ଏହା କରାଇବାରେ ସମର୍ଥ ହେବେ ତେବେ ଶିକ୍ଷାର ଲକ୍ଷ୍ୟ ହାସଲ ହୋଇପାରିବ । ଏହା ହିଁ ସବୁଠାରୁ ଅଧିକ ଗୁରୁତ୍ୱପୂର୍ଣ୍ଣ । ତେଣୁ ଛାତ୍ରମାନେ ପ୍ରଧାନ ଶିକ୍ଷକଙ୍କୁ ଭୟ ନ କଲେ ବା ସାହାଯ୍ୟ ସହଯୋଗ ପାଇବାପାଇଁ ଆଗ୍ରହୀ ହେଲେ ଏବଂ ନିସଙ୍କୋଚରେ ସେମାନଙ୍କର ସମସ୍ତ ଅଭାବ ଅସୁବିଧା ବ୍ୟକ୍ତ କଲେ ପ୍ରଧାନ ଶିକ୍ଷକ ଛାତ୍ରମାନଙ୍କୁ ବ୍ୟକ୍ତିଗତ ଭାବେ ଭଲଭାବରେ ଜାଣିବାର ସୁଯୋଗ ପାଇବେ ଏବଂ ଏହା ତାହାଙ୍କୁ ଯେ କୌଣସି କାର୍ଯ୍ୟକ୍ରମ ସଫଳ କରାଇବାରେ ଅତ୍ୟନ୍ତ ସହାୟକ ହେବ । ପ୍ରଧାନ ଶିକ୍ଷକ ଓ ଛାତ୍ରମାନଙ୍କ ମଧ୍ୟରେ ଏବଂ ଶିକ୍ଷକମଣ୍ଡଳୀ ଓ ଛାତ୍ରମାନଙ୍କ ମଧ୍ୟରେ ପରସ୍ପର ପରସ୍ପର ସହ ସହଯୋଗ କରିବାର ମନୋବୃତ୍ତି ଏକାନ୍ତ କାମ୍ୟ । ପ୍ରଧାନ ଶିକ୍ଷକ ଅନ୍ୟାନ୍ୟ ଶିକ୍ଷକମାନଙ୍କର ସହଯୋଗ କାମନା କରିବା ଯେପରି ଆବଶ୍ୟକ, ଛାତ୍ରମାନଙ୍କର ବିଶେଷତଃ ଉପର ଶ୍ରେଣୀର ଛାତ୍ରମାନଙ୍କର ସହଯୋଗ କାମନା କରିବା ସେହିପରି ଆବଶ୍ୟକ । ଶିକ୍ଷକ ଓ ଛାତ୍ରମାନଙ୍କ ମଧ୍ୟରେ ବିଭିନ୍ନ ବିଷୟରେ ଯେଉଁ ବାଦ ବିସମ୍ବାଦ ଉପୁଜି କ୍ରମେ ଛାତ୍ର-ବିଶୃଙ୍ଖଳାରେ ପରିଣତ ହେଉଅଛି ତାହାର ଅବସାନ ହେବ କେବଳ ସେତିକବେଳେ ଯେତେବେଳେ ଛାତ୍ରମାନେ ବିଦ୍ୟାଳୟକୁ ନିଜର ଏକ ଅନୁଷ୍ଠାନରୂପେ ଗ୍ରହଣ କରିନେବେ ଏବଂ ତାହାର ଉନ୍ନତିକଳ୍ପେ ଆଗଭର ହେବେ । ତେଣୁ ବିଦ୍ୟାଳୟରେ କୌଣସି ନୂତନ କାର୍ଯ୍ୟକ୍ରମ ପ୍ରଚଳନ କରାଯିବା ପୂର୍ବରୁ ପ୍ରଧାନ ଶିକ୍ଷକ ଯଦି ବୟୋଜ୍ୟେଷ୍ଠ

ଛାତ୍ରମାନଙ୍କୁ ପରାମର୍ଶ କରନ୍ତୁ ତେବେ ଛାତ୍ରମାନେ ଅନୁଭବ କରିବେ ଯେ ବିଦ୍ୟାଳୟ ପରିଚାଳନାରେ ସେମାନଙ୍କର ମଧ୍ୟ ଭାଗ ଅଛି ଏବଂ ସେମାନଙ୍କର ମତାମତର ମୂଲ୍ୟ ଅଛି । କେବଳ ଏଥିପାଇଁ ଛାତ୍ରମାନେ ଅଧିକ ଯତ୍ନବାନ ଓ ଦାୟିତ୍ୱବାନ ହେବେ । ବିଦ୍ୟାଳୟର କେତେକ କାର୍ଯ୍ୟର ଭାର ଛାତ୍ରମାନଙ୍କ ଦ୍ୱାରା ନିର୍ବାଚିତ ପ୍ରତିନିଧିମାନଙ୍କ ହାତରେ ଅର୍ପଣ କରାଯାଇପାରେ । ଏସବୁ କାର୍ଯ୍ୟ ଅନ୍ତରଙ୍ଗତା ଓ ନିଷ୍ଠାର ସହ କରାଗଲେ ଯେ କୌଣସି ଶିକ୍ଷାନୁଷ୍ଠାନର ଅନେକ ସମସ୍ୟା ସହଜରେ ଦୂରୀଭୂତ ହେବ ଏବଂ ଏ ସବୁ କରାଯିବା ପାଇଁ ପ୍ରଧାନ ଶିକ୍ଷକଙ୍କର ଅନେକ ଦାୟିତ୍ୱ ରହିଅଛି ।

## ଶିକ୍ଷକ ଭାବରେ ପ୍ରଧାନ ଶିକ୍ଷକଙ୍କ ସ୍ଥାନ

ପ୍ରଧାନ ଶିକ୍ଷକ ଯେତେ ସ୍ମୃଗୁଣର ଅଧିକାରୀ ହୁଅନ୍ତୁ ପଛକେ ଏବଂ ତାଙ୍କର ବଳିଷ୍ଠ ନେତୃତ୍ୱ ଓ ବ୍ୟକ୍ତିତ୍ୱର ପ୍ରଭାବ ବିଦ୍ୟାଳୟର ବିଭିନ୍ନ କାର୍ଯ୍ୟକ୍ରମରେ ଯେତେ ଅନୁଭୂତ ହେଉ ପଛକେ, ଜଣେ ଉତ୍ତମ ଶିକ୍ଷକ ନ ହେଲେ ଅନ୍ୟସବୁ ଗୁଣର ପ୍ରଭାବ ଧୀରେ ଧୀରେ ମ୍ଳାନ ହୋଇଆସିବ । ତାଙ୍କର ଶିକ୍ଷାଦାନ ପ୍ରଣାଳୀ ବିଦ୍ୟାଳୟର ସମସ୍ତ ଶିକ୍ଷକଙ୍କ ମଧ୍ୟରେ ସର୍ବୋତ୍କୃଷ୍ଟ ନ ହେଲେ ମଧ୍ୟ ଯଥେଷ୍ଟ ଉଚ୍ଚ ସ୍ତରର ହେବା ବାଞ୍ଛନୀୟ । ଉତ୍ତମ ଶିକ୍ଷାଦାନ ପ୍ରଣାଳୀ ଛାତ୍ରମାନଙ୍କର ଅନ୍ତରରେ ଗଭୀର ରେଖାପାତ କରିଥାଏ ଓ ଏଇଥିପାଇଁ ସେମାନେ ଶିକ୍ଷକଙ୍କୁ ଯେଉଁ ସମ୍ମାନ ଦେଇଥାଆନ୍ତି ତାହା ସ୍ୱତଃସ୍ଫୁର୍ତ୍ତି ଭାବରେ ଦେଇଥାଆନ୍ତି, କୌଣସି ବାଧ୍ୟ ପ୍ରଭାବ ହେତୁ ନୁହେଁ । ତେଣୁ ପ୍ରଧାନ ଶିକ୍ଷକ ଜଣେ ଉତ୍ତମ ଶିକ୍ଷକ ହେବା ଅତ୍ୟାବଶ୍ୟକ । ଅବଶ୍ୟ ଆଜିକାଲି ଜ୍ଞାନର ପରିସୀମା ଯେପରି କ୍ରମଶଃ ବୃଦ୍ଧିପ୍ରାପ୍ତ ହେଉଅଛି ଏବଂ ବିଭିନ୍ନ ବିଷୟର ଶିକ୍ଷାଦାନ ପାଇଁ ବିଶେଷ ଜ୍ଞାନଥିବା ଓ ବିଶେଷ ତାଲିମପ୍ରାପ୍ତ ଶିକ୍ଷକଙ୍କର ଆବଶ୍ୟକତା ବୃଦ୍ଧି ପାଉଅଛି ସେ ଦୃଷ୍ଟିରୁ ପ୍ରଧାନ ଶିକ୍ଷକଙ୍କର ଅନ୍ତତଃ ଗୋଟିଏ ବା ଦୁଇଟି ପାଠ୍ୟ ବିଷୟରେ ବିଶେଷ ଜ୍ଞାନ ଥିବା ଦରକାର । ସେ ମଧ୍ୟ ତାଙ୍କ ବିଷୟଟି ବା ବିଷୟଗୁଡ଼ିକ ପଢ଼ାଇବା ପାଇଁ ଯଥେଷ୍ଟ ସଂଖ୍ୟକ ପିରିଅଡ଼୍ ନେବା ଦରକାର । ଏହି ପିରିଅଡ଼ଗୁଡ଼ିକର ସଂଖ୍ୟା ଜଣେ ସାଧାରଣ ଶିକ୍ଷକ ନେଉଥିବା ପିରିଅଡ଼୍ ସଂଖ୍ୟାଠାରୁ କମ ହେବା ଉଚିତ; କାରଣ ପ୍ରଧାନ ଶିକ୍ଷକଙ୍କୁ ତାଙ୍କର ବହୁ ସମୟ ଅଫିସ କାର୍ଯ୍ୟରେ କଟାଇବାକୁ ହେବ । ଅଜିକାଲି ଅନେକ ବିଦ୍ୟାଳୟରେ ପ୍ରଧାନ ଶିକ୍ଷକମାନେ କେବଳ ଶେଷ ଶ୍ରେଣୀରେ ୭।୮ ଗୋଟି ପିରିଅଡ଼୍ ନିଅନ୍ତି । ଏହା ଫଳରେ ମାତ୍ର ଛଅମାସ ପରେ ସେହି ପିଲାମାନେ ମାଧ୍ୟମିକ ବୋର୍ଡ ପରୀକ୍ଷା ଦେବା ପାଇଁ ମନୋନୀତ ହେବାପରେ ସେମାନେ ଆଉ କୌଣସି ପାଠ ପଢ଼ାନ୍ତି ନାହିଁ । ପ୍ରଧାନ ଶିକ୍ଷକଙ୍କର ଏ ପ୍ରକାର ମନୋବୃତ୍ତି ଅନ୍ୟାନ୍ୟ ଶିକ୍ଷକମାନଙ୍କ ଉପରେ କୁପ୍ରଭାବ ପକାଏ ଏବଂ ଯଦି ପ୍ରଧାନ ଶିକ୍ଷକ ପାଠ ପଢ଼ାଇବାକୁ ବିଶେଷ ଆଗ୍ରହୀ ନ ଥିବା ସ୍ଥଳେ ସେ ଅନ୍ୟମାନଙ୍କୁ ଆଶାନୁରୂପ

ପ୍ରେରଣା ଦେଇପାରନ୍ତି ନାହିଁ । ଅନେକ ଶିକ୍ଷାବିତ୍ ମନେକରନ୍ତି ଯେ ପ୍ରଧାନ ଶିକ୍ଷକ ସପ୍ତାହର ୩୬।୪୦ ପିରିଅଡ଼ ମଧ୍ୟରୁ ଅନ୍ତତଃ ୨୩।୨୪ ପିରିଅଡ଼ ନେବା ଉଚିତ । ଅଫିସ କାର୍ଯ୍ୟଲାଗି ଓ ବିଭିନ୍ନ କାର୍ଯ୍ୟପ୍ରତି ସମୁଚିତ ଧ୍ୟାନ ଦେବାଲାଗି ପ୍ରଧାନ ଶିକ୍ଷକ ଯଦି ଏତେଗୁଡ଼ିଏ ପିରିଅଡ଼ ନେବାକୁ ଅସମର୍ଥ ହୁଅନ୍ତି ତେବେ ଅନ୍ୟୂନ ୧୬।୧୭ ପିରିଅଡ଼ ନେବା ଆବଶ୍ୟକ । ବିଜ୍ଞାନରେ ଉପାଧିପ୍ରାପ୍ତ ପ୍ରଧାନ ଶିକ୍ଷକ ଗଣିତ ଓ କଳାରେ ଉପାଧିପ୍ରାପ୍ତ ପ୍ରଧାନ ଶିକ୍ଷକ ଇଂରାଜୀ ପଢ଼ାଇବା ଉଚିତ । ବିଦ୍ୟାଳୟ ସ୍ତରରେ ଇଂରାଜୀର ପ୍ରଭାବ କମି ଯାଉଅଛି । ତାର କାରଣ ବିଶ୍ୱବିଦ୍ୟାଳୟ ସ୍ତରରେ ମଧ୍ୟ ମାତୃଭାଷାରେ ପାଠ ପଢ଼ାଇବାର ଗୁରୁତ୍ୱ ଉପଲବ୍ଧି କରାଯାଉଅଛି । ତଥାପି କାଳକ୍ରମେ ଇଂରାଜୀର ସ୍ଥାନ ବିଦ୍ୟାଳୟ ପାଠ୍ୟକ୍ରମରେ ଏକ ଇଚ୍ଛାଧୀନ ବିଷୟରୂପେ ରହିବାର ସମ୍ଭାବନା ଥିଲେ ମଧ୍ୟ ଏକ ବିଦେଶୀ ଭାଷାରୂପେ ଏହାର ଶିକ୍ଷାଦାନ ପାଇଁ ଯଥେଷ୍ଟ ଦକ୍ଷତା ଦରକାର । ତେଣୁ ପ୍ରଧାନ ଶିକ୍ଷକ ଏହା ପଢ଼ାଇ ନିଜର କୃତିତ୍ୱ ଓ ଶିକ୍ଷାଦାନ କ୍ଷେତ୍ରରେ ନିପୁଣତା ଦେଖାଇବା ଆବଶ୍ୟକ । ସେହିପରି ବିଜ୍ଞାନରେ ଉପାଧିପ୍ରାପ୍ତ ପ୍ରଧାନ ଶିକ୍ଷକ ବିଜ୍ଞାନ ପଢ଼ାଇଲେ ଭଲ; ମାତ୍ର ବିଜ୍ଞାନରେ ଉପଯୁକ୍ତ ଶିକ୍ଷାଦାନ ପାଇଁ ତାହାଙ୍କୁ ଅଧିକାଂଶ ଦିନ ପ୍ରତ୍ୟେକ ପିରିଅଡ଼ ଆଗରୁ ବିଜ୍ଞାନାଗାରକୁ ଯାଇ ଆବଶ୍ୟକ ପରୀକ୍ଷାଗୁଡ଼ିକ ପାଇଁ ପ୍ରସ୍ତୁତ କରିବାକୁ ହେବ । ଏହା ଫଳରେ ୧୬।୧୭ ପିରିଅଡ଼ ପଢ଼ାଉଥିବା ପ୍ରଧାନ ଶିକ୍ଷକଙ୍କର କାର୍ଯ୍ୟଭାର ଦ୍ୱିଗୁଣିତ ହୋଇଯିବ । କେତେକ ପ୍ରଧାନ ଶିକ୍ଷକ ବିଜ୍ଞାନ ଶିକ୍ଷକଙ୍କୁ ବିଜ୍ଞାନାଗାରରେ ଆବଶ୍ୟକ ପ୍ରସ୍ତୁତୀକରଣ କରିବାକୁ କହି ନିଜେ ପଢ଼ାଇଥାଆନ୍ତି । ଏହା ଏକ ଭ୍ରମାତ୍ମକ ପନ୍ଥା । ନିଜେ ନିଜର ଆବଶ୍ୟକତା ଅନୁଯାୟୀ ଶିକ୍ଷାଦାନ ପାଇଁ ପ୍ରସ୍ତୁତ ହେବା ବାଞ୍ଛନୀୟ ନଚେତ୍ ଏପରି ପନ୍ଥା ପ୍ରଧାନ ଶିକ୍ଷକଙ୍କ ପକ୍ଷେ ନିଜର ଅଧିକୃତ ପଦମର୍ଯ୍ୟାଦାର ଅପବ୍ୟବହାର ବୋଲି ଗଣ୍ୟ ହେବ । ତେଣୁ ବିଜ୍ଞାନରେ ସ୍ନାତକ ହୋଇଥିବା ପ୍ରଧାନ ଶିକ୍ଷକ ସ୍ନାତକସ୍ତର ପର୍ଯ୍ୟନ୍ତ ଗଣିତ ଅଧ୍ୟୟନ କରିଥିଲେ ସେ ତାହା ପଢ଼ାଇବା ଉଚିତ ।

ପ୍ରଧାନ ଶିକ୍ଷକ ବିଦ୍ୟାଳୟର ସର୍ବନିମ୍ନ ଶ୍ରେଣୀର କେତେକ ପିରିଅଡ଼ ନେବା ଅତ୍ୟାବଶ୍ୟକ । ପୂର୍ବେ ସାଧାରଣତଃ ସମସ୍ତ ପ୍ରତିଷ୍ଠିତ ବିଦ୍ୟାଳୟଗୁଡ଼ିକରେ ଏହି ନୀତି ଅନୁସୃତ ହେଉଥିବା ସ୍ଥଳେ ଆଜିକାଲି କୌଣସି ନା କୌଣସି ଆଳରେ ପ୍ରଧାନ ଶିକ୍ଷକମାନେ ଏହା କରୁନାହାଁନ୍ତି ବା କରିବାକୁ ଅସମର୍ଥ ବୋଲି ମନେ କରୁଅଛନ୍ତି । ଏହି ନୀତି କେତେକ କାରଣରୁ ଅନୁସୃତ ହେବା ଅତ୍ୟାବଶ୍ୟକ । ପ୍ରଥମତଃ, ଏହାଦ୍ୱାରା ସେ ଛାତ୍ରମାନଙ୍କୁ ଭଲଭାବେ ଜାଣିବାର ସୁଯୋଗ ପାଇବେ । ତଳ ଶ୍ରେଣୀରେ ପିଲମାନେ ପ୍ରଥମେ ନାମ ଲେଖାଇଥାଆନ୍ତି । ତେଣୁ ମାତ୍ର କେତେ ବର୍ଷ ପରେ ପ୍ରଧାନ ଶିକ୍ଷକ ସମସ୍ତ ଛାତ୍ରଙ୍କ ସମ୍ବନ୍ଧରେ ଜାଣିପାରିବେ ଓ ସେମାନଙ୍କୁ ଚିହ୍ନିପାରିବେ । ତାଙ୍କର ଏହି ଅଭିଜ୍ଞତା ଛାତ୍ରମାନଙ୍କର ଆଚରଣ ଓ ପାଠ୍ୟ ବିଷୟରେ ଅଗ୍ରଗତି ମଝିରେ ମଝିରେ ଯାଞ୍ଚ କରିବାରେ

ସହାୟକ ହେବ । ଆଗରୁ କୁହାଯାଇଅଛି ବିଦ୍ୟାଳୟ ପରିଚାଳନା ପାଇଁ ଛାତ୍ରମାନଙ୍କର ସହଯୋଗ ଏକାନ୍ତ ଆବଶ୍ୟକ ଓ ସେଥିପାଇଁ ପ୍ରଧାନ ଶିକ୍ଷକ ଅଧିକାଂଶ ଛାତ୍ରଙ୍କୁ ବ୍ୟକ୍ତିଗତ ଭାବରେ ଜାଣିବାର ଗୁରୁତ୍ୱ ବହୁତ ବେଶି । ଦ୍ୱିତୀୟତଃ, ପାଠପଢ଼ା ଦୃଷ୍ଟିରୁ ନିମ୍ନଶ୍ରେଣୀର ପ୍ରାଧାନ୍ୟ ଯଥେଷ୍ଟ ଅଧିକ । ଅନେକ ସମୟରେ ପ୍ରଧାନ ଶିକ୍ଷକମାନେ ଏହାର ଗୁରୁତ୍ୱ ଉପଲବ୍ଧି କରନ୍ତି ନାହିଁ ଏବଂ ସେମାନେ ସାଧାରଣତଃ ଶେଷ ଶ୍ରେଣୀରେ ଅଧିକ ଧ୍ୟାନ ଦିଅନ୍ତି । ସେମାନଙ୍କର ଧାରଣା ଯେ ଶେଷ ଶ୍ରେଣୀର ପିଲାମାନଙ୍କ ପାଠପଢ଼ା ପ୍ରତି ଅଧିକ ଯତ୍ନ ନିଆଗଲେ ବିଦ୍ୟାଳୟର ପରୀକ୍ଷା ଫଳାଫଳ ଭଲ ହେବ ଏବଂ ବିଦ୍ୟାଳୟର ସୁନାମ ବଢ଼ିବ । ଏହା ଆଂଶିକ ସତ ହୋଇପାରେ; ମାତ୍ର ବିଦ୍ୟାଳୟର ଫଳାଫଳ ସହଜତର ଉପାୟରେ ନିଶ୍ଚୟ ଉତ୍କୃଷ୍ଟତର ହେବ ଯଦି ପିଲାମାନଙ୍କର ଯତ୍ନ ନିମ୍ନତମ ଶ୍ରେଣୀରୁ ହିଁ ନିଆଯାଏ । ଏହା ମଧ୍ୟ ସତ ଯେ କେବଳ ଉତ୍କୃଷ୍ଟ ପ୍ରଣାଳୀରେ ଶିକ୍ଷାଦାନ କରିପାରୁଥିବା ଶିକ୍ଷକମାନେ ନିମ୍ନଶ୍ରେଣୀରେ ପଢ଼ାଇବା ଉଚିତ କାରଣ ଏହି ଶ୍ରେଣୀମାନଙ୍କରେ ବହୁ ନୂତନ ଧାରଣା ସ୍ପଷ୍ଟ ଭାବରେ ଅବଧାରଣା କରାଇବା ଯେ କୌଣସି ଶିକ୍ଷକଙ୍କ ପକ୍ଷେ ସହଜ ନୁହେଁ । ତୃତୀୟତଃ, ଆଜିକାଲି ବହୁ ବିଦ୍ୟାଳୟରେ ଉଚ୍ଚତମ ଶ୍ରେଣୀରେ ପାଠ ପଢ଼ାଇବା ପାଇଁ କେତେକ ଶିକ୍ଷକଙ୍କ ମଧ୍ୟରେ ବାଦବିବାଦ ଉପୁଜିଥାଏ କାରଣ ଉଚ୍ଚତମ ଶ୍ରେଣୀରେ ପାଠ ପଢ଼ାଇବା ଏକ ଅଧିକ ସମ୍ମାନଜନକ କାର୍ଯ୍ୟ ବୋଲି କେତେକେ ମନେକରନ୍ତି । ଏହି ପ୍ରକାର ଭ୍ରାନ୍ତଧାରଣା ଜନ୍ମିବାର ଅବକାଶ ରହିବ ନାହିଁ ଯଦି ପ୍ରଧାନ ଶିକ୍ଷକ ନିଜେ ନିମ୍ନତମ ଶ୍ରେଣୀରେ ପାଠପଢ଼ାନ୍ତି ଏବଂ ବୟୋଜ୍ୟେଷ୍ଠ ଅଭିଜ୍ଞ ଶିକ୍ଷକ ତାଙ୍କର ପନ୍ଥା ଅନୁସରଣ କରନ୍ତି ।

## ତତ୍ତ୍ୱାବଧାରକ ବା ପରିଦର୍ଶକ ଭାବରେ ପ୍ରଧାନ ଶିକ୍ଷକଙ୍କର କାର୍ଯ୍ୟ

ପ୍ରଧାନ ଶିକ୍ଷକଙ୍କର ପରିଦର୍ଶନ କାର୍ଯ୍ୟକ୍ରମର ପରିସର ଅତ୍ୟନ୍ତ ବ୍ୟାପକ ହେବା ଉଚିତ । ବିଦ୍ୟାଳୟର ଏପରି କୌଣସି କାର୍ଯ୍ୟକ୍ରମ ନାହିଁ ଯାହା ତାଙ୍କର ତତ୍ତ୍ୱାବଧାନ ବିନା କରାଯିବା ଉଚିତ । ପ୍ରଧାନ ଶିକ୍ଷକ ତାଙ୍କର ତତ୍ତ୍ୱାବଧାନର ବ୍ୟାପକତା ନିଜେ ନ ବୁଝିଲେ ଅନେକ କାର୍ଯ୍ୟକ୍ରମର ଲକ୍ଷ୍ୟ ବିପର୍ଯ୍ୟସ୍ତ ହୋଇପଡ଼ିବ । ସେ ବିଭିନ୍ନ କାର୍ଯ୍ୟକ୍ରମ ସମ୍ପୂର୍ଣ୍ଣ ଭାବରେ ଅନ୍ୟ କୌଣସି ଶିକ୍ଷକଙ୍କ ଉପରେ ଛାଡ଼ିଦେଲେ ସମୟ କ୍ରମେ ସମ୍ପୃକ୍ତ ଶିକ୍ଷକ ପ୍ରଧାନ ଶିକ୍ଷକଙ୍କର ଅତିଶୟ ନିର୍ଭରଶୀଳ ମନୋବୃତ୍ତିର ସୁଯୋଗ ନେଇ କାର୍ଯ୍ୟଗୁଡ଼ିକ ସୁସ୍ଥୁରୂପେ ସମ୍ପାଦନ କରି ନ ପାରନ୍ତି । କେତେକ ଶିକ୍ଷକଙ୍କ ଉପରେ ପୂର୍ଣ୍ଣ ଦାୟିତ୍ୱ ନ୍ୟସ୍ତ କରାଗଲେ ତାହା ଅନ୍ୟମାନଙ୍କ ପକ୍ଷେ ଚକ୍ଷୁଶୂଳ ହେବାର କାରଣ ହୋଇପାରେ । ଶେଷରେ ପ୍ରଧାନ ଶିକ୍ଷକ ପାତରେ ଅନ୍ତର କରୁଅଛନ୍ତି ବୋଲି ଭ୍ରମ ଧାରଣା ମଧ୍ୟ ସୃଷ୍ଟି ହୋଇପାରେ । ତେଣୁ ବିଦ୍ୟାଳୟରେ ସମସ୍ତ କାର୍ଯ୍ୟ ତାଙ୍କର ପରିଦର୍ଶନର ପରିସରଭୁକ୍ତ ହେବା ବାଞ୍ଛନୀୟ । ବିଦ୍ୟାଳୟରେ ଛାତ୍ରମାନଙ୍କର ଅଧ୍ୟୟନ, ଶିକ୍ଷକମାନଙ୍କର ଶିକ୍ଷାଦାନ

କ୍ରୀଡ଼ାକସରତ, ଛାତ୍ରାବାସରେ ଜୀବନଯାପନ ପ୍ରଣାଳୀ, ଛାତ୍ରାବାସରେ ଦିଆଯାଉଥିବା ଖାଦ୍ୟ, ବିଦ୍ୟାଳୟର ଅଭାବ ଅସୁବିଧା, ଛାତ୍ର ଓ ଶିକ୍ଷକମାନଙ୍କ ପାଇଁ ସରଞ୍ଜାମ, ଉପକରଣ ଓ ଅନ୍ୟାନ୍ୟ ସୁବିଧା ସୁଯୋଗର ଅଭାବ— ଏପରି କୌଣସି ବିଷୟ ନାହିଁ ଯାହା ପ୍ରଧାନ ଶିକ୍ଷକଙ୍କର ପ୍ରତ୍ୟକ୍ଷ ତତ୍ତ୍ୱାବଧାନ ଆବଶ୍ୟକ ନ କରେ । ଯେଉଁଠି ପ୍ରଧାନ ଶିକ୍ଷକ କେବଳ ଅଧିକ ସଂଖ୍ୟକ ପିଲା ପରୀକ୍ଷାରେ ପାସ କରିବା ଉପରେ ଗୁରୁତ୍ୱ ଦିଅନ୍ତି ସେ ନିଜର ଦାୟିତ୍ୱ ସମ୍ବନ୍ଧରେ ସଚେତନ ନୁହନ୍ତି ବୋଲି ମନେ କରିବାକୁ ହେବ କାରଣ ପିଲାର ବୌଦ୍ଧିକ ବିକାଶ ସଙ୍ଗେ ସଙ୍ଗେ ଶାରୀରିକ ଉନ୍ନତି ଓ ନୈତିକ ବିକାଶ ଯେ ଅତ୍ୟାବଶ୍ୟକ ତାହା ସେ ହୃଦୟଙ୍ଗମ କରି ନାହାନ୍ତି ବୋଲି ବିଚାରିବାକୁ ହେବ । ଯାହାହେଉ ମୋଟ ଉପରେ ପ୍ରଧାନ ଶିକ୍ଷକଙ୍କୁ ଏହି ପରିଦର୍ଶନ କାର୍ଯ୍ୟକ୍ରମ ଲାଗି ବହୁ ସମୟ ବ୍ୟୟ କରିବାକୁ ହେବ ।

ପ୍ରଧାନ ଶିକ୍ଷକଙ୍କର ପରିଦର୍ଶନ କାର୍ଯ୍ୟ ପ୍ରଧାନତଃ ତିନି ପ୍ରକାରର । ଏସବୁ ହେଲା—ପ୍ରଥମତଃ, ବିଭିନ୍ନ ପ୍ରକାର ରେଜିଷ୍ଟର ଓ ଆୟ ବ୍ୟୟର ହିସାବ ଯାଞ୍ଚ କରିବା । ଦ୍ୱିତୀୟତଃ; ବିଦ୍ୟାଳୟରେ ଚାଲିଥିବା ଶିକ୍ଷାଦାନ କାର୍ଯ୍ୟକ୍ରମର ତତ୍ତ୍ୱାବଧାନ ଓ ତୃତୀୟତଃ ବିଦ୍ୟାଳୟର ନୈତିକ ମାନର କ୍ରମୋନ୍ନତି ପାଇଁ ଆବଶ୍ୟକ ପରିଦର୍ଶନ ।

## ବିଭିନ୍ନ ରେଜିଷ୍ଟର ଓ ଆୟବ୍ୟୟର ଯାଞ୍ଚ

ପ୍ରତ୍ୟେକ ବିଦ୍ୟାଳୟରେ ବିଭିନ୍ନ ଉଦ୍ଦେଶ୍ୟରେ ବିଭିନ୍ନ ପ୍ରକାର ରେଜିଷ୍ଟର ବ୍ୟବହାର କରାଯାଏ । ରେଜିଷ୍ଟରଗୁଡ଼ିକ ଯାଞ୍ଚ କଲେ ପ୍ରଧାନ ଶିକ୍ଷକ ଅନ୍ୟମାନେ ସେମାନଙ୍କର କର୍ତ୍ତବ୍ୟ ନିଷ୍ଠାପର ଭାବରେ ସମ୍ପାଦନ କରୁଅଛନ୍ତି କି ନାହିଁ ସେ ସମ୍ବନ୍ଧରେ ଅବହିତ ହୁଅନ୍ତି ଓ ସେହି ଅବକାଶରେ ଶିଥିଳ ହୋଇପଡୁଥିବା କର୍ମଚାରୀମାନଙ୍କୁ ସଚେତନ କରିବାର ସୁଯୋଗ ପାଇଥାଆନ୍ତି । ଏହି ଯାଞ୍ଚ କରିବା କାର୍ଯ୍ୟକ୍ରମ ଠିକ ଭାବରେ ଚାଲିଲେ ପ୍ରଧାନ ଶିକ୍ଷକ ଦାୟିତ୍ୱ ତୁଲାଇବାକୁ ଅସମର୍ଥ ହେଉଥିବା ଶିକ୍ଷକମାନଙ୍କୁ ଜାଣିପାରନ୍ତି ଏବଂ ସ୍ଥଳବିଶେଷରେ ବିଭିନ୍ନ ଦାୟିତ୍ୱ ବଣ୍ଟନର ଅଦଳ ବଦଳ କରିପାରନ୍ତି । ଏହା ମଧ୍ୟ ସମ୍ଭବପର ଯେ ଜଣେ ଯେଉଁ ଦାୟିତ୍ୱ ସୁରୁଖୁରୁରେ ବହନ କରିବାକୁ ସମର୍ଥ ସେ ଅନ୍ୟ ଏକ ଦାୟିତ୍ୱ ବହନ କରିବା ହେତୁ ଅସନ୍ତୁଷ୍ଟ ହୋଇଥାଆନ୍ତି । ଏପରି ସ୍ଥଳେ ସାମାନ୍ୟ ଅଦଳ ବଦଳ ଅସନ୍ତୋଷ ଦୂର କରିବା ସଙ୍ଗେ ସଙ୍ଗେ ଦକ୍ଷତାର ସହ କାର୍ଯ୍ୟ କରିବାକୁ କେତେକଙ୍କୁ ସୁଯୋଗ ଦେଇଥାଏ । ତେଣୁ ଏହି ଯାଞ୍ଚ କାର୍ଯ୍ୟକ୍ରମ ନିୟମିତ ଭାବରେ କରାଯିବାହିଁ ପ୍ରଧାନ ଶିକ୍ଷକଙ୍କର ପରିଦର୍ଶନର ଏକ ବୈଶିଷ୍ଟ୍ୟ ହେବା ଉଚିତ ।

ସବୁ ଶ୍ରେଣୀ ରେଜିଷ୍ଟର ପ୍ରତ୍ୟେକ ମାସରେ ଥରେ ଲେଖାଏଁ ଯାଞ୍ଚହେବା ଆବଶ୍ୟକ । ଏହାଦ୍ୱାରା ପ୍ରଧାନ ଶିକ୍ଷକ ତାଙ୍କ [illegible]ରେ ଜାଣିବାର

ସୁଯୋଗ ପାଇବେ ଏବଂ କେଉଁମାନଙ୍କର କାର୍ଯ୍ୟପାଇଁ ଅଧିକ ଧ୍ୟାନ ଆବଶ୍ୟକ ତାହା ମଧ୍ୟ ଜାଣି ପାରିବେ । ତେଣୁ ସମସ୍ତ ରେଜିଷ୍ଟର ଯାଞ୍ଚ ହେବା ଆବଶ୍ୟକ । ଶିକ୍ଷକମାନେ ମଧ୍ୟ ଜାଣିପାରିବେ କିପରି ସେମାନଙ୍କର ନିର୍ଭୁଲ ଭାବରେ କାର୍ଯ୍ୟ କରିବାର ଅଭିପ୍ରାୟ ଥିଲେ ମଧ୍ୟ ଅଜାଣତରେ ଭୁଲ ହୋଇଯାଏ । କେତେକ ନିର୍ଦ୍ଦିଷ୍ଟ ଶ୍ରେଣୀର ବିଦ୍ୟାଳୟ (ଯାହାର ସଂଖ୍ୟା ଶତକଡ଼ା ଏକ ବା ଦୁଇରୁ ଅଧିକ ହେବ ନାହିଁ) ବ୍ୟତୀତ ପ୍ରାୟ ସମସ୍ତ ବିଦ୍ୟାଳୟରେ ଶ୍ରେଣୀ ଶିକ୍ଷକମାନେ ହିଁ ପ୍ରତି ମାସରେ ପିଲମାନଙ୍କଠାରୁ ଦରମା, ଜୋରିମାନା ଓ ଅନ୍ୟାନ୍ୟ ଦେୟ ଅସୁଲ କରିଥାଆନ୍ତି । ଏହି ଯାଞ୍ଚ ଫଳରେ ଟଙ୍କା ପଇସାର ହିସାବରେ ଭୁଲଥିଲେ ଜଣା ପଡ଼ିଯାଏ ଏବଂ ସଙ୍ଗେ ସଙ୍ଗେ ସେହି ଭୁଲ ସଂଶୋଧନ କରାଯାଏ । ନଚେତ ଦୀର୍ଘଦିବ ପରେ ଏହି ପ୍ରକାର ଭୁଲ ଜଣାଗଲେ ଉଭୟ ଶିକ୍ଷକ ଓ ପ୍ରଧାନ ଶିକ୍ଷକ ଅସୁବିଧାରେ ପଡ଼ନ୍ତି ।

ନାମଲେଖା ରେଜିଷ୍ଟର ବିଦ୍ୟାଳୟର ଏକ ପ୍ରଧାନ ଅଭିଲେଖ । ଏହି ରେଜିଷ୍ଟରରେ ପିଲର ବୟସ ଓ ଅନ୍ୟାନ୍ୟ ଅବଗତି ନିର୍ଭୁଲ ଭାବରେ ଲିପିବଦ୍ଧ ହୋଇଥାଏ ଏବଂ ଦରକାର ହେଲେ ଛାତ୍ରଛାତ୍ରୀ ବିଦ୍ୟାଳୟ ପରିତ୍ୟାଗ କରିବାର ବହୁବର୍ଷ ପରେ ମଧ୍ୟ ଏହି ଅଭିଲେଖ ଏକ ଲିଖିତ ପ୍ରମାଣ୍ୟ ବସ୍ତୁ ଭାବରେ ନ୍ୟାୟାଳୟରେ ଉପସ୍ଥାପନ କରାଯାଏ । ତେଣୁ ବିଦ୍ୟାଳୟ ଆରମ୍ଭ ହେବାର ଦୁଇମାସ ପରେ ଯେତେବେଳେ ଅଧିକାଂଶ ନାମଲେଖା ସରିଯାଇଥାଏ, ସେତେବେଳେ ଏହି ରେଜିଷ୍ଟର ଯାଞ୍ଚ କରିନେବା ପ୍ରଧାନ ଶିକ୍ଷକଙ୍କ ପକ୍ଷେ ଏକାନ୍ତ ପ୍ରୟୋଜନ । ପରେ ବର୍ଷ ମଧ୍ୟରେ ଆଉଥରେ ଏହା ଯାଞ୍ଚ ହେବା ଆବଶ୍ୟକ; କାରଣ କେତେକ ବିଶେଷ ପରିସ୍ଥିତିରେ ବର୍ଷର ଅନ୍ୟାନ୍ୟ ମାସଗୁଡ଼ିକରେ ମଧ୍ୟ ନାମଲେଖା ହୁଏ ଏବଂ କୌଣସି ନା କୌଣସି କାରଣରୁ ପ୍ରାୟ ପ୍ରତ୍ୟେକ ମାସରେ କେହି ନା କେହି ଛାତ୍ର ବିଦ୍ୟାଳୟ ପରିତ୍ୟାଗ କରୁଥାଆନ୍ତି ।

ବର୍ଷସାରା ବିଦ୍ୟାଳୟ ପାଇଁ କୌଣସି ନା କୌଣସି ଉପକରଣ ଖର୍ଦ୍ଦି ହେଉଥାଏ । ବିଭିନ୍ନ ଉପକରଣ ବିଭିନ୍ନ ଶିକ୍ଷକଙ୍କ ଦାୟିତ୍ୱରେ ରଖାଯାଇଥାଏ; ଯଥା—ବିଜ୍ଞାନ ଶିକ୍ଷକ ବିଜ୍ଞାନ ଉପକରଣ ଦାୟିତ୍ୱରେ, ଶାରୀରିକ ଶିକ୍ଷା ଦେଉଥିବା ଶିକ୍ଷକ କ୍ରୀଡ଼ା ଉପକରଣ ଦାୟିତ୍ୱରେ, ଜଣେ ଶିକ୍ଷକ ପାଠାଗାର ଦାୟିତ୍ୱରେ, ବିଦ୍ୟାଳୟର କିରାନି ଚୌକି, ଟେବୁଲ, ଆଲମାରି ଇତ୍ୟାଦି ଦାୟିତ୍ୱରେ ଥାଆନ୍ତି । ଯେତେବେଳେ ଯେଉଁ ଉପକରଣ ଖର୍ଦ୍ଦି କରାଯାଏ ସେଗୁଡ଼ିକ ସମ୍ପୃକ୍ତ ଶିକ୍ଷକ ବା କିରାନି ତତ୍ସମ୍ପୃକ୍ତ ଷ୍ଟକ୍ ରେଜିଷ୍ଟରରେ ଲିପିବଦ୍ଧ କରି ପ୍ରଧାନ ଶିକ୍ଷକଙ୍କର ଦସ୍ତଖତ କରାଇନେବା ଉଚିତ । ଏତଦ୍‌ବ୍ୟତୀତ ବର୍ଷ ଶେଷରେ ବିଭିନ୍ନ ବିଭାଗୀୟ ଷ୍ଟକ ରେଜିଷ୍ଟରଗୁଡ଼ିକ ଅନ୍ୟ ଶିକ୍ଷକ-ମାନଙ୍କଦ୍ୱାରା ଯାଞ୍ଚ କରାଯାଇ ନଷ୍ଟ ହୋଇଯାଇଥିବା, ହଜିଯାଇଥିବା ବା ବ୍ୟବହାର

ଅନୁପଯୋଗୀ ହୋଇଥିବା ଉପକରଣଗୁଡ଼ିକର ଏକ ରିପୋର୍ଟ ପ୍ରଧାନ ଶିକ୍ଷକଙ୍କ ପାଖରେ ଦାଖଲ ହେବା ଉଚିତ । ଏହି ସମସ୍ତ ଯାଞ୍ଚକାର୍ଯ୍ୟ ପାଇଁ ପ୍ରଧାନ ଶିକ୍ଷକ ଯଥା ସମୟରେ ଆନୁଷଙ୍ଗିକ ବ୍ୟବସ୍ଥା କରିବା ଦରକାର ।

ଟଙ୍କା ପଇସା ହିସାବ ରଖାଯାଉଥିବା ବହି ବା କ୍ୟାସ୍ ବହି ପ୍ରତ୍ୟେକ ଦିନ ଲେଖାଯିବା ଉଚିତ । ବିଦ୍ୟାଳୟର କୌଣସି କାର୍ଯ୍ୟପାଇଁ ଯେଉଁଦିନ ବ୍ୟାଙ୍କ, ଟ୍ରେଜେରୀ ବା ପାସ ବହିରୁ ଟଙ୍କା ଆସିବ ତାହା ସେହିଦିନ କ୍ୟାସ୍ ବହିରେ ଲିପିବଦ୍ଧ ହେବା ଉଚିତ । ସେହିପରି ଯେଉଁଦିନ ଯାହାକୁ ଯାହା ଟଙ୍କା ଦିଆଗଲା ତା'ର ମଧ୍ୟ ହିସାବ ରହିବା ଆବଶ୍ୟକ । ଗୋଟିଏ ଦିନର ଆୟବ୍ୟୟ ଅନ୍ୟଦିନ କ୍ୟାସ ବହିରେ ଦର୍ଶାଯାଇଥିଲେ ତାହା ଆଇନାନୁମୋଦିତ ହେବ ନାହିଁ ଏବଂ ଏଥିପାଇଁ ପ୍ରଧାନ ଶିକ୍ଷକ ଦଣ୍ଡନୀୟ ହୋଇ ପାରନ୍ତି । ତେଣୁ ଏ ସବୁ ବିଷୟରେ ବିଦ୍ୟାଳୟର ସମସ୍ତ ଅଭିଲେଖ ସମ୍ପୂର୍ଣ୍ଣ ତ୍ରୁଟିମୁକ୍ତ ହେବା ଆବଶ୍ୟକ ଯେପରି କୌଣସି ସମୟରେ କାହାରି ସନ୍ଦେହର ଅବକାଶ ରହିବ ନାହିଁ । ଶିକ୍ଷକମାନଙ୍କୁ ଯେଉଁଦିନ ଦରମା ଦିଆଯାଏ ସେହିଦିନ ଶିକ୍ଷକମାନଙ୍କର ବେତନ ଖାତା ( Aquittance roll ରେ ଲିଖନ ( entries ) ସମ୍ପୂର୍ଣ୍ଣ ହେବା ଦରକାର । ସରକାରୀ ବିଦ୍ୟାଳୟ ହେଉ ବା ବେସରକାରୀ ବିଦ୍ୟାଳୟ ହେଉ ଶିକ୍ଷକମାନେ ଯେପରି ମାସର ପ୍ରଥମ କାର୍ଯ୍ୟ ଦିବସରେ ବିଗତ ମାସର ବେତନ ପାଆନ୍ତି ସେଥିପ୍ରତି ପ୍ରଧାନ ଶିକ୍ଷକ ଯତ୍ନବାନ ହେବା ଉଚିତ । ବେସରକାରୀ ବିଦ୍ୟାଳୟରେ ସାମୟିକ ଆର୍ଥିକ ଅସୁବିଧା ଦେଖା ଯାଇପାରେ, ମାତ୍ର ସମସ୍ତ ସମୟରେ କେତେକ ସରକାରୀ ବିଦ୍ୟାଳୟର ପ୍ରଧାନ ଶିକ୍ଷକମାନେ କାର୍ଯ୍ୟବ୍ୟସ୍ତତା ଆଳରେ ଠିକ୍ ସମୟରେ ଶିକ୍ଷକମାନଙ୍କ ବେତନ ଦେବା ପାଇଁ ତତ୍ପର ହୁଅନ୍ତି ନାହିଁ । ଫଳରେ ଶିକ୍ଷକମାନେ ମାସର ଦ୍ୱିତୀୟ, ତୃତୀୟ, ଚତୁର୍ଥ—ଯେ କୌଣସି ଦିବସରେ ବେତନ ପାଉଥାଆନ୍ତି । ପ୍ରଧାନ ଶିକ୍ଷକଙ୍କର ସମସ୍ତ କାର୍ଯ୍ୟବ୍ୟସ୍ତତା ମଧ୍ୟରେ ଶିକ୍ଷକମାନଙ୍କୁ ଠିକ୍ ସମୟରେ ବେତନ ଦେଇ ନ ପାରିବା ଅପାରଗତା ରୂପେ ଗଣ୍ୟ ହେବ । ଯେଉଁ ବେସରକାରୀ ବିଦ୍ୟାଳୟଗୁଡ଼ିକରେ ଶିକ୍ଷକମାନଙ୍କ ପାଇଁ ବିଦ୍ୟାଳୟ ତରଫରୁ ଆନୁପାତିକ ଭବିଷ୍ୟନିଧି ( Provident fund ) ଜମା ଦିଆଯାଏ ତାହା ପ୍ରତ୍ୟେକ ମାସର ୪ ତାରିଖ ପୂର୍ବରୁ ଜମା ହେବା ବାଞ୍ଛନୀୟ । ଜିଲ୍ଲା ନଙ୍କର ଉପସ୍ଥାନ ରେଜିଷ୍ଟର ଯାଞ୍ଚ କରାଯିବା ସମୟରେ ପିଲାମାନଙ୍କଠାରୁ ଅସୁଲ ହୋଇଥିବା ଦରମା ଓ ଅନ୍ୟାନ୍ୟ ଦେୟର ପରିମାଣ ଯାଞ୍ଚ କରାଯାଇ ତାହା ଜମା ବହି ବା ବ୍ୟାଙ୍କ ବହିରେ ଠିକ ଲିପିବଦ୍ଧ ହୋଇଅଛି କି ନାହିଁ ମିଳାଇ ଦିଆଯିବା ଉଚିତ । ଯେଉଁ ବେସରକାରୀ ବିଦ୍ୟାଳୟର ପରିଚାଳନା ମୁଖ୍ୟତଃ ପରିଚାଳନା ସମିତି ( Managing Committee ) ହସ୍ତରେ ନ୍ୟସ୍ତ ସେହିଠାରେ ପ୍ରଧାନ ଶିକ୍ଷକ ପ୍ରତ୍ୟେକ ମାସ ଶେଷରେ ସମିତି ବା ସମିତିର ସମ୍ପାଦକଙ୍କୁ ସର୍ବଶେଷ ଜମା

ଖର୍ଚ୍ଚ ହିସାବ ସମ୍ବନ୍ଧରେ ଅଭିହିତ କରିଦେବା ଆବଶ୍ୟକ । ପ୍ରଧାନ ଶିକ୍ଷକ ସ୍ପଷ୍ଟଭାବରେ ଜାଣିରଖିବା ଉଚିତ ଯେ ଯେ ଯଦିଚ ଅଧିକାଂଶ କ୍ଷେତ୍ରରେ ଟଙ୍କା ପଇସା ଦେଣନେଣରେ ସିଧାସଳଖ ସମ୍ପୃକ୍ତ ନୁହନ୍ତି ଏବଂ ହିସାବପତ୍ର କାଗଜ ବିଦ୍ୟାଳୟର ଭିନ୍ନ ଭିନ୍ନ ଶିକ୍ଷକ ତଥା କିରାଣିଙ୍କ ଦ୍ୱାରା ରଖା ହୋଇଥାଏ, ତଥାପି ସେ ଏ କ୍ଷେତ୍ରରେ ତ୍ରୁଟି ବା ବ୍ୟତିକ୍ରମ ପାଇଁ ଶେଷକୁ ଦାୟୀ ହେବେ । ତେଣୁ ଟଙ୍କା ପଇସାର ହିସାବ କ୍ଷେତ୍ରରେ ପ୍ରଧାନ ଶିକ୍ଷକଙ୍କର ନିରବଚ୍ଛିନ୍ନ ସତର୍କ ଦୃଷ୍ଟି ରହିବା ଆବଶ୍ୟକ ।

## ଛାତ୍ରପାଣ୍ଠି

ବିଭିନ୍ନ ପ୍ରକାର ଛାତ୍ରପାଣ୍ଠି ପ୍ରଧାନ ଶିକ୍ଷକଙ୍କର ନିୟନ୍ତ୍ରଣାଧୀନରେ ଥାଏ; ଯଥା—କ୍ରୀଡ଼ା ପାଣ୍ଠି, ଗରିବ ଛାତ୍ର ପାଣ୍ଠି, ପରୀକ୍ଷା ପାଣ୍ଠି, ପାଠାଗାର ପାଣ୍ଠି, ପତ୍ରିକା ପାଣ୍ଠି ଇତ୍ୟାଦି । ସାଧାରଣତଃ ପ୍ରଧାନ ଶିକ୍ଷକମାନେ ଏହି ପାଣ୍ଠିର ଦାୟିତ୍ୱ କିରାଣି ବା ବରିଷ୍ଠୋନ୍ନେୟସ୍ତ ଶିକ୍ଷକଙ୍କ ହସ୍ତରେ ଅର୍ପଣ କରିଥାଆନ୍ତି । ତଥାପି ପିଲମାନଙ୍କଠାରୁ ଆଦାୟ ହେଉଥିବା ଟଙ୍କା ଠିକ୍ ଭାବରେ ଜମା ହୋଇଅଛି କି ନାହିଁ ତାହା ପ୍ରଧାନ ଶିକ୍ଷକ ନିଜେ କ୍ୟାସ ବହି ଓ ଜମା ବହି ସହ ମିଳାଇ ଦେଖିନେବା ଆବଶ୍ୟକ । ସେହିପରି ଯେତେବେଳେ ଖର୍ଚ୍ଚର ଆବଶ୍ୟକତା ପଡ଼ିବ କିରାଣି ବା ସମ୍ପୃକ୍ତ ଶିକ୍ଷକ, ପ୍ରଧାନ ଶିକ୍ଷକଙ୍କୁ ଜଣାଇ ବ୍ୟାଙ୍କରୁ ଟଙ୍କା ଆଣି ଖର୍ଚ୍ଚର ବ୍ୟବସ୍ଥା କରିବେ । ଗରିବ ଛାତ୍ରପାଣ୍ଠିରୁ ପିଲମାନଙ୍କୁ ସାହାଯ୍ୟ ଦିଆଯାଇଥାଏ । ଏହାର ମୁଖ୍ୟ ଉଦ୍ଦେଶ୍ୟ ହେଉଛି ଯେ ଆର୍ଥିକ ସାହାଯ୍ୟ ଗରିବ ଛାତ୍ରମାନଙ୍କୁ ସେମାନଙ୍କର ବିଦ୍ୟାଳୟରେ ଦରମା ଦେବାରେ ସହାୟକ ହେବ । ତେଣୁ ବିଦ୍ୟାଳୟର ଦରମା ଦେବା ତାରିଖ ପୂର୍ବରୁ ଏହି ଟଙ୍କା ପିଲମାନଙ୍କୁ ଦେଇ ନ ଦେଲେ ଏହି ଆର୍ଥିକ ସାହାଯ୍ୟ ଫଳପ୍ରଦ ହେବ ନାହିଁ । ଏହି ପାଣ୍ଠି ଦାୟିତ୍ୱରେ ଥିବା ଶିକ୍ଷକ କେତେ ଟଙ୍କା ସାହାଯ୍ୟପାଇଁ ଦରକାର ତାହା ପ୍ରଧାନ ଶିକ୍ଷକଙ୍କୁ କହି ବ୍ୟାଙ୍କରୁ ଅଣାଇ ପିଲମାନଙ୍କ ମଧ୍ୟରେ ବିତରଣ କରାଇବାର ବ୍ୟବସ୍ଥା କରିବେ । ସେହିପରି ପରୀକ୍ଷା ତତ୍ତ୍ୱାବଧାନରେ ଥିବା ଶିକ୍ଷକ ଆବଶ୍ୟକ କାଗଜ, କାଳି ଇତ୍ୟାଦି ବିଭିନ୍ନ ପରୀକ୍ଷା ଉପକରଣ କେତେ ଦରକାର ଓ କେତେଟଙ୍କା ଗଚ୍ଛିତ ପାଣ୍ଠିରୁ ଆଣିବା ଦରକାର ସେ ସମ୍ବନ୍ଧରେ ପ୍ରଧାନ ଶିକ୍ଷକଙ୍କୁ ଅଭିହିତ କରାଇ ପରୀକ୍ଷାର ଯଥେଷ୍ଟ ଆଗରୁ ପିଲମାନଙ୍କ ଲାଗି ଆବଶ୍ୟକ ଖାତା, ଗ୍ରାଫ୍ କାଗଜ, ସୂତା, ଇତ୍ୟାଦି ରଖିଥିବା ଦରକାର । ଏସବୁ କାର୍ଯ୍ୟ ଉପଯୁକ୍ତ ବ୍ୟକ୍ତିମାନଙ୍କ ଦାୟିତ୍ୱରେ ସୁରୁଖୁରୁରେ ନ ଚାଲିଲେ ଶେଷରେ ପ୍ରଧାନ ଶିକ୍ଷକହିଁ ଅସୁବିଧାର ସମ୍ମୁଖୀନ ହେବେ । ତେଣୁ ବିଭିନ୍ନ ବ୍ୟକ୍ତିଙ୍କୁ ଦାୟିତ୍ୱ ଦେବା ପ୍ରଧାନ କଥା ନୁହେଁ, ଉପଯୁକ୍ତ ବ୍ୟକ୍ତିଙ୍କୁ ଦାୟିତ୍ୱ ଦେବାହିଁ ପ୍ରଧାନ କଥା । ତଥାପି ପ୍ରଧାନ ଶିକ୍ଷକଙ୍କ ପକ୍ଷେ ପ୍ରତି ମାସରେ ଏହିସବୁ ପାଣ୍ଠିର ଅନ୍ତତଃ ଥରେ ଯାଞ୍ଚ କରିନେବା ଆବଶ୍ୟକ । ପ୍ରଧାନ ଶିକ୍ଷକମାନେ ଆଉ ଗୋଟିଏ ବିଷୟ ସ୍ମରଣ ରଖିବା ଉଚିତ—ତାହା ହେଉଛି

ଏହି ସବୁ ପାଣ୍ଠି ହେଉଛି ନ୍ୟାସପାଣ୍ଠି (Trust Fund) ଯାହା ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟରେ ପିଲାମାନଙ୍କ ଠାରୁ ଆଦାୟ ହୋଇଛି । ତେଣୁ ଗୋଟିଏ ପାଣ୍ଠି ପାଇଁ ଆଦାୟ ହୋଇଥିବା ଟଙ୍କା ଯେପରି ଅନ୍ୟ ଉପରେ ବ୍ୟୟ କରା ନ ଯାଏ ସେଥିପାଇଁ ସଜାଗ ହେବା ହେଉଛି ପ୍ରଧାନ ଶିକ୍ଷକଙ୍କର ଅନ୍ୟତମ କର୍ତ୍ତବ୍ୟ ।

### ଛାତ୍ରାବାସ

ବିଦ୍ୟାଳୟର ଅନ୍ୟାନ୍ୟ ରେଜିଷ୍ଟର ପରି ଛାତ୍ରାବାସର ଉପସ୍ଥାନ ରେଜିଷ୍ଟର, ଆୟବ୍ୟୟର ହିସାବ ବହି ପ୍ରତି ମାସରେ ଥରେ ପ୍ରଧାନ ଶିକ୍ଷକଙ୍କ ଦ୍ୱାରା ଯାଞ୍ଚ ହେବା ବାଞ୍ଛନୀୟ । ଛାତ୍ରାବାସର ବିଭିନ୍ନ ଉପକରଣ ପ୍ରତିବର୍ଷ ଥରେ ଯାଞ୍ଚ ହେବା ଆବଶ୍ୟକ । ଏଥିପାଇଁ ଛାତ୍ରାବାସର ଗୋଟିଏ ପୃଥକ୍ ଷ୍ଟକ୍ ବହି ଥିବା ଆବଶ୍ୟକ ।

କୌଣସି ଷ୍ଟକ୍ ବହିରୁ କୌଣସି ଜିନିଷ ପରିଚାଳନା କମିଟିର ବିନାନୁମତିରେ କାଟି ଦିଆଯାଇ ନ ପାରେ । ଯେଉଁ ଜିନିଷ ବା ଉପକରଣଗୁଡ଼ିକ ବ୍ୟବହାର ପାଇଁ ଅନୁପଯୋଗୀ ହୋଇପଡ଼ିବ ସେ ସବୁର ତାଲିକା କରି ପ୍ରଧାନ ଶିକ୍ଷକ ସେଗୁଡ଼ିକ ଷ୍ଟକ୍ ବହିରୁ କାଟି ଦେବା ପାଇଁ ପରିଚାଳନା ସମିତିର ଅନୁମତି ନେବେ ।

### ଶିକ୍ଷାଦାନ କାର୍ଯ୍ୟକ୍ରମର ତତ୍ତ୍ୱାବଧାନ

ସହଜରେ ଶିକ୍ଷାଦାନ କାର୍ଯ୍ୟକ୍ରମର ତତ୍ତ୍ୱାବଧାନ କରିବା ପାଇଁ ପ୍ରଥମେ ପାଠ୍ୟକ୍ରମର ସୁସଙ୍ଗଠନ ଦରକାର । ଶିକ୍ଷାବର୍ଷର ଆରମ୍ଭରୁ ଗୋଟିଏ ବିଷୟ ପଢ଼ାଉଥିବା ଶିକ୍ଷକମାନେ ମିଳିତ ହୋଇ ସେହି ବିଷୟଟି କେଉଁ ଶ୍ରେଣୀରେ କେଉଁ ମାସରେ କ'ଣ ପଢ଼ା ହେବ ତାର ଏକ ବିଧିବଦ୍ଧ ଯୋଜନା ପ୍ରସ୍ତୁତ କରିବା ଦରକାର । ପାଠ୍ୟ ନିର୍ଘଣ୍ଟର ଏହି ବିଭଜନ ବର୍ଷ ଆରମ୍ଭରୁ ସ୍ୱୀକୃତ ହେବା ଆବଶ୍ୟକ ଏବଂ ପ୍ରଧାନ ଶିକ୍ଷକ ବିଭାଗୀୟ ବୈଠକଗୁଡ଼ିକରେ ଉପସ୍ଥିତ ହୋଇ ଆବଶ୍ୟକ ପରାମର୍ଶ ଦେଇପାରନ୍ତି । ଏହାଫଳରେ ପ୍ରଧାନ ଶିକ୍ଷକ ଯେତେବେଳେ ଚାହିଁବେ ସେତେବେଳେ ପାଠ୍ୟକ୍ରମର ଅଗ୍ରଗତି ଠିକ୍ ଭାବରେ ହୋଇଅଛି କି ନାହିଁ ତାହା ସହଜରେ ଜାଣିପାରିବେ । ଶ୍ରେଣୀରେ ପାଠପଢ଼ା ଚାଲିଥିବା ସମୟରେ ଶ୍ରେଣୀ ପରିଦର୍ଶନ କରିବା ପ୍ରଧାନ ଶିକ୍ଷକଙ୍କର ଅନ୍ୟତମ କର୍ତ୍ତବ୍ୟ । ଏହା ବର୍ଷର ସବୁ ସମୟରେ ନିୟମିତ ଭାବରେ କରାଯାଇପାରେ । ଏଥିପାଇଁ କୌଣସି କାର୍ଯ୍ୟକ୍ରମ ଆଗରୁ ନିର୍ଦ୍ଧାରଣ କରି ଅନ୍ୟମାନଙ୍କୁ ଜଣାଇବାର କୌଣସି ଆବଶ୍ୟକତା ନାହିଁ, ତେବେ ପ୍ରଧାନ ଶିକ୍ଷକ ନିଜର ସୁବିଧା ପାଇଁ ଏକ ସୁସଙ୍ଗଠିତ ଯୋଜନା କରି ନିଜ ପାଖରେ ରଖି ପାରନ୍ତି ଓ ତଦନୁଯାୟୀ ତାଙ୍କର ଏହି କର୍ତ୍ତବ୍ୟ ସମ୍ପାଦନ କରିପାରନ୍ତି । ପରିଦର୍ଶନ

ଶେଷରେ ସେ ତାଙ୍କର ମନ୍ତବ୍ୟ ଏଥିପାଇଁ ଥିବା ଏକ ନିର୍ଦ୍ଦିଷ୍ଟ ବହିରେ ଲେଖି ସଂପୃକ୍ତ ଶିକ୍ଷକଙ୍କ ପାଖକୁ ପଠାଇ ଦେବା ଉଚିତ ଏବଂ ସମ୍ପୃକ୍ତ ଶିକ୍ଷକ ତାହା ଦେଖି ସେଥିରେ ଦସ୍ତଖତ କରି ପ୍ରଧାନ ଶିକ୍ଷକଙ୍କ ପାଖକୁ ପଠାଇଦେବା ଆବଶ୍ୟକ । ପରିଦର୍ଶନ ମନ୍ତବ୍ୟ-ଗୁଡ଼ିକ ଶ୍ରେଣୀ-ପରିଦର୍ଶନ କ୍ରମ ଅନୁସାରେ ପରେ ପରେ ନ ଲେଖି ବହିକୁ ବିଷୟ ଅନୁସାରେ ବିଭିନ୍ନ ଭାଗରେ ବିଭକ୍ତ କରାଯିବା ଦରକାର । ତାପରେ ପ୍ରତ୍ୟେକ ବିଷୟରେ ବିଭକ୍ତ ହୋଇଥିବା ଅଂଶଗୁଡ଼ିକୁ ଶ୍ରେଣୀ ଅନୁସାରେ ଭାଗ ଭାଗ କରି ସେହି ଭାଗଗୁଡ଼ିକରେ ମନ୍ତବ୍ୟ ଲେଖିବା ଦରକାର । ଏହା ଦ୍ୱାରା କାର୍ଯ୍ୟକ୍ରମଟି ଶୃଙ୍ଖଳିତ ଉପାୟରେ ସମ୍ପାଦିତ ହେବା ସଙ୍ଗେ ସଙ୍ଗେ ଯେ କୌଣସି ସମୟରେ କେଉଁ ବିଷୟ ବା ଶ୍ରେଣୀର କାର୍ଯ୍ୟ ଆଦୌ ଯାଞ୍ଚ ହୋଇନାହିଁ ତାହା ମଧ୍ୟ ଜାଣି ହେବ ।

ପ୍ରଧାନ ଶିକ୍ଷକ ସ୍ମରଣ ରଖିବା ଉଚିତ ଯେ ତାଙ୍କର ମନ୍ତବ୍ୟଗୁଡ଼ିକ ଗଠନ-ମୂଳକ ହେବା ଦରକାର । ସେ ଶିକ୍ଷକଙ୍କର ଦୋଷଦୁର୍ବଳତା ବାଛି ତାହାଙ୍କୁ ଅପଦସ୍ତ କରିବା ଶ୍ରେଣୀ-ପରିଦର୍ଶନର ଉଦ୍ଦେଶ୍ୟ ନୁହେଁ । କେଉଁ ପରିସ୍ଥିତିରେ କେଉଁ ବିଷୟଟି ଶିକ୍ଷକ ଶିକ୍ଷାଦାନ କରୁଅଛନ୍ତି ଓ ଶିକ୍ଷକଙ୍କର ଅଭିଜ୍ଞତା ସାମର୍ଥ୍ୟ, ଦକ୍ଷତା କେତେ ଏ ସମସ୍ତ ବିଷୟ ବିଚାର କରି ପ୍ରଧାନ ଶିକ୍ଷକ ଏପରି ଭାବରେ ଦୋଷ ଦୁର୍ବଳତା ସୂଚାଇଦେବେ ଯାହା-ଦ୍ୱାରା ଶିକ୍ଷକ ରୁଷ୍ଟ ନ ହୋଇ ବରଂ ପ୍ରଧାନ ଶିକ୍ଷକଙ୍କର ପରିଦର୍ଶନକୁ ସ୍ୱାଗତ କରିବେ । ବିଶେଷତଃ ଯେଉଁ ବିଦ୍ୟାଳୟରେ ପ୍ରଧାନ ଶିକ୍ଷକ ଓ ଅନ୍ୟାନ୍ୟ ଶିକ୍ଷକମାନଙ୍କ ମଧ୍ୟରେ ସ୍ନେହ, ସଦିଚ୍ଛା ଓ ସହଯୋଗର ବାତାବରଣ ସୃଷ୍ଟି ହୋଇଥାଏ, ସେଠାରେ ଶିକ୍ଷକମାନେ ପ୍ରଧାନ ଶିକ୍ଷକଙ୍କ ମନ୍ତବ୍ୟକୁ ବିରୋଧ କରିବାର ଅବକାଶ ରହିବ ନାହିଁ । ପ୍ରଧାନ ଶିକ୍ଷକ ମଧ୍ୟ ନିଜ ଜ୍ଞାନ ଗରିମାର ସୀମାତିକ୍ରମ କରିବା ଉଚିତ ନୁହେଁ । ସେ ଭଲ ଭାବରେ ଜାଣିବା ଉଚିତ ଯେ ଯେଉଁ ଶିକ୍ଷାଦାନ ପ୍ରଣାଳୀରେ ସେ ଅଭ୍ୟସ୍ତ ତାହା ଏକମାତ୍ର ପ୍ରଣାଳୀ ନୁହେଁ । ତେଣୁ ପ୍ରଧାନ ଶିକ୍ଷକ ଯଦି କୌଣସି ଶିକ୍ଷାଦାନ ପ୍ରଣାଳୀ ବା ବିଷୟବସ୍ତୁ ଉପରେ ତାଙ୍କର ମତାମତ ନିର୍ଭୁଲ ବୋଲି ନିଶ୍ଚିତ ଭାବରେ ବିଚାର କରୁଥାଆନ୍ତି ତେବେ ସମ୍ପୃକ୍ତ ଶିକ୍ଷକଙ୍କୁ ଡକାଇ ତାଙ୍କ ସହ ଆଲୋଚନା କରିନେବା ଉଚିତ । ଏହି ପନ୍ଥାରେ ଅଯଥା ଭୁଲ ବୁଝାମଣାର କୌଣସି କାରଣ ରହିବ ନାହିଁ । ଯାହାହେଉ କୌଣସି ଆଲୋଚନା ଶ୍ରେଣୀରେ ଛାତ୍ରମାନଙ୍କ ସମ୍ମୁଖରେ କରାଯିବା ଆଦୌ ଉଚିତ ନୁହେଁ ।

ସମସ୍ତ ସମୟରେ ଏପରି ପରିସ୍ଥିତି ଉପୁଜେ ଯେଉଁଠାରେ ପ୍ରଧାନ ଶିକ୍ଷକ ଶିକ୍ଷକଙ୍କର ତ୍ରୁଟି ସେହିଠାରେ ସୂଚାଇ ଦେବା ଅତ୍ୟାବଶ୍ୟକ ହୋଇଥାଏ । ଉଦାହରଣ-ସ୍ୱରୂପ ଯଦି ଶିକ୍ଷକ ଶ୍ରେଣୀରେ ମାତୃଭାଷା ବା ଇଂରାଜୀ ପଢ଼ାଇବାବେଳେ ଏକ ଶବ୍ଦର ଅର୍ଥ ଭୁଲ କରୁଅଛନ୍ତି, ଏକ ରସାୟନିକ ପ୍ରକ୍ରିୟାର କାରଣ ଭୁଲ ବୁଝାଉଅଛନ୍ତି, ଏକ

ଗଣିତ ପ୍ରଶ୍ନର ସମାଧାନ ଭୁଲ କରିଅଛନ୍ତି ତେବେ ସେହିଠାରେ ସେ ଭୁଲ ସଂଶୋଧିତ ନ ହେଲେ ଛାତ୍ରମାନଙ୍କ ମନରେ ଏକ ଭୁଲ ଧାରଣା ରହିଯିବ । ଏପରି କ୍ଷେତ୍ରରେ କେବଳ ବନ୍ଧୁତାର ବାତାବରଣ ଅତୁଟ ରଖିବା ପାଇଁ ପ୍ରଧାନ ଶିକ୍ଷକ ବିଦ୍ୟାଳୟ ପ୍ରତି ନିଜର କର୍ତ୍ତବ୍ୟ ଭୁଲିଯିବା ଉଚିତ ନୁହେଁ । ସେ ସେହିଠାରେ ଭୁଲ ସଂଶୋଧନ କରିପାରନ୍ତି ମାତ୍ର ତାଙ୍କ ଏହା ଏପରି ଚତୁରତା ଓ ବିଜ୍ଞତାର ସହ କରିବାକୁ ହେବ ଯେପରି ତାହା ଛାତ୍ରମାନଙ୍କ ସମ୍ମୁଖରେ ଶିକ୍ଷକଙ୍କର ସମ୍ମାନ ହ୍ରାସ ପାଇବ ନାହିଁ । ସ୍ଥଳବିଶେଷରେ ପ୍ରଧାନ ଶିକ୍ଷକ ନିଜେ ବିଷୟଟିକୁ ପଢ଼ାଇବାପାଇଁ ଅଗ୍ରସର ହୋଇ ଶିକ୍ଷାଦାନ ସମୟରେ ଭୁଲଟିକୁ ସୁଧାରି ନେଇପାରନ୍ତି ।

ସମସ୍ତ ସମୟରେ ପ୍ରଶ୍ନ ଉଠେ ଯେ ପ୍ରଧାନ ଶିକ୍ଷକ ଯେଉଁ ବିଷୟରେ ସ୍ନାତକ ନୁହଁନ୍ତି, ସେ ସେହି ବିଷୟ ପଢ଼ା ହେଉଥିବା ଶ୍ରେଣୀ ପରିଦର୍ଶନ କରିବା ଉଚିତ କି ? ପ୍ରଧାନ ଶିକ୍ଷକଙ୍କର ଯେ କୌଣସି ଶ୍ରେଣୀ ପରିଦର୍ଶନ କରିବାର ଅଧିକାର ରହିଅଛି ଓ ପରିଦର୍ଶନ କରିବା ଉଚିତ ମଧ୍ୟ । ପ୍ରଧାନ ଶିକ୍ଷକ ସଂପୃକ୍ତ ବିଷୟରେ ସ୍ନାତକ ନ ହୋଇଥିଲେ ମଧ୍ୟ ସେ ଯେ କିଛି ବୁଝିପାରିବେ ନାହିଁ, ଏପରି ନୁହେଁ । ଶିକ୍ଷକଙ୍କର ଶିକ୍ଷାଦାନ ଶୈଳୀ, ଭାବପ୍ରକାଶ କରିବାର ଅଭିବ୍ୟକ୍ତି, ଛାତ୍ରମାନଙ୍କର ଲବ୍ଧଜ୍ଞାନ ଇତ୍ୟାଦି ଅନେକ ବିଷୟରେ ସେ ସ୍ପଷ୍ଟ ଧାରଣା କରିପାରିବେ । ବିଜ୍ଞାନ ନ ପଢ଼ିଥିବା ପ୍ରଧାନ ଶିକ୍ଷକ ଗୋଟିଏ ବିଜ୍ଞାନ ଶ୍ରେଣୀରେ ହେଉଥିବା ପରୀକ୍ଷା ଦେଖି ଯଦି କିଛି ବୁଝି ନ ପାରିବେ ତେବେ ଛାତ୍ରମାନେ ବୁଝିପାରିବା କିପରି ଆଶା କରାଯିବ । ତାଙ୍କର ପୂର୍ବଜ୍ଞାନ ଅଭାବରୁ କେତେକ ବିଷୟର କାରଣ ବୁଝିବା କଷ୍ଟକର ହୋଇପାରେ ମାତ୍ର ସେ କିଛି ବୁଝି ପାରିବେ ନାହିଁ ବୋଲି ଭାବିବା ଭ୍ରମାତ୍ମକ । ସେହିପରି ବିଜ୍ଞାନରେ ସ୍ନାତକ ହୋଇଥିବା ଜଣେ ପ୍ରଧାନ ଶିକ୍ଷକ ସଂପୃକ୍ତ ଶ୍ରେଣୀ ପରିଦର୍ଶନ କରି ଯଦି ବିଷୟବସ୍ତୁ ସମ୍ବନ୍ଧରେ କିଛି ଧାରଣା କରି ନ ପାରନ୍ତି ତେବେ ଛାତ୍ରମାନେ ମଧ୍ୟ ବିଷୟଟିକୁ ବୁଝିପାରି ନ ଥିବାର ସମ୍ଭାବନା ଯଥେଷ୍ଟ ଅଧିକ । ଯାହାହେଉ ପ୍ରଧାନ ଶିକ୍ଷକ ମଧ୍ୟ ବିଭିନ୍ନ ବିଷୟର ପାଠ୍ୟକ୍ରମ ସହ ସମ୍ପର୍କ ରଖି ଓ ସମ୍ପୃକ୍ତ ଶିକ୍ଷକମାନଙ୍କ ସହ ଆଲୋଚନା କରି ନିଜର ବ୍ୟକ୍ତିଗତ ତଥା ବୃତ୍ତିଗତ ମର୍ଯ୍ୟାଦା ବଢ଼ାଇବା ଆବଶ୍ୟକ ।

## ଲିଖିତ କାର୍ଯ୍ୟର ପରିଦର୍ଶନ

ଛାତ୍ରମାନଙ୍କର ଲିଖିତ କାର୍ଯ୍ୟ (Written Work)ର ଯାଞ୍ଚ ଯତ୍ନର ସହ ସୁବ୍ୟବସ୍ଥିତ ଭାବରେ କରାଯିବା ଉଚିତ । ପ୍ରତ୍ୟେକ ମାସରେ ଗୋଟିଏ ଦୁଇଟି ଶ୍ରେଣୀର ଖାତାଗୁଡ଼ିକ ମଗାଇ କ'ଣ କ'ଣ ଲିଖିତ କାର୍ଯ୍ୟ ହୋଇଅଛି ସେ ସବୁ କିପରି ସଂଶୋଧନ କରାଯାଇଅଛି ଓ ସଂଶୋଧିତ ହୋଇଥିବା ଭୁଲଗୁଡ଼ିକର ପୁନରାବୃତ୍ତି ହେଉଅଛି କି ନାହିଁ –

ଏ ସମସ୍ତ ବିଷୟ ଯାଞ୍ଚ କରାଯିବା ଉଚିତ । ଅବଶ୍ୟ ପ୍ରଧାନ ଶିକ୍ଷକଙ୍କ ପକ୍ଷେ ସମୟର ସ୍ୱଳ୍ପତା ଦୃଷ୍ଟିରୁ ସମସ୍ତ ପିଲାଙ୍କର କାର୍ଯ୍ୟ ଯାଞ୍ଚ କରିବା ସମ୍ଭବପର ନୁହେଁ । ତେଣୁ ସେ ନମୁନାସ୍ୱରୂପ କେତେକ ଖାତା ଦେଖି ଲିଖିତ କାର୍ଯ୍ୟ ସମ୍ବନ୍ଧରେ ଠିକ ଧାରଣା କରି ପାରିବେ, ମାତ୍ର ସେଉଁଠାରେ ସୁଷ୍ଠୁରୂପେ କାର୍ଯ୍ୟ ସମ୍ପାଦନ କରାଯାଇ ନ ଥିବାର ଆଶଙ୍କା ଦୃଢ଼ୀଭୂତ ହେବ ସେ ସେହି ଶ୍ରେଣୀର ସମସ୍ତ ଖାତା ଆମୂଳଚୂଳ ଯାଞ୍ଚ କରିବା ବାଞ୍ଛନୀୟ । ଯଦି ପ୍ରଧାନ ଶିକ୍ଷକ କେତେକ ଶ୍ରେଣୀର ନିର୍ଦ୍ଦିଷ୍ଟ କେତେକ ଛାତ୍ରଙ୍କର ଦୁର୍ବଳତା ସମ୍ବନ୍ଧରେ ଆଗରୁ ଅଭିଜ୍ଞ ଥିବେ ତେବେ ସେ ସେହି ପିଲାମାନଙ୍କର କାର୍ଯ୍ୟ ବିଶେଷ ଭାବରେ ଯାଞ୍ଚ କରିବା ଉଚିତ । ଯାଞ୍ଚ କରିଥିବା ଖାତା ଗୁଡ଼ିକରେ ଆବଶ୍ୟକ ମନ୍ତବ୍ୟ ଲେଖି ଓ ଦସ୍ତଖତ କରି ସେ ଖାତାଗୁଡ଼ିକ ଫେରାଇ ଦେଇପାରନ୍ତି । ମଝିରେ ମଝିରେ ଲିଖିତ କାର୍ଯ୍ୟଗୁଡ଼ିକ ଯାଞ୍ଚ ହେଉଥିଲେ ଶିକ୍ଷକମାନେ ସତର୍କ ରହିବେ ଓ ସେମାନେ ଖାତାଗୁଡ଼ିକ ଯଥାସମୟରେ ସଂଶୋଧନ କରିବାରେ ଅଭ୍ୟସ୍ତ ହୋଇଯିବେ ।

### ପରୀକ୍ଷା ଖାତା

ପରୀକ୍ଷା ଖାତାଗୁଡ଼ିକ ଶିକ୍ଷକ ମୂଲ୍ୟାୟନ କଲା ପରେ ପ୍ରଧାନ ଶିକ୍ଷକ କେତେକାଂଶରେ ଯାଞ୍ଚ କରିବା ବିଧେୟ । ଏହାଦ୍ୱାରା ସେ ଶିକ୍ଷକଙ୍କର ମୂଲ୍ୟାୟନ ପଦ୍ଧତିର ମାନ ନିରୂପଣ କରିପାରିବେ । ସମୟ ସମୟରେ କେତେକ ଶିକ୍ଷକ ଶ୍ରେଣୀରେ ଉପଯୁକ୍ତ ଭାବରେ ଶିକ୍ଷା ଦାନ ନ କରି ଏବଂ ବହୁତଗୁଡ଼ିଏ ବିଷୟ କୌଣସିମତେ ଅଳ୍ପ ସମୟରେ ପଢ଼ାଇ ଦେଇ ପରେ ପରୀକ୍ଷାରେ ସହଜ ପ୍ରଶ୍ନ ପଚାରି ଓ ମୁକ୍ତ ହସ୍ତରେ ନମ୍ବର ଦେଇ ସେମାନଙ୍କର ଦୋଷ ଦୁର୍ବଳତା ଘୋଡ଼ାଇବାକୁ ଚେଷ୍ଟା କରିଥାନ୍ତି । ଏହା ସଙ୍ଗେ ସଙ୍ଗେ ସେମାନେ ଶସ୍ତା ଲୋକପ୍ରିୟତା ମଧ୍ୟ ଅର୍ଜନ କରିଥାନ୍ତି । ଏହା ଏକ ଅନୁଚିତ ପନ୍ଥା ଏବଂ ପ୍ରଧାନ ଶିକ୍ଷକ ଯଥାସମୟରେ ପରୀକ୍ଷା ଖାତା ଯାଞ୍ଚ କରି ସେମାନଙ୍କର ଏହି ପ୍ରକାର ନୀତିର ପ୍ରତିରୋଧ କରିବା ଦରକାର । ପ୍ରଧାନ ଶିକ୍ଷକ ଯେଉଁ ପରୀକ୍ଷା ଖାତାଗୁଡ଼ିକ ସୁଷ୍ଠୁରୂପେ ଯାଞ୍ଚ କରିବାକୁ ଅସମର୍ଥ ସେଗୁଡ଼ିକ ସେହି ବିଷୟ ପଢ଼ାଉଥିବା ବୟୋଜ୍ୟେଷ୍ଠ (Senior) ଶିକ୍ଷକଙ୍କ ସହାୟତାରେ କରିପାରନ୍ତି । ବିଦ୍ୟାଳୟ-ବର୍ଷ ମଧ୍ୟରେ ସମୟେ ସମୟେ ପ୍ରଧାନ ଶିକ୍ଷକ ତାଙ୍କର ନିଜର ଯେଉଁ ବିଷୟରେ ବିଶେଷ ଜ୍ଞାନ ଥିବ ସେ ବିଷୟରେ କ୍ଷୁଦ୍ର ପ୍ରଶ୍ନାବଳୀ ତିଆରି କରି ବିଭିନ୍ନ ଶ୍ରେଣୀରେ ପରୀକ୍ଷା କରିପାରନ୍ତି । ଏହାଦ୍ୱାରା ଠିକ୍ ଭାବରେ ପାଠପଢ଼ା ହେଉଛି କି ନାହିଁ ତାହା ଯାଞ୍ଚ କରିପାରିବେ । ଏହି ପ୍ରକାର ପ୍ରଶ୍ନାବଳୀ ଅନ୍ୟ ବିଷୟଗୁଡ଼ିକର ମୁଖ୍ୟ ଶିକ୍ଷକଙ୍କ ଦ୍ୱାରା ତିଆରି କରାଯାଇ ମଝିରେ ମଝିରେ ପରୀକ୍ଷା କରାଯାଇପାରେ ।

## ଘରୋଇ ଶିକ୍ଷାଦାନ

ଆଜିକାଲି ଘରୋଇ ଶିକ୍ଷାଦାନ (Private tuition) ବହୁ ଶିକ୍ଷକଙ୍କ ପକ୍ଷେ ଏକ ବ୍ୟାଧିରେ ପରିଣତ ହେଲଣି । ଅନେକଙ୍କର ମତ ଯେ ଏହି କାରଣ ହେଉ ବିଦ୍ୟାଳୟଗୁଡ଼ିକରେ ଅଧ୍ୟାପନା କାର୍ଯ୍ୟ ଉତ୍ତମ ରୂପେ ସମ୍ପାଦିତ ହେଉନାହିଁ । କାରଣ ଶିକ୍ଷକମାନେ ନିଜ ନିଜ ଗୃହରେ ଏଥିପାଇଁ ଏତେ ପରିଶ୍ରମ କରୁଅଛନ୍ତି ଯେ ବିଦ୍ୟାଳୟ ସେମାନଙ୍କପାଇଁ ଏକ ବିଶ୍ରାମସ୍ଥଳୀରେ ପରିଣତ ହୋଇଅଛି । ପୁଣି ଏହି କାରଣ ହେଉ ଶିକ୍ଷକ ଶିକ୍ଷକମାନଙ୍କ ମଧ୍ୟରେ ଈର୍ଷା, ସନ୍ଦେହ ଆଦି ବହୁ ଅବାଞ୍ଛିତ ମନୋଭାବ ମୁଣ୍ଡ ଟେକୁଅଛି । ସମୟ ସମୟରେ କେହି କେହି ଅସାଧୁ ଶିକ୍ଷକ ଘରୋଇ ଶିକ୍ଷାଦାନ କରୁଥିବା ଛାତ୍ରମାନଙ୍କୁ ପରୀକ୍ଷା ପୂର୍ବରୁ ପ୍ରଶ୍ନ କହିଦେବା, ପରୀକ୍ଷା ଖାତାରେ ନମ୍ବର ବଢାଇଦେବା ଆଦି ନାନାଦି ଅଭିଯୋଗ ହୁଏ । ଏସବୁ ଅଭିଯୋଗ ଯେ ଆଂଶିକ ସତ୍ୟ ଏଥିରେ ସନ୍ଦେହ ନାହିଁ । ଏଥିପାଇଁ ଶିକ୍ଷକମାନେ ଯେ କେବଳ ଦାୟୀ ସେପରି ମଧ୍ୟ ନୁହେଁ । ଅଭିଭାବକମାନେ ମଧ୍ୟ ଏଥିପାଇଁ ଆଂଶିକ ଦାୟୀ । ଅନେକ ଅଭିଭାବକ ପିଲମାନଙ୍କର ଉନ୍ନତି କାମନା କରି ଆଗ୍ରହକତାର ସହି ସେମାନଙ୍କ ପାଇଁ ଦକ୍ଷ ଶିକ୍ଷକ ନିଯୁକ୍ତ କରିଥାଆନ୍ତି; ମାତ୍ର ବହୁ ଅଭିଭାବକ ବର୍ଷସାରା ପିଲାର କୌଣସି ଯତ୍ନ ନ ନେଇ, ତାହାର ପାଠପଢ଼ାର ଅଗ୍ରଗତି ପ୍ରତି କୌଣସି ଦୃଷ୍ଟି ନ ଦେଇ; ବର୍ଷ ଶେଷକୁ ଜଣେ ଦୁଇଜଣ ଶିକ୍ଷକଙ୍କ ପାଖକୁ ଘରୋଇ ଶିକ୍ଷାଦାନ ପାଇଁ ପଠାଇଦେଇ କୌଣସିମତେ ପିଲାଟି ଉତ୍ତୀର୍ଣ୍ଣ ହୋଇଯାଉ ବୋଲି ଚାହିଁଥାଆନ୍ତି । ଯାହାହେଉ ବର୍ତ୍ତମାନର ପରିସ୍ଥିତି ପାଇଁ ଯେ ଦାୟୀ ହୁଅନ୍ତୁ ପଛକେ, ଏ କଥା ସତ ଯେ ଘରୋଇ ଶିକ୍ଷାଦାନ ସମ୍ପୂର୍ଣ୍ଣ ବନ୍ଦ କରିଦେବା ସମ୍ଭବପର ନୁହେଁ । ତେଣୁ ଏକମାତ୍ର ସମାଧାନର ପନ୍ଥା ହେଉଛି ଏହାକୁ ନିୟନ୍ତ୍ରଣ କରିବା ଏବଂ ଏହି ନିୟନ୍ତ୍ରଣ ସଫଳତାର ସହି କରିଯାଇପାରିବ କେବଳ ପ୍ରଧାନ ଶିକ୍ଷକଙ୍କ ତତ୍ତ୍ୱାବଧାନରେ । କୌଣସି ପିଲାପାଇଁ ଘରୋଇ ଶିକ୍ଷାଦାନ ଆବଶ୍ୟକ ହେଲେ ସେଥିପାଇଁ ଶିକ୍ଷକ ନିଯୁକ୍ତି କେବଳ ପ୍ରଧାନ ଶିକ୍ଷକଙ୍କ ଜରିଆରେ କରାଯିବା ଉଚିତ । ଏହାଦ୍ୱାରା ପ୍ରଧାନଶିକ୍ଷକ ଅନ୍ୟାନ୍ୟ ଶିକ୍ଷକଙ୍କର କାର୍ଯ୍ୟଭାର ପ୍ରତି ଦୃଷ୍ଟି ଦେଇ ଓ ସେମାନଙ୍କର ବିଭିନ୍ନ ବିଷୟରେ ଥିବା ଦକ୍ଷତା ପ୍ରତି ଦୃଷ୍ଟିଦେଇ ଉପଯୁକ୍ତ ଶିକ୍ଷା ବ୍ୟବସ୍ଥା କରିପାରିବେ । ପ୍ରଧାନ ଶିକ୍ଷକ ପ୍ରଥମରୁ ଶିକ୍ଷକମାନଙ୍କୁ ତାଙ୍କର ଏହି ନୀତି ସମ୍ବନ୍ଧରେ ଅବଗତ କରାଇ ଦେଲେ କୌଣସି ଶିକ୍ଷକ ସିଧାସଳଖ ଅଭିଭାବକଙ୍କଠାରୁ ଏହି ଦାୟିତ୍ୱ ଗ୍ରହଣ ନ କରି ପ୍ରଧାନ ଶିକ୍ଷକଙ୍କ ଜରିଆରେ ତାହା କରିପାରିବେ । କାଳକ୍ରମେ ଏହାହିଁ ବିଦ୍ୟାଳୟର ଅନୁସୃତ ନୀତିରୂପେ ଅଭିଭାବକମାନଙ୍କ ନିକଟରେ ବିଦିତ ହେବ ଓ ସେମାନେ ଏହି ପ୍ରଣାଳୀରେ ଅଭ୍ୟସ୍ତ ହୋଇଯିବେ । ଏହାଦ୍ୱାରା କ୍ରମଶଃ ବିଦ୍ୟାଳୟ ଓ ଅଭିଭାବକମାନଙ୍କ ମଧ୍ୟରେ ଅଧିକ ସୁସମ୍ପର୍କ ସ୍ଥାପିତ ହେବ ଏବଂ ଶିକ୍ଷକ ଶିକ୍ଷକଙ୍କ ମଧ୍ୟରେ ରହୁଥିବା ଈର୍ଷା ଓ ବିଦ୍ୱେଷର ଅବସାନ ହେବ ।

## ପ୍ରଧାନ ଶିକ୍ଷକଙ୍କର ଅନ୍ୟାନ୍ୟ ପରିଦର୍ଶନ କାର୍ଯ୍ୟକ୍ରମ

ବିଦ୍ୟାଳୟ ଜୀବନର ସମସ୍ତ କାର୍ଯ୍ୟକ୍ରମ ପ୍ରଧାନଶିକ୍ଷକଙ୍କର ପରିଦର୍ଶନ ପରିସର-ଭୁକ୍ତ ହେବା ଉଚିତ । କେବଳ ଶିକ୍ଷାଦାନ ଓ ତତ୍‌ସଂପୃକ୍ତ କାର୍ଯ୍ୟକ୍ରମ ବା ଦପ୍ତରରେ ରଖାଯାଇଥିବା ରେଜିଷ୍ଟରଗୁଡିକ ଯାଞ୍ଚ କଲେ ପ୍ରଧାନଶିକ୍ଷକଙ୍କର ଦାୟିତ୍ୱ ସମ୍ପୂର୍ଣ୍ଣ ହେବ ନାହିଁ ।

## ଶାରୀରିକ ଶିକ୍ଷା ତତ୍ତ୍ୱାବଧାନ

ପ୍ରଧାନ ଶିକ୍ଷକ ଶାରୀରିକ ଶିକ୍ଷାକ୍ରମ ତତ୍ତ୍ୱାବଧାନ କରିବାପାଇଁ ଦାୟୀ, କାରଣ ବୌଦ୍ଧିକ ବିକାଶ ସଙ୍ଗେ ସଙ୍ଗେ ଶାରୀରିକ ଦକ୍ଷତା ବୃଦ୍ଧି କରିବା ଶିକ୍ଷାର ଏକ ଲକ୍ଷ୍ୟ । ବିଭିନ୍ନ ପ୍ରକାର କ୍ରୀଡ଼ାର ସଂଗଠନ ସମ୍ବନ୍ଧରେ ପରବର୍ତ୍ତୀ ଅଧ୍ୟାୟରେ କୁହାଯାଇଅଛି । ଏଠାରେ କେବଳ କ୍ରୀଡ଼ା-କସରତ ସମ୍ବନ୍ଧୀୟ କାର୍ଯ୍ୟାବଳୀରେ ପ୍ରଧାନ ଶିକ୍ଷକଙ୍କର ଭୂମିକା ଆଲୋଚନା କରାଯାଇଅଛି । ଏହି କାର୍ଯ୍ୟକ୍ରମର ସଂଗଠନ ପାଇଁ ଛାତ୍ରମାନେ ସାଧାରଣତଃ କେତେଗୁଡିଏ ଦଳରେ ବିଭକ୍ତ ହୋଇଥାଆନ୍ତି । ଏକ ବା ଏକାଧିକ ଶିକ୍ଷକ ବିଭିନ୍ନ ଦଳର ତତ୍ତ୍ୱାବଧାନ କରନ୍ତି ଓ ଛାତ୍ରମାନଙ୍କ ସହି ମଧ୍ୟ କ୍ରୀଡ଼ାରେ ଯୋଗ ଦିଅନ୍ତି । ଯଦି ଏହି ପ୍ରକାରର ସଂଗଠନ କରାଯାଇଥାଏ, ତେବେ ପ୍ରଧାନ ଶିକ୍ଷକ କୌଣସି ଦଳର ଅନ୍ତର୍ଭୁକ୍ତ ହେବା ଉଚିତ ନୁହେଁ । ସେ ତାଙ୍କ ଇଚ୍ଛାନୁସାରେ ବିଭିନ୍ନ ଦିବସରେ ବିଭିନ୍ନ ଦଳର କ୍ରୀଡ଼ା ପରିଦର୍ଶନ କରିପାରନ୍ତି । ଯଦି ସେ ଚାହାନ୍ତି ତେବେ ପରିଦର୍ଶନ କରୁଥିବା ଦଳସହି ସେ ସେଦିନ ଖେଳିପାରନ୍ତି । ଏହାଦ୍ୱାରା ଛାତ୍ରମାନେ ବିଶେଷ ଉତ୍ସାହିତ ହେବେ । ଯଦି ପ୍ରଧାନ ଶିକ୍ଷକ ନିଜେ ଜଣେ କ୍ରୀଡ଼ାପ୍ରେମୀ ହୋଇଥାଆନ୍ତି ଓ କ୍ରୀଡ଼ାକସରତ କରିବା ତାଙ୍କର ଅଭ୍ୟାସଗତ ହୋଇଥାଏ ତେବେ ସେ ଭିନ୍ନ ଭିନ୍ନ ଦିନ ବା ସପ୍ତାହରେ ଭିନ୍ନ ଭିନ୍ନ ଦଳ ସହି ଖେଳିବା ଉଚିତ । ଛାତ୍ରମାନେ ଭାବିବା ଉଚିତ ନୁହେଁ ଯେ ପ୍ରଧାନ ଶିକ୍ଷକ କୌଣସି ଏକ ଦଳର । ହୁଏତ ଏହି କାରଣରୁ ଗୋଟିଏ ଦଳ ଅନ୍ୟଠାରୁ ଅଧିକ ସୁଯୋଗ ପାଉଅଛି ବୋଲି ଅବାଞ୍ଛିତ ଓ ଭିତ୍ତିହୀନ ଅଭିଯୋଗ ମଧ୍ୟ ହୋଇପାରେ । ପ୍ରଧାନ ଶିକ୍ଷକଙ୍କ ସ୍ଥାନ ସର୍ବଦା ଏ ସବୁର ଦୂରରେ ଓ ବହୁ ଊର୍ଦ୍ଧ୍ୱରେ ହେବା ଉଚିତ ।

ବିଭିନ୍ନ ଦଳର କ୍ରୀଡ଼ା ତତ୍ତ୍ୱାବଧାନ ପାଇଁ ଦାୟିତ୍ୱ ନେଇଥିବା ଶିକ୍ଷକ ଖେଳର ନିୟମାବଳୀ ଠିକ୍ ଭାବରେ ଜାଣିବା ଉଚିତ—ଏହା ଦେଖିବା ପ୍ରଧାନ ଶିକ୍ଷକଙ୍କର ଦାୟିତ୍ୱ । ସେ ନିଜେ ମଝିରେ ମଝିରେ ଖେଳ ପଡ଼ିଆକୁ ନ ଗଲେ ଏ ସମ୍ବନ୍ଧରେ ଠିକ୍ ଧାରଣା କରି ପାରିବେ ନାହିଁ । ଅନେକ ସ୍ଥଳରେ ଶିକ୍ଷକମାନେ ଶ୍ରେଷ୍ଠ ଶ୍ରେଷ୍ଠ ପିଲାମାନଙ୍କ ଖେଳକୁ ହେୟଜ୍ଞାନ କରନ୍ତି ଓ ଉପଯୁକ୍ତ ନିର୍ଣ୍ଣାୟକ (Referee) ଭାବରେ କାର୍ଯ୍ୟ କରନ୍ତି ନାହିଁ । ସମସ୍ତ ସମୟରେ ଦଳଦାୟିତ୍ୱରେ ଥିବା ଶିକ୍ଷକ ଖେଳର ନିୟମଗୁଡ଼ିକ ଠିକ୍

ଭାବରେ ଜାଣି ନ ଥାନ୍ତି ବା ଜାଣିବାକୁ ଚେଷ୍ଟା କରନ୍ତି ନାହିଁ, ତେଣୁ ସେମାନେ ଭଲ ଭାବରେ ଖେଳ ନିୟନ୍ତ୍ରଣ କରିପାରନ୍ତି ନାହିଁ । ଏପରି ଖାମଖିଆଲି ଭାବରେ କ୍ରୀଡ଼ା ପରିଚାଳନା କରାଗଲେ ଶ୍ରେଷ୍ଠ ପିଲମାନେ ମଧ୍ୟ କ୍ରୀଡ଼ାର ଆନନ୍ଦ ପାଇପାରନ୍ତି ନାହିଁ ବରଂ କେତେଗୁଡ଼ିଏ ଭୁଲ ନିୟମ ଶିକ୍ଷା କରନ୍ତି । ଏହି ବିଷୟପ୍ରତି ପ୍ରଧାନ ଶିକ୍ଷକଙ୍କର ଦୃଷ୍ଟି ଆକର୍ଷିତ ହେବା ଉଚିତ । ବିଦ୍ୟାଳୟରେ ନୂଆ ନୂଆ ପ୍ରକାରର ଖେଳ ପ୍ରଚଳନ କରିବାକୁ ଯାଇ ପ୍ରଧାନ ଶିକ୍ଷକ ନିଜେ ଶ୍ରେଷ୍ଠ ଶ୍ରେଷ୍ଠ ଖେଳ ପିଲମାନଙ୍କୁ ଶିଖାଇ ଦେଇପାରନ୍ତି । ଶିକ୍ଷକମାନଙ୍କ ମଧ୍ୟରେ କେହି ଭଲ ଖେଳାଳୀ ଥିଲେ ତାଙ୍କୁ ଗୋଟିଏ ଗୋଟିଏ ଦଳର ବା ସମୟ ସମୟରେ ଦୁଇ ତିନିଗୋଟି ଦଳର ଦାୟିତ୍ୱରେ ରଖାଯାଇ ପାରେ ।

## ଡ୍ରିଲ ପରିଦର୍ଶନ

ଛାତ୍ରମାନଙ୍କର ଡ୍ରିଲ ପ୍ରଧାନ ଶିକ୍ଷକ ମଧ୍ୟ ସମୟ ସମୟରେ ପରିଦର୍ଶନ କରିବା ଉଚିତ । ପ୍ରାୟ ପ୍ରତ୍ୟେକ ବିଦ୍ୟାଳୟରେ ସପ୍ତାହରେ ଥରେ ଲେଖାଏଁ ଯେଉଁ ସାମୂହିକ ଡ୍ରିଲ ହୁଏ ତାହା ପ୍ରଧାନ ଶିକ୍ଷକ ପରିଦର୍ଶନ କରିବା ଉଚିତ । ଆବଶ୍ୟକ ହେଲେ ଏହି କାର୍ଯ୍ୟକ୍ରମରେ ଅନ୍ୟାନ୍ୟ ଶିକ୍ଷକମାନେ ମଧ୍ୟ ବ୍ୟାୟାମ ଶିକ୍ଷକଙ୍କୁ ସାହାଯ୍ୟ କରିବା ଉଚିତ ।

## ବିଭିନ୍ନ ସମିତି ଓ ସଂସଦର ବୈଠକରେ ଯୋଗଦାନ

ବିଦ୍ୟାଳୟ ସାହିତ୍ୟ ସଂସଦର ସଭାଗୁଡ଼ିକରେ ପ୍ରଧାନ ଶିକ୍ଷକ ମଝିରେ ମଝିରେ ଯୋଗ ଦେବା ଉଚିତ । ଯଦି ବିଦ୍ୟାଳୟରେ ଗୃହବ୍ୟବସ୍ଥା ପ୍ରଚଳିତ ଥାଏ ତେବେ ଉକ୍ତ ବୈଠକଗୁଡ଼ିକରେ କ'ଣ ହେଉଅଛି ତାହାର ପ୍ରତ୍ୟକ୍ଷ ଧାରଣା କରିବା ପାଇଁ ସେ ମଝିରେ ମଝିରେ ସେଠାରେ ଉପସ୍ଥିତ ହୋଇପାରନ୍ତି । ମୋଟ ଉପରେ ବିଦ୍ୟାଳୟର ଏପରି କୌଣସି ସଭା, ସମିତି ବା ସଂସଦର ବୈଠକ ହେଉ ନ ଥିବ ଯାହା ସମ୍ବନ୍ଧରେ ପ୍ରଧାନ ଶିକ୍ଷକଙ୍କର ଧାରଣା ନ ଥିବ । ଏହି କାର୍ଯ୍ୟକ୍ରମଗୁଡ଼ିକର ଯେଉଁଠାରେ ପରିବର୍ତ୍ତନ ବା ଉନ୍ନତି ଆବଶ୍ୟକ ତାହାର ପ୍ରସ୍ତାବନା ପ୍ରଧାନ ଶିକ୍ଷକ ସଂପୃକ୍ତ କାର୍ଯ୍ୟକ୍ରମଗୁଡ଼ିକ ଦାୟିତ୍ୱରେ ଥିବା ଶିକ୍ଷକଙ୍କୁ ଦେଇପାରିବେ ।

## ବାଳଚର ସଙ୍ଗଠନ, ଜାତୀୟ ସମର ଶିକ୍ଷାର୍ଥୀ ବାହିନୀ, ରେଡ଼କ୍ରସ ଇତ୍ୟାଦିର ପରିଦର୍ଶନ

ବିଦ୍ୟାଳୟରେ ରେଡ଼କ୍ରସ ସଂସ୍ଥାର ସଭାଗୁଡ଼ିକରେ ପ୍ରଧାନ ଶିକ୍ଷକ ମଝିରେ ମଝିରେ ଯୋଗଦେବା ଉଚିତ । ସେହିପରି ବାଳଚର (Scout) ସଙ୍ଗଠନର ଅଧିବେଶନ

ଗୁଡ଼ିକରେ ଯୋଗ ଦେଇ ପ୍ରଧାନ ଶିକ୍ଷକ ଏହିସବୁ ସେବା ସଂସ୍ଥାଗୁଡ଼ିକର କାର୍ଯ୍ୟକଳାପ ସମ୍ବନ୍ଧରେ ଅଭିହିତ ହୋଇପାରିବେ ଓ ଏହି ସଂସ୍ଥାଗୁଡ଼ିକର ଉନ୍ନତି କଲେ କି କି ପଦକ୍ଷେପ ନିଆଯାଇପାରେ ସେଥିପ୍ରତି ସେ ଦୃଷ୍ଟି ଦେଇପାରିବେ । ବହୁ ବିଦ୍ୟାଳୟରେ ସମର ଶିକ୍ଷାର୍ଥୀ ବାହିନୀର ଶାଖାମାନ ସ୍ଥାପିତ ହୋଇଅଛି । ଛାତ୍ରମାନଙ୍କର ଶାରୀରିକ ଦକ୍ଷତାର ଉନ୍ନତି ସଙ୍ଗେ ସଙ୍ଗେ ସେମାନଙ୍କୁ ଶୃଙ୍ଖଳ ଆଚରଣ ଶିକ୍ଷା ଦେବାରେ ଏହି ବିଭାଗର ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ଅଛି । ଏତଦ୍ବ୍ୟତୀତ ଭବିଷ୍ୟତରେ ଏହି ତାଲିମ ପାଉଥିବା ଛାତ୍ରମାନେ ସେନାବାହିନୀର ବିଭିନ୍ନ ଶାଖାରେ ଯୋଗ ଦେଇ ଆତ୍ମୋତ୍ସର୍ଗ କରିବାର ଏକ ଚିତ୍ର ମଧ୍ୟ ବିଦ୍ୟାଳୟ ସ୍ତରରୁ ପାଇଥାଆନ୍ତି । ତେଣୁ ଏହି ବିଭାଗ ପାଇଁ ଆବଶ୍ୟକ ସୁବିଧା ଯୋଗାଇଦେବା ଓ ସମ୍ପୃକ୍ତ ଶିକ୍ଷକଙ୍କୁ ଏଥିପାଇଁ କାର୍ଯ୍ୟତତ୍ପର କରିବା ପ୍ରଧାନ ଶିକ୍ଷକଙ୍କର ଏକ ନୈତିକ ଦାୟିତ୍ୱ ।

ଆଜିକାଲି ଅଧିକାଂଶ ବିଦ୍ୟାଳୟରେ ବିଜ୍ଞାନ ସଂସଦ (Science Club) ସ୍ଥାପିତ ହୋଇଅଛି । ଛାତ୍ରମାନଙ୍କର ସୁପ୍ତ ବୈଜ୍ଞାନିକ ପ୍ରତିଭାର ବିକାଶ ପାଇଁ ଉପଯୁକ୍ତ ବାତାବରଣ ଯୋଗାଇଦେବା ଏହି ସଂସଦର ମୁଖ୍ୟ ଲକ୍ଷ୍ୟ । ଏହାର ଦାୟିତ୍ୱରେ ଥିବା ଶିକ୍ଷକ ସମୁଚିତ ଭାବରେ ଉତ୍ସାହିତ ନ ହେଲେ ସଂସଦର ଲକ୍ଷ୍ୟ ସଫଳ ହୋଇ-ପାରିବ ନାହିଁ । ପ୍ରଧାନ ଶିକ୍ଷକ ସମୟ ସମୟରେ ସଂସଦର କାର୍ଯ୍ୟ ଚାଲୁଥିବା ବେଳେ ଉପସ୍ଥିତ ରହି ସଂପୃକ୍ତ ଛାତ୍ର ଓ ଶିକ୍ଷକଙ୍କୁ ଉତ୍ସାହିତ କରିପାରିବେ ।

## ସମବାୟ ଭଣ୍ଡାର

ବିଦ୍ୟାଳୟରେ ଗୋଟିଏ ସମବାୟ ଭଣ୍ଡାର ଥିଲେ ପ୍ରଧାନ ଶିକ୍ଷକ ତାହାର ଆୟବ୍ୟୟ ଭଲଭାବରେ ଯାଞ୍ଚ କରାଇବାର ବ୍ୟବସ୍ଥା କରିବା ଉଚିତ । ଅନେକ ବିଦ୍ୟାଳୟରେ ସମବାୟ ଭଣ୍ଡାରର କାର୍ଯ୍ୟ ଆରମ୍ଭ ହୋଇ ଅଳ୍ପଦିନ ପରେ ତାହା ବନ୍ଦ ହୋଇଯାଏ । ତେଣୁ ବିଦ୍ୟାଳୟରେ ବିଭିନ୍ନ ନୂତନ କାର୍ଯ୍ୟକ୍ରମ ପ୍ରଚଳନ କରାଇବା ଯଥେଷ୍ଟ ନୁହେଁ । ପ୍ରଥମେ ପ୍ରଥମେ ସେ ସବୁ ପ୍ରତି ତୀକ୍ଷ୍ଣ ଦୃଷ୍ଟି ଦେବାକୁ ହେବ ଓ ଆବଶ୍ୟକ ଯତ୍ନ ନେବାକୁ ହେବ । ପରେ ବିଦ୍ୟାଳୟର ଜୀବନ-ସ୍ରୋତ ସହିତ ସେହି କାର୍ଯ୍ୟକ୍ରମ ମିଶିଗଲେ ମଧ୍ୟ ନିରବଚ୍ଛିନ୍ନ ପରିଦର୍ଶନ ଓ ତତ୍ତ୍ୱାବଧାନ ଆବଶ୍ୟକ ହେବ । ଏପରି ନ ହେଲେ ନାମକୁମାତ୍ର ବିଦ୍ୟାଳୟରେ ଅନେକ କାର୍ଯ୍ୟ ହେଉଥିବ ଯାହାର ଅତୀତର ଗୌରବମୟ ଇତିହାସ ଥିବ ମାତ୍ର ବର୍ତ୍ତମାନ ଆଉ କୌଣସି ଉଦ୍ଦେଶ୍ୟ ସାଧନ କରୁ ନ ଥିବ ।

## ଛାତ୍ରମାନଙ୍କର ସ୍ୱାସ୍ଥ୍ୟ

ଛାତ୍ରମାନଙ୍କର ସ୍ୱାସ୍ଥ୍ୟପ୍ରତି ଦୃଷ୍ଟିଦେବା ପ୍ରଧାନ ଶିକ୍ଷକଙ୍କର ଅନ୍ୟତମ କର୍ତ୍ତବ୍ୟ । କୌଣସି ଛାତ୍ର କ୍ରମାଗତ ରୁଗ୍ଣ ହେଲେ ତାହାର ବୌଦ୍ଧିକ ବିକାଶ ବାଧାପ୍ରାପ୍ତ ହେବ ଓ ତଦନୁଯାୟୀ ବିଦ୍ୟାଳୟର ନିୟମିତ ପାଠ୍ୟକ୍ରମରେ ତାହାର ଅଗ୍ରଗତି ବାଧାପ୍ରାପ୍ତ ହେବ । ପ୍ରଧାନ ଶିକ୍ଷକ ଏପରି ଛାତ୍ରଙ୍କ ପାଇଁ ଆବଶ୍ୟକ ଚିକିତ୍ସାର ବନ୍ଦୋବସ୍ତ କରି ନ ପାରନ୍ତି; ମାତ୍ର ସେ ଏହା ଛାତ୍ରଙ୍କର ଅଭିଭାବକଙ୍କ ଦୃଷ୍ଟିକୁ ଆଣିବା ବିଧେୟ । ଅଭିଭାବକ ଛାତ୍ରର ସ୍ୱାସ୍ଥ୍ୟୋନ୍ନତି ପାଇଁ କ'ଣ କରୁଅଛନ୍ତି ତାହା ମଧ୍ୟ ପ୍ରଧାନ ଶିକ୍ଷକ ମଝିରେ ମଝିରେ ବୁଝିବା ଆବଶ୍ୟକ । ଆଗେ ବିଦ୍ୟାଳୟଗୁଡ଼ିକ ପାଇଁ ପ୍ରତ୍ୟେକ ବର୍ଷ ଡାକ୍ତରୀ ପରିଦର୍ଶନର ବ୍ୟବସ୍ଥା ଥିଲା ଏବଂ ବର୍ଷକରେ ଅନ୍ତତଃ ଥରେ ପ୍ରତ୍ୟେକ ଛାତ୍ରଙ୍କର ସ୍ୱାସ୍ଥ୍ୟ ପରୀକ୍ଷା କରାଇ ନେବାର ସୁଯୋଗ ଥିଲା । ଆଜିକାଲି ମଧ୍ୟ ଅନେକ ସ୍ଥାନରେ ଏହି ବ୍ୟବସ୍ଥା ପ୍ରଚଳିତ; ମାତ୍ର ଏହି କାର୍ଯ୍ୟକ୍ରମ ଠିକଭାବରେ କାର୍ଯ୍ୟକାରୀ ହେଉନାହିଁ । ଏହି ବ୍ୟବସ୍ଥା ଠିକ ଭାବରେ କାର୍ଯ୍ୟକାରୀ ହେଲେ ପ୍ରଧାନ ଶିକ୍ଷକ ଡାକ୍ତରୀ ପରିଦର୍ଶନ ରିପୋର୍ଟ ଅନୁଯାୟୀ ଅଭିଭାବକମାନଙ୍କ ସହ ପତ୍ରାଳାପ କରି ବା ବ୍ୟକ୍ତିଗତ ସଂପର୍କ ସ୍ଥାପନ କରି ଛାତ୍ରମାନଙ୍କ ସ୍ୱାସ୍ଥ୍ୟୋନ୍ନତି ଦିଗରେ ଅଧିକ ସକ୍ରିୟ ଭୂମିକା ଗ୍ରହଣ କରି ପାରିବେ । ଅବଶ୍ୟ ଯେଉଁ ବିଦ୍ୟାଳୟ ପାଇଁ ସ୍ୱତନ୍ତ୍ର ଡାକ୍ତର ମୁତୟନ ହୋଇଅଛନ୍ତି ସେଠାରେ ପ୍ରଧାନ ଶିକ୍ଷକ ତାଙ୍କ ଉପସ୍ଥିତି ଓ ପରାମର୍ଶର ପୂର୍ଣ୍ଣ ସଦୁପଯୋଗ କରିବେ ବୋଲି ଆଶା କରାଯାଏ ।

## ଛାତ୍ରାବାସ ପରିଦର୍ଶନ

ବିଦ୍ୟାଳୟରେ ଏକ ବା ଏକାଧିକ ଛାତ୍ରାବାସ ଥିଲେ ତାହାର ବା ସେଗୁଡ଼ିକର ସୁପରିଚାଳନା ଲାଗି ପ୍ରଧାନ ଶିକ୍ଷକ ହିଁ ଦାୟୀ । ସାଧାରଣତଃ ବିଦ୍ୟାଳୟର ଜଣେ ଶିକ୍ଷକ ଛାତ୍ରାବାସର ତତ୍ତ୍ୱାବଧାରକ ରୂପେ କାର୍ଯ୍ୟ କରନ୍ତି । କେତେକ ସ୍ଥଳରେ ନିଜେ ପ୍ରଧାନ ଶିକ୍ଷକ ତତ୍ତ୍ୱାବଧାରକ ରୂପେ ଓ ଜଣେ ଶିକ୍ଷକ ସହକାରୀ ତତ୍ତ୍ୱାବଧାରକ ରୂପେ ନିଯୁକ୍ତ ହୋଇଥାଆନ୍ତି । ଏଥିପାଇଁ ପ୍ରଧାନ ଶିକ୍ଷକ ଓ ଅନ୍ୟ ଶିକ୍ଷକ କେତେକ ସୁବିଧା ଉପଭୋଗ କରନ୍ତି । ଯାହାହେଉ ବିଦ୍ୟାଳୟର ଏକ ଅଙ୍ଗ ରୂପେ ପ୍ରଧାନ ଶିକ୍ଷକ ଏହାର ସୁପରିଚାଳନା କରିବା ବା କରାଇବା ଏକ ନୈତିକ ଦାୟିତ୍ୱ ରୂପେ ଗ୍ରହଣ କରି ନେଇଥାଆନ୍ତି । ନଚେତ୍ ଏଥିପାଇଁ ମିଳୁଥିବା ସୁବିଧା କାର୍ଯ୍ୟର ଗୁରୁତ୍ୱ ଦୃଷ୍ଟିରୁ ନଗଣ୍ୟ । ଯେଉଁ ଛାତ୍ରାବାସରେ ବହୁ ଛାତ୍ରଙ୍କ ପାଇଁ ରହିବା ବ୍ୟବସ୍ଥା ଥାଏ, ସେଠାରେ କୌଣସି ଶିକ୍ଷକ ଦାୟିତ୍ୱରେ ନ ରହି ପୂରାସମୟ ଦେଇ ପାରୁଥିବା ଜଣେ ବ୍ୟକ୍ତି ନିଯୁକ୍ତ ହେବା

ଆବଶ୍ୟକ । ଏହା କରାଗଲେ ମଧ୍ୟ ପ୍ରଧାନ ଶିକ୍ଷକଙ୍କର ଦାୟିତ୍ୱ ହ୍ରାସ ହେବ ନାହିଁ । କେବଳ ପ୍ରଧାନ ଶିକ୍ଷକ ନିଶ୍ଚିତ ହେବେ ଯେ ଆଂଶିକ ସମୟ ଦେଇ ପାରୁଥିବା ଜଣେ ଶିକ୍ଷକଙ୍କଠାରୁ ପୂର୍ଣ୍ଣସମୟ ଦେଇପାରୁଥିବା ଜଣେ କର୍ମଚାରୀ ତାଙ୍କର ଅଧିକ ସହାୟକ ହୋଇପାରିବେ । ମାତ୍ର ଶୃଙ୍ଖଳାରକ୍ଷା କରିବା ଦୃଷ୍ଟିରୁ ଶିକ୍ଷକ ଛାତ୍ରାବାସର ତତ୍ତ୍ୱାବଧାନରେ ରହିବା ଅଧିକ ସମୀଚୀନ ମନେହୁଏ । ତେଣୁ କୌଣସି କୌଣସି ସ୍ଥାନରେ ବଡ଼ ବଡ଼ ଛାତ୍ରାବାସ ପାଇଁ ତତ୍ତ୍ୱାବଧାରକ ରୂପେ ଶିକ୍ଷକ ଓ ପରିଚାଳକ (Manager) ରୂପେ ଜଣେ କର୍ମଚାରୀ ଥାଆନ୍ତି ।

ଯାହାହେଉ ପ୍ରଧାନ ଶିକ୍ଷକଙ୍କୁ ବାରମ୍ବାର ଛାତ୍ରାବାସକୁ ଆସି ବିଭିନ୍ନ ବିଷୟ ବୁଝିବାକୁ ହେବ । ଥରକୁ ଥର ପ୍ରଧାନ ଶିକ୍ଷକ ଆନ୍ତେବାସୀମାନଙ୍କୁ କି ପ୍ରକାର ଖାଦ୍ୟ ଦିଆଯାଉଅଛି ତାହା ତଦାରଖ କରିବା ଦରକାର । ରୋଷାଇ ଘର, ଖାଇବା ଘର ପରିଷ୍କାର ପରିଚ୍ଛନ୍ନ ରହୁଅଛି କି ନାହିଁ, ବାସନକୁସନ ଠିକ୍ ଭାବରେ ସଫା ହେଉଅଛି କି ନାହିଁ ଏ ସବୁ ବିଷୟ ମଧ୍ୟ ସେ ଛାତ୍ରାବାସରେ ବୁଲିଗଲାବେଳେ ତାଙ୍କ ଦୃଷ୍ଟିରୁ ବାହାରକୁ ଯିବା ଉଚିତ ନୁହେଁ । ଛାତ୍ରମାନେ ତାଙ୍କର ଖାଦ୍ୟପେୟ ପାଇଁ ଯେତିକି ଅର୍ଥ ଦେଉଅଛନ୍ତି ସେତିକି ମଧ୍ୟରେ କି ଉତ୍କୃଷ୍ଟ ଖାଦ୍ୟ ଯୋଗାଇଦେବା ସମ୍ଭବପର ସେ ସମ୍ବନ୍ଧରେ ପ୍ରଧାନ ଶିକ୍ଷକ ତତ୍ତ୍ୱାବଧାରକଙ୍କ ସହ ଥରକୁଥର ଆଲୋଚନା କରି ସେହି ଅନୁସାରେ କାର୍ଯ୍ୟ ହେଉଅଛି କି ନାହିଁ ତାହା ଦେଖିବା ଉଚିତ ।

ଛାତ୍ରାବାସର ନିୟମଗୁଡ଼ିକ ଆନ୍ତେବାସୀମାନଙ୍କ ଦ୍ୱାରା ଠିକ୍ ଠିକ୍ ପାଳିତ ହେଉଅଛି କି ନାହିଁ ତାହା ଦେଖିବା ପାଇଁ ପ୍ରଧାନ ଶିକ୍ଷକ ବିଭିନ୍ନ ସମୟରେ ଛାତ୍ରାବାସକୁ ଆସିବା ଉଚିତ । କେବେ କେବେ ବିଦ୍ୟାଳୟ କାର୍ଯ୍ୟ ଚାଲୁଥିବା ବେଳେ, କେବେ ସକାଳେ, କେବେ ସନ୍ଧ୍ୟାରେ, କେବେ ବା ରାତିରେ ଛାତ୍ରାବାସକୁ ବୁଲିଆସିବା ଉଚିତ । ଏହା ଫଳରେ ଆନ୍ତେବାସୀମାନେ ସର୍ବଦା ସତର୍କ ରହନ୍ତି, କାରଣ ପ୍ରଧାନ ଶିକ୍ଷକ କେତେବେଳେ ଯେ ଆସି ଛାତ୍ରାବାସ ପରିଦର୍ଶନ କରିଯିବେ ତାହା କାହାରି ପକ୍ଷରେ ଜାଣିବା ସମ୍ଭବପର ନୁହେଁ । କେବଳ ଛାତ୍ରାବାସ ପରିଷ୍କାର ପରିଚ୍ଛନ୍ନତା ନୁହେଁ ଛାତ୍ରମାନେ ଅଧ୍ୟୟନ ସମୟ (Study hour)ରେ ଯେପରି ମନୋଯୋଗ ସହକାରେ ଅଧ୍ୟୟନ କରନ୍ତି, ଏହା ପରେ ବିଶ୍ରାମ ପାଇଁ ଯେପରି ଯଥେଷ୍ଟ ସମୟ ପାଆନ୍ତି ତାହା ମଧ୍ୟ ପ୍ରଧାନ ଶିକ୍ଷକ ତଦାରଖ କରିବା ଉଚିତ । ଏପରି କି ଛାତ୍ରମାନେ ଶୋଇବା ସମୟରେ ଯେପରି ଝରକାଗୁଡ଼ିକ ଖୋଲା ରହେ—ଏହିପରି ସାମାନ୍ୟ ଅଥଚ ସ୍ୱାସ୍ଥ୍ୟ ଦୃଷ୍ଟିରୁ ଗୁରୁତ୍ୱପୂର୍ଣ୍ଣ ବିଷୟଗୁଡ଼ିକ ପ୍ରତି ସେ ମଧ୍ୟ ଦୃଷ୍ଟି ଦେବା ଉଚିତ ।

ଆନ୍ତେବାସୀମାନଙ୍କର ଉପସ୍ଥାନ ବହି ସେ ଥରକୁଥର ଯାଞ୍ଚ କରିବା ଉଚିତ । ଏତଦ୍‌ବ୍ୟତୀତ ଛାତ୍ରମାନେ ଦେଉଥିବା ଟଙ୍କା ଓ ସେମାନଙ୍କ ପାଇଁ ଖର୍ଚ୍ଚ ହେଉଥିବା

ଙ୍କାର ସ୍ୱଭାବ ସେ ସାବଧାନତା ସହକାରେ ଯାଞ୍ଚ କରିବା ଉଚିତ । ଜଣେ ଦକ୍ଷ ତତ୍ତ୍ୱାବଧାରକ ପ୍ରଧାନ ଶିକ୍ଷକଙ୍କର କାର୍ଯ୍ୟ ଅନେକାଂଶରେ ଲଘବ କରିଦେଇ ପାରିବେ, ତଥାପି ତାଙ୍କର ଗୁଣାବାଚ ପରିଦର୍ଶକ ସ୍ୱଭାବରେ ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ।

ପରିଦର୍ଶକ ସ୍ୱରୂପରେ ପ୍ରଧାନ ଶିକ୍ଷକଙ୍କର ଭୂମିକା ବିଭିନ୍ନ ଦିଗରୁ ଏପର୍ଯ୍ୟନ୍ତ ଆଲୋଚନା କରାଗଲା । ପରିଦର୍ଶନ କାର୍ଯ୍ୟକ୍ରମ ମଧ୍ୟରେ ମଜ୍ଜିତ ହୋଇ ପ୍ରଧାନ ଶିକ୍ଷକ ତାଙ୍କର ମୂଳଲକ୍ଷ୍ୟ ଭୁଲିଯିବା ଉଚିତ ନୁହେଁ । ଯେଉଁ ଲକ୍ଷ୍ୟ ସାଧନ ପାଇଁ ବିଦ୍ୟାଳୟରେ ଏତେ ପ୍ରକାର କାର୍ଯ୍ୟକ୍ରମ ପ୍ରଚଳନ କରାଯାଇଅଛି, ସେହି ଲକ୍ଷ୍ୟ ସାଧିତ ହେଉଅଛି କି ନାହିଁ ତାହା ଲକ୍ଷ୍ୟ କରିବାର କଥା । ଏତେଗୁଡ଼ିଏ କାର୍ଯ୍ୟକ୍ରମରେ ଭାଗ ନେଇ ଛାତ୍ରମାନେ ସେମାନଙ୍କର ଅନ୍ତର୍ନିହିତ ଶକ୍ତି ଜାଗ୍ରତ କରାଇ ପାରୁଛନ୍ତି କି ? ସେମାନେ ଉତ୍ତମ ଚିନ୍ତା କରିବା, ଉତ୍ତମ କାର୍ଯ୍ୟ କରିବା ପାଇଁ ଶିକ୍ଷା କରିପାରିଲେ କି ? ବିଦ୍ୟାଳୟ ଶିକ୍ଷାର ବାସ୍ତବ ଜୀବନ ଓ ପରିବେଷ୍ଟନୀ ସହ ସମ୍ପର୍କ ରହୁଅଛି କି ? ବିଦ୍ୟାଳୟରେ ଶିକ୍ଷାଲାଭ କରିବା ଫଳରେ ଛାତ୍ରମାନେ ଭବିଷ୍ୟତରେ ସୁନାଗରିକ ସ୍ୱଭାବରେ ଦେଶ ଓ ଦଶର କଲ୍ୟାଣ ସାଧନ କରିପାରିବେ କି ? ସେମାନେ ଜାତୀୟ ଓ ଆନ୍ତର୍ଜାତୀୟ ସ୍ୱଭାବର ଆଦର୍ଶରେ ଉଦ୍‌ବୁଦ୍ଧ ହେବା ପାଇଁ ସୁଯୋଗ ପାଉଅଛନ୍ତି କି ? ପ୍ରତ୍ୟେକ କାର୍ଯ୍ୟକ୍ରମ ପରିଦର୍ଶନ କଲାବେଳେ ଓ ପରାମର୍ଶ ଦେଲାବେଳେ ପ୍ରଧାନ ଶିକ୍ଷକଙ୍କ ମନରେ ସ୍ୱତଃ ଏହିପରି କେତେଗୁଡ଼ିଏ ପ୍ରଶ୍ନ ସଦା ଜାଗ୍ରତ ହେବା ଦରକାର । ତେଣୁ ପରିଦର୍ଶନ ମାଧ୍ୟମରେ ନିର୍ଦ୍ଦିଷ୍ଟ ଲକ୍ଷ୍ୟସାଧନ ଦିଗରେ ସମସ୍ତ ଚେଷ୍ଟା ଅବ୍ୟାହତ ରଖିବା ଓ ସମସ୍ତ ଅନ୍ତରାୟ ଦୂର କରିବାହିଁ ପ୍ରଧାନ ଶିକ୍ଷକଙ୍କର ପ୍ରଧାନ କାର୍ଯ୍ୟହେବା ଉଚିତ ।

## ପ୍ରଧାନ ଶିକ୍ଷକଙ୍କର ଅଭିଭାବକମାନଙ୍କ ସହିତ ସମ୍ପର୍କ

ଛାତ୍ରମାନଙ୍କର ପିତାମାତାଙ୍କ ସହ ସମ୍ପର୍କ ସ୍ଥାପନ ପାଇଁ ଓ ସମ୍ପର୍କ ସ୍ଥାୟୀ କରିବା ପାଇଁ ଯେତେବେଳେ ସୁଯୋଗ ମିଳିବ ପ୍ରଧାନ ଶିକ୍ଷକ ତାହା ହରାଇବା ଆଦୌ ସମୀଚୀନ ନୁହେଁ । ଯେତେବେଳେ କୌଣସି ଛାତ୍ରର ପିତାମାତା ବା ଅଭିଭାବକ ବିଦ୍ୟାଳୟକୁ ଆସି ପ୍ରଧାନ ଶିକ୍ଷକଙ୍କ ସହିତ ସାକ୍ଷାତ୍ କରିବାକୁ ଚାହିଁବେ ବା ଛାତ୍ରର ଭଲମନ୍ଦ ବିଷୟରେ ଆଲୋଚନା କରିବାକୁ ଚାହିଁବେ ସେତେବେଳେ ପ୍ରଧାନ ଶିକ୍ଷକ ତାଙ୍କୁ ସେ ସୁଯୋଗ ଦେବେ ଓ ତାଙ୍କ ପ୍ରତି ଯଥୋଚିତ ଭଦ୍ରାମି ଦେଖାଇବାରେ ଆଦୌ କୁଣ୍ଠିତ ହେବେ ନାହିଁ । ଅଭିଜ୍ଞତାରୁ ଜଣାଯାଏ, ସାଧାରଣତଃ ଗ୍ରାମ୍ୟ ବିଦ୍ୟାଳୟଗୁଡ଼ିକର ପ୍ରଧାନ ଶିକ୍ଷକମାନେ ଏ ଦିଗରେ ଆଦୌ ଯତ୍ନବାନ ହୁଅନ୍ତି ନାହିଁ । ଗ୍ରାମାଞ୍ଚଳର ଅଧିବାସୀମାନଙ୍କଠାରୁ ବିଭିନ୍ନ କଥା ଶୁଣିବାକୁ ତାଙ୍କର ଅନେକ ସମୟରେ ଧୈର୍ଯ୍ୟ ରହେ ନାହିଁ । କେହି କେହି ଗ୍ରାମାଞ୍ଚଳର ଅଭିଭାବକମାନଙ୍କ ପ୍ରତି ତୁଚ୍ଛ ମନୋଭାବ ମଧ୍ୟ ପ୍ରକାଶ କରନ୍ତି ।

ଏ ମନୋବୃତ୍ତି ପ୍ରଧାନ ଶିକ୍ଷକଙ୍କ ପକ୍ଷେ ଶୋଭନୀୟ ନୁହେଁ । ଏହି କାରଣରୁ ପ୍ରଧାନ ଶିକ୍ଷକଙ୍କର ପ୍ରଭାବ ସେ ଅଞ୍ଚଳରେ ସମ୍ପୂର୍ଣ୍ଣ ଲୋପହୋଇ ଯାଇପାରେ । ତେଣୁ ପିତାମାତା ସେମାନଙ୍କର ସନ୍ତାନସନ୍ତତିଙ୍କ ମଙ୍ଗଳ ପାଇଁ ଆଲୋଚନା ପ୍ରସଙ୍ଗରେ ନାନା ପ୍ରକାରର କଥା ଉଠାଇଲେ ମଧ୍ୟ ଧୈର୍ଯ୍ୟର ସହିତ ସେସବୁ ଶୁଣିବା ପ୍ରଧାନ ଶିକ୍ଷକଙ୍କର ବିଚକ୍ଷଣତାର ପରିଚୟ ଦେବ । ପୁରସ୍କାର ବିତରଣ ଉତ୍ସବ, ଅଭିଭାବକ ଦିବସ ଆଦି ବିଦ୍ୟାଳୟର ଯେଉଁସବୁ ଉତ୍ସବରେ ଅଭିଭାବକମାନେ ସାଧାରଣତଃ ଉପସ୍ଥିତ ରହନ୍ତି ସେସବୁ ଉତ୍ସବ ପ୍ରଧାନ ଶିକ୍ଷକଙ୍କ ପକ୍ଷେ ଏକ ଅପୂର୍ବ ସୁଯୋଗ କହିଲେ ଅତ୍ୟୁକ୍ତି ହେବ ନାହିଁ । କାରଣ ସେଦିନ ଏକ ସଙ୍ଗରେ ବହୁ ଅଭିଭାବକଙ୍କୁ ଜାଣିବା ପାଇଁ ଓ ସେମାନଙ୍କ ସହ ଆଳାପ ଆଲୋଚନା କରିବା ପାଇଁ ସେ ସୁଯୋଗ ପାଇଥାଆନ୍ତି । ପ୍ରଧାନ ଶିକ୍ଷକଙ୍କ ଆଚରଣ ଫଳରେ ଅଭିଭାବକମାନେ ବିଦ୍ୟାଳୟକୁ ନିଜର ଏକ ଅନୁଷ୍ଠାନ ବୋଲି ମନେକରିବେ ଏବଂ ଏହି ସମ୍ପର୍କ ବିଦ୍ୟାଳୟର ଉନ୍ନତି ସାଧନ ଦିଗରେ ପ୍ରଭୂତ ସାହାଯ୍ୟ କରିବ । ସମ୍ଭବ ହେଲେ ଦୂର ଗ୍ରାମାଞ୍ଚଳରୁ ଆସୁଥିବା ଅଭିଭାବକମାନେ ରାତ୍ରିଯାପନ କରିବାକୁ ଛାତ୍ରାବାସରେ ଏକ ସ୍ୱତନ୍ତ୍ର ପ୍ରକୋଷ୍ଠ ରଖାଯିବା ଆବଶ୍ୟକ ।

## ବିଦ୍ୟାଳୟରେ ପାଠ୍ୟପୁସ୍ତକ ନିର୍ବାଚନରେ ପ୍ରଧାନ ଶିକ୍ଷକଙ୍କର ଭୂମିକା

ବିଦ୍ୟାଳୟ ପାଇଁ ଯେତେବେଳେ ନୂତନ ପାଠ୍ୟପୁସ୍ତକ ନିର୍ବାଚନ କରିବା ପ୍ରଶ୍ନ ଉଠିବ ବା ଯେତେବେଳେ କୌଣସି ପୁସ୍ତକ ପରିବର୍ତ୍ତନ କରିବା ଆବଶ୍ୟକ ହେବ ସେତେବେଳେ ପ୍ରଧାନ ଶିକ୍ଷକ ସମ୍ପୃକ୍ତ ବିଷୟର ଶିକ୍ଷକମାନଙ୍କ ସହ ପରାମର୍ଶ କରି ତାହା କରିପାରନ୍ତି । ପ୍ରକୃତପକ୍ଷେ ପାଠ୍ୟପୁସ୍ତକ ନିର୍ବାଚନ ବା ପରିବର୍ତ୍ତନ ସମ୍ବନ୍ଧରେ ସେହି ବିଷୟଟି ପଢ଼ାଉଥିବା ଶିକ୍ଷକମାନଙ୍କର ଏକ ବୈଠକରେ ପ୍ରଥମେ ଆଲୋଚନା କରାଯିବା ଉଚିତ । ଯଦି ସମ୍ପୃକ୍ତ ଶିକ୍ଷକମାନେ ପ୍ରଚଳିତ ପୁସ୍ତକଟି ତ୍ରୁଟିପୂର୍ଣ୍ଣ ବୋଲି ମତ ଦିଅନ୍ତି ଏବଂ ଅନ୍ୟ ପୁସ୍ତକର ଉପାଦେୟତା ପ୍ରତିପାଦନ କରନ୍ତି ତେବେ ପ୍ରଧାନ ଶିକ୍ଷକ ସେଥିରେ ଆପତ୍ତି କରିବାର କୌଣସି କାରଣ ହେବା ଉଚିତ ନୁହେଁ । ସେ କେବଳ ଦେଖିବାର କଥା ଯେ ଏହି ପ୍ରକାର ପରିବର୍ତ୍ତନ ଯେପରି ଘନ ଘନ ନ ହୁଏ । ପାଠ୍ୟପୁସ୍ତକ ଘନଘନ ପରିବର୍ତ୍ତନ କରାଗଲେ ଅଭିଭାବକମାନଙ୍କ ଉପରେ ଅତ୍ୟଧିକ ଆର୍ଥିକ ଚାପ ପଡ଼େ । କାରଣ ଅନେକ ଅଭିଭାବକ ଥାଆନ୍ତି ଯେଉଁମାନଙ୍କର ଦୁଇ ତିନିଗୋଟି ସନ୍ତାନ ବିଭିନ୍ନ ଶ୍ରେଣୀରେ ପାଠ ପଢ଼ୁଥାଆନ୍ତି ।

କୌଣସି ପାଠ୍ୟପୁସ୍ତକ ପରିବର୍ତ୍ତନ କରିବା ଆବଶ୍ୟକ ହେଲେ ବିଷୟଟି ପଢ଼ାଉଥିବା ଶିକ୍ଷକ ସମ୍ପୃକ୍ତ ବିଷୟପାଇଁ ନିର୍ଦ୍ଧାରିତ ସମସ୍ତ ବା ଅଧିକାଂଶ ପାଠ୍ୟପୁସ୍ତକ ପ୍ରଧାନ ଶିକ୍ଷକଙ୍କ ଜରିଆରେ ଆଣି ସେସବୁ ପ୍ରଥମେ ଭଲଭାବରେ ପଢ଼ିନେବା ଉଚିତ । ପୁସ୍ତକ ନିର୍ବାଚନପାଇଁ

ବସୁଥିବା ବୈଠକ ପୂର୍ବରୁ ଏହି କାର୍ଯ୍ୟ ଶେଷ ହେବା ଉଚିତ । ସାଧାରଣତଃ ପ୍ରକାଶନ ସଂସ୍ଥାଗୁଡ଼ିକ ପ୍ରତ୍ୟେକ ପ୍ରଧାନ ଶିକ୍ଷକଙ୍କ ପାଖକୁ ଖଣ୍ଡିଏ ଖଣ୍ଡିଏ ପୁସ୍ତକ ନମୁନାସ୍ୱରୂପ ପଠାଇଥାଆନ୍ତି । ତେଣୁ ବିଷୟଟି ପାଇଁ ନିର୍ଦ୍ଧାରିତ ପୁସ୍ତକଗୁଡ଼ିକ ପାଇବା କଷ୍ଟ ହେବ ନାହିଁ । ଆବଶ୍ୟକ ହେଲେ କେତେ ଖଣ୍ଡ ପୁସ୍ତକ ବିଦ୍ୟାଳୟ ପାଇଁ କିଣିଦେବା ମଧ୍ୟ ସମୁଚିତ ହେବ । ପ୍ରଧାନ ଶିକ୍ଷକ ମଧ୍ୟ ପୁସ୍ତକଗୁଡ଼ିକ ଆଗରୁ ଦେଖିନେଇଥିବା ଉଚିତ କାରଣ ଯେ କୌଣସି ନିର୍ବାଚନ ପାଇଁ ଚୂଡ଼ାନ୍ତ ନିଷ୍ପତ୍ତି ଗ୍ରହଣ କରିବା ହେଉଛି ତାଙ୍କର ଦାୟିତ୍ୱ । ଯେବେ ବିଷୟଟିରେ ବିଶେଷ ଜ୍ଞାନ ଥିବା ଶିକ୍ଷକମାନଙ୍କ ମତାମତ ତାଙ୍କୁ ନେବାକୁହିଁ ହେବ, ଏପରିକି ତାଙ୍କର ନିଜର ଯେଉଁ ବିଷୟଟିରେ ବିଶେଷ ଜ୍ଞାନ ଥିବ ସେ ବିଷୟଟି ପଢ଼ାଉଥିବା ଅନ୍ୟ ଶିକ୍ଷକମାନଙ୍କର ମତାମତ ସେ ଅକୁଣ୍ଠିତ ଚିତ୍ତରେ ବୁଝିନେବା ଉଚିତ ।

ପାଠ୍ୟ ପୁସ୍ତକ ନିର୍ବାଚନ କଲାବେଳେ ଅନେକଗୁଡ଼ିଏ ବିଷୟ ବିଚାରକୁ ନେବା ଆବଶ୍ୟକ । ପାଠ୍ୟକ୍ରମ ଅନ୍ତର୍ଭୁକ୍ତ ସମସ୍ତ ବିଷୟ ପୁସ୍ତକଟିରେ ଅନ୍ତର୍ଭୁକ୍ତ ହୋଇଅଛି କି ନାହିଁ, ପ୍ରଦତ୍ତ ତଥ୍ୟ ବା ବିଷୟଗୁଡ଼ିକ ଯେଉଁ ଶ୍ରେଣୀର ପିଲାମାନଙ୍କ ପାଇଁ ଉଦ୍ଦିଷ୍ଟ ସେହି ପିଲାମାନଙ୍କର ବୟସ ଓ ପରିପକ୍ୱତା ଦୃଷ୍ଟିରୁ ସେ ସବୁ ଉପଯୁକ୍ତ କି ନାହିଁ ଓ ପ୍ରଦତ୍ତ ଘଟଣାବଳୀ ନିର୍ଭୁଲ ଭାବରେ ଦିଆଯାଇଅଛି କି ନାହିଁ ସେ ସବୁ ବିଚାରକୁ ନିଆଯିବା ଆବଶ୍ୟକ । ପୁସ୍ତକରେ ଦିଆଯାଇଥିବା ବିଷୟଗୁଡ଼ିକ କ୍ରମ ଅନୁସାରେ ସଜ୍ଜିତ ହୋଇଅଛି କି ନାହିଁ, ବିବିଧ ଚିତ୍ରଦ୍ୱାରା ସେ ସବୁ ସୁବୋଧ କରାଯାଇଅଛି କି ନାହିଁ, ମୁଦ୍ରଣ ପରିପାଟୀ ଆକର୍ଷଣୀୟ ହୋଇଅଛି କି ନାହିଁ ଏ ସବୁ ମଧ୍ୟ ବିଚାରକୁ ନିଆଯିବା ଉଚିତ ।

ପୁସ୍ତକଟିର ଭାଷା ଓ ଲିଖନ ଶୈଳୀ ଛାତ୍ରମାନଙ୍କ ପାଇଁ ଯେପରି ବୋଧଗମ୍ୟ ହୋଇଥାଏ ତାହା ବିଚାର କରିବା ଉଚିତ । ସର୍ବୋପରି ପୁସ୍ତକଟିରେ ଛାତ୍ରମାନଙ୍କର ଆତ୍ମ ଅଭିବ୍ୟକ୍ତି ପରିସ୍ଫୁଟ କରିବା ପାଇଁ ଉପଯୁକ୍ତ ଉପାଦାନ ରହିଅଛି କି ନାହିଁ ତାହା ମଧ୍ୟ ବିଚାରକୁ ନେବା ଆବଶ୍ୟକ । ସମସ୍ତ ବିଷୟ ବିଚାର କଲାପରେ ଦୁଇ ବା ତତୋଽଧିକ ପୁସ୍ତକ ଯଦି ସମୋପଯୁକ୍ତ ବିବେଚିତ ହୁଏ ତେବେ ଯେଉଁ ପୁସ୍ତକଟିର ମୂଲ୍ୟ ସର୍ବନିମ୍ନ ତାହାକୁ ହିଁ ନିର୍ବାଚନ କରାଯିବା ଉଚିତ ।

ପୁସ୍ତକଗୁଡ଼ିକ ଯଦି ଉପର୍ଯ୍ୟୁକ୍ତ ପଦ୍ଧତିରେ ନିର୍ବାଚନ କରାଯାଏ ତେବେ ସେଗୁଡ଼ିକ ଘନ ଘନ ପରିବର୍ତ୍ତନ କରାଯିବାର ଅବକାଶ ରହିବ ନାହିଁ । ଏତଦ୍‌ବ୍ୟତୀତ ଯେ କୌଣସି ପୁସ୍ତକ ପ୍ରଚଳନ କରାଯିବା ପାଇଁ ସିଦ୍ଧାନ୍ତ ହେବା ପରେ ପ୍ରଧାନ ଶିକ୍ଷକ ଦେଖିବା ଉଚିତ ଯେପରି ପୁସ୍ତକଟି ଅନ୍ତତଃ କମ୍‌ରେ ତିନିବର୍ଷ ପାଇଁ ବିଦ୍ୟାଳୟରେ ପ୍ରଚଳିତ ହୁଏ । ଏହାପରେ ତାହାର ଉପାଦେୟତା ବିଭିନ୍ନ ଦିଗରୁ ବିଚାର କରି ଆବଶ୍ୟକ ହେଲେ ପୁସ୍ତକଟି ପରିବର୍ତ୍ତନ କରିବାପାଇଁ ଚିନ୍ତା କରାଯାଇପାରେ ।

## ପ୍ରଶ୍ନାବଳୀ

୧ । ପ୍ରଧାନ ଶିକ୍ଷକ କେତେଗୁଡ଼ିଏ ବିଶିଷ୍ଟ ଗୁଣର ଅଧିକାରୀ ନ ହେଲେ ସେ ଜଣେ ପ୍ରଧାନ ଶିକ୍ଷକ ଭାବେ ପ୍ରତିଷ୍ଠାଲାଭ କରିପାରିବେ ନାହିଁ । ସେ ସବୁ କ'ଣ ?

୨ । ଏକ ସହାନୁଭୂତିମୂଳକ ବାତାବରଣ ଓ ସହଯୋଗମୂଳକ ମାଧ୍ୟମଦ୍ୱାରା ବିଦ୍ୟାଳୟର କାର୍ଯ୍ୟାବଳୀ ସୁପରିଚାଳିତ ହୋଇପାରିବ । ଏଥିରେ ପ୍ରଧାନ ଶିକ୍ଷକଙ୍କର ଭୂମିକା କ'ଣ ?

୩ । ଶିକ୍ଷକମାନଙ୍କର ସହଯୋଗ ଲାଭ କରିବା ସହଜ କଥା ନୁହେଁ । ସ୍ଥଳବିଶେଷରେ ପ୍ରଧାନ ଶିକ୍ଷକ ସହଯୋଗ କାମନା କରି ଅସୁବିଧାର ସମ୍ମୁଖୀନ ହୋଇପାରନ୍ତି । ଏ କ୍ଷେତ୍ରରେ ପ୍ରଧାନ ଶିକ୍ଷକଙ୍କର କର୍ତ୍ତବ୍ୟ କ'ଣ ? ଉଦାହରଣ ସହ ଲେଖ ।

୪ । ଶିକ୍ଷାକ୍ଷେତ୍ରରେ ଘଟିଯାଉଥିବା ବିଭିନ୍ନ ପରିବର୍ତ୍ତନ ସହ ପ୍ରଧାନ ଶିକ୍ଷକ ପରିଚିତ ହେବା ଉଚିତ ଓ ଶିକ୍ଷକମାନଙ୍କୁ ଏଥିପାଇଁ ସୁଯୋଗ ଦେବା ଉଚିତ । ଏହା କିପରି ସମ୍ଭବପର ?

୫ । ପ୍ରଧାନ ଶିକ୍ଷକଙ୍କ ସହ ଛାତ୍ରମାନଙ୍କର ସମ୍ପର୍କ କି ପ୍ରକାର ହେବା ଉଚିତ ?

୬ । ଜଣେ ଶିକ୍ଷକ ହିସାବରେ ପ୍ରଧାନ ଶିକ୍ଷକଙ୍କର ଭୂମିକା କ'ଣ ହେବା ଉଚିତ ?

୭ । କେଉଁ କାରଣରୁ ପ୍ରଧାନ ଶିକ୍ଷକ ବିଦ୍ୟାଳୟର ସର୍ବନିମ୍ନ ଶ୍ରେଣୀରେ ଶିକ୍ଷାଦାନ କରିବା ଉଚିତ ?

୮ । ପରିଦର୍ଶକ ଭାବରେ ପ୍ରଧାନ ଶିକ୍ଷକଙ୍କର ଭୂମିକା କ'ଣ ?

୯ । ଛାତ୍ରପାଣ୍ଠିର ସଦୁପଯୋଗ କରିବାରେ ପ୍ରଧାନ ଶିକ୍ଷକଙ୍କର କି ଦାୟିତ୍ୱ ରହିଅଛି ?

୧୦ । ଶିକ୍ଷାଦାନ କାର୍ଯ୍ୟକ୍ରମର ତତ୍ତ୍ୱାବଧାନ କରିବା ପାଇଁ ପ୍ରଧାନ ଶିକ୍ଷକଙ୍କର ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଅଛି । ସେ ଏହା କିପରି ସୁଚାରୁରୂପେ ସମ୍ପାଦନ କରିପାରିବେ ।

---

# ଦ୍ୱାଦଶ ଅଧ୍ୟାୟ

## ଶ୍ରେଣୀଶିକ୍ଷକ, ବିଷୟ-ଶିକ୍ଷକ ଓ ଶିକ୍ଷକ ପରିଷଦ

### ଶ୍ରେଣୀ ଶିକ୍ଷକ

ଶ୍ରେଣୀଶିକ୍ଷକଙ୍କ ସମ୍ବନ୍ଧରେ ଆଲୋଚନା କରିବା ପୂର୍ବରୁ ଶ୍ରେଣୀଶିକ୍ଷକ କହିଲେ କ'ଣ ବୁଝାଯାଏ ତାହା ସ୍ପଷ୍ଟ ହୋଇଯିବା ଉଚିତ । ପୂର୍ବେ ଶ୍ରେଣୀଶିକ୍ଷକ କହିଲେ ଶ୍ରେଣୀର ଦାୟିତ୍ୱରେ ରହି ସମସ୍ତ ବିଷୟ ଅଧ୍ୟାପନା କରୁଥିବା ଶିକ୍ଷକଙ୍କୁ ବୁଝା-ଯାଉଥିଲା । ଏବେ ଶ୍ରେଣୀଶିକ୍ଷକଙ୍କର ସଜ୍ଞା ସମ୍ପୂର୍ଣ୍ଣ ପରିବର୍ତ୍ତିତ ହୋଇଯାଇଅଛି । ଆଜିକାଲି ଯେଉଁ ପ୍ରାଥମିକ ବିଦ୍ୟାଳୟରେ ମାତ୍ର ଦୁଇଜଣ ଶିକ୍ଷକ ନିଯୁକ୍ତ ହେଉଅଛନ୍ତି ସେମାନେ ମଧ୍ୟ ବିଭିନ୍ନ ଶ୍ରେଣୀରେ ବିଷୟଗୁଡ଼ିକ ଭାଗ ଭାଗ କରି ପଢ଼ାଉଅଛନ୍ତି ଅର୍ଥାତ୍ କେହି ଜଣେ ପୂର୍ଣ୍ଣମାତ୍ରାରେ ଗୋଟିଏ ଶ୍ରେଣୀର ସମସ୍ତ ବିଷୟ ପଢ଼ାଉନାହାନ୍ତି । ଉଚ୍ଚ ମାଧ୍ୟମିକ ସ୍ତରରେ ପ୍ରତ୍ୟେକ ବିଦ୍ୟାଳୟରେ ବିଭିନ୍ନ ବିଷୟ ପଢ଼ାଇବା ପାଇଁ ସେହି ବିଷୟରେ ସ୍ନାତକ, ସ୍ନାତକୋତ୍ତର ଉପାଧିପ୍ରାପ୍ତ ବା ବିଶେଷ ଯୋଗ୍ୟତା-ସମ୍ପନ୍ନ ଶିକ୍ଷକ ନିଯୁକ୍ତ ହେଉଅଛନ୍ତି । ତଥାପି ପ୍ରତ୍ୟେକ ବିଦ୍ୟାଳୟରେ ଶ୍ରେଣୀଶିକ୍ଷକ ରହିଅଛନ୍ତି । ଓ ଶ୍ରେଣୀ ଶିକ୍ଷକଙ୍କର ପ୍ରାଧାନ୍ୟ ଏବଂ ଗୁରୁତ୍ୱପୂର୍ଣ୍ଣ ଭୂମିକା କୌଣସି ପ୍ରକାରେ ହ୍ରାସ ପାଇନାହିଁ । କିନ୍ତୁ ଆଜି ଏହି ଶ୍ରେଣୀ ଶିକ୍ଷକମାନେ ହେଉଛନ୍ତି ଜଣେ ଜଣେ ବିଷୟ ଶିକ୍ଷକ ଯେଉଁମାନେ କି ଗୋଟିଏ ଗୋଟିଏ ପାଠ୍ୟ ବିଷୟର ଅଧ୍ୟାପନା ଦାୟିତ୍ୱ ତୁଲାଇବା ସଙ୍ଗେ ସଙ୍ଗେ ଗୋଟିଏ ଶ୍ରେଣୀର ଦାୟିତ୍ୱ ବହନ କରିଥାଆନ୍ତି । ତେଣୁ ଶ୍ରେଣୀ ଶିକ୍ଷକଙ୍କ ସ୍ଥାନ କେବଳ ପାଠ୍ୟ ବିଷୟ ପଢ଼ାଉଥିବା ଅନ୍ୟାନ୍ୟ ଶିକ୍ଷକଙ୍କଠାରୁ ଅଧିକ ଗୁରୁତ୍ୱପୂର୍ଣ୍ଣ ଓ କେତେକ ସ୍ଥଳରେ ଅଧିକ ମର୍ଯ୍ୟାଦାସୂଚକ ।

ଛାତ୍ରମାନେ ବିଦ୍ୟାଳୟକୁ ଆସିବାପରେ ପ୍ରତିଦିନ ପ୍ରଥମ ପିରିଅଡ଼ରେ ଶ୍ରେଣୀ ଶିକ୍ଷକଙ୍କ ସମ୍ମୁଖରେ ଆସିଥାନ୍ତି । ସେ ଶ୍ରେଣୀର ଛାତ୍ରମାନଙ୍କର ଉପସ୍ଥାନ ନିଅନ୍ତି,

ଦରମା ଅସୁଲ କରନ୍ତି, ପ୍ରଗତି ରିପୋର୍ଟ ପ୍ରସ୍ତୁତ କରନ୍ତି ଏବଂ ପ୍ରଧାନ ଶିକ୍ଷକଙ୍କୁ ଶ୍ରେଣୀ ସମ୍ବନ୍ଧରେ ଆବଶ୍ୟକ ତଥ୍ୟ ଯୋଗାନ୍ତି । ଆହୁରି ଅନେକ କାମ ତାଙ୍କରି ତତ୍ତ୍ୱାବଧାନରେ ହୁଏ । ପ୍ରଥମକଥା, ପ୍ରତ୍ୟହ ଛାତ୍ରଛାତ୍ରୀମାନଙ୍କ ସମ୍ପର୍କରେ ଆସୁଥିବାରୁ ସେ ସେମାନଙ୍କୁ ଜାଣିବାକୁ ଅଧିକ ସୁଯୋଗ ପାଆନ୍ତି । ଉପସ୍ଥାନ ନେବା ହେତୁ ଯେଉଁମାନେ ବିଦ୍ୟାଳୟରେ ଯୋଗଦେବାରେ ଅନିୟମିତ ତାହା ସେ ଜାଣିବା ସଙ୍ଗେ ସଙ୍ଗେ ସେମାନେ କାହିଁକି ଅନିୟମିତ ତାହା ମଧ୍ୟ କ୍ରମେ ଜାଣିପାରନ୍ତି । ନିୟମାନୁବର୍ତ୍ତିତା ଏକ ଅତ୍ୟାବଶ୍ୟକ ଗୁଣ ଯାହାର ବିକାଶ ପ୍ରଥମେ ବିଦ୍ୟାଳୟର ପରିସର ମଧ୍ୟରେ ହେବା ବାଞ୍ଛନୀୟ । ଏହିପରି ଗୋଟିଏ ଉତ୍ତମ ଗୁଣର ବିକାଶ ପାଇଁ ଯଦି ଶ୍ରେଣୀଶିକ୍ଷକ ସଚେଷ୍ଟ ହୁଅନ୍ତି ଅର୍ଥାତ୍ ଅନିୟମିତତାର ମୂଳକାରଣ ଖୋଜି ବାହାର କରିବାକୁ ଚାହାଁନ୍ତି ତାହାହେଲେ ସେ କ୍ରମେ ଛାତ୍ରର ଗୃହ ପରିବେଷ୍ଟନୀ ଓ ଅନ୍ୟାନ୍ୟ ଆନୁସଙ୍ଗିକ ସୁବିଧା ଅସୁବିଧା ସମ୍ବନ୍ଧରେ ପରିଚିତ ହୁଅନ୍ତି । କେବଳ ଏହି ଅନିୟମିତ ଛାତ୍ରଙ୍କ କଥା ନୁହେଁ, ବୁଦ୍ଧିମାନ ଓ ଚତୁର ଛାତ୍ରମାନଙ୍କର ପରିବେଷ୍ଟନୀ ସମ୍ବନ୍ଧରେ ଅଭିହିତ ହୋଇ କି କି ଯତ୍ନ ନିଆଗଲେ ସେମାନଙ୍କର ଉତ୍ତରୋତ୍ତର ଉନ୍ନତି ହୋଇପାରିବ ତାହା ମଧ୍ୟ ଶ୍ରେଣୀଶିକ୍ଷକ ସହଜରେ ଅବଧାରଣା କରିପାରନ୍ତି ।

ଶ୍ରେଣୀଶିକ୍ଷକ ଛାତ୍ରଦତ୍ତ ବେତନ ଆଦାୟ କରୁଥିବାରୁ ଏହି ଅବସରରେ ତାହାଙ୍କୁ ବିଭିନ୍ନ ଛାତ୍ରଙ୍କର ଆର୍ଥିକ ପରିବେଶ ସହ ପରିଚିତ ହେବା ପାଇଁ ସୁଯୋଗ ମିଳେ । କେମେ କେଉଁମାନେ ପ୍ରକୃତରେ ମେଧାବୀ ଅଥଚ ଆର୍ଥିକ ଦୁର୍ଗତି ହେତୁ ସେମାନଙ୍କର ବୌଦ୍ଧିକ ବିକାଶର ଅନ୍ତରାୟ ହେଉଛି ତାହା ଜାଣି ବିଦ୍ୟାଳୟରୁ ଉପଯୁକ୍ତ ସାହାଯ୍ୟଦାନପାଇଁ ପ୍ରଧାନ ଶିକ୍ଷକଙ୍କୁ କହିଥାଆନ୍ତି । ଶ୍ରେଣୀଶିକ୍ଷକ ଯତ୍ନବାନ ନ ହେଲେ ଅବସ୍ଥାଚକ୍ରରେ ବହୁ ସୁପ୍ତ ପ୍ରତିଭା ସମ୍ପୂର୍ଣ୍ଣ ଲୁପ୍ତ ହୋଇଯିବା ଅସମ୍ଭବ ନୁହେଁ । ସେ ଯେତିକି ତତ୍ପର ଓ ଯତ୍ନବାନ ହେବେ ଛାତ୍ରମାନଙ୍କର ସେତିକି ମଙ୍ଗଳ ସାଧନ କରିପାରିବେ ଏବଂ ଏହି କାରଣରୁ ଛାତ୍ର ଓ ଅଭିଭାବକଙ୍କ ଦୃଷ୍ଟିରେ ତାଙ୍କର ସମ୍ମାନ ଓ ମର୍ଯ୍ୟାଦା ବହୁଗୁଣ ବୃଦ୍ଧିପ୍ରାପ୍ତ ହେବ ।

ଶ୍ରେଣୀରେ ଛାତ୍ରମାନଙ୍କର ଚୌକି ଓ ମେଜ କେଉଁ ପ୍ରଣାଳୀରେ ସଜ୍ଜିତ ହୋଇ ରହିବ, କିଏ କେଉଁଠାରେ ବସିବ ଇତ୍ୟାଦି ଅନେକ ଛୋଟ ଛୋଟ କାମଠାରୁ ଆରମ୍ଭ କରି ଶ୍ରେଣୀର ସମସ୍ତ ଦାୟିତ୍ୱ ସେ ବହନ କରନ୍ତି । ପିଲାଟିଏ ନାମ ଲେଖାଇବା ପରେ ପରେ ସେ ଆସି ପ୍ରଥମେ ଶ୍ରେଣୀଶିକ୍ଷକଙ୍କୁ ସାକ୍ଷାତ କରେ ଓ ସେ ପିଲାଟି କେଉଁଠାରେ ବସିବ, ଶ୍ରେଣୀରେ କି କି ବିଶେଷ ନିୟମମାନ ଚଳିବ ତାହା ପ୍ରଥମେ ଶ୍ରେଣୀଶିକ୍ଷକଙ୍କଠାରୁ ହିଁ ଜାଣେ । ବିଦ୍ୟାଳୟରେ ପ୍ରବେଶ କଲାପରେ ପ୍ରଥମେ ଛାତ୍ରଟି ଶ୍ରେଣୀଶିକ୍ଷକଙ୍କୁ ନିଜର

ଜଣେ ଶିକ୍ଷକ ତଥା ହିତାକାଙ୍କ୍ଷୀ ବୋଲି ଜ୍ଞାନ କରେ ଓ ପରେ ପରେ ସେ କ'ଣ କରିବ ନ କରିବ ତାହା ତାଙ୍କଠାରୁ ବୁଝେ । ଶ୍ରେଣୀ ଶିକ୍ଷକଙ୍କ ବ୍ୟବହାର, ଚାଲିଚଳଣି ଛାତ୍ର ମନରେ ପ୍ରଥମେ ଏକ ଗଭୀର ରେଖାପାତ କରେ । ତାପରେ ସେ ଅନ୍ୟ ଶିକ୍ଷକ-ମାନଙ୍କୁ କ୍ରମଶଃ ଅଧିକରୁ ଅଧିକ ଜାଣିବାକୁ ଚେଷ୍ଟାକରେ ।

ମନିଟର, ସହକାରୀ ମନିଟର ଆଦି ବିଭିନ୍ନ ପଦରେ କେଉଁମାନେ ଅବସ୍ଥାପିତ ହେବେ ଓ ଶ୍ରେଣୀରେ ଶୃଙ୍ଖଳା ଓ ସୌଜନ୍ୟ ରକ୍ଷିବା ଦିଗରେ କେଉଁମାନେ ନେତୃତ୍ୱ ଦେଇପାରିବେ ତାହା ଶ୍ରେଣୀ ଶିକ୍ଷକହିଁ ସ୍ଥିର କରନ୍ତି । ଅବଶ୍ୟ କେତେକ ବିଦ୍ୟାଳୟରେ ଏହି ପଦର ଅଧିକାରୀ ସମ୍ପୂର୍ଣ୍ଣ ନିର୍ବାଚିତ ହୁଅନ୍ତି ଏବଂ କେତେକ ସ୍ଥଳରେ ଶିକ୍ଷକଙ୍କ ଦ୍ୱାରା ମନୋନୀତ ହୁଅନ୍ତି । ଉଭୟ ପଦ୍ଧତିର ଭଲ ମନ୍ଦ ଦିଗ ଅଛି । ଅନ୍ୟମାନଙ୍କ ଦ୍ୱାରା ନିର୍ବାଚିତ ହୋଇ ଦାୟିତ୍ୱ ବହନ କରିବା ଏକ ଗଣତାନ୍ତ୍ରିକ ପଦ୍ଧତି । ଏପରି ହେଲେ ମନିଟର ଯଦି ନିଜେ ବିଶୃଙ୍ଖଳା ମନୋବୃତ୍ତିର ହୋଇଥାଏ ତେବେ ତାହାକୁ ସେହି ପଦରୁ ଅନ୍ତର କରିବା କଷ୍ଟକର ହୁଏ ଏବଂ ଶ୍ରେଣୀଶିକ୍ଷକ ସେପରି ମନିଟର ଉପରେ ସଂପୂର୍ଣ୍ଣ ନିର୍ଭର କରିବା ସହଜ ହୁଏ ନାହିଁ । ଅନ୍ୟପକ୍ଷରେ ମନୋନୀତ ହେବା ପଦ୍ଧତି ଅନୁସୃତ ହେଲେ ଶ୍ରେଣୀଶିକ୍ଷକଙ୍କର ଅନୁଗାମୀ ଅଥଚ ଅନୁପଯୁକ୍ତ ଛାତ୍ର ମଧ୍ୟ ଏହି ପଦର ଅଧିକାରୀ ହୋଇପାରନ୍ତି । କେତେକ ସ୍ଥଳରେ କେବଳ ଶ୍ରେଣୀଶିକ୍ଷକଙ୍କର ମନୋନୀତ ଛାତ୍ର ହୋଇଥିବାରୁ ମନିଟର ଅନାଦୃତ ହୁଏ ଓ ତାହା ପକ୍ଷରେ ଶୃଙ୍ଖଳା ରକ୍ଷିବା କଷ୍ଟକର ହୁଏ । ଯାହାହେଉ ସମାଧାନର ବାଟ ହେଉଛି ଏହି ଦୁଇଟି ପଦ୍ଧତିର ମଧ୍ୟମ ପନ୍ଥା । ଶ୍ରେଣୀଶିକ୍ଷକଙ୍କର ବିଶ୍ୱାସଭାଜନ ଜଣେ ଛାତ୍ର ଅନ୍ୟ ଛାତ୍ରମାନଙ୍କ ଦ୍ୱାରା ନିର୍ବାଚିତ ହେବାହିଁ ସର୍ବୋତ୍କୃଷ୍ଟ ପନ୍ଥା ଓ କିପରି ଏହା କରାଇବାକୁ ହେବ ତାହା ଶ୍ରେଣୀ ଶିକ୍ଷକଙ୍କର ଦକ୍ଷତା ଓ ଚତୁରତା ଉପରେ ନିର୍ଭର କରେ ।

ଯେ କୌଣସି ବିଷୟରେ ଶ୍ରେଣୀର ଛାତ୍ରମାନଙ୍କର ମତାମତ ଶ୍ରେଣୀଶିକ୍ଷକଙ୍କ ଜରିଆରେ ପ୍ରଧାନ ଶିକ୍ଷକ ଜାଣିଥାନ୍ତି । ଯେଉଁ କୌଣସି ରିଲିଫ ପାଣ୍ଠିକୁ ଟଙ୍କା ପଠାଯିବ ବା ଶିକ୍ଷକ ଦିବସ ଲାଗି ଚାନ୍ଦା ସଂଗୃହୀତ ହୋଇ ଶିକ୍ଷକ କଲ୍ୟାଣ ପାଣ୍ଠିକୁ ପଠାହେବ ବା ବିଦ୍ୟାଳୟରେ ଶ୍ରମଦାନ ସପ୍ତାହ ପାଳନ ହେବ ବା ସାଂସ୍କୃତିକ ସପ୍ତାହ ପାଳନ କରାଯିବ—ଏସବୁ ବିଷୟରେ ଛାତ୍ରମାନଙ୍କର ମତାମତ ଅବଶ୍ୟ ଆବଶ୍ୟକ; କାରଣ ସେମାନଙ୍କର ଇଚ୍ଛା ଓ ସହଯୋଗ ଅଭାବରେ ଏ ସବୁ ଠିକ୍ ଭାବରେ କରାଯାଇପାରିବ ନାହିଁ । ତେଣୁ ପ୍ରଧାନ ଶିକ୍ଷକ ଏହିପରି କୌଣସି କାର୍ଯ୍ୟ କରିବାକୁ ଚାହୁଁଥିଲେ ସେ ଶ୍ରେଣୀ-ଶିକ୍ଷକଙ୍କ ଜରିଆରେ ଶ୍ରେଣୀର ମତାମତ ଚାହିଁବେ ଓ ଶ୍ରେଣୀଶିକ୍ଷକ ଇଚ୍ଛା କଲେ ଛାତ୍ର-ମାନଙ୍କୁ ସବୁ ହୃଦୟଙ୍ଗମ କରାଇ ଓ ପ୍ରଭାବିତ କରି ସେହି କାର୍ଯ୍ୟ ସପକ୍ଷରେ ଶ୍ରେଣୀର ମତାମତ ଆଦାୟ କରି ପାରିବେ । ସେହିପରି ବର୍ଷ ଆରମ୍ଭରେ କେଉଁମାନଙ୍କର ସେ ବର୍ଷ

ଦରମା ଛାଡ଼ କରାଯିବ ବା କେଉଁମାନଙ୍କୁ ଗରିବ ଛାତ୍ର ପାଣ୍ଠିରୁ ସାହାଯ୍ୟ ଦିଆଯିବ ସେ ସବୁ ବିଚାର କଲାବେଳେ ଶ୍ରେଣୀଶିକ୍ଷକହିଁ ନିର୍ଦ୍ଦିଷ୍ଟ ଭାବରେ ଉପଯୁକ୍ତ ଛାତ୍ରମାନଙ୍କ ବିଷୟ ସୁପାରିଶ କରିପାରିବେ ।

ଶ୍ରେଣୀର ଛାତ୍ରମାନେ ପରିଭ୍ରମଣରେ ଯିବାକୁ ଚାହୁଁଥିଲେ ଶ୍ରେଣୀଶିକ୍ଷକହିଁ ସେ ସବୁର ବ୍ୟବସ୍ଥା କରିଥାଆନ୍ତି । ଛାତ୍ରମାନେ, ସରକାର ବା ଅନ୍ୟ କୌଣସି ସଂସ୍ଥା ଆବଶ୍ୟକ ଅର୍ଥ ବ୍ୟବସ୍ଥା ବା ସାହାଯ୍ୟ କରିପାରନ୍ତି, ମାତ୍ର ଦରକାର ହେଉଥିବା ସମସ୍ତ ଟିକିନିଖି ବ୍ୟବସ୍ଥା ଶ୍ରେଣୀଶିକ୍ଷକହିଁ କରିଆଆନ୍ତି । ଆଜିକାଲି ପରିଦର୍ଶକଙ୍କ ଅଫିସ, ନିର୍ଦ୍ଦେଶକଙ୍କ ଅଫିସ ଅନେକ ସମୟରେ ବିଦ୍ୟାଳୟ ସମ୍ପର୍କରେ ବିଭିନ୍ନ ତଥ୍ୟ ସଂଗ୍ରହ କରନ୍ତି । ଏଥିପାଇଁ ଆବଶ୍ୟକ ବିବରଣ କେବଳ ଶ୍ରେଣୀ ଶିକ୍ଷକଙ୍କ ଠାରୁ ସଂଗ୍ରହ କରାଯାଇପାରେ । କାରଣ ଛାତ୍ରମାନଙ୍କ ସମ୍ବନ୍ଧରେ ସମସ୍ତ ତଥ୍ୟ ତାହାଙ୍କୁହିଁ କେବଳ ଉତ୍ତମରୂପେ ଜଣା ।

## ବିଷୟ ଶିକ୍ଷକ ( Subject teacher )

ଜ୍ଞାନର ବିସ୍ଫୋରଣ ଫଳରେ ପାଠ୍ୟ ବିଷୟଗୁଡ଼ିକର ଜ୍ଞାନର ପରିସୀମା ଅତି କ୍ଷିପ୍ରତର ଭାବରେ ପରିବ୍ୟାପ୍ତ ହେଉଅଛି । ଶିକ୍ଷକମାନଙ୍କୁ ଏହି ପ୍ରସାରିତ ଜ୍ଞାନର ବ୍ୟାପକତା ସମ୍ବନ୍ଧରେ ଅବଧାରଣା କରି ତଦନୁଯାୟୀ ଛାତ୍ରମାନଙ୍କର ଜ୍ଞାନର ପରିସୀମା ବଢ଼ାଇବା ଦିଗରେ ଯତ୍ନ କରିବାକୁ ହେବ । ବିଜ୍ଞାନ, ଗଣିତ ପ୍ରଭୃତି ବିଷୟରେ ଜ୍ଞାନ ଓ ପ୍ରୟୋଗାତ୍ମକ କୌଶଳର ଅଗ୍ରଗତି ଅତି କ୍ଷିପ୍ର ହେଉଥିବାରୁ ପ୍ରତି ପାଞ୍ଚ ଦଶବର୍ଷ ମଧ୍ୟରେ ପୂର୍ବ ପ୍ରଚଳିତ ପାଠ୍ୟକ୍ରମ ପୁରୁଣା ହୋଇଯାଉଅଛି ଏବଂ ବହୁ ଶିକ୍ଷା ପରିଷଦ ( Education Board ) ପାଠ୍ୟକ୍ରମ ସମୀକ୍ଷା କରି ଆବଶ୍ୟକ ନୂତନ ପାଠ୍ୟକ୍ରମ ପ୍ରଚଳନ କରୁଅଛନ୍ତି । ଏହା ଫଳରେ ଶିକ୍ଷକମାନଙ୍କର ଦାୟିତ୍ୱ ବଢ଼ି ଯାଉଅଛି । ନୂତନ ପାଠ୍ୟକ୍ରମ ସବୁ ପରିଚିତ ହୋଇ ସେ ସବୁର ସଫଳ ରୂପାୟନ କରିବାକୁ ହେଲେ ଶିକ୍ଷକଙ୍କୁ ଅଧିକ କର୍ମଠ ଓ ତତ୍ପର ହେବାକୁହିଁ ପଡ଼ିବ । ପୂର୍ବେ ଜଣେ ଶିକ୍ଷକ ଯାହା ପଢ଼ାଉଥିଲେ ସେ ସେହି ପାଠ ସାରା ଜୀବନ ପଢ଼ାଉଥିଲେ । ଏବେ ମଧ୍ୟ ମାଧ୍ୟମିକ ଶିକ୍ଷା କ୍ଷେତ୍ରରେ ସେହିପରି କେତେକ ବିଷୟ ପାଠ୍ୟକ୍ରମରେ ଅଛି, ମାତ୍ର ଅଧିକାଂଶ ଶିକ୍ଷକଙ୍କୁ ପରିବର୍ତ୍ତିତ ପରିସ୍ଥିତିରେ ଖାପ ଖୁଆଇ ଚଳିବାକୁ ହେଲେ ସେମାନଙ୍କୁ ବହୁ ଆଧୁନିକ ପ୍ରଗତି ସମ୍ବନ୍ଧରେ ସଚେତନ ହେବାକୁ ହେବ ଏବଂ ପୁନଃଶିକ୍ଷା ପାଇଁ ପ୍ରସ୍ତୁତ ରହିବାକୁ ହେବ । ଏହା କେବଳ ସମ୍ଭବପର ଯେତେବେଳେ ଜଣେ ଶିକ୍ଷକ ମାତ୍ର ଗୋଟିଏ ବିଷୟ ପଢ଼ାଇବେ । ଅବଶ୍ୟ ବର୍ତ୍ତମାନର ପରିସ୍ଥିତିରେ ଉଚ୍ଚ ମାଧ୍ୟମିକ ବିଦ୍ୟାଳୟରେ ମଧ୍ୟ ଗୋଟିଏ ବିଷୟ ଜଣେମାତ୍ର ଶିକ୍ଷକ ପଢ଼ାଇବା ସମ୍ଭବପର ନୁହେଁ । ତାହାଙ୍କୁ ଅନ୍ୟ ଗୋଟିଏ ବା ଦୁଇଟି ବିଷୟର ଅଳ୍ପ ସଂଖ୍ୟକ ପିରିଅଡ଼ ନେବାକୁହିଁ

ପଡ଼ିବ ନଚେତ୍ କାର୍ଯ୍ୟଭାରର ସମବଣ୍ଟନ ସମ୍ଭବପର ହେବ ନାହିଁ । ତେବେ ପ୍ରତ୍ୟେକ ଶିକ୍ଷକ ମୁଖ୍ୟତଃ ଗୋଟିଏ ବିଷୟର ଶିକ୍ଷକ, ଯଥା—ଗଣିତ ଶିକ୍ଷକ, ବିଜ୍ଞାନ ଶିକ୍ଷକ, ଭୂଗୋଳ ଶିକ୍ଷକ ରୂପେ ପରିଚିତ ହେବେ ଯଦିଓ ସେ ଅନ୍ୟ କେତେକ ବିଷୟ ଶିକ୍ଷାଦାନ କରିବେ ।

ପ୍ରାଥମିକ ବିଦ୍ୟାଳୟଗୁଡ଼ିକରେ ବିଷୟ-ବିଶେଷଜ୍ଞ ଶିକ୍ଷକ ନିଯୁକ୍ତି ବ୍ୟବସ୍ଥା ନ ଥିଲେ ମଧ୍ୟ ଯଦି ବିଶେଷଜ୍ଞ ଶିକ୍ଷକମାନଙ୍କୁ ନିଯୁକ୍ତ ଦିଆଯାଇ ପାରନ୍ତା ଏବଂ ସେମାନଙ୍କୁ ନିଜ ନିଜର ବିଷୟ ପଢାଇବାର ସୁଯୋଗ ଦିଆଯାଇ ପାରନ୍ତା ତେବେ ତାହା ପ୍ରଚଳିତ ଶିକ୍ଷା ପଦ୍ଧତିରେ ଏକ ଅତି ଗୁରୁତ୍ୱପୂର୍ଣ୍ଣ ଉନ୍ନତ ବ୍ୟବସ୍ଥା ହୁଅନ୍ତା । ଆଜି ଦେଶରେ ଯେତେବେଳେ ସମସ୍ତ ପିଲାଙ୍କ ପାଇଁ ପ୍ରାଥମିକ ଶିକ୍ଷାର ବ୍ୟବସ୍ଥା କରିବା ସମ୍ଭବପର ହେଉନାହିଁ ଏବଂ ବହୁ ପ୍ରାଥମିକ ବିଦ୍ୟାଳୟରେ ଜଣେ ଲେଖାଏଁ ଶିକ୍ଷକ ରହି କାମ ଚଳା ଉଥିଛନ୍ତି ସେତେବେଳେ ବିଶେଷଜ୍ଞ ଶିକ୍ଷକ ନିଯୁକ୍ତି କରିବା ଆଗାମୀ କେତେ ବର୍ଷ ମଧ୍ୟରେ ସମ୍ଭବପର ହେବ ନାହିଁ ।

ଯେଉଁ ବିଦ୍ୟାଳୟରେ ପ୍ରଧାନତଃ ବିଷୟ ଶିକ୍ଷକମାନେ ଶିକ୍ଷାଦାନ କାର୍ଯ୍ୟରେ ବ୍ୟାପୃତ ରହିବେ ସେଠାରେ ଶିକ୍ଷକମାନଙ୍କ ମଧ୍ୟରେ ପରସ୍ପର ସହଯୋଗ ଓ ବୁଝାମଣା ଅତ୍ୟାବଶ୍ୟକ । କାରଣ ଯେଉଁ ଶିକ୍ଷକମାନେ ଗୋଟିଏ ବିଷୟ ପଢ଼ାନ୍ତି ସେମାନେ ନିଜେ ପଢ଼ାଉଥିବା ବିଷୟଟି ଉପରେ ଏତେ ଗୁରୁତ୍ୱ ଆରୋପ କରନ୍ତି ଯେ ଅନ୍ୟାନ୍ୟ ବିଷୟ ମଧ୍ୟ ଅନ୍ୟ ଶିକ୍ଷକ ଯେ ପଢ଼ାଉଛନ୍ତି ସେ କଥା ଭୁଲିଯାଆନ୍ତି । ଏହି ଶ୍ରେଣୀର ଶିକ୍ଷକମାନେ ଛାତ୍ରମାନଙ୍କୁ ଏତେ ପଢ଼ା ଘରେ କରିବାକୁ ଦିଅନ୍ତି ଯେ ଛାତ୍ରମାନେ ସମସ୍ତ ବିଷୟ ପ୍ରତି ସମାନ ଦୃଷ୍ଟି ଦେଇପାରନ୍ତି ନାହିଁ । ଶ୍ରେଣୀଶିକ୍ଷକ ପ୍ରଥାରେ ଏପରି ଅସୁବିଧା ଉପୁଜେ ନାହିଁ ଏବଂ ବିଭିନ୍ନ କାର୍ଯ୍ୟ ମଧ୍ୟରେ ସମନ୍ୱୟ ସହଜ ହୋଇଥାଏ । ଯାହାହେଉ ବିଷୟ ଶିକ୍ଷକମାନେ ଏହି ଅସୁବିଧାଗୁଡ଼ିକ ହୃଦୟଙ୍ଗମ କରିପାରିଲେ ଉନ୍ନତ ଶିକ୍ଷାଦାନ ଯେ ସମ୍ଭବପର ଏଥିରେ କୌଣସି ସନ୍ଦେହ ନାହିଁ । ବିଷୟ-ଶିକ୍ଷକ ପ୍ରଥାରେ କି କି ସୁବିଧା ରହିଅଛି ତାହା ନିମ୍ନରେ ପ୍ରଦତ୍ତ ହେଲା ।

ପ୍ରଥମତଃ ଯେଉଁ ଶିକ୍ଷକମାନେ ଅନେକଗୁଡ଼ିଏ ବିଷୟ ପଢ଼ାନ୍ତି ସେମାନଙ୍କର ସମସ୍ତ ବିଷୟ ପ୍ରତି ସମାନ ଆଗ୍ରହ ନ ଥାଏ । ଏହା ନିର୍ଭେଜ ସତ୍ୟ ଯେ ଯେଉଁ ବିଷୟ ଶିକ୍ଷାଦାନ କରିବାକୁ ଆଗ୍ରହୀ ସେ ସେହି ବିଷୟଟି ଅଧିକ ଭଲଭାବରେ ପଢ଼ାଇପାରିବେ । ପୁଣି ଯେଉଁ ଶିକ୍ଷକଙ୍କର ଯେଉଁ ବିଷୟରେ ଦକ୍ଷତା ଅଧିକ ସେ ନିଶ୍ଚୟ ତାହା ପଢ଼ାଇବାକୁ ଅଧିକ ଆଗ୍ରହୀ ହେବେ । ତେଣୁ ବିଷୟ ଶିକ୍ଷକଙ୍କର ପଢ଼ାଇବାର ଆଗ୍ରହରେ କୌଣସି

ତାରତମ୍ୟ ଲକ୍ଷିତ ହୁଏ ନାହିଁ ବା ଛାତ୍ରମାନେ ସମସ୍ତ ବିଷୟରେ ଉତ୍କର୍ଷକ ଶିକ୍ଷା ଲାଭ କରିବାର ସୁଯୋଗ ପାଇଥାଆନ୍ତି ।

ଦ୍ୱିତୀୟତଃ, ବିଦ୍ୟାଳୟ ସ୍ତରରେ ଶିକ୍ଷାଦାନ ପାଇଁ ଶିକ୍ଷକଙ୍କର ବିଷୟଟି ସମ୍ବନ୍ଧରେ ସାଧାରଣ ଜ୍ଞାନ ରହିବା ଯଥେଷ୍ଟ ନୁହେଁ । ବିଷୟଟିର ପାଠପଢ଼ା ଯେଉଁ ଶ୍ରେଣୀରେ ଆରମ୍ଭ କରାଯାଏ ସେ ଶ୍ରେଣୀରେ ସାମାନ୍ୟ ଜ୍ଞାନଥିବା ଶିକ୍ଷକ କାମ ଚଳାଇନେବେ ମାତ୍ର ଉପର ଶ୍ରେଣୀଗୁଡ଼ିକରେ ବିଷୟଟି ପଢ଼ାଇବା ପାଇଁ ଶିକ୍ଷକଙ୍କର ସେହି ବିଷୟରେ ଯଥେଷ୍ଟ ଜ୍ଞାନ ଥିବା ଦରକାର । ଏତଦ୍‌ବ୍ୟତୀତ ଜଣେ ଶିକ୍ଷକ କେତେଗୁଡ଼ିଏ ବିଷୟ ପଢ଼ାଇଲେ ମଧ୍ୟ ସେ ସବୁ ବିଷୟର ଶିକ୍ଷାଦାନ ପଦ୍ଧତି (methods) ଜାଣି ନ ଥାନ୍ତି । ଏକାଥରକେ ଅନେକଗୁଡ଼ିଏ ବିଷୟର ଶିକ୍ଷାଦାନ ପଦ୍ଧତିରେ ଯେଉଁ ଯେଉଁ ପରିବର୍ତ୍ତନ ହୋଇଯାଉଛି ବା ଆଧୁନିକ କୌଶଳର ଉଦ୍ଭାବନ ହେଉଅଛି ତାହା ଜାଣିବା ମଧ୍ୟ ଜଣେ ଶିକ୍ଷକଙ୍କ ପକ୍ଷେ ସମ୍ଭବପର ନୁହେଁ । ଜଣେ ବିଷୟ ଶିକ୍ଷକଙ୍କ ପକ୍ଷେ ଗୋଟିଏ ବିଷୟର ଶିକ୍ଷାଦାନ ପଦ୍ଧତିରେ ଉଦ୍ଭାବିତ ହେଉଥିବା ସର୍ବାଧୁନିକ କୌଶଳ ଜାଣିବା ସମ୍ଭବପର । ତେଣୁ ପାଠ୍ୟବସ୍ତୁ ଓ ଶିକ୍ଷାଦାନ ପଦ୍ଧତି ଉଭୟ ଦିଗରୁ ବିଚାରକଲେ ବିଷୟ ଶିକ୍ଷକଙ୍କର ଆବଶ୍ୟକତା ଅନୁଭୂତ ହେବ ।

ତୃତୀୟତଃ, କେତେକ ଦୃଷ୍ଟିରୁ ବିଷୟ-ଶିକ୍ଷକ ପିଲାମାନଙ୍କୁ ଶ୍ରେଣୀ ଶିକ୍ଷକଙ୍କଠାରୁ ଆହୁରି ଅଧିକ ଭଲ ଭାବରେ ଜାଣିବାର ସମ୍ଭାବନା ଅଛି । ଜଣେ ଶ୍ରେଣୀଶିକ୍ଷକ ଗୋଟିଏ ପାଠ୍ୟବର୍ଷରେ ଅଧିକ ଦିନ ପାଇଁ ସେହି ଶ୍ରେଣୀର ଛାତ୍ରମାନଙ୍କ ସଂସ୍ପର୍ଶରେ ଆସିପାରି ଥାଆନ୍ତି, ମାତ୍ର ସେହି ବର୍ଷଟି ଅତିବାହିତ ହେବାପରେ ସେ ହୁଏତ ଆଉ ସେହି ଛାତ୍ରମାନଙ୍କ ସମ୍ପର୍କରେ ଆସି ନ ପାରନ୍ତି । ବିଷୟ ଶିକ୍ଷକ ଗୋଟିଏ ବିଷୟ ବିଭିନ୍ନ ଶ୍ରେଣୀରେ ପଢ଼ାଉ-ଥିବାରୁ ସେ ଯେଉଁମାନଙ୍କୁ ଗୋଟିଏ ଶ୍ରେଣୀରେ ପଢ଼ାନ୍ତି ପୁଣି ସେହିମାନଙ୍କୁ ତା'ର ପରବର୍ତ୍ତୀ ଶ୍ରେଣୀରେ ମଧ୍ୟ ପଢ଼ାଇବାର ସୁଯୋଗ ପାଆନ୍ତି ଅର୍ଥାତ୍ ଗୋଟିଏ ଗୋଟିଏ ଛାତ୍ରଦଳଙ୍କୁ ସେ ଏକାଦିକ୍ରମେ ଚାରି, ପାଞ୍ଚ ବର୍ଷ ପଢ଼ାଇବାର ସମ୍ଭାବନା ଅଛି । ଏହା ଫଳରେ ସେ ଯେଉଁ ଗୋଟିକ ବିଷୟ ପଢ଼ାନ୍ତି ସେ ବିଷୟଟିରେ ଯେ କୌଣସି ଛାତ୍ରର ଦକ୍ଷତା ସମ୍ବନ୍ଧରେ ତାଙ୍କର ନିର୍ଭୁଲ ଧାରଣା ଆସେ ଏବଂ ସେ ଯଦି ଚାହାନ୍ତି ତେବେ ତାଙ୍କର ଏହି ଜ୍ଞାନର ସମ୍ପୂର୍ଣ୍ଣ ସଦୁପଯୋଗ ମଧ୍ୟ କରିପାରନ୍ତି ଅର୍ଥାତ୍ ଦୁର୍ବଳ ପିଲାମାନଙ୍କର ଉନ୍ନତି କଲେ ଅଧିକ ଦୃଷ୍ଟି ଦେଇପାରନ୍ତି ଓ ବୁଦ୍ଧିମାନ ଛାତ୍ରର ପୂର୍ଣ୍ଣ ବିକାଶ ଦିଗରେ ମଧ୍ୟ ଧ୍ୟାନ ଦେଇପାରନ୍ତି ।

ଚତୁର୍ଥତଃ, ବିଷୟ-ଶିକ୍ଷକଙ୍କ ପକ୍ଷେ ପାଠ୍ୟ ନିର୍ଘଣ୍ଟର କ୍ରମ ସ୍ଥିରକରିବା ସହଜ ସାପେକ୍ଷ । ମନେକର ଜଣେ ଶିକ୍ଷକ ନବମ, ଦଶମ ଓ ଏକାଦଶ ଶ୍ରେଣୀରେ ଗଣିତ

ପଢ଼ାଉଛନ୍ତି । ତାହାହେଲେ ସେ ବର୍ଷ ଆରମ୍ଭରୁ କେଉଁ ଶ୍ରେଣୀରେ କେତେ ପଢ଼ାହେବ ତାହା ଅରେ ସ୍ଥିର କରିନେବେ ଓ ଏହି ବିଷୟର ପାଠ୍ୟ ନିର୍ଘଣ୍ଟ ପରିବର୍ତ୍ତିନ ନ ହେବାଯାଏ ସେ ତାହା ଅନୁସରଣ କରିପାରିବେ । ଛାତ୍ରମାନେ ନବମ ଶ୍ରେଣୀରୁ ଉତ୍ତୀର୍ଣ୍ଣ ହୋଇ ଦଶମକୁ ଗଲବେଳେ ବା ଦଶମ ଶ୍ରେଣୀରୁ ଉତ୍ତୀର୍ଣ୍ଣ ହୋଇ ଏକାଦଶକୁ ଗଲବେଳେ ତାଙ୍କୁ ବର୍ଷ ଆରମ୍ଭରେ ସେମାନଙ୍କର ପୂର୍ବଜ୍ଞାନ ସମ୍ବନ୍ଧରେ ଅଭିହିତ ହେବାକୁ ଅଯଥା ସମୟ ନଷ୍ଟ କରିବାକୁ ହେବ ନାହିଁ ବା କେଉଁ ଛାତ୍ର ପ୍ରତି ବିଶେଷ ଦୃଷ୍ଟି ଦରକାର ବା କେଉଁ ଛାତ୍ରର ଗଣିତ ଦକ୍ଷତା କେବଳ ବଜାୟ ରଖିବା ଆବଶ୍ୟକ ତାହା ତାଙ୍କପକ୍ଷେ ଜାଣିବାକୁ ସମୟ ଲାଗିବ ନାହିଁ । କାରଣ ସେ ସେମାନଙ୍କୁ ପୂର୍ବ ଶ୍ରେଣୀରେ ପଢାଇ ଆସୁଥିଲେ । ତେଣୁ ବିଷୟଟିର ଦକ୍ଷତା ସମ୍ବନ୍ଧରେ ତାଙ୍କ ପାଇଁ ନୂଆ କିଛି ଜାଣିବାର ନାହିଁ । ଏହି କଥା ସମ୍ଭବପର ହୁଅନ୍ତା ନାହିଁ ଯଦି ତ୍ରିନିଜଣ ଶିକ୍ଷକ ପୃଥକ୍ ପୃଥକ୍ ଭାବରେ ତିନି ଗୋଟି ଶ୍ରେଣୀରେ ପାଠ ପଢ଼ାଉଥାଆନ୍ତେ ।

ଉପର୍ଯ୍ୟୁକ୍ତ ଆଲୋଚନାରୁ ଏହା ସ୍ପଷ୍ଟ ପ୍ରତୀୟମାନ ହୁଏ ଯେ ନିମ୍ନ ମାଧ୍ୟମିକ ସ୍ତରଠାରୁ ଉଚ୍ଚ ମାଧ୍ୟମିକ ସ୍ତର ପର୍ଯ୍ୟନ୍ତ ଶିକ୍ଷାଦାନ ବିଷୟ ଶିକ୍ଷକଙ୍କ ଦ୍ୱାରା କରାଯାଇ ପାରିଲେ ଭଲ ହୁଅନ୍ତା । ବିଦ୍ୟାଳୟରେ କେତେଜଣ ଶିକ୍ଷକ ଅଛନ୍ତି, କେତେଗୋଟି ଶ୍ରେଣୀ ଅଛି ଓ ପ୍ରତ୍ୟେକ ଶ୍ରେଣୀରେ କେତେଗୋଟି ବିଭାଗ ଅଛି ତାହା ଉପରେ ସବୁ କିଛି ନିର୍ଭର କରେ । କିନ୍ତୁ ବିଷୟ ଶିକ୍ଷକଙ୍କ ଦ୍ୱାରା ଶିକ୍ଷାଦାନ କରାଇବା ଆମର ଲକ୍ଷ୍ୟ ହେବା ଉଚିତ । ଯଦି ଏହି ପଦ୍ଧତି ଅନୁସୃତ ହୁଏ ତେବେ ସେହି ଶିକ୍ଷକମାନଙ୍କ ମଧ୍ୟରୁ ଜଣେ ଜଣେ ଗୋଟିଏ ଗୋଟିଏ ଶ୍ରେଣୀର ଦାୟିତ୍ୱରେ ରହିବେ ଓ ପୂର୍ବରୁ ଶ୍ରେଣୀ ଶିକ୍ଷକଙ୍କର ଦାୟିତ୍ୱ ଓ କର୍ତ୍ତବ୍ୟ ସମ୍ବନ୍ଧରେ ଯାହା କୁହାଯାଇଅଛି ତାହା ମଧ୍ୟ ସମ୍ପାଦନ କରିବେ ।

## ଶିକ୍ଷକ ପରିଷଦ (Staff Council)

ପ୍ରତେକ ବିଦ୍ୟାଳୟର ସମସ୍ତ ଶିକ୍ଷକ ଶିକ୍ଷକ ପରିଷଦର ସଭ୍ୟ । ପ୍ରଧାନ ଶିକ୍ଷକ ଏହି ପରିଷଦର ଅଧ୍ୟକ୍ଷ ଏବଂ ଜଣେ ଶିକ୍ଷକ ଅନ୍ୟ ଶିକ୍ଷକମାନଙ୍କ ଦ୍ୱାରା ମନୋନୀତ ହୋଇ ପରିଷଦର ସଂପାଦକ ହିସାବରେ କାର୍ଯ୍ୟ କରନ୍ତି । ଶିକ୍ଷକ ମଣ୍ଡଳୀ ଗୋଟିଏ ଦଳ (team)ର ସଭ୍ୟରୂପେ ଏକ ମନ ଏକ ପ୍ରାଣରେ କାର୍ଯ୍ୟ ନ କଲେ ବିଦ୍ୟାଳୟର ଲକ୍ଷ୍ୟ-ସାଧନ ହୋଇପାରିବ ନାହିଁ । ଏଥିପାଇଁ ପ୍ରତ୍ୟେକ ଶିକ୍ଷକ ନିଜ ନିଜର ବ୍ୟକ୍ତିଗତ କର୍ତ୍ତବ୍ୟ ସମ୍ପାଦନ କରିବା ସଙ୍ଗେ ସଙ୍ଗେ ଦଳଗତ ଭାବରେ ସହଯୋଗମୂଳକ ମନୋବୃତ୍ତିରେ ଆଗେଇଯିବା ଉଚିତ । କେବଳ ଶିକ୍ଷକମାନଙ୍କ ମଧ୍ୟରେ ଯେ ସହଯୋଗମୂଳକ ବାତାବରଣ ରହିବା ବାଞ୍ଛନୀୟ ତାହା ନୁହେଁ, ପ୍ରଧାନ ଶିକ୍ଷକ ଓ ଅନ୍ୟାନ୍ୟ ଶିକ୍ଷକଙ୍କ ମଧ୍ୟରେ, ଶିକ୍ଷକମଣ୍ଡଳୀ ଓ ପରିଚାଳନା ସଂସ୍ଥା ମଧ୍ୟରେ ପୂର୍ଣ୍ଣ ସହଯୋଗ ସ୍ଥାପିତ ହେବା ଆବଶ୍ୟକ ।

ଏଥିପାଇଁ ପ୍ରଧାନ ଶିକ୍ଷକ ଓ ଅନ୍ୟାନ୍ୟ ଶିକ୍ଷକ ଥରକୁ ଥର ମିଳିତ ହୋଇ ବିସ୍ତୃତ ଆଲୋଚନା କରି ବିଦ୍ୟାଳୟର ଉନ୍ନତି କଲେ ବିଭିନ୍ନ ପଦକ୍ଷେପ ନେବା ଆବଶ୍ୟକ । କେବେ ଶିକ୍ଷକମାନେ ମିଳିତ ହୋଇ ବିସ୍ତୃତ ଆଲୋଚନା କରିବେ ତା'ର ଏକ ନିର୍ଦ୍ଦିଷ୍ଟ ଯୋଜନା କରାଗଲେ ଶିକ୍ଷକମାନେ ନିୟମିତ ଭାବରେ ବୈଠକରେ ମିଳିତ ହୋଇ ଯୋଜନାବଦ୍ଧ ଭାବରେ ସମସ୍ତ କାର୍ଯ୍ୟ କରିପାରିବେ ।

ପ୍ରତ୍ୟେକ ମାସରେ ଶିକ୍ଷକ ପରିଷଦର ବୈଠକ ଅନ୍ୟୂନ ଥରେ ବସିବା ଆବଶ୍ୟକ । ଏହି ବୈଠକଗୁଡ଼ିକର କାର୍ଯ୍ୟସୂଚୀ ବର୍ଷ ଆରମ୍ଭରୁ ଧାର୍ଯ୍ୟ ହୋଇଥିବା ଦରକାର । ଅବଶ୍ୟ ପରିବର୍ତ୍ତିତ ପରିସ୍ଥିତିରେ ଆବଶ୍ୟକ ହେଲେ କେତେକ ନୂଆ ବିଷୟ କାର୍ଯ୍ୟସୂଚୀର ଅନ୍ତର୍ଭୁକ୍ତ ହୋଇପାରେ । ମାତ୍ର ପରିଷଦର ବୈଠକ ଏକ ଧାରାବାହିକ କାର୍ଯ୍ୟକ୍ରମ ହୋଇଥିବାରୁ ପ୍ରଥମରୁ ନିୟମବଦ୍ଧ ଯୋଜନା ଆବଶ୍ୟକ । ପ୍ରତ୍ୟେକ ବୈଠକରେ ପ୍ରଧାନ ଶିକ୍ଷକ ବିଦ୍ୟାଳୟର ଦୈନନ୍ଦିନ କାର୍ଯ୍ୟକ୍ରମରେ ଉପୁଜୁଥିବା ସମସ୍ୟା ଅନ୍ୟମାନଙ୍କ ଦୃଷ୍ଟିକୁ ଆଣିବେ । ଅନ୍ୟାନ୍ୟ ଶିକ୍ଷକ ସେ ଦିଗରେ ଆବଶ୍ୟକ ପରାମର୍ଶ ଦେବେ । ବିଭିନ୍ନ ବିଷୟର ମୁଖ୍ୟ ଶିକ୍ଷକମାନେ ସେମାନଙ୍କର ବିଭାଗର ପାଠ୍ୟକ୍ରମର ଅଗ୍ରଗତି ସମ୍ବନ୍ଧରେ ଏକ ଏକ ବିବରଣୀ ଦେବେ । ଏହି ବିବରଣୀ ଫଳରେ ବିଭିନ୍ନ ବିଷୟ ଠିକ ଭାବରେ ପାଠ୍ୟବର୍ଣ୍ଣ ଅନୁଯାୟୀ ପଢ଼ା ହେଉଛି କି ନାହିଁ ବା କେଉଁ ବିଷୟ ପ୍ରତି ଅଧିକ ଦୃଷ୍ଟି ଦିଆଯିବ, ବା କେଉଁ ବିଷୟରେ ନୂଆ ପଦ୍ଧତି ଅନୁସୃତ ହେବ ଏ ସବୁ ସମସ୍ତଙ୍କ ସମକ୍ଷରେ ଆଲୋଚିତ ହୋଇଯିବ । ପରସ୍ପର ସହଯୋଗ ଦୃଷ୍ଟିରୁ ଗୋଟିଏ ବିଷୟ ପଢ଼ାଉଥିବା ଶିକ୍ଷକ ଅନ୍ୟ ବିଷୟର ଅଗ୍ରଗତି ଜାଣିବା ଉଚିତ ।

ପ୍ରତ୍ୟେକ ମାସରେ ବୈଠକ ବସିଲେ ମଧ୍ୟ ଏହା ତରବରରେ ଡକାଯିବା ଉଚିତ ନୁହେଁ । ପ୍ରତ୍ୟେକ ବୈଠକ ବସିବାର ଯଥେଷ୍ଟ ଆଗରୁ ବୈଠକ ବସିବା ତାରିଖ ଓ କାର୍ଯ୍ୟସୂଚୀ ଶିକ୍ଷକମାନଙ୍କୁ ଜଣାଇ ଦିଆଯିବା ଉଚିତ । ଫଳରେ ଶିକ୍ଷକମାନେ ସବୁ ବିଷୟ ବିଚାରକରି ନିଜ ନିଜର ମତାମତ ଦେବାକୁ ସମୟ ପାଇବେ ।

ହଠାତ୍ କୌଣସି ବିଷୟ ଶିକ୍ଷକମଣ୍ଡଳୀ ଆଗରେ ଉପସ୍ଥାପନା କରି ସେମାନଙ୍କର ମତାମତ ବୁଝିବାରେ କୌଣସି ସୁଫଳ ମିଳିବ ନାହିଁ । ସମୟ ସମୟରେ କୌଣସି ନା କୌଣସି ଅଳି ଦେଖାଇ ପ୍ରଧାନ ଶିକ୍ଷକ ଯଥେଷ୍ଟ ଆଗରୁ ଏହା କରନ୍ତି ନାହିଁ । ଏହା ଏକ ଅନୁଚିତ ପନ୍ଥା । ଶିକ୍ଷକମାନେ ଆଗରୁ ଜାଣିପାରିଲେ ସେମାନଙ୍କର ସମସ୍ୟାଜନିତ କୌଣସି ବିଷୟ କାର୍ଯ୍ୟ ସୂଚୀରେ ଅନ୍ତର୍ଭୁକ୍ତ କରାଇବାକୁ ସୁଯୋଗ ପାଇପାରିବେ । କୌଣସି ଗୋଟିଏ ବିଷୟ ପଢ଼ାଉଥିବା ଶିକ୍ଷକମାନେ ପରିଷଦ ବୈଠକ ପୂର୍ବରୁ ଏକତ୍ର

ମିଳିତ ହୋଇ ଓ ଆଲୋଚନା କରି ସେହି ବିଷୟଟି ପାଠ୍ୟକ୍ରମରେ ଉନ୍ନତି ଲାଗି ଶିକ୍ଷକ ପରିଷଦ ଆଗରେ ତତ୍ସଂକ୍ରାନ୍ତୀୟ ନିର୍ଦ୍ଦିଷ୍ଟ ପ୍ରସ୍ତାବ ମଧ୍ୟ ଆଗତ କରିପାରନ୍ତି ।

ଶିକ୍ଷକ ପରିଷଦର ସମ୍ପାଦକ ଭାବରେ ଜଣେ ଶିକ୍ଷକ ନିର୍ବାଚିତ ହେବା ଆବଶ୍ୟକ । ସେ ପ୍ରତ୍ୟେକ ବୈଠକର ଧାରା ବିବରଣୀ ଟିପି ରଖିବେ । ପରବର୍ତ୍ତୀ ବୈଠକରେ ପୂର୍ବ ବୈଠକରେ ହୋଇଥିବା ଆଲୋଚନା ଓ ଗୃହୀତ ପ୍ରସ୍ତାବ ପାଠକରିବେ । ପ୍ରତ୍ୟେକ ବୈଠକରେ ପ୍ରଧାନ ଶିକ୍ଷକ ସଭାପତିତ୍ୱ କରିବେ । ଯେତେବେଳେ କୌଣସି ବିଷୟର ପାଠ୍ୟକ୍ରମ ସଂକ୍ରାନ୍ତରେ ଆଲୋଚନା ହେବ ସେତେବେଳେ ପ୍ରଧାନ ଶିକ୍ଷକ ନିଜେ ପ୍ରସ୍ତାବ କରି ସେହି ସମୟ ପାଇଁ ବିଭାଗୀୟ ମୁଖ୍ୟ ଶିକ୍ଷକଙ୍କୁ ସଭାପତିତ୍ୱ କରିବା ପାଇଁ କହିବେ । ଏଥିରେ ପ୍ରଧାନ ଶିକ୍ଷକଙ୍କର ସମ୍ମାନରେ ଆଞ୍ଚ ଆସିବ ନାହିଁ ବରଂ ଏହା ପ୍ରଧାନ ଶିକ୍ଷକଙ୍କର ମହତ୍ତ୍ୱର ପରିଚାୟକ ହେବ ଏବଂ ଶିକ୍ଷକମାନଙ୍କଠାରୁ ଉତ୍ତରୋତ୍ତର ସାହାଯ୍ୟ ସହଯୋଗ ଲାଭ କରିବାରେ ଅଧିକ ସହାୟକ ହେବ ।

ପ୍ରତି ମାସରେ ଧରାବନ୍ଧା ବୈଠକ ବ୍ୟତୀତ ଆବଶ୍ୟକ ହେଲେ ଶିକ୍ଷକ ପରିଷଦର ଜରୁରୀ ବୈଠକ ମଧ୍ୟ ବସିପାରେ । ସମୟ ସମୟରେ ବିଭାଗୀୟ କର୍ମକର୍ତ୍ତାଙ୍କ ପାଖରୁ କେତେକ ବିଷୟ ଜରୁରୀ ବିବରଣୀର ଉତ୍ତର ପଠାଇବାକୁ ନିର୍ଦ୍ଦେଶ ଆସେ । ସମୟ ସମୟରେ ବିଦ୍ୟାଳୟର ଶୃଙ୍ଖଳାଜନିତ ପରିସ୍ଥିତିର ବିଚାର କରିବା ପାଇଁ ଶିକ୍ଷକମାନଙ୍କ ସହ ଜରୁରୀ ପରାମର୍ଶ କରିବା ପ୍ରଧାନ ଶିକ୍ଷକଙ୍କ ପକ୍ଷେ ଆବଶ୍ୟକ ହୁଏ । ତେଣୁ ଅଳ୍ପଦିନ ବା ଅଳ୍ପ ସମୟ ଆଗରୁ ଶିକ୍ଷକମାନଙ୍କୁ ଜଣାଇ ଥରେ ଅଧେ ବୈଠକ ବସିବାର ଯୁକ୍ତି-ଯୁକ୍ତ କାରଣ ମଧ୍ୟ ଥାଇପାରେ । ଏତଦ୍‌ବ୍ୟତୀତ ଅଧିକାଂଶ ଶିକ୍ଷକ ପରିଷଦର ଏକ ଜରୁରୀ ବୈଠକ ପାଇଁ ଆବେଦନ କଲେ ପ୍ରଧାନ ଶିକ୍ଷକ ବୈଠକ ଡକାଇବାକୁ ଆଦୌ ପଶ୍ଚାତ୍‌ପଦ ହେବା ଉଚିତ ନୁହେଁ । ସେମାନେ କୌଣସି ସମସ୍ୟାର ସମାଧାନ ଖୋଜି ପାଉଥାଆନ୍ତି ଯାହା ସମସ୍ତଙ୍କ ସମକ୍ଷରେ ଆଲୋଚିତ ହେବା ଭଲ, ଏପରିକି ପ୍ରଧାନ ଶିକ୍ଷକଙ୍କର ସେପରି କୌଣସି ବୈଠକ ସପକ୍ଷରେ ଆନ୍ତରିକତା ନ ଥିଲେ ମଧ୍ୟ ସେ ତାହା ଡକାଇବା ଉଚିତ । ବିଦ୍ୟାଳୟ ସଂକ୍ରାନ୍ତ ଯେ କୌଣସି ବିଷୟ ସମସ୍ତଙ୍କ ସମକ୍ଷରେ ଆଲୋଚନା ହୋଇଯିବା ଭଲ; ଏହା ଫଳରେ ବିଦ୍ୟାଳୟରେ ଅଯଥା ଅବିଶ୍ୱାସର ବାତାବରଣ ରହିବ ନାହିଁ । ଭୁଲିଯିବା ଉଚିତ ନୁହେଁ ବିଦ୍ୟାଳୟର ଉନ୍ନତି ପରସ୍ପର ସାହାଯ୍ୟ ସହଯୋଗ ଫଳରେ କେବଳ ସମ୍ଭବପର, ଅବିଶ୍ୱାସର ବାତାବରଣରେ ନୁହେଁ ।

ମୋଟଉପରେ ଶିକ୍ଷକ ପରିଷଦର ବୈଠକ ନିୟମିତ ବସିଲେ ବିଦ୍ୟାଳୟର ସମସ୍ତ କାର୍ଯ୍ୟକ୍ରମ ଯୋଜନା କରିବାକୁ କାର୍ଯ୍ୟକ୍ରମର ଅଗ୍ରଗତି ସମୀକ୍ଷା କରିବାକୁ,

ଆବଶ୍ୟକ ଅନୁସାରେ କାର୍ଯ୍ୟକ୍ରମଗୁଡ଼ିକ ପରିମାର୍ଜିତ ଓ ପରିବର୍ଦ୍ଧିତ କରିବାକୁ, ଶିକ୍ଷକମାନେ ନିଜ ନିଜର ଅପରିମିତ ଅଭିଯୋଗ ଉପସ୍ଥାପିତ କରିବାକୁ, କେତେ ନିର୍ଦ୍ଦିଷ୍ଟ ଶ୍ରେଣୀର ଗୁପ (ବୁଦ୍ଧିମାନ, ନିର୍ବୋଧ, ଦୁଷ୍ଟ)ଙ୍କ ପାଇଁ ବିଶେଷ ଓ ସତର୍କ ଦୃଷ୍ଟିଦେବାକୁ ସୁବିଧା ହେବ ।

## ଅନୁଷଦ (Faculty)ର କାର୍ଯ୍ୟାବଳୀ

ଶିକ୍ଷକ ପରିଷଦର କାର୍ଯ୍ୟାବଳୀକୁ ସହଜ ଓ ସୁଗମ କରିବା ପାଇଁ ଶିକ୍ଷକମଣ୍ଡଳୀ କେତେଗୋଟି ଅନୁଷଦରେ ବିଭକ୍ତ ହେବା ବାଞ୍ଛନୀୟ । କୌଣସି ଗୋଟିଏ ବିଷୟ ବା ଅନୁରୂପ ବିଷୟ ପଢ଼ାଉଥିବା ସମସ୍ତ ଶିକ୍ଷକ ଗୋଟିଏ ଅନୁଷଦର ସଭ୍ୟ ହେବା ବାଞ୍ଛନୀୟ । ବିଦ୍ୟାଳୟର ସମସ୍ତ ଇଂରାଜୀ ଶିକ୍ଷକ ଗୋଟିଏ ଅନୁଷଦଭୁକ୍ତ ହେବା ଉଚିତ । ମାତ୍ର ସଂସ୍କୃତ ପଢ଼ାଉଥିବା ଶିକ୍ଷକମାନଙ୍କର ସଂଖ୍ୟା ଗୋଟିଏ ବିଦ୍ୟାଳୟରେ ଏକ ବା ଦୁଇରୁ ଅଧିକ ହୋଇ ନ ଥିବା ଦୃଷ୍ଟିରୁ ମାତୃଭାଷା ଓ ସଂସ୍କୃତ ଶିକ୍ଷକମାନେ ଗୋଟିଏ ଅନୁଷଦର ସଭ୍ୟ ହେବା ଉଚିତ । ସେହିପରି ବିଜ୍ଞାନ ପାଇଁ ଗୋଟିଏ ଓ ଗଣିତ ପାଇଁ ଗୋଟିଏ ଅନୁଷଦ ଗଢ଼ାଯାଇପାରେ ବା ଗଣିତ ଓ ବିଜ୍ଞାନ ଶିକ୍ଷକମାନେ ଗୋଟିଏ ଅନୁଷଦଭୁକ୍ତ ହୋଇପାରନ୍ତି । ବୈଷୟିକ ଶିକ୍ଷା ଦେଉଥିବା ଶିକ୍ଷକମାନେ ଯଥା—କାରିଗରି ବିଦ୍ୟା (Craft), ଡ୍ରଇଂ ଓ ଅନୁରୂପ ଅନ୍ୟାନ୍ୟ ବିଷୟର ଶିକ୍ଷକ ଗୋଟିଏ ଅନୁଷଦ ଗଠନ କରିବା ଉଚିତ । ପ୍ରଧାନ ଶିକ୍ଷକ ତାଙ୍କର ପଦମର୍ଯ୍ୟାଦା ଦୃଷ୍ଟିରୁ ପ୍ରତ୍ୟେକ ଅନୁଷଦର ସଭ୍ୟ ହେବେ; ମାତ୍ର ସେ ଅନୁଷଦର ପ୍ରତ୍ୟେକ ବୈଠକରେ ଯୋଗ ଦେବାର ଆବଶ୍ୟକତା ନାହିଁ ।

ଅନୁଷଦର ବୈଠକରେ ବିଭାଗୀୟ ମୁଖ୍ୟ ତଥା ବୟୋଜ୍ୟେଷ୍ଠ ଶିକ୍ଷକ ସଭାପତିତ୍ୱ କରିବେ । ଅନୁଷଦ ବୈଠକର ବିବରଣୀ ଲିପିବଦ୍ଧ କରିବାକୁ ଜଣେ ସମ୍ପାଦକ ନିଯୁକ୍ତ ହେବା ଉଚିତ । ଆବଶ୍ୟକ ଅନୁସାରେ ଅନୁଷଦର ବୈଠକ ଯେତେ ଇଚ୍ଛା ସେତେଥର ବସିପାରେ; ମାତ୍ର ପ୍ରତିମାସରେ ଅନ୍ୟୂନ ଥରେ ଏହି ବୈଠକ ନିଶ୍ଚୟ ବସିବା ଉଚିତ । ଏହି ବୈଠକରେ ପାଠ୍ୟକ୍ରମର ଶିକ୍ଷାଦାନ ଓ ସଗଠନ ସମ୍ବନ୍ଧୀୟ ସମସ୍ତ ବିଷୟ ଥରକୁ ଥର ଆଲୋଚନା କରାଯାଇ ନିର୍ଦ୍ଦିଷ୍ଟ କାର୍ଯ୍ୟପନ୍ଥା ସ୍ଥିର ହେବା ଉଚିତ । ଅନୁଷଦ ବୈଠକର ଯେଉଁ ସିଦ୍ଧାନ୍ତଗୁଡ଼ିକ କାର୍ଯ୍ୟକାରୀ ହେବାପାଇଁ ଅନ୍ୟମାନଙ୍କର ସାହାଯ୍ୟ ଓ ସହଯୋଗ ଲୋଡ଼ା ସେସବୁ ପରିଷଦ ବୈଠକରେ ଉପସ୍ଥାପନା କରାଯିବା ଉଚିତ । ବର୍ଷର ବିଭିନ୍ନ ମାସ ପାଇଁ ବିଷୟଟିର ପାଠ୍ୟକ୍ରମର ବିଭାଜନ ଅନୁଷଦର ବୈଠକରେ ହିଁ ସ୍ଥିରୀକୃତ ହେବା ବାଞ୍ଛନୀୟ । ଏହା ବର୍ଷର ପ୍ରାରମ୍ଭରେ କରାଯାଇ ପରବର୍ତ୍ତୀ ବୈଠକଗୁଡ଼ିକରେ ଅଗ୍ରଗତିର ସମୀକ୍ଷା କରାଯାଇପାରିବ । ଯଦି ବିଜ୍ଞାନ ସଂସଦ (Science club), ସାହିତ୍ୟ ସଂସଦ ଆଦି ଗଠିତ ହୋଇଥାଏ

ତେବେ ପରିଷଦର କାର୍ଯ୍ୟକ୍ରମ ସ୍ଥୂଳତଃ ଏଠାରେ ଆଲୋଚିତ ହୋଇ ବିଭିନ୍ନ ଦାୟିତ୍ୱ ନିର୍ଦ୍ଦିଷ୍ଟ ଶିକ୍ଷକଙ୍କ ଉପରେ ନ୍ୟସ୍ତ ହେବା ଉଚିତ ।

ବିଭିନ୍ନ ଅନୁଷଦ ପାଠ୍ୟ ବିଷୟଗୁଡ଼ିକର ନୂତନ ଓ ଅଭିନବ ଶିକ୍ଷାଦାନ ପଦ୍ଧତି ସମ୍ବନ୍ଧରେ କେତେକ ପରୀକ୍ଷାମୂଳକ କାର୍ଯ୍ୟକ୍ରମ ହାତକୁ ନେଇ ସେସବୁର କାର୍ଯ୍ୟକାରିତା ଓ ଦକ୍ଷତା ବିଷୟରେ ପ୍ରତ୍ୟକ୍ଷ ଜ୍ଞାନଲାଭ କରିପାରନ୍ତି । ଦୁଇ ତିନି ଜଣ ଶିକ୍ଷକ କୌଣସି ଏକ ନୂତନ ପଦ୍ଧତିରେ ଶିକ୍ଷାଦାନ କରି ତାହାର ଉପାଦେୟତା ତୁଳନା କରିପାରନ୍ତି ଓ ମଝିରେ ମଝିରେ ନୂତନ କାର୍ଯ୍ୟକ୍ରମର ଅଗ୍ରଗତି, ସୁବିଧା ଓ ଅସୁବିଧାର ଏକ ସମୀକ୍ଷା ମଧ୍ୟ କରିପାରନ୍ତି । ଏହିସବୁ କାର୍ଯ୍ୟପାଇଁ ଅନୁଷଦର ବୈଠକହିଁ ଏକ ପ୍ରଶସ୍ତ କ୍ଷେତ୍ର ଯେଉଁଠାରେ ଅନ୍ୟ ଶିକ୍ଷକଙ୍କ ସମକ୍ଷରେ ଆଲୋଚନା କରାଯାଇ ସେମାନଙ୍କର ମୂଲ୍ୟବାନ ପରାମର୍ଶ ନେବାର ସୁବିଧା ହେବ । ଆଜିକାଲି ବିଭିନ୍ନ ପ୍ରାଥମିକ ଓ ମାଧ୍ୟମିକ ବିଦ୍ୟାଳୟରେ ପରୀକ୍ଷାମୂଳକ ପ୍ରକଳ୍ପ ଓ ବ୍ୟବହାରିକ ଗବେଷଣା ପ୍ରକଳ୍ପ (Experimental Projects and Action Research Projects) ଯେପରି ଶିକ୍ଷକମାନେ କାର୍ଯ୍ୟକାରୀ କରିପାରିବେ ସେ ଦିଗରେ ଉତ୍ସାହ ଦେବା ପାଇଁ ଜାତୀୟ ଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣ ପରିଷଦ (National Council of Educational Research and Training) ପ୍ରତ୍ୟେକ ବର୍ଷ ଆର୍ଥିକ ସାହାଯ୍ୟର ବ୍ୟବସ୍ଥା କରିଅଛନ୍ତି । ଶିକ୍ଷକମାନେ ନିକଟତମ ପ୍ରଶିକ୍ଷଣ ମହାବିଦ୍ୟାଳୟ ଓ ରାଜ୍ୟ ଶିକ୍ଷା ପ୍ରତିଷ୍ଠାନର ସମ୍ପ୍ରସାରଣ ସେବା ବିଭାଗଙ୍କଠାରୁ ଆବଶ୍ୟକ ତଥ୍ୟ ସଂଗ୍ରହ କରି ଏ ବିଷୟରେ ଯତ୍ନବାନ ହୋଇପାରନ୍ତି । ଅନୁଷଦ ବୈଠକଗୁଡ଼ିକରେ କେତେକ ନୂତନ ପ୍ରକଳ୍ପର ବିଧିବଦ୍ଧ ଆଲୋଚନା କରାଯାଇ ଯଥାର୍ଥ ଓ ଉପାଦେୟ ବିବେଚିତ ହେଉଥିବା ପ୍ରକଳ୍ପ-ଗୁଡ଼ିକ ପରୀକ୍ଷା କରାଯାଇପାରେ ଏବଂ ଏଥିପାଇଁ ଉପଯୁକ୍ତ ଆର୍ଥିକ ସାହାଯ୍ୟ ମଧ୍ୟ ଲାଭ କରାଯାଇପାରେ । ବିଭିନ୍ନ ପ୍ରକଳ୍ପର ସଫଳ ରୂପାୟନ ଲାଗି ଅନ୍ୟ ଅନୁଷଦର ସଭ୍ୟଭୁକ୍ତ ପ୍ରବୀଣ ଶିକ୍ଷକମାନଙ୍କର ସାହାଯ୍ୟ ମଧ୍ୟ ନିଆଯାଇପାରେ । ଗୋଟିଏ ଅନୁଷଦର ସଭ୍ୟଭୁକ୍ତ ଶିକ୍ଷକମାନେ ଅନ୍ୟ ଅନୁଷଦର ସଭ୍ୟଭୁକ୍ତ ଶିକ୍ଷକଙ୍କୁ ନିମନ୍ତ୍ରଣ କରି ତାଙ୍କର ସାହାଯ୍ୟ ଓ ସହଯୋଗ ନେଲେ ଏକ ଉଚ୍ଚକୋଟୀର ପରମ୍ପରା ମଧ୍ୟ ସୃଷ୍ଟି ହେବ ।

## ଶିକ୍ଷକ ସଂଗଠନ

ଶିକ୍ଷକ ପରିଷଦ ସମ୍ବନ୍ଧୀୟ ଆଲୋଚନା ସମାପ୍ତ କରିବା ପୂର୍ବରୁ ଶିକ୍ଷକ ସଙ୍ଗଠନ ସମ୍ବନ୍ଧରେ କେତେକ କଥା କହିବା ପ୍ରାସଙ୍ଗିକ ମନେହୁଏ । ସାରା ପୃଥିବୀରେ ଶିକ୍ଷକ ସଙ୍ଗଠନର ପ୍ରକାର ଓ ଅଭିବୃଦ୍ଧି ପ୍ରାୟ ସମାନ । ଶ୍ରମିକ ସଙ୍ଗଠନ ପରି ଆର୍ଥିକ ସୁବିଧାଲାଭ ଉଦ୍ଦେଶ୍ୟରେ ଗଠିତ ଏହି ସଙ୍ଗଠନଗୁଡ଼ିକର କାର୍ଯ୍ୟାବଳୀ କ୍ରମଶଃ ବ୍ୟାପକ ହେଉଅଛି । ବହୁ ଶିକ୍ଷକ ସଙ୍ଗଠନ ଏବେ ଆର୍ଥିକ ସୁବିଧା ଓ ଉନ୍ନତ ବ୍ୟବସ୍ଥା ସର୍ତ୍ତ ଲାଗି

ସଂଗ୍ରାମ ଅବ୍ୟାହତ ରଖିବା ସଙ୍ଗେ ସଙ୍ଗେ ଶିକ୍ଷକମାନଙ୍କର ବୃତ୍ତିଗତ ଦକ୍ଷତାର ଅଭିବୃଦ୍ଧି (Professional growth) ଲାଗି ମଧ୍ୟ ବିଭିନ୍ନ ଯୋଜନା କରୁଅଛନ୍ତି । ଏହି ପ୍ରକାର ପରିକଳ୍ପନା ସ୍ୱାଗତଯୋଗ୍ୟ । ଭାରତରେ ସବଂଭାରତୀୟ ସ୍ତରରେ ଶିକ୍ଷକ ସଂଗଠନମାନ ରହିଅଛି ଏବଂ ଅଖିଳ ଭାରତୀୟ ବିଜ୍ଞାନ ଶିକ୍ଷକ ସଙ୍ଗଠନ ପରି ବିଷୟ-ଶିକ୍ଷକ ସଙ୍ଗଠନ (Subject Teacher's Association) ମାନ ମଧ୍ୟ ରହିଅଛି । ସମସ୍ତେ ଏକମତ ଯେ ଶିକ୍ଷକ ସଙ୍ଗଠନଗୁଡ଼ିକ ସେମାନଙ୍କର ଦରମା, ପଦମର୍ଯ୍ୟାଦା, ସ୍ୱକୀୟ ସର୍ତ୍ତ ପ୍ରଭୃତିର ଉନ୍ନତି ଲାଗି ଚେଷ୍ଟାକରିବା ସଙ୍ଗେ ସଙ୍ଗେ ଶିକ୍ଷକମାନଙ୍କର ବୌଦ୍ଧିକ ବିକାଶ ଓ ବୃତ୍ତିଗତ ଦକ୍ଷତାର ଅଭିବୃଦ୍ଧି ଲାଗି ବିଭିନ୍ନ ପରିକଳ୍ପନା ହାତକୁ ନେବା ଉଚିତ । ଯେଉଁ ସଙ୍ଗଠନର ଏପରି ବ୍ୟାପକ କାର୍ଯ୍ୟକ୍ରମ ରହିଥିବ ଓ ଏକ ଦାୟିତ୍ୱପୂର୍ଣ୍ଣ ତଥା ପ୍ରତିନିଧିମୂଳକ ସଂସ୍ଥା ହୋଇଥିବ ତାହାକୁ କେନ୍ଦ୍ର ଓ ରାଜ୍ୟ ସରକାରମାନେ ସ୍ୱୀକୃତି ଦେବା ବାଞ୍ଛନୀୟ । ସରକାର ଶିକ୍ଷାର ଗୁଣାତ୍ମକ ଅଭିବୃଦ୍ଧି ଲାଗି ପରିବର୍ତ୍ତନ ଆଣିବା ବେଳେ ଓ ଶିକ୍ଷକମାନଙ୍କର ଦରମା ଓ ସ୍ୱକୀୟ ସର୍ତ୍ତର ବିଚାର କଲାବେଳେ ଏହି ସବୁ ସ୍ୱୀକୃତିପ୍ରାପ୍ତ ସଂସ୍ଥାର ପରାମର୍ଶ ନେବା ବାଞ୍ଛନୀୟ । ତେଣୁ ପ୍ରତ୍ୟେକ ବିଦ୍ୟାଳୟର ଶିକ୍ଷକ ପରିଷଦ ଓ ବିଭିନ୍ନ ଅନୁଷଦ ଜାତୀୟ ସ୍ତରରେ ବା ପ୍ରାଦେଶିକ ସ୍ତରରେ ସ୍ୱୀକୃତିପ୍ରାପ୍ତ ଶିକ୍ଷକ ସଙ୍ଗଠନ ସହ ସଂପର୍କ ସ୍ଥାପନ କରିପାରନ୍ତି । କୋଠାରି କମିଶନଙ୍କ ମତରେ ଜାତୀୟ ଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣ ପରିଷଦ ରାଜ୍ୟସ୍ତରୀୟ ବିଷୟ-ଶିକ୍ଷକ ସଙ୍ଗଠନ ସହ ସମନ୍ୱୟ ସ୍ଥାପନ କରି ଅଖିଳ ଭାରତୀୟ ବିଷୟ ଶିକ୍ଷକ ସଙ୍ଗଠନ ସ୍ଥାପନ କରିବା ଦିଗରେ ସାହାଯ୍ୟ କରିବା ସଙ୍ଗେ ସଙ୍ଗେ ଜାତୀୟ ସ୍ତରରେ ହିନ୍ଦୀ ଓ ଇଂରାଜୀରେ ପତ୍ରିକା ପ୍ରକାଶନରେ ସାହାଯ୍ୟ କଲେ ସମଗ୍ର ଦେଶର ଶିକ୍ଷକମାନଙ୍କ ପକ୍ଷରେ ପତ୍ରିକାଗୁଡ଼ିକ ବ୍ୟବହାର ଉପଯୋଗୀ ହୋଇପାରିବ ।

## ପ୍ରଶ୍ନାବଳୀ

୧ । ଶ୍ରେଣୀ ଶିକ୍ଷକଙ୍କର ପ୍ରଚଳିତ କର୍ତ୍ତବ୍ୟ ସମ୍ବନ୍ଧରେ ପୁଙ୍ଖାନୁପୁଙ୍ଖ ଆଲୋଚନା କର ।

୨ । ବିଷୟ-ଶିକ୍ଷକଙ୍କର କର୍ତ୍ତବ୍ୟ ସମ୍ବନ୍ଧରେ ଆଲୋଚନା କର ।

୩ । ପ୍ରଚଳିତ ଶିକ୍ଷା ପଦ୍ଧତିରେ ଶ୍ରେଣୀଶିକ୍ଷକ ବା ବିଷୟ ଶିକ୍ଷକ କାହାର ଆବଶ୍ୟକତା ଅଧିକ ବୋଲି ମନେକରୁଛ । କାହିଁକି ?

୪ । ଶିକ୍ଷକ ପରିଷଦର କାର୍ଯ୍ୟାବଳୀ ସମ୍ବନ୍ଧରେ ଏକ ସଂକ୍ଷିପ୍ତ ବିବରଣୀ ଦିଅ ।

୫ । "ଶିକ୍ଷକ ପରିଷଦର କାର୍ଯ୍ୟାବଳୀ ସହଜ ଓ ସୁଗମ ହେବା ଲାଗି ଶିକ୍ଷକମଣ୍ଡଳୀ କେତେଗୋଟି ଅନୁଷଦରେ ବିଭକ୍ତ ହେବା ବାଞ୍ଛନୀୟ ।" ଏହି ଉକ୍ତିର ଯଥାର୍ଥତା ପ୍ରତିପାଦନ କର ।

---

# ତ୍ରୟୋଦଶ ଅଧ୍ୟାୟ

## ସହ-ପାଠ୍ୟକ୍ରମ କାର୍ଯ୍ୟାବଳୀ
## (Co-curricular activities)

### ସହ-ପାଠ୍ୟକ୍ରମ କାର୍ଯ୍ୟାବଳୀର ଆବଶ୍ୟକତା

ଛାତ୍ରର ବୌଦ୍ଧିକ ବିକାଶ ସଙ୍ଗେ ସଙ୍ଗେ ଶାରୀରିକ, ମାନସିକ, ଆବେଗିକ ଅଭିବୃଦ୍ଧି ପାଇଁ ଅର୍ଥାତ୍ ତାହାର ପୂର୍ଣ୍ଣ ବ୍ୟକ୍ତିତ୍ୱ ( Entire Personality )ର ପରିପ୍ରକାଶ ପାଇଁ ପର୍ଯ୍ୟାପ୍ତ ସୁବିଧା ବିଦ୍ୟାଳୟର କାର୍ଯ୍ୟକ୍ରମରେ ଅନ୍ତର୍ଭୁକ୍ତ ହେବା ବାଞ୍ଛନୀୟ । ତାହାହେଲେ ବିଭିନ୍ନ ସ୍ୱଭାବ ଓ ସାମର୍ଥ୍ୟ ଥିବା ଛାତ୍ରମାନଙ୍କର ପ୍ରତିଭା ଏହି ସବୁ କାର୍ଯ୍ୟକ୍ରମ ମାଧ୍ୟମରେ ସଂପୂର୍ଣ୍ଣ ପ୍ରକଟିତ ହେବାର କୌଣସି ଅସୁବିଧା ହେବ ନାହିଁ । ତେଣୁ ଯେ କୌଣସି ବିଦ୍ୟାଳୟ କେବଳ ସାଧାରଣ ଶିକ୍ଷାଲାଭ କରିବାରେ ଗୋଟିଏ କ୍ଷେତ୍ରରୂପେ ରହିବା ଉଚିତ ନୁହେଁ । ଅବଶ୍ୟ ଜ୍ଞାନଲାଭ କରିବାର ଆବଶ୍ୟକତା ଅଛି; ମାତ୍ର ସେହି ଜ୍ଞାନଲାଭ କେବଳ ଚିତାକର୍ଷକ ଓ ଜ୍ଞାନବୋଧୀପକ କାର୍ଯ୍ୟାବଳୀ ମାଧ୍ୟମରେ ହେବା ବାଞ୍ଛନୀୟ ନଚେତ୍ ଏହା ଛାତ୍ରର ମନ ଓ ବ୍ୟକ୍ତିତ୍ୱ ଉପରେ କୌଣସି ସ୍ଥାୟୀ ଛାପ ପକାଇପାରିବ ନାହିଁ ବା ତାହାର ଆଚରଣକୁ ପ୍ରଭାବିତ କରିପାରିବ ନାହିଁ । ତେଣୁ ସାଧାରଣ ଶିକ୍ଷାଦାନ କାର୍ଯ୍ୟକ୍ରମ ବ୍ୟତୀତ ଅନ୍ୟାନ୍ୟ କାର୍ଯ୍ୟକ୍ରମର ମଧ୍ୟ ଶିକ୍ଷାଗତ ମୂଲ୍ୟ ରହିବା ଉଚିତ । ଏହି ଦୃଷ୍ଟିରୁ ବିଚାରକଲେ ବିଦ୍ୟାଳୟର କ୍ରୀଡ଼ା କସରତ ପ୍ରଭୃତି କାର୍ଯ୍ୟକ୍ରମ କେବଳ ଶାରୀରିକ ଦକ୍ଷତା ବଢ଼ାଇବା ପାଇଁ ଉଦ୍ଦିଷ୍ଟ ନ ହୋଇ ସେ ସବୁ ଶିକ୍ଷଣୀୟ ହେବା ମଧ୍ୟ ଆବଶ୍ୟକ । ବିଦ୍ୟାଳୟର ସଭା, ସମ୍ମେଳନ, ଉତ୍ସବ, ତର୍କସଭା, ନାଟକୋତ୍ସବ ଇତ୍ୟାଦି କାର୍ଯ୍ୟକ୍ରମ ଛାତ୍ରର ମାନସିକ ଓ ଆବେଗିକ ଅଭିବୃଦ୍ଧିରେ ସାହାଯ୍ୟ କରିବା ସଙ୍ଗେ ସଙ୍ଗେ ସେ ସବୁ ଶିକ୍ଷଣୀୟ ହେବା ଆବଶ୍ୟକ । ବିଦ୍ୟାଳୟ କାର୍ଯ୍ୟକ୍ରମର ଶିକ୍ଷାଗତ ମୂଲ୍ୟ ଉପରେ ଗୁରୁତ୍ୱ ଆରୋପ

କରାଯାଉଥିବାରୁ ଆଜିକାଲି ସେ ସବୁ ପାଠ୍ୟକ୍ରମ-ବହିର୍ଭୂତ କାର୍ଯ୍ୟାବଳୀ (Extra curricular activities) ରୂପେ ବିବେଚିତ ହେଉନାହିଁ । ଏଗୁଡ଼ିକ ପାଠ୍ୟକ୍ରମର ଅନ୍ତର୍ଭୁକ୍ତ ବା ସହ-ପାଠ୍ୟକ୍ରମ କାର୍ଯ୍ୟାବଳୀ (Co-curricular activities) ରୂପେ ଆଜି ପରିଗଣିତ । ବିଦ୍ୟାଳୟ ତା'ର ଛାତ୍ରମାନଙ୍କପାଇଁ ବିଭିନ୍ନ କାର୍ଯ୍ୟକ୍ରମ ମାଧ୍ୟମରେ ଯେଉଁସବୁ ଶିକ୍ଷାପ୍ରଦ ଅନୁଭୂତିର ବ୍ୟବସ୍ଥା କରେ ତାହାହିଁ ବିଦ୍ୟାଳୟ ପାଠ୍ୟକ୍ରମ (School curriculum) ରୂପେ ପରିଚିତ । ଏହି କାର୍ଯ୍ୟକ୍ରମଗୁଡ଼ିକ ବିଦ୍ୟାଳୟ ଭିତରେ ବା ବାହାରେ ବିଦ୍ୟାଳୟର ତତ୍ତ୍ୱାବଧାନରେହିଁ ପରିଚାଳିତ ହୁଏ । ପର୍ଯ୍ୟଟନ, ପରିଭ୍ରମଣ, ବିଭିନ୍ନ ସ୍ଥାନରେ କ୍ରୀଡ଼ା ପ୍ରତିଯୋଗିତାରେ ଯୋଗଦାନ ଇତ୍ୟାଦି ବିଦ୍ୟାଳୟ ବାହାରର କେତେକ କାର୍ଯ୍ୟକ୍ରମର ଉଦାହରଣ ଯାହା ସହ-ପାଠ୍ୟକ୍ରମ କାର୍ଯ୍ୟାବଳୀର ଅନ୍ତର୍ଭୁକ୍ତ ।

ଶିକ୍ଷାବିତ୍‌ମାନେ ଯେଉଁ ଆଦର୍ଶ ବିଦ୍ୟାଳୟର ପରିକଳ୍ପନା କରୁଅଛନ୍ତି ତାହା ହେଉଛି ସେହି ବିଦ୍ୟାଳୟ ଯାହା ବିଭିନ୍ନ ପ୍ରକାରର କାର୍ଯ୍ୟକ୍ରମରେ ଭରପୂର ହୋଇଥିବ, ଯେଉଁଠି ପ୍ରତ୍ୟେକ ଛାତ୍ର ତା'ର ପ୍ରତିଭା ବିକାଶ କରିବାକୁ ସୁଯୋଗ ପାଇପାରୁଥିବ, ଯେଉଁଠି ଶ୍ରେଣୀ ଗୃହ, ଖେଳପଡ଼ିଆ, ରଙ୍ଗମଞ୍ଚ, ପୁସ୍ତକାଗାର ସବୁଠାରେ ସଂଗଠିତ କାର୍ଯ୍ୟାବଳୀ ଶିକ୍ଷାପ୍ରଦ ହୋଇଥିବ । ଏହି ଆଦର୍ଶ ଅନୁସୃତ ହେଲେ ଶ୍ରେଣୀଗୃହରେ ଅଧ୍ୟୟିତ ହେଉଥିବା ପାଠ୍ୟପ୍ରସଙ୍ଗ ଓ ଶ୍ରେଣୀ ବାହାରେ ସଂଗଠିତ ହେଉଥିବା କାର୍ଯ୍ୟାବଳୀ ମଧ୍ୟରେ ଯେଉଁ ଏକ ପ୍ରାଚୀର ରହିଅଛି ତାହା କ୍ରମଶଃ ବିଲୀନ ହୋଇଯିବ । କ୍ରମେ ଛାତ୍ରମାନେ କ୍ରୀଡ଼ା, କସରତ ଓ ଅନ୍ୟାନ୍ୟ ମନୋରଞ୍ଜନ କାର୍ଯ୍ୟରୁ ଯେଉଁ ଆନନ୍ଦ ପାଆନ୍ତି ତାହା ସେମାନେ ବିଦ୍ୟାଳୟର ପ୍ରତ୍ୟେକ କାର୍ଯ୍ୟରୁ ପାଇପାରିବେ । ଶ୍ରେଣୀଗୃହର ପାଠ୍ୟଦାନ ସେହି ହୃଦୟଗ୍ରାହୀ ସ୍ୱବୋଧିପକ କାର୍ଯ୍ୟାବଳୀର ଏକ ଅଂଶ ହେବା ଉଚିତ ।

ବିଦ୍ୟାଳୟ ସମ୍ବଳ ଯେତେ ଅଧିକ ହୋଇଥିବ କାର୍ଯ୍ୟକ୍ରମଗୁଡ଼ିକ ସେତେ ବ୍ୟାପକ ହେବା ଆବଶ୍ୟକ । ତର୍କ, ନାଟକ, ଆଲୋଚନା, ପତ୍ରିକା ସମ୍ପାଦନ ପ୍ରଭୃତି ଶିକ୍ଷା ସମ୍ବନ୍ଧୀୟ ବିଷୟ ହେଉ ବା ପୁରସ୍କାର ବିତରଣ, ଅଭିଭାବକ ଦିବସ, ଗୁରୁଦିବସ ପ୍ରଭୃତି ସାମାଜିକ କାର୍ଯ୍ୟ (ବିଦ୍ୟାଳୟ ଗୋଷ୍ଠୀର) ହେଉ ବା କ୍ରୀଡ଼ା କସରତ, ବ୍ୟାୟାମ ପ୍ରଭୃତି ସ୍ୱେଚ୍ଛାସେବାମୂଳକ କାର୍ଯ୍ୟ ହେଉ—ଏ ସମସ୍ତ ମିଶି ଏପରି ଏକ ସଂଯୁକ୍ତ ଓ ସମଗ୍ର କାର୍ଯ୍ୟ-କ୍ରମରେ ପରିଣତ ହେବା ଉଚିତ ଯେପରି କି ପ୍ରତ୍ୟେକ ଛାତ୍ର ତା'ର ରୁଚି ଓ ଆଗ୍ରହ ଅନୁଯାୟୀ କିଛିହେଲେ ପାଇପାରିବ । ଶିକ୍ଷକମାନେ ଏହି କାର୍ଯ୍ୟକ୍ରମଗୁଡ଼ିକ କାର୍ଯ୍ୟକାରୀ କଲାବେଳେ ଦେଖିବା ଉଚିତ ଯେ ଶିକ୍ଷା ସମ୍ବନ୍ଧୀୟ, ସାମାଜିକ, ଶାରୀରିକ ଓ ସ୍ୱେଚ୍ଛାକୃତ କାର୍ଯ୍ୟଗୁଡ଼ିକ ମଧ୍ୟରେ ଯେପରିକି କୌଣସି ସ୍ୱାତନ୍ତ୍ର୍ୟ ପରିଲକ୍ଷିତ ନ ହୁଏ । ଅନ୍ୟପକ୍ଷରେ କହିବାକୁ ଗଲେ ପ୍ରତ୍ୟେକ ପ୍ରକାର କାର୍ଯ୍ୟକ୍ରମ ଦାୟିତ୍ୱରେ ଥିବା ଶିକ୍ଷକ ଅନ୍ୟାନ୍ୟ

କାର୍ଯ୍ୟକ୍ରମ ସହ ଆଂଶିକ ସମ୍ପୃକ୍ତ ହେବା ବା ଅନ୍ୟକାର୍ଯ୍ୟ ଦାୟିତ୍ବରେ ଥିବା ଶିକ୍ଷକଙ୍କର ସହଯୋଗ କାମନା କରିବା ଏକାନ୍ତ ବାଞ୍ଛନୀୟ । କେତେକ ନିର୍ଦ୍ଦିଷ୍ଟ ସହ-ପାଠ୍ୟକ୍ରମ କାର୍ଯ୍ୟାବଳୀ ସମ୍ବନ୍ଧରେ ଆଲୋଚନା କରାଯାଉ ।

## ବିଭିନ୍ନ ପ୍ରକାର ଖେଳ

ଆଜିକାଲି ଶାରୀରିକ ଶିକ୍ଷା ସମ୍ବନ୍ଧୀୟ ସରକାରୀ ଯୋଜନାଗୁଡ଼ିକରେ ଶାରୀରିକ ଉପଯୁକ୍ତତା (fitness) ର ମୂଲ୍ୟ ଉପରେ ଗୁରୁତ୍ବ ଆରୋପ କରାଯାଉଥିବାର ଦେଖାଯାଉଅଛି ଅଥଚ ଶାରୀରିକ ଶିକ୍ଷାର ଶିକ୍ଷାଗତ ମୂଲ୍ୟ ଉପରେ ଗୁରୁତ୍ବ ଆରୋପ କରାଯାଉ ନାହିଁ । ଏହି ଶିକ୍ଷାଦ୍ୱାରା କେବଳ ଶାରୀରିକ ଉପଯୁକ୍ତତା ନୁହେଁ, ଶାରୀରିକ ଦକ୍ଷତା (Physical efficiency) ମାନସିକ ତତ୍ପରତା ବୃଦ୍ଧିପ୍ରାପ୍ତ ହୁଏ ଏବଂ ଅଧ୍ୟବସାୟ, ଅଧିନାୟକତ୍ବ, ନିୟମାନୁବର୍ତ୍ତିତା, ଦଳଗତ ଐକ୍ୟ ମନୋଭାବ, ବିଜୟରେ ପ୍ରଶମନ (moderation), ପରାଜୟରେ ସ୍ଥିରତା ଆଦି ବହୁ ଗୁଣର ବିକାଶ କରାଇଥାଏ । ତେଣୁ ବିଦ୍ୟାଳୟରେ ବିଭିନ୍ନ କ୍ରୀଡ଼ା କାର୍ଯ୍ୟକ୍ରମର ଲକ୍ଷ୍ୟ କେବଳ ଶାରୀରିକ ଦକ୍ଷତାର ଅଭିବୃଦ୍ଧି ନୁହେଁ ଉପର୍ଯ୍ୟୁକ୍ତ ଗୁଣାବଳୀର ବିକାଶ ମଧ୍ୟ ଲକ୍ଷ୍ୟ ହେବା ଆବଶ୍ୟକ । ଶାରୀରିକ ଶିକ୍ଷାର ଏକ ସନ୍ତୋଷଜନକ ଯୋଜନା ଯେଉଁ କେତେକ ନୀତି ଉପରେ ପର୍ଯ୍ୟବସିତ ହେବା ଉଚିତ ତାହା କୋଠାରୀ କମିଶନ ତାଙ୍କ ରିପୋର୍ଟରେ ବସ୍ତାନ କରିଅଛନ୍ତି । ସେଥିରୁ କେତେକ ପ୍ରଧାନ ନୀତି ନିମ୍ନରେ ପ୍ରଦତ୍ତ ହୋଇଅଛି ।

ପିଲାମାନଙ୍କର ଆଗ୍ରହ ଓ ଦକ୍ଷତା ପ୍ରତି ଦୃଷ୍ଟିରଖି ଶାରୀରିକ ଶିକ୍ଷା ଯୋଜନା ଏପରି ପରିକଳ୍ପିତ ହେବା ଆବଶ୍ୟକ ଯେପରି ଇପ୍ସିତ ଲକ୍ଷ୍ୟ ହାସଲ କରିହେବ । ଏହି ପରିକଳ୍ପନାରେ ଆମ ଦେଶରେ ପ୍ରଚଳିତ ଖେଳ କସରତ ଉପରେ ଯଥାର୍ଥ ଗୁରୁତ୍ବ ଦିଆଯିବା ଉଚିତ । ଏହି ସମସ୍ତ କାର୍ଯ୍ୟକ୍ରମରେ ଅଂଶ ଗ୍ରହଣ କରିବା ଦ୍ୱାରା ପ୍ରତ୍ୟେକ ପିଲାର ମନରେ ରଙ୍ଗ ଓ ବ୍ୟକ୍ତିଗତ ମୂଲ୍ୟବୋଧ ଜାଗ୍ରତ ହେବା ଉଚିତ । ଖେଳପଡ଼ିଆ ଓ ବ୍ୟାୟାମ ଗୃହ ବା ଜିମଖାନା (Gymnasium)ର ଅଭିଜ୍ଞତା ଗଣତାନ୍ତ୍ରିକ ସହଯୋଗ ମନୋଭାବ ଓ ଦାୟିତ୍ବରେ ଲାଗିହେବା ମନୋବୃତ୍ତି ଜାଗ୍ରତ କରାଇବ, ଆବଶ୍ୟକ । ପରିକଳ୍ପିତ କାର୍ଯ୍ୟକ୍ରମ ଅନ୍ୟାନ୍ୟ ଶିକ୍ଷା ସମ୍ବନ୍ଧୀୟ ଯୋଜନାର ପୁନରାବୃତ୍ତି ନ କରି ପରିପୂରକରୂପେ କାର୍ଯ୍ୟ କରିବା ଉଚିତ । ପରିକଳ୍ପନାଗୁଡ଼ିକ ଆମର ଅର୍ଥକ ସମ୍ବଳର ସୀମା ମଧ୍ୟରେ ରହିବା ଆବଶ୍ୟକ ଏବଂ ଏଥିରେ ସମସ୍ତେ ଅଂଶଗ୍ରହଣ କରିପାରିବା ଭଳି ବ୍ୟବସ୍ଥା କରାଯିବା ଉଚିତ । କେତେକ ମନୋନୀତ ଗ୍ରୁପଙ୍କ ପାଇଁ ପରିକଳ୍ପନା କାର୍ଯ୍ୟକାରୀ ହେବା ଉଚିତ ନୁହେଁ । ତେବେ ଯେଉଁମାନେ ବିଶେଷ ଦକ୍ଷତା ପ୍ରଦର୍ଶନ କରିବେ ସେମାନଙ୍କ ପାଇଁ ସ୍ୱତନ୍ତ୍ର ତାଲିମର ବ୍ୟବସ୍ଥା କରାଯିବା ଆବଶ୍ୟକ ।

## ସାଙ୍ଗଠନିକ ବ୍ୟବସ୍ଥା

ବର୍ତ୍ତମାନ ପ୍ରକୃତ ସାଙ୍ଗଠନିକ ବ୍ୟବସ୍ଥା ସମ୍ବନ୍ଧରେ ଆଲୋଚନା କରାଯାଉ। କ୍ରୀଡ଼ା କାର୍ଯ୍ୟକ୍ରମ ଏପରି ପ୍ରସ୍ତୁତ ହେବା ଆବଶ୍ୟକ ଯେପରି ପ୍ରତ୍ୟେକ ଛାତ୍ର ସପ୍ତାହରେ ଖେଳିବାକୁ ସୁଯୋଗ ପାଇପାରିବେ। ତେଣୁ ପ୍ରଥମେ ଛାତ୍ରମାନଙ୍କୁ କେତେଗୁଡ଼ିଏ ଦଳରେ ବିଭକ୍ତ କରାଯିବା ଆବଶ୍ୟକ ଯେପରି ପ୍ରତ୍ୟେକ ଦଳରେ ୨୦।୨୫ ଜଣ ପିଲା ରହିବେ ଓ ପ୍ରତ୍ୟେକ ଦଳର ଦାୟିତ୍ୱରେ ଏକ ବା ଏକାଧିକ ଶିକ୍ଷକ ରହିବେ। ଯଦି ବିଦ୍ୟାଳୟରେ ବିସ୍ତୃତ ଖେଳପଡ଼ିଆ ଥାଏ ତେବେ ସମସ୍ତେ ଏକ ସଙ୍ଗରେ ଖେଳିପାରିବେ ଓ ଏଥିପାଇଁ ବିଦ୍ୟାଳୟର କାର୍ଯ୍ୟ ନିର୍ଘଣ୍ଟରେ ଶେଷ ପିରିଅଡ଼ଟି ଖେଳପାଇଁ ରଖାଯାଇ ପାରିବ। ଏହା ଏକ ଆଦର୍ଶ ବ୍ୟବସ୍ଥା। ଯେଉଁଠାରେ ଏହା ସମ୍ଭବପର ନୁହେଁ ସେଠାରେ ଅପରାହ୍ଣର କାର୍ଯ୍ୟ ନିର୍ଘଣ୍ଟରେ ମଧ୍ୟଭାଗରେ କେତେକଙ୍କ ପାଇଁ, ଶେଷ ଭାଗରେ କେତେକଙ୍କ ପାଇଁ ଖେଳ ବ୍ୟବସ୍ଥା କରାଯାଇପାରେ। ମାତ୍ର ଏହି ବ୍ୟବସ୍ଥାରେ ପ୍ରତ୍ୟେକ ସପ୍ତାହର କାର୍ଯ୍ୟନିର୍ଘଣ୍ଟ ସାମାନ୍ୟ ଅଦଳ ବଦଳ ହେବା ବାଞ୍ଛନୀୟ, ଅର୍ଥାତ୍ ଯେଉଁମାନେ ଅପରାହ୍ଣର ମଧ୍ୟଭାଗରେ ଗୋଟିଏ ସପ୍ତାହ ଖେଳିବେ ସେମାନେ ପରବର୍ତ୍ତୀ ସପ୍ତାହରେ ଶେଷ ଭାଗରେ ଖେଳିବେ। ଯାହାହେଉ ସମସ୍ତଙ୍କ ପାଇଁ ଏକ ସଙ୍ଗେ ଖେଳିବା ଏକ ସର୍ବୋତ୍କୃଷ୍ଟ ବ୍ୟବସ୍ଥା।

ପିଲାମାନଙ୍କୁ ସେମାନଙ୍କ ମନମୁତାବକ ନିଜେ ନିଜେ ଖେଳିବାକୁ ଛାଡ଼ି ଦିଆଯାଇ ନ ପାରେ। ଏପରି କରାଗଲେ ସେମାନଙ୍କ ମଧ୍ୟରୁ ଅନେକ କ୍ରୀଡ଼ାରେ ସକ୍ରିୟ ଅଂଶ ଗ୍ରହଣ ନ କରି ବସି ରହିବେ, କେତେକ ଏପରି ବିଶୃଙ୍ଖଳିତ ଭାବରେ ଖେଳିବେ ବା ଖେଳପଡ଼ିଆରେ ଏପରି ବିଶୃଙ୍ଖଳ ଆଚରଣ ପ୍ରଦର୍ଶନ କରିବେ ଯେ ଖେଳର ପ୍ରକୃତ ଉଦ୍ଦେଶ୍ୟ ସାଧିତ ହେବ ନାହିଁ ଏବଂ ଖେଳ କୌଣସି ଛାତ୍ରଙ୍କ ପକ୍ଷେ ଉପଯୋଗୀ ହେବ ନାହିଁ। ତେଣୁ କେବଳ ଜଣେ ଶିକ୍ଷକ ଯେ ପ୍ରତ୍ୟେକ ଦଳର ଦାୟିତ୍ୱରେ ରହିବେ ସେତିକି ନୁହେଁ, ଅନ୍ୟାନ୍ୟ ପାଠ୍ୟବିଷୟ ପରି ଏକ ବିଧିବଦ୍ଧ କାର୍ଯ୍ୟନିର୍ଘଣ୍ଟ ମଧ୍ୟ ଏଥିପାଇଁ ସେ ପ୍ରସ୍ତୁତକରି ରଖିବେ ଅର୍ଥାତ୍ ଦଳଟି କେଉଁଦିନ କେଉଁ ପ୍ରକାର ଖେଳରେ ଅଂଶ ଗ୍ରହଣ କରିବେ ତାହା ପ୍ରଥମରୁ ସ୍ଥିରୀକୃତ ହୋଇଥିବା ଆବଶ୍ୟକ।

ଛାତ୍ରମାନଙ୍କୁ ବିଭିନ୍ନ ଦଳରେ ବିଭାଜନ କଲାବେଳେ ଏକଥା ମନେରଖିବାକୁ ହେବ ଯେ ଗୋଟିଏ ଦଳରେ ସମାନ ସ୍ତରର ଦକ୍ଷ ଖେଳାଳୀମାନଙ୍କୁ ରଖାଯିବା ଉଚିତ। ଏହି ଦଳ ବିଭାଜନ ଶ୍ରେଣୀ ଅନୁଯାୟୀ ହେବା ଅନୁଚିତ। ଗୋଟିଏ ଛୋଟପିଲା ଭଲ ଫୁଟବଲ ବା ହକି ଖେଳୁଥିଲେ ତାହାକୁ ବଡ଼ପିଲାଙ୍କ ଦଳରେ ନ ରଖିବାର କୌଣସି କାରଣ ନାହିଁ। କେବଳ ଦକ୍ଷତା ହିଁ ପିଲାମାନଙ୍କୁ ବିଭିନ୍ନ ଦଳରେ ବିଭକ୍ତ କରିବାର ମାନଦଣ୍ଡ

ହେବା ଆବଶ୍ୟକ । ଏଥିପାଇଁ ଛାତ୍ରର ବୟସ, ଆକାର, ଶ୍ରେଣୀ ବସ୍ତୁରକୁ ନେବାରେ କୌଣସି ଆବଶ୍ୟକତା ନାହିଁ । ତଥାପି ଏହା ମଧ୍ୟ ଗୋଟିଏ ସୀମା ମଧ୍ୟରେ କାର୍ଯ୍ୟକାରୀ ହୋଇପାରିବ, କାରଣ ଖୁବ୍ ବଡ ବଡ଼ ପିଲାଙ୍କର ଗୋଟିଏ ଦଳରେ ଗୋଟିଏ ସାନ ପିଲା ଫୁଟବଲ ଖେଳିବା କେତେକାଂଶରେ ଅସୁବିଧାଜନକ ହେବ; ମାତ୍ର ହକି ଖେଳିବାରେ ଅସୁବିଧା ହୋଇ ନ ପାରେ । ସାହାହେଉ ଭଲ ଖେଳୁଥିବା ଶ୍ରେଷ୍ଠ ପିଲାଙ୍କୁ ବଡ଼ ପିଲାଙ୍କ ଦଳରେ ଯଥାସମ୍ଭବ ସ୍ଥାନ ଦେଇ ଉତ୍ସାହିତ କରାଯିବା ଆବଶ୍ୟକ ।

ଶିକ୍ଷକମାନଙ୍କୁ ବିଭିନ୍ନ ଦଳର ଦାୟିତ୍ୱ ଦେଲାବେଳେ କ୍ରୀଡ଼ା ଦକ୍ଷତାହିଁ ବସ୍ତୁରକୁ ନିଆଯିବା ଉଚିତ । ଯେଉଁ ଶିକ୍ଷକମାନେ ଭଲ ଖେଳାଳୀ ସେମାନେ ବିଦ୍ୟାଳୟର ଶ୍ରେଷ୍ଠ ଦଳଗୁଡ଼ିକର ଦାୟିତ୍ୱରେ ରହିବା ଆବଶ୍ୟକ । ଏଥିପାଇଁ ଶିକ୍ଷକଙ୍କର କାର୍ଯ୍ୟକାଳ, ଶିକ୍ଷାଗତ ଯୋଗ୍ୟତା ବା ଶିକ୍ଷକମଣ୍ଡଳୀରେ ତାଙ୍କର ସ୍ଥାନ—ଏସବୁ ବସ୍ତୁରକୁ ନିଆଯିବା ଉଚିତ ନୁହେଁ ।

ଦଳ ଦାୟିତ୍ୱରେ ଥିବା ଶିକ୍ଷକ ପ୍ରଥମେ ଜଣେ ଛାତ୍ରକୁ ଦଳପତି ଭାବରେ ନିଯୁକ୍ତ କରିବା ଆବଶ୍ୟକ । ଶିକ୍ଷକ ଦଳପତି ମନୋନୟନ କରିବା ଅପେକ୍ଷା ଦଳର ସଭ୍ୟମାନେ ଦଳପତି ନିର୍ବାଚନ କରିବା ଅଧିକ ଯୁକ୍ତିଯୁକ୍ତ । ଦଳପାଇଁ ବିଦ୍ୟାଳୟରୁ ଖେଳୋପକରଣ ଆଣି ଦଳପତି ତାହା ନିଜ ଦାୟିତ୍ୱରେ ରଖିବେ । ସେ ସଭ୍ୟମାନଙ୍କର ଏକ ତାଲିକା ପ୍ରସ୍ତୁତ କରିବେ ଏବଂ ସଭ୍ୟମାନେ ସେହି ତାଲିକାରେ କ୍ରମ ଅନୁସାରେ ତାଙ୍କଠାରୁ ଆବଶ୍ୟକ ଖେଳ ସରଞ୍ଜାମ ନେବା ଓ ଫେରାଇବାର ଦାୟିତ୍ୱ ବହନ କରିବେ । ଦଳପତି ଦଳ ଦାୟିତ୍ୱରେ ଥିବା ଶିକ୍ଷକଙ୍କ ସହ ମିଶି ଏକ ସାପ୍ତାହିକ କ୍ରୀଡା ନିର୍ଘଣ୍ଟ ପ୍ରସ୍ତୁତ କରିବେ ଓ ସେହି କ୍ରୀଡା ନିର୍ଘଣ୍ଟର ଏକ ନକଲ ପ୍ରଧାନ ଶିକ୍ଷକଙ୍କୁ ଦେବେ । ପ୍ରଧାନ ଶିକ୍ଷକ ବିଭିନ୍ନ ଦଳଠାରୁ ପାଇଥିବା କ୍ରୀଡା ନିର୍ଘଣ୍ଟର ତାଲିକା-ଗୁଡ଼ିକ ମିଶାଇ ବିଦ୍ୟାଳୟ ପାଇଁ ଏକ ସମ୍ପୂର୍ଣ୍ଣ କ୍ରୀଡ଼ା ନିର୍ଘଣ୍ଟ ପ୍ରସ୍ତୁତ କରି ତାହା ସମସ୍ତଙ୍କ ଅବଗତି ନିମନ୍ତେ ନୋଟିସ୍ ବୋର୍ଡରେ ଲଗାଇଦେବେ । ଏହି କାର୍ଯ୍ୟ ଶିକ୍ଷାବର୍ଷ ଆରମ୍ଭରୁ ସମାପିତ ହେବା ଉଚିତ । ଖେଳପଡ଼ିଆଗୁଡ଼ିକର ସର୍ବାଧିକ ସଦୁପଯୋଗ ପାଇଁ ଦୁଇଟି ଦଳ ମିଶି ଏପରି କ୍ରୀଡ଼ାନିର୍ଘଣ୍ଟ ପ୍ରସ୍ତୁତ କରିବା ଉଚିତ ଯେପରି କୌଣସି ଏକ ଦିନ ଗୋଟିଏ ଦଳ ବଡ ପଡିଆରେ ଖେଳିବାବେଳକୁ ଅନ୍ୟ ଦଳଟି ଗୋଟିଏ ଶ୍ରେଷ୍ଠ ପଡ଼ିଆରେ ଖେଳିପାରିବେ । ତତ୍ପରବର୍ତ୍ତୀ ଦିବସରେ ଦଳ ଦୁଇଟି ପଡ଼ିଆ ବଦଳ କରିଦେବେ ।

ପ୍ରତ୍ୟେକ ଦଳରେ ସ୍ୱତନ୍ତ୍ର ଖେଳ ସରଞ୍ଜାମ ରହିବା ଆବଶ୍ୟକ ଅର୍ଥାତ୍ ପ୍ରତ୍ୟେକ ଦଳର ଅଲଗା ଫୁଟବଲ, ହକିବାଡ଼ି ପ୍ରଭୃତି ରହିବା ଉଚିତ । ଅବଶ୍ୟ ଏହା ବ୍ୟୟସାପେକ୍ଷ । ତେଣୁ ଗୋଟିଏ ଦଳପାଇଁ ଆବଶ୍ୟକ ସରଞ୍ଜାମ ଦୁଇଟି ଦଳ ଦ୍ୱାରା ବ୍ୟବହୃତ ହୋଇପାରେ ।

ଯଦି ଏହା କରାଯାଏ ତେବେ ଏକ ସମୟରେ ଖେଳୁଥିବା ଦୁଇଟି ଦଳପାଇଁ ଉଦ୍ଦିଷ୍ଟ ଖେଳ ସରଞ୍ଜାମ ଦାୟିତ୍ୱରେ ଗୋଟିଏ ଦଳର ଦଳପତି ରହିପାରନ୍ତି । ପ୍ରତ୍ୟେକ ଦଳପାଇଁ ପୃଥକ୍ ପୃଥକ୍ ଭାବରେ ଖେଳ ସରଞ୍ଜାମ ଯୋଗାଇଦେବା ଏକ ଆଦର୍ଶ ବ୍ୟବସ୍ଥା । ଏହି ବ୍ୟବସ୍ଥା ପ୍ରଥମେ କାର୍ଯ୍ୟକାରୀ କଲାବେଳକୁ ଖର୍ଚ୍ଚର ମାତ୍ରା ବହୁତ ବେଶୀ ହେଲେହେଁ ବାସ୍ତବ କ୍ଷେତ୍ରରେ ଦେଖାଯାଏ ଯେ ମାତ୍ର ୨।୩ ବର୍ଷ ପରେ ଏହି ବ୍ୟୟଭାର ଅନେକାଂଶରେ ଲାଘବ ହୋଇଯାଏ । ଛାତ୍ରମାନଙ୍କୁ ମଧ୍ୟ ଜିନିଷପତ୍ରର ଯତ୍ନ ନେବା ବିଷୟରେ ତାଲିମ ଦିଆଯାଇପାରେ । ପ୍ରତ୍ୟେକ ଦଳ ବର୍ଷକ ମଧ୍ୟରେ କେତେ ପରିମାଣର ଅର୍ଥ ଖର୍ଚ୍ଚ କରିପାରିବେ ତାହା ବର୍ଷ ଆରମ୍ଭରୁ ଜଣାଇ ଦିଆଯିବା ଆବଶ୍ୟକ । ଛାତ୍ରମାନେ ତାଙ୍କର ଆବଶ୍ୟକାନୁଯାୟୀ ଯାହା ଯେତେବେଳେ ଦରକାର ତାହା ବିଦ୍ୟାଳୟର ସମବାୟ ଭଣ୍ଡାରରୁ ବା ବିଦ୍ୟାଳୟର ଖେଳ ସରଞ୍ଜାମ ଦାୟିତ୍ୱରେ ଥିବା ଶିକ୍ଷକଙ୍କ ଠାରୁ ଖରିଦ କରିପାରନ୍ତି । ଏହା ଫଳରେ ଛାତ୍ରମାନେ ମିତବ୍ୟୟିତା ଶିକ୍ଷା କରିପାରିବେ । ଜପରି ଗୋଟିଏ ସୀମା ମଧ୍ୟରେ ରହି ଖର୍ଚ୍ଚ କରିବା ଆବଶ୍ୟକ ତା' ମଧ୍ୟ ଜାଣିପାରିବେ । ଏଠାରେ ଗୋଟିଏ ବିଷୟ ମନେ ରଖିବାକୁ ହେବ ଯେ ପିଲାମାନଙ୍କୁ ପ୍ରକୃତରେ ବିଦ୍ୟାଳୟ କର୍ତ୍ତୃପକ୍ଷ ଟଙ୍କା ଆକାରରେ ଦେବାର କିଛି ନାହିଁ । ସମବାୟ ଭଣ୍ଡାର ବା ବିଦ୍ୟାଳୟର କ୍ରୀଡ଼ା ଶିକ୍ଷକ ପ୍ରକୃତରେ ସମସ୍ତ ଜିନିଷ ଖରିଦ କରିବେ । ପ୍ରତ୍ୟେକ ଦଳର ପୃଥକ୍ ପୃଥକ୍ ହିସାବ ଖାତା ରଖାଯିବ ଯେଉଁଥିରୁ ସେମାନେ କେତେ ମୂଲ୍ୟର ଜିନିଷ ଖରିଦ କରିଛନ୍ତି ଓ ଆଉ କେତେ ମୂଲ୍ୟର ଜିନିଷ ଖରିଦ କରିବେ ତାହା ଜାଣିପାରିବେ । ଅନେକ ଛାତ୍ର ଅସାବଧାନ ଭାବରେ ଖେଳ ସରଞ୍ଜାମ ବ୍ୟବହାର କରି ଅଯଥାରେ ବିଦ୍ୟାଳୟକୁ ଖର୍ଚ୍ଚାନ୍ତ କରନ୍ତି । ତାହା ଏହି ବ୍ୟବସ୍ଥା ଦ୍ୱାରା ବନ୍ଦ ହୋଇ ଯିବ । ପିଲାମାନେ ଜିନିଷପତ୍ରଗୁଡ଼ିକ ନିଜର ବୋଲି ମନେ କରିବେ ଓ ଆବଶ୍ୟକ ଯତ୍ନନେବେ ।

ଯେଉଁ ଖେଳରେ ସମସ୍ତ ଖେଳାଳି ସକ୍ରିୟ ଅଂଶ ଗ୍ରହଣ କରିପାରନ୍ତି ତାହା ଉତ୍କୃଷ୍ଟ ଖେଳରୂପେ ପରିଗଣିତ ହୁଏ । ଫୁଟବଲ, ହକି, ବାସ୍କେଟବଲ ପ୍ରଭୃତି ଏହି ପ୍ରକାରର ଖେଳ । ଭଲିବଲ ଖେଳିବାପାଇଁ ଅଳ୍ପସ୍ଥାନ ଦରକାର ହୁଏ; କିନ୍ତୁ ସହଯୋଗ ମନୋବୃତ୍ତି ଶିକ୍ଷା ଦେବାରେ ଏହି ଖେଳର ମୂଲ୍ୟ ଅଧିକ । ଅବଶ୍ୟ ଏହି ଖେଳରେ କମ୍ ଶରୀର ପରିଚାଳନା ବା ବ୍ୟାୟାମ କରିବାକୁ ହୁଏ । କ୍ରିକେଟ ଗୋଟିଏ ଭଲ ଖେଳ ହେଲେହେଁ ଯେଉଁମାନେ ଏଥିପାଇଁ ପ୍ରକୃତରେ ଆଗ୍ରହୀ ଏବଂ ଖେଳର ବିଭିନ୍ନ ଅଂଶରେ ଯେଉଁମାନେ ବିଶେଷ କୃତିତ୍ୱ ଲାଭ କରିବାକୁ ଚାହାଁନ୍ତି କେବଳ ସେହିମାନଙ୍କ ପାଇଁ ଏହି ଖେଳର ବ୍ୟବସ୍ଥା କରାଯିବା ଉଚିତ । ଏହା ଏପରି ଏକ ଖେଳ ନୁହେଁ ଯେଉଁଥିରେ ସମସ୍ତେ ଖେଳିପାରିବେ ଓ ଉତ୍ତମ ବ୍ୟାୟାମ କରିପାରିବେ । ବିଦ୍ୟାଳୟର ସାଧାରଣ କ୍ରୀଡ଼ା କାର୍ଯ୍ୟକ୍ରମ ଯାହା ସମସ୍ତଙ୍କ ପାଇଁ ଉଦ୍ଦିଷ୍ଟ ଅର୍ଥାତ୍ ଯେଉଁଥିରେ ସମସ୍ତେ ସକ୍ରିୟ ଅଂଶ ଗ୍ରହଣ କରିବାର ସୁବିଧା ଥିବ ସେଥିରେ କ୍ରିକେଟ ଅନ୍ତର୍ଭୁକ୍ତ ହେବାର ଆବଶ୍ୟକତା ନାହିଁ ।

ବିଦ୍ୟାଳୟରେ ବିଶେଷ ଆଗ୍ରହ ଦେଖାଉଥିବା ଗ୍ରୁପମାନଙ୍କୁ ନେଇ ଗୋଟିଏ ମାତ୍ର କ୍ରିକେଟ ଦଳ ଗଢ଼ାଯାଇପାରେ । ତେଣୁ କ୍ରୀଡ଼ା କାର୍ଯ୍ୟକ୍ରମ ପ୍ରସ୍ତୁତ କରୁଥିବା ଶିକ୍ଷକ ଏପରି କେତେଗୁଡ଼ିଏ କ୍ରୀଡ଼ା ସ୍ଥିର କରିପାରିବେ ଯେପରି ପ୍ରତ୍ୟେକ ପିଲା ଏକ ଆନନ୍ଦ-ଦାୟକ ବ୍ୟାୟାମ କରିବାର ସୁଯୋଗ ପାଇପାରିବେ ।

ଦଳର ଦାୟିତ୍ୱରେ ଥିବା ଶିକ୍ଷକ ଖେଳରେ ସକ୍ରିୟ ଅଂଶ ଗ୍ରହଣ କରିବା ହେଉଛି ଅତି ଗୁରୁତ୍ୱପୂର୍ଣ୍ଣ ବିଷୟ । ଯେଉଁ ଶିକ୍ଷକ ପିଲାମାନଙ୍କୁ ଖେଳିବାକୁ କହି ନିଜେ ପଡ଼ିଆର ଗୋଟିଏ ମୁଣ୍ଡରେ ଖେଳ ସରିବା ବା ପିରିଅଡ଼ ସରିବା ପାଇଁ ଅପେକ୍ଷା କରି ରହନ୍ତି ତାଙ୍କଠାରୁ ଉତ୍କୃଷ୍ଟତର କାର୍ଯ୍ୟ କରନ୍ତି ସେହି ଶିକ୍ଷକ ଯେ ନିଜେ ଖେଳରେ ସକ୍ରିୟ ଅଂଶ ଗ୍ରହଣ କରନ୍ତି । ଯେଉଁ ଦଳରେ ଶିକ୍ଷକ ନିଜେ ଖେଳନ୍ତି ସେ ଦଳର ପିଲାମାନଙ୍କ ପକ୍ଷେ ଆଉ କିଛି ଅଧିକ ଉତ୍ସାହପ୍ରଦ ହୋଇ ନ ପାରେ । ଏତଦ୍‌ବ୍ୟତୀତ ଯେଉଁ ଶିକ୍ଷକ ନିଜେ ଖେଳିବେ ସେ ମଧ୍ୟ ଖେଳରେ ବିଚାରକ ବା ନିର୍ଣ୍ଣାୟକ (referee) ର କାର୍ଯ୍ୟ ତୁଲାଇବେ । ତେଣୁ ଶିକ୍ଷକ ଯେଉଁ ଖେଳ ଖେଳିବେ ବା ଯେଉଁ ଖେଳର ବିଚାରକ ହେବେ ତାହାର ନିୟମାବଳୀ ଭଲ ଭାବରେ ଜାଣିବା ଉଚିତ । ଶ୍ରେଣୀରେ ପାଠ ପଢ଼ାଉଥିବା ଶିକ୍ଷକଙ୍କର ବିଷୟବସ୍ତୁ ସମ୍ବନ୍ଧରେ ଯେପରି ନିର୍ଭୁଲ ଜ୍ଞାନ ରହିବା ଆବଶ୍ୟକ ଖେଳ ଦାୟିତ୍ୱରେ ଥିବା ଶିକ୍ଷକ ଖେଳରେ ନିୟମାବଳୀ ନିର୍ଭୁଲ ଭାବରେ ଜାଣିବା ସେହିପରି ଆବଶ୍ୟକ ।

ଫୁଟବଲ, ହକି ପ୍ରଭୃତି ବ୍ୟତୀତ ଅନ୍ୟାନ୍ୟ ଅନେକ ଶ୍ରେଷ୍ଠ ଶ୍ରେଷ୍ଠ ଖେଳ ତଥା ଭାରତୀୟ ଖେଳର ପ୍ରଚଳନ କରାଯାଇପାରେ । କବାଡ଼ି ଏହିପରି ଏକ ଖେଳ ଯାହା ବର୍ତ୍ତମାନ ଏକ ଭାରତୀୟ ଖେଳ ହିସାବରେ ଦେଶ ପ୍ରସିଦ୍ଧିଲାଭ କରିଅଛି । ବିଭିନ୍ନ ପ୍ରାନ୍ତରେ ପ୍ରଚଳିତ ଖେଳଗୁଡ଼ିକ ସମ୍ବନ୍ଧରେ ଶିକ୍ଷକଙ୍କର ଧାରଣା ଥିଲେ ସେ ସେଗୁଡ଼ିକ ମଧ୍ୟରୁ କେତେକ ବଛା ବଛା ଖେଳ ପ୍ରଚଳନ କରିପାରନ୍ତି ଯେଉଁଥିପାଇଁ ବଡ଼ ପଡ଼ିଆ ଆବଶ୍ୟକ ହେବ ନାହିଁ । ଏହିପରି ଗୁଡ଼ିଏ ଖେଳ ବିଦ୍ୟାଳୟର କ୍ରୀଡ଼ା କାର୍ଯ୍ୟକ୍ରମରେ ଅନ୍ତର୍ଭୁକ୍ତ ନ ହେଲେ କମବର୍ଦ୍ଧିଷ୍ଣୁ ଗ୍ରାମ ବହୁଳ ବିଦ୍ୟାଳୟଗୁଡ଼ିକରେ ଆବଶ୍ୟକ ଉପକରଣ ଓ ଖେଳପଡ଼ିଆର ବ୍ୟବସ୍ଥା କରିବା କଷ୍ଟକର ହେବ ।

## କ୍ରୀଡ଼ା ପ୍ରତିଯୋଗିତା

ନିୟମିତ କ୍ରୀଡ଼ା ଅଭ୍ୟାସ ବ୍ୟତୀତ ସାମୟିକ କ୍ରୀଡ଼ା ପ୍ରତିଯୋଗିତାର ବ୍ୟବସ୍ଥା ମଧ୍ୟ କରାଯିବା ଉଚିତ । ପ୍ରତ୍ୟେକ ସପ୍ତାହରେ ଥରେ ବା ଦୁଇଥର ବିଦ୍ୟାଳୟର ଦୁଇଟି ଦଳ ମଧ୍ୟରେ ପ୍ରତିଯୋଗିତା କରାଯାଇପାରେ । ବିଦ୍ୟାଳୟରେ ଗୃହପ୍ରଥା ପ୍ରଚଳନ କରାଯାଇଥିଲେ ଗୃହ-ଗୃହ ମଧ୍ୟରେ ପ୍ରତିଯୋଗିତା ଅନୁଷ୍ଠିତ ହୋଇପାରେ ।

ପ୍ରତ୍ୟେକ ଗୃହର ବିଭିନ୍ନ ଦଳ ବିଭିନ୍ନ ଖେଳର ପ୍ରତିଯୋଗିତାରେ ଅଂଶ ଗ୍ରହଣ କରି-ପାରିବେ । ପ୍ରତ୍ୟେକଥର ଯେଉଁ ଗୃହ କ୍ରୀଡ଼ାରେ ବିଜେତା ହେବେ ସେହି ଗୃହ ଗୋଟିଏ ପତାକା ଲାଭ କରିବେ । ପ୍ରତ୍ୟେକ ଗୃହ କିପରି ଅଗ୍ରଗତି କରୁଅଛି ତାହା ନୋଟିସ୍ ବୋର୍ଡ଼ରେ ଲିପିବଦ୍ଧ ହେଉଥିବା ଦରକାର । ଏହି ନୋଟିସ ବିଭିନ୍ନ ଦଳପାଇଁ ପ୍ରେରଣାର ଏକ ଉତ୍ସରୂପେ କାର୍ଯ୍ୟ କରିବ । ଗୃହ ଗୃହ ମଧ୍ୟରେ ପ୍ରତିଯୋଗିତା ହେଲେ ଗୃହର ଅଧିକାଂଶ ସଭ୍ୟ କୌଣସି ନା କୌଣସି ଖେଳରେ ପ୍ରତିଯୋଗୀ ରୂପେ ଅଂଶ ଗ୍ରହଣ କରିପାରିବେ । ସାଧାରଣ ଖେଳ ଅଭ୍ୟାସ ବ୍ୟତୀତ ଯେତେ ଅଧିକ ଛାତ୍ର ପ୍ରତି-ଯୋଗିତାରେ ଭାଗ ନେଇପାରିବେ ସେତେ ଭଲ ।

ବିଦ୍ୟାଳୟର ବାର୍ଷିକ କ୍ରୀଡ଼ା ପ୍ରତିଯୋଗିତା ସମୟରେ ବିଭିନ୍ନ ପ୍ରକାର ଦୌଡ଼, ଡିଆଁ କାର୍ଯ୍ୟକ୍ରମ ସହିତ ଫୁଟବଲ, ହକି ପ୍ରଭୃତିର ପ୍ରତିଯୋଗିତା ସ୍ଥାନ ପାଇବା ଉଚିତ । ଅବଶ୍ୟ ବିଦ୍ୟାଳୟରେ ଯେଉଁ ଦୁଇ ତିନି ଦିନ କ୍ରୀଡ଼ା ପ୍ରତିଯୋଗିତା ପାଇଁ ରଖାଯାଇ-ଥାଏ ତା' ମଧ୍ୟରେ ଏ ସବୁ କରାଇବା କଷ୍ଟକର । ଏଥିପାଇଁ ପୂର୍ବରୁ ବିଭିନ୍ନ ଦଳ ମଧ୍ୟରେ ପ୍ରାଥମିକ ପ୍ରତିଯୋଗିତା ଶେଷ କରିଦେଇ ସେହି ଦିନଗୁଡ଼ିକ ପାଇଁ କେବଳ ଚୂଡ଼ାନ୍ତ ପ୍ରତିଯୋଗିତାଗୁଡ଼ିକ ରଖାଯାଇପାରେ । କ୍ରୀଡ଼ା ପ୍ରତିଯୋଗିତାଗୁଡ଼ିକ ବିଦ୍ୟାଳୟର ବର୍ଷର ଶେଷ ଭାଗରେ ବା ମଧ୍ୟଭାଗରେ ଆୟୋଜିତ ହୋଇପାରେ ।

ବିଦ୍ୟାଳୟ ବିଦ୍ୟାଳୟ ମଧ୍ୟରେ ସମୟେ ସମୟେ କ୍ରୀଡ଼ା ପ୍ରତିଯୋଗିତା ଆୟୋଜନ କରାଯାଇପାରେ । ସାଧାରଣତଃ ବିଦ୍ୟାଳୟ ଛୁଟି ହେବା ପରେ ବା ରବିବାର ଦିନ ଏହିପରି ପ୍ରତିଯୋଗିତାମୂଳକ ଖେଳ ପାଇଁ ବ୍ୟବସ୍ଥା କରାଯାଇପାରେ । ବେଶ୍ ବନ୍ଧୁତ୍ୱପୂର୍ଣ୍ଣ ବାତାବରଣ ମଧ୍ୟରେ ପ୍ରତିଯୋଗିତାଗୁଡ଼ିକ ପରିଚାଳିତ ହେବା ଉଚିତ । ବିଦ୍ୟାଳୟର କୃତୀ ଖେଳାଳୀମାନଙ୍କ ପକ୍ଷେ କୃତିତ୍ୱ ପ୍ରଦର୍ଶନ କରିବାକୁ ପ୍ରତିଯୋଗିତା ହିଁ ଏକ ଅପୂର୍ବ ସୁଯୋଗ । ସେହିପରି ବିଦ୍ୟାଳୟର ଶ୍ରେଷ୍ଠ ଖେଳାଳୀମାନେ ସ୍ଥାନୀୟ, ଜିଲ୍ଲାସ୍ତରୀୟ ବା ପ୍ରାଦେଶିକ ସ୍ତରୀୟ କ୍ରୀଡ଼ା ପ୍ରତିଯୋଗିତାରେ ଅଂଶ ଗ୍ରହଣ କରି ସେମାନଙ୍କର କୃତିତ୍ୱ ପ୍ରଦର୍ଶନ କରିପାରନ୍ତି । ଏଠାରେ ଗୋଟିଏ ବିଷୟ ସ୍ମରଣ ରଖିବା ଏକାନ୍ତ ପ୍ରୟୋଜନ । ବିଭିନ୍ନ କ୍ରୀଡ଼ା କାର୍ଯ୍ୟକ୍ରମ ଏପରି ସଙ୍ଗଠିତ ହେବା ବାଞ୍ଛନୀୟ ଯେପରି ପ୍ରତ୍ୟେକ ଛାତ୍ରଙ୍କୁ ଖେଳିବାର ସୁଯୋଗ ମିଳିବ । କେବଳ ଏକ ଶ୍ରେଷ୍ଠ ଫୁଟବଲ ବା ହକିଦଳ ତିଆରିବା କ୍ରୀଡ଼ାକାର୍ଯ୍ୟକ୍ରମର ଲକ୍ଷ୍ୟ ନୁହେଁ । ଯଦି କ୍ରୀଡ଼ାସଙ୍ଗଠନ, ଖେଳ ଅଭ୍ୟାସ, ଉପଯୁକ୍ତ ପରିଚାଳନା ଓ ନେତୃତ୍ୱ ହେତୁ ବିଦ୍ୟାଳୟର ଖେଳାଳୀମାନେ ବିଭିନ୍ନ ପ୍ରତିଯୋଗିତାରେ ବିଜୟୀ ହୁଅନ୍ତି ବା ଶ୍ରେଷ୍ଠ ସ୍ଥାନ ଅଧିକାର କରନ୍ତି ସେଥିରେ ଆପତ୍ତି କରିବାର କିଛି ନାହିଁ; ମାତ୍ର ଶହ ଶହ ଛାତ୍ରଙ୍କର କ୍ରୀଡ଼ା କାର୍ଯ୍ୟକ୍ରମ ଅବହେଳା କରି

ଗୋଟିଏ ଭଲ ଫୁଟବଲ ଦଳ ତିଆରିବା ଉପରେ ଗୁରୁତ୍ୱ ଦେବାର ଯଥାର୍ଥତା ଆଦୌ ନାହିଁ । ଯଦି ବିଭିନ୍ନ ସ୍ଥାନୀୟ ବା ଜିଲ୍ଲାସ୍ତରୀୟ ପ୍ରତିଯୋଗିତାରେ ଅଂଶ ଗ୍ରହଣ କରିବା ଦ୍ୱାରା ବିଦ୍ୟାଳୟର କୃତୀ ଖେଳାଳୀମାନଙ୍କ ଉପରେ ଅତ୍ୟଧିକ ଚାପ ପଡ଼ିବାର ସମ୍ଭାବନା ଥାଏ ତେବେ ସେପରି ପ୍ରତିଯୋଗିତାରେ ବିଦ୍ୟାଳୟ ଅଂଶ ଗ୍ରହଣ କରି ପାରେ । ଆବଶ୍ୟକାନୁସାରେ ଏପରି ପଦକ୍ଷେପ ଅସମୀଚୀନ ନୁହେଁ । ପୂର୍ବରୁ ବିଦ୍ୟାଳୟର ବିଭିନ୍ନ ଗୃହ ଓ ବିଭିନ୍ନ ଦଳ ମଧ୍ୟରେ ପ୍ରତିଯୋଗିତାର ବ୍ୟବସ୍ଥା ସମ୍ବନ୍ଧରେ କୁହାଯାଇଅଛି । ଛାତ୍ରମାନେ ଦଳଗତ ପ୍ରତିଯୋଗିତାରେ ଭାଗ ନେଇ ଉତ୍ସାହିତ ହୋଇପାରିଲେ ଓ କୃତିତ୍ୱ ପ୍ରଦର୍ଶନ କରିପାରିଲେ ଆମର ଲକ୍ଷ୍ୟ ଓ ଉଦ୍ଦେଶ୍ୟ ସାଧିତ ହେବ ।

## କ୍ରୀଡ଼ା ପ୍ରସାର କାର୍ଯ୍ୟକ୍ରମରେ ବିଦ୍ୟାଳୟର ଭୂମିକା

ଏବେ ପ୍ରାୟ ପ୍ରତ୍ୟେକ ଦେଶରେ ପ୍ରତ୍ୟେକ ପ୍ରାନ୍ତରେ କ୍ରୀଡ଼ାବିତ୍‌ଙ୍କ ଅପେକ୍ଷା ଦର୍ଶକଙ୍କ ସଂଖ୍ୟା ଏତେ ଅଧିକ ଯେ କେତେକ ଶିକ୍ଷାବିତ୍ ଏହା ଆଧୁନିକ ସଭ୍ୟତାର ଏକ ଅଶୁଭ ଲକ୍ଷଣ ବୋଲି ମନେକଲେଣି । ଯେ କୌଣସି ସାଧାରଣ କ୍ରୀଡ଼ା ପ୍ରତି-ଯୋଗିତାରେ ଶତ ସହସ୍ର ଦର୍ଶକ ଉପସ୍ଥିତ ହେଉଅଛନ୍ତି । ଗାଁଗହଳରେ ମଧ୍ୟ ଅବସ୍ଥା ଏହିପରି କହିଲେ ଚଳେ । ତେଣୁ ବାଳକ ବାଳିକାମାନେ ବିଦ୍ୟାଳୟ ସ୍ତରରେ ଖେଳର ଅଭ୍ୟାସ କରିବା ସଙ୍ଗେ ସଙ୍ଗେ ସେମାନଙ୍କର କ୍ରୀଡ଼ା ପ୍ରତି ଏକ ଅନୁରାଗ ସୃଷ୍ଟି ହୋଇପାରିଲେ ପରବର୍ତ୍ତୀ ଜୀବନରେ ସେମାନେ କେବଳ ଦର୍ଶକ ହୋଇ ରହିବାକୁ ଇଚ୍ଛା କରିବେ ନାହିଁ, ବରଂ ଖେଳର ଅଭ୍ୟାସ ବଜାୟ ରଖିବାକୁ ଚେଷ୍ଟା କରିବେ । ବିଦ୍ୟାଳୟର ଛାତ୍ରଛାତ୍ରୀମାନେ ମଧ୍ୟ ଗାଁଗହଳରେ ବିଭିନ୍ନ ପ୍ରକାର ଖେଳର ପ୍ରଚଳନ କରିପାରିଲେ ଏବଂ ତତ୍ସଂକ୍ରାନ୍ତ ପ୍ରତିଯୋଗିତାମାନ ଆୟୋଜନ କରାଇପାରିଲେ ବିଦ୍ୟାଳୟ ଗୋଷ୍ଠୀର କାର୍ଯ୍ୟକ୍ରମ ସମାଜ ମଧ୍ୟକୁ ପ୍ରସାରିତ ହୋଇପାରିବ ତଥା ବିଦ୍ୟାଳୟ ଓ ବାହାର ସମାଜ ମଧ୍ୟରେ ସମ୍ପର୍କ ନିବିଡ଼ତର ହେବ । ଗାଁଗହଳରେ କ୍ରୀଡ଼ା ପ୍ରସାର କରାଗଲେ ଖେଳପଡ଼ିଆ ପାଇଁ ସ୍ଥାନାଭାବ ହେବନାହିଁ । ଫୁଟବଲ, ହକି, ଭଲିବଲ ପ୍ରଭୃତି ପ୍ରଚଳନ କରାଯିବା ବ୍ୟୟସାପେକ୍ଷ ମନେହେଲେ କବାଡ଼ି ପ୍ରଭୃତି ବିଭିନ୍ନ ଦେଶୀୟ ଖେଳର ଅଭ୍ୟାସ କରାଯାଇପାରେ । ତେଣୁ ଖେଳପଡ଼ିଆ ବା ଖେଳୋପକରଣ କ୍ରୀଡ଼ା ପ୍ରସାରରେ ଅନ୍ତରାୟ ହେବ ନାହିଁ । ଏଥିପାଇଁ କେବଳ ଉପଯୁକ୍ତ ସଙ୍ଗଠନର ଅଭାବ ପରିଲକ୍ଷିତ ହେଉଅଛି । ବିଦ୍ୟାଳୟ ଏ ଦିଗରେ କେତେକାଂଶରେ ପଥପ୍ରଦର୍ଶନ କରାଇପାରିଲେ ଓ ଉପଯୁକ୍ତ ନେତୃତ୍ୱ ନେଇପାରିଲେ ତାହାର ସାମାଜିକ ଦାୟିତ୍ୱ ଅନେକାଂଶରେ ପୂର୍ଣ୍ଣ କରିପାରିବ ।

## ତର୍କସଭା

ତର୍କସଭା ବିଦ୍ୟାଳୟ କାର୍ଯ୍ୟକ୍ରମର ଏକ ଅପରିହାର୍ଯ୍ୟ ଅଂଶ । ପ୍ରତ୍ୟେକ ବିଦ୍ୟାଳୟରେ ବିଶେଷତଃ ମାଧ୍ୟମିକ ବିଦ୍ୟାଳୟ ପାଠ୍ୟନିର୍ଘଣ୍ଟରେ ତର୍କସଭା ପାଇଁ ଏକ ସ୍ୱତନ୍ତ୍ର ପିରିଅଡ଼ ରଖାଯାଇଥାଏ । ସାଧାରଣତଃ ଶନିବାର ବା ଯେଉଁଦିନ ବିଦ୍ୟାଳୟରେ ଅଧାଛୁଟି ହୁଏ ସେହି ଦିନରେ ଶେଷ ପିରିଅଡରେ ତର୍କସଭା କରାଯାଏ । ଏହାଦ୍ୱାରା ତର୍କ ସଭାର ସମୟ ଇଚ୍ଛାନୁସାରେ କିଛି ଅଧିକ ସମୟ ଲାଗି ବଢାଇ ଦେବାରେ ସୁବିଧା ହୁଏ । ମାଧ୍ୟମିକ ବିଦ୍ୟାଳୟରେ ଉଚ୍ଚ ଶ୍ରେଣୀର ଛାତ୍ରମାନଙ୍କୁ ନେଇ ଗୋଟିଏ ତର୍କ ସଭା ଓ ନିମ୍ନ ଶ୍ରେଣୀର ଛାତ୍ରମାନଙ୍କୁ ନେଇ ଆଉ ଗୋଟିଏ ତର୍କସଭାର ବ୍ୟବସ୍ଥା କରାଯାଇଥାଏ । ଏହା ଏକ ସମୁଚିତ ବ୍ୟବସ୍ଥା, କାରଣ ଉଚ୍ଚ ଶ୍ରେଣୀର ଛାତ୍ରମାନେ ସେମାନଙ୍କ ବୟସ, ଜ୍ଞାନ ଓ ଅଭିଜ୍ଞତା ଦୃଷ୍ଟିରୁ ବିଭିନ୍ନ ବିଷୟରେ ଯେତେ କଥା ଜାଣିଥାନ୍ତି ବା କୌଣସି ବିଷୟର ସପକ୍ଷରେ ବା ବିପକ୍ଷରେ ଯେତେ କଥା କହିପାରନ୍ତି ନିମ୍ନ ଶ୍ରେଣୀର ଛାତ୍ରମାନେ ତାହା କହିପାରନ୍ତି ନାହିଁ । ଉଚ୍ଚଶ୍ରେଣୀର ଛାତ୍ରମାନଙ୍କ ପରି ନିମ୍ନ ଶ୍ରେଣୀର ଛାତ୍ରମାନଙ୍କର ଭାଷା ବା ଭାବ ପ୍ରକାଶର ଶୈଳୀ ପରିମାର୍ଜିତ ହୋଇ ନ ଥାଏ । ତେଣୁ ବିଦ୍ୟାଳୟରେ ଏହିପରି ବୟୋଜ୍ୟେଷ୍ଠ ଓ କନିଷ୍ଠ ଛାତ୍ରମାନଙ୍କର ସ୍ୱତନ୍ତ୍ର ତର୍କ ସଭାର ବ୍ୟବସ୍ଥା କରାଯିବା ବାଞ୍ଛନୀୟ ।

ବିତର୍କଗୁଡ଼ିକ ମାତୃଭାଷାରେ ହେବା ବାଞ୍ଛନୀୟ । ଏହା ଫଳରେ ଛାତ୍ରମାନେ ସେମାନଙ୍କ ଅଭିବ୍ୟକ୍ତି ଦୃଢ଼ଭାବରେ ପ୍ରକାଶ କରିବାକୁ ସମର୍ଥ ହୁଅନ୍ତି । ତର୍କସଭା ଆୟୋଜନ କରିବାର ଲକ୍ଷ୍ୟ ହେଲା ଛାତ୍ରମାନଙ୍କୁ ସେମାନଙ୍କର ଭାବ ପ୍ରକାଶର ସୁବିଧା ଦେବା ସଙ୍ଗେ ସଙ୍ଗେ ସେମାନଙ୍କର ସାହିତ୍ୟିକ ପ୍ରତିଭାର ଅଭିବୃଦ୍ଧି ପାଇଁ ସୁଯୋଗ ଦେବା । ଅବଶ୍ୟ ଏଥି ସଙ୍ଗେ ସଙ୍ଗେ ଆଉ କେତେକ ଲକ୍ଷ୍ୟ ପରୋକ୍ଷରେ ହାସଲ ହୁଏ । ଉଦାହରଣ ସ୍ୱରୂପ, ଯେଉଁ ସମସ୍ୟା ବା ବିଷୟ ଉପରେ ବିତର୍କର ବ୍ୟବସ୍ଥା କରାଯାଇଥାଏ ସେ ସମ୍ବନ୍ଧରେ ଅନେକ ମୂଳ ତଥ୍ୟ ଓ ସର୍ବଶେଷ ସମାଚାର ଜାଣିବାକୁ ଛାତ୍ରମାନଙ୍କୁ ବିଭିନ୍ନ ସୂତ୍ର ଖୋଜି ବାହାର କରିବାକୁ ହୁଏ । ହୁଏତ ଏଥିପାଇଁ ବହି, ସମ୍ବାଦପତ୍ର, ପତ୍ରିକା ଇତ୍ୟାଦିକୁ ପଢିବା ଆବଶ୍ୟକ ହୋଇପାରେ ବା କୌଣସି ବିଜ୍ଞ ଓ ଅଭିଜ୍ଞ ବ୍ୟକ୍ତିଙ୍କ ସହ ଆଲୋଚନା କରିବାକୁ ପଡ଼ିପାରେ । ତେଣୁ ଅଧିକ ଜ୍ଞାନର ଆହରଣ କରିବା ସଙ୍ଗେ ସଙ୍ଗେ ଛାତ୍ରମାନଙ୍କର ଏକ ସ୍ୱାଧୀନ ଭାବରେ କାର୍ଯ୍ୟକରିବାର ପ୍ରବୃତ୍ତି ଜାତ ହୁଏ ।

ଉଚ୍ଚଶ୍ରେଣୀର ଛାତ୍ରମାନଙ୍କ ମଧ୍ୟରେ ମାତୃଭାଷା ବ୍ୟତୀତ ଇଂରାଜୀରେ ବିତର୍କର ବ୍ୟବସ୍ଥା କରାଯାଇପାରେ । ଉଚ୍ଚ ଶ୍ରେଣୀରେ ପଢିବାବେଳକୁ ଛାତ୍ରମାନେ ତିନି ଚାରିବର୍ଷ ଧରି ଇଂରାଜୀ ପଢି ସାରିଥାଆନ୍ତି । ତେଣୁ ସେହି ସ୍ତରରେ ସେମାନେ ଇଂରାଜୀରେ

ସ୍ୱତନ୍ତ୍ର କରିବାର ଦକ୍ଷତା ହାସଲ କରିବା ଆଶା କରାଯାଏ । କେବଳ ପାଠ୍ୟ ବିଷୟର ସୀମା ମଧ୍ୟରେ ନିଜର ଜ୍ଞାନ ସୀମିତ ନ ରଖି ଅଧିକ ଜ୍ଞାନ ଅର୍ଜନ କରିବାରେ ଓ ବ୍ୟକ୍ତ କରିବାରେ ବିଶେଷତଃ ଏକ ବିଦେଶୀ ଭାଷାରେ ତର୍କସଭାର ଉପଯୋଗିତା ଅନସ୍ୱୀକାର୍ଯ୍ୟ ।

ଉଚ୍ଚଶ୍ରେଣୀରେ ଛାତ୍ରମାନଙ୍କ ପାଇଁ ମାତୃଭାଷା ଓ ଇଂରେଜୀରେ ହେଉଥିବା ତର୍କସଭାର ଦାୟିତ୍ୱରେ ଦୁଇଜଣ ଶିକ୍ଷକ ରହିବା ଆବଶ୍ୟକ । ଅନ୍ୟ ଜଣେ ଶିକ୍ଷକ ନିମ୍ନଶ୍ରେଣୀଗୁଡ଼ିକର ଛାତ୍ରମାନଙ୍କ ତର୍କସଭାର ଦାୟିତ୍ୱରେ ରହିବେ । ଏହି ଶିକ୍ଷକମାନେ ଜଣେ ଜଣେ ତର୍କସଭା ସମ୍ପାଦକ ମନୋନୟନ କରିବେ । ତେବେ ସମ୍ପୃକ୍ତ ଛାତ୍ରମାନେ ନିଜ ନିଜର ସମ୍ପାଦକ ନିର୍ବାଚନ କରିବା ଅଧିକ ଯୁକ୍ତିଯୁକ୍ତ ହେବ । ସମ୍ପାଦକ ତର୍କସଭା ଦାୟିତ୍ୱରେ ଥିବା ଶିକ୍ଷକଙ୍କ ସହ ପରାମର୍ଶ କରି ବିତର୍କ ପାଇଁ ବିଷୟ ନିର୍ବାଚନ କରିବେ, ଯଥେଷ୍ଟ ଆଗରୁ ବିଷୟବସ୍ତୁ ଛାତ୍ରମାନଙ୍କୁ ଜଣାଇବେ, ବିଷୟର ସପକ୍ଷ ଓ ବିପକ୍ଷରେ ତର୍କ କରିବାକୁ ଇଚ୍ଛୁଥିବା ଛାତ୍ରମାନଙ୍କର ନାମ ତାଲିକା କରିବେ ଏବଂ ଶେଷରେ ତର୍କସଭାର କାର୍ଯ୍ୟ ପରିଚାଳନାରେ ସମ୍ପୃକ୍ତ ଶିକ୍ଷକଙ୍କୁ ସାହାଯ୍ୟ କରିବେ । ତର୍କସଭାଗୁଡ଼ିକରେ ଜଣେ ଛାତ୍ର ସଭାପତିତ୍ୱ କରିବା ଉଚିତ । ଶିକ୍ଷକଙ୍କର ଉପସ୍ଥିତି ଅପରିହାର୍ଯ୍ୟ ହେଲେହେଁ ସେ ସଭାକାର୍ଯ୍ୟ ପରିଚାଳନାରେ ପ୍ରଧାନତଃ ଉପଦେଷ୍ଟାର ଭୂମିକା ଗ୍ରହଣ କରିବା ଉଚିତ; କିନ୍ତୁ ପ୍ରକୃତ ସଭାକାର୍ଯ୍ୟ ଛାତ୍ରମାନେହିଁ ପରିଚାଳନା କରିବା ଦରକାର । ଏହି ସଭାପତି ସ୍ଥାୟୀ ଭାବରେ ନିର୍ବାଚିତ ହୋଇପାରନ୍ତି କିମ୍ବା ପ୍ରତ୍ୟେକ ଥର ଏକ ବା ଏକାଧିକ ଛାତ୍ରଙ୍କର ପ୍ରସ୍ତାବ ଓ ସମର୍ଥନ ଉପରେ ନିର୍ବାଚିତ ହୋଇପାରନ୍ତି ।

ଅଧିକ ଛାତ୍ରଙ୍କୁ ବିତର୍କରେ ଅଂଶ ଗ୍ରହଣ କରିବା ପାଇଁ ସୁଯୋଗ ଦେବା ଲକ୍ଷ୍ୟରେ ପ୍ରତ୍ୟେକ ଶ୍ରେଣୀରେ ତର୍କ ସଭାର ବ୍ୟବସ୍ଥା କରାଯିବା ବାଞ୍ଛନୀୟ । ଏହି ବ୍ୟବସ୍ଥା ଅନୁସାରେ ଛାତ୍ରମାନେ ପ୍ରତ୍ୟେକ ଶନିବାର ତର୍କସଭା ପିରିଅଡ଼ରେ ନିଜ ନିଜ ଶ୍ରେଣୀରେ ଅନୁଷ୍ଠିତ ହେଉଥିବା ତର୍କସଭାରେ ଯୋଗ ଦେବେ । ମାସର ଶେଷ ଶନିବାର କେବଳ ସାମୂହିକ ତର୍କସଭା ପୃଥକ୍ ଭାବରେ ବୟୋଜ୍ୟେଷ୍ଠ ଓ କନିଷ୍ଠ ଛାତ୍ରମାନଙ୍କ ପାଇଁ ଅନୁଷ୍ଠିତ ହେବ । ଶ୍ରେଣୀ ତର୍କସଭାଗୁଡ଼ିକର ଦାୟିତ୍ୱରେ ଶ୍ରେଣୀ ଶିକ୍ଷକମାନେ ରହିବେ ଏବଂ ପ୍ରତ୍ୟେକ ଶ୍ରେଣୀପାଇଁ ସ୍ୱତନ୍ତ୍ର ସମ୍ପାଦକ ଓ ସଭାପତି ନିର୍ବାଚିତ ହୋଇ କାର୍ଯ୍ୟ ପରିଚାଳନା କରିବେ । ଯେଉଁ ଛାତ୍ରମାନେ ବହୁ ଛାତ୍ରଙ୍କ ସମାବେଶରେ କିଛି କହିବାକୁ ସଙ୍କୋଚ ବୋଧ କରନ୍ତି ସେମାନେ ଶ୍ରେଣୀ ତର୍କସଭାରେ ଅଂଶ ଗ୍ରହଣ କରିପାରିଲେ ସେମାନଙ୍କର ଭୟ ଦୂରୀଭୂତ ହୋଇପାରିବ । ଏହି କାରଣରୁ ଶ୍ରେଣୀ ଶିକ୍ଷକ ଶ୍ରେଣୀର ସମସ୍ତ ଛାତ୍ରଙ୍କୁ ବିତର୍କରେ ଅଂଶ ଗ୍ରହଣ କରିବା ପାଇଁ ପ୍ରବର୍ତ୍ତାଇବା ଆବଶ୍ୟକ । ପ୍ରଧାନ ବା ସାମୂହିକ ତର୍କ ସଭାରେ ଅଂଶ ଗ୍ରହଣ କରିବା ସମ୍ପୂର୍ଣ୍ଣ ଇଚ୍ଛାଧୀନ

ବିଷୟ ହୋଇପାରେ; ମାତ୍ର ଶ୍ରେଣୀ-ତର୍କସଭାରେ ଯେପରି ସମସ୍ତ ଛାତ୍ର ଅଂଶ ଗ୍ରହଣ କରନ୍ତି ସେଥିପାଇଁ ଆବଶ୍ୟକ ହେଲେ ଶ୍ରେଣୀ ଶିକ୍ଷକ ତାଙ୍କର କର୍ତ୍ତୃତ୍ୱ ପ୍ରୟୋଗ କରିବା ଅସମୀଚୀନ ହେବ ନାହିଁ ।

ବିଦ୍ୟାଳୟର ଏହି ଧରଣର ତର୍କସଭା ବ୍ୟତୀତ ସମୟ ସମୟରେ ବିଭିନ୍ନ ସଂସଦ ଅନୁକୂଳରେ ତର୍କସଭାର ଆୟୋଜନ କରାଯାଇପାରେ । ବିଜ୍ଞାନ ସଂସଦ ଅନୁକୂଳରେ କୌଣସି ଏକ ବୈଜ୍ଞାନିକ ବିଷୟବସ୍ତୁ ଉପରେ, ସାହିତ୍ୟ ସଂସଦ ଅନୁକୂଳରେ କୌଣସି କାବ୍ୟ କବିତା ବା ନାଟକ ସମ୍ବନ୍ଧୀୟ ବିଷୟବସ୍ତୁ ଉପରେ ତର୍କସଭାର ଆୟୋଜନ କରାଯାଇପାରେ । ଏହି ସବୁ ବିତର୍କ ମଧ୍ୟ ପ୍ରତିଯୋଗିତାମୂଳକ କରାଯାଇପାରେ ଓ ଶ୍ରେଷ୍ଠ ପ୍ରତିଯୋଗୀମାନଙ୍କୁ ପୁରସ୍କାର ପ୍ରଦାନର ବ୍ୟବସ୍ଥା କରାଯାଇପାରେ । ଆଜିକାଲି ବିଭିନ୍ନ ଅନୁଷ୍ଠାନ ତରଫରୁ ଜିଲା ଓ ପ୍ରଦେଶ ସ୍ତରରେ ବକ୍ତୃତା ପ୍ରତିଯୋଗିତାମାନ ଅନୁଷ୍ଠିତ ହେଉଥିବାରୁ ସେଥିରେ ଯୋଗଦାନ କରିବା ପାଇଁ ବିଦ୍ୟାଳୟର ଶ୍ରେଷ୍ଠ ବକ୍ତୃତା ପ୍ରଦାନକାରୀମାନଙ୍କୁ ଉତ୍ସାହିତ କରାଯିବା ଆବଶ୍ୟକ ।

**ଦଳଗତ ଆଲୋଚନା**

ଆଜିକାଲି ବିଭିନ୍ନ କ୍ଷେତ୍ରରେ ଦଳଗତ ଆଲୋଚନା (Panel discussion) ବିତର୍କର ଏକ ଉନ୍ନତ ପରିକଳ୍ପନା ରୂପେ ପରିଗଣିତ ହେଉଅଛି । ତର୍କସଭା ପରି ଏହି ଦଳଗତ ଆଲୋଚନା ପାଇଁ ବିଷୟବସ୍ତୁ ନିର୍ଦ୍ଧାରଣ କରାଯାଇପାରେ । ଆଲୋଚକମାନେ ଶ୍ରୋତାମାନଙ୍କ ସମ୍ମୁଖରେ ବସନ୍ତି ଏବଂ ବିଷୟବସ୍ତୁ ଉପରେ ଆଲୋଚନା ଆରମ୍ଭ କରାଯାଏ । ଆଲୋଚକମାନଙ୍କ ମଧ୍ୟରୁ ଜଣେ ଦଳପତି ହିସାବରେ କାର୍ଯ୍ୟ ପରିଚାଳନା କରନ୍ତି । ଆଲୋଚନାଚକ୍ରର ସୁବିଧା ହେଉଅଛି ଯେ, ଏଥିରେ ଅଂଶ ଗ୍ରହଣ କରୁଥିବା ବ୍ୟକ୍ତି ଯେତେଥର ଇଚ୍ଛା ସେତେଥର କହିପାରନ୍ତି । ତେବେ ଆଲୋଚନା ନିୟନ୍ତ୍ରଣ କରିବାକୁ ସମୟ ସୀମା ଧାର୍ଯ୍ୟ କରି ଦିଆଯାଇପାରେ । ତର୍କସଭାରେ ଜଣେ ବିଷୟ ବସ୍ତୁର ସପକ୍ଷରେ ବା ବିପକ୍ଷରେ ଥରେ ମାତ୍ର କହିବାକୁ ସୁଯୋଗ ପାଆନ୍ତି । ବକ୍ତୃତା ଦେଇ ସାରିବା ପରେ ଆଉ ଯେତେ ଗୁରୁତ୍ୱପୂର୍ଣ୍ଣ ବିଷୟ ମନେ ପଡ଼ିଲେ ମଧ୍ୟ ପ୍ରକାଶ କରିବାର ସୁଯୋଗ ନ ଥାଏ । ଆଲୋଚନା ଚକ୍ରରେ ସେପରି କୌଣସି ଅସୁବିଧା ନାହିଁ । ତର୍କସଭାରେ ଜଣେ ଯେ କୌଣସି ପ୍ରକାରେ ଗୋଟିଏ ପକ୍ଷ (ସପକ୍ଷ ବା ବିପକ୍ଷ) ସମର୍ଥନ କରିବାକୁ ଚାହେଁ; ମାତ୍ର ଦଳଗତ ଆଲୋଚନାର ଲକ୍ଷ୍ୟ ସଂପୂର୍ଣ୍ଣ ଭିନ୍ନ । ଏହାର ଲକ୍ଷ୍ୟ ହେଲା ସମଷ୍ଟିଗତ ବା ଗୋଷ୍ଠୀଗତ ପ୍ରଚେଷ୍ଟାରେ କୌଣସି ସିଦ୍ଧାନ୍ତରେ ଉପନୀତ ହେବା । ତେଣୁ ଆଲୋଚକମାନେ ଖୋଲାମନରେ ସମସ୍ତ ବିଷୟ ଆଲୋଚନା କରିବା ଉଚିତ । ଆଲୋଚନାକ୍ରମରେ ଜଣେ ଯଦି ଉପଲବ୍ଧି କରେ ଯେ ତାର ପୂର୍ବ ମତାମତ ଦୋଷମୁକ୍ତ ତେବେ ସେ ସଙ୍ଗେ ସଙ୍ଗେ ମତ ପରିବର୍ତ୍ତନ ବା ସଂଶୋଧନ

କରିବାକୁ ଦ୍ୱିଧା ପ୍ରକାଶ କରିବା ଉଚିତ ନୁହେଁ । ମୋଟ୍ଉପରେ ଏହିପରି ଖୋଲା ମନରେ ଆଲୋଚନା, ମତ ବିନିମୟ, ମତ ପରିବର୍ତ୍ତନ କରିବା ଦ୍ୱାରା ଆଲୋଚନାରେ ଅଂଶ ଗ୍ରହଣ କରୁଥିବା ବ୍ୟକ୍ତିମାନଙ୍କ ଉପରେ ଏ ସବୁର ସ୍ଥାୟୀ ପ୍ରଭାବ ପଡ଼େ । ତେଣୁ ଏହି ବ୍ୟବସ୍ଥାରେ ଭିନ୍ନ ଉପାୟଠାରୁ ବେଳେବେଳେ କ୍ଷେତ୍ରରେ ଅଧିକ ସୁଫଳ ମିଳେ ।

## ନାଟକ

ଛାତ୍ରମାନଙ୍କର ସୃଜନାତ୍ମକ ଅଭିବ୍ୟକ୍ତି ନାଟକ ମାଧ୍ୟମରେ ପ୍ରକାଶିତ । ତେଣୁ ବିଦ୍ୟାଳୟ କାର୍ଯ୍ୟକ୍ରମରେ ନାଟକର ସ୍ଥାନ ଓ ଉପଯୋଗିତା ରହିଅଛି । ନାଟକ କାର୍ଯ୍ୟକ୍ରମରେ ଛାତ୍ରମାନେ ପ୍ରଧାନତଃ ମାତୃଭାଷାରେହିଁ ନାଟକ ଶିକ୍ଷା କରିଥାଆନ୍ତି ଓ ପରିବେଷଣ କରିଥାଆନ୍ତି । ଆଜିକାଲି ବିଦ୍ୟାଳୟରେ ମାତୃଭାଷା ବ୍ୟତୀତ ଇଂରାଜୀ, ସଂସ୍କୃତ, ହିନ୍ଦୀ ବା ଅନ୍ୟାନ୍ୟ ଆଧୁନିକ ଭାଷା ଅଧ୍ୟୟନ କରାଯିବାର ବ୍ୟବସ୍ଥା ରହିଥିବା ଦୃଷ୍ଟିରୁ ଛାତ୍ରମାନେ ନାଟକ ମାଧ୍ୟମରେ ଏହିସବୁ ଭାଷାରେ ନିଜ ନିଜର ଦକ୍ଷତା ପ୍ରଦର୍ଶନ କରିଥାଆନ୍ତି । ଏହି କାରଣରୁ ପୁରସ୍କାର ବିତରଣ ଉତ୍ସବ ପରି ଦିନଗୁଡ଼ିକରେ ବିଦ୍ୟାଳୟର ଛାତ୍ରମାନେ ବିଭିନ୍ନ କାର୍ଯ୍ୟକ୍ରମରେ ବିଭିନ୍ନ ଭାଷାରେ ନାଟକ, ନାଟିକା, ଏକାଙ୍କିକା, ପାଲା ଇତ୍ୟାଦି ପରିବେଷଣ କରିଥାନ୍ତି ।

ସାଧାରଣତଃ ଦୃଷ୍ଟିରୁ ବିଚାର କଲେ ଜଣେ ଶିକ୍ଷକ ନାଟକ ସମ୍ବନ୍ଧୀୟ ସମସ୍ତ କାର୍ଯ୍ୟକ୍ରମ ଦାୟିତ୍ୱରେ ରହିବା ଉଚିତ । ସେ ଶ୍ରେଣୀ ଶିକ୍ଷକ ହୋଇପାରନ୍ତି ବା ବିଷୟ ଶିକ୍ଷକ ହୋଇପାରନ୍ତି ମାତ୍ର ଯେଉଁ ଶିକ୍ଷକଙ୍କର ନାଟ୍ୟାଭିନୟରେ ପାରଦର୍ଶିତା ଥାଏ ସେ ଏହି କାର୍ଯ୍ୟକ୍ରମ ଦାୟିତ୍ୱରେ ରହିବା ସବୁଠାରୁ ଭଲ । ବିଭିନ୍ନ ଭାଷା ଅଧ୍ୟାପନା କରୁଥିବା ଶିକ୍ଷକମାନେ ତାହାଙ୍କୁ ଏହି କାର୍ଯ୍ୟରେ ସାହାଯ୍ୟ କରିବା ଉଚିତ । ଜଣେ ଶିକ୍ଷକ ଦାୟିତ୍ୱରେ ରହିଲେ ସମସ୍ତ କାର୍ଯ୍ୟ ଶୃଙ୍ଖଳିତ ଭାବରେ କରାଯାଇପାରିବ ନଚେତ୍ ଛାତ୍ରମାନଙ୍କ ମଧ୍ୟରେ ଅବାଞ୍ଛିତ ପ୍ରତିଯୋଗୀ ମନୋଭାବ ସୃଷ୍ଟି ହେବ ଏବଂ ନାଟକର ଶିକ୍ଷାଗତ ଗୁଣ ନଷ୍ଟ ହୋଇଯିବ ।

ନାଟକ ଦାୟିତ୍ୱରେ ଥିବା ଶିକ୍ଷକଙ୍କୁ କେତେଗୁଡ଼ିଏ ବିଷୟ ପ୍ରତି ଦୃଷ୍ଟି ଦେବାକୁ ହେବ । ସେଥିରୁ ଗୋଟିଏ ପ୍ରଧାନ କଥା ହେଲା ଯେ କୌଣସି ଛାତ୍ର ସର୍ବଦା ଏକ ପ୍ରକାର ଭୂମିକାରେ ଅଭିନୟ କରିବା ଉଚିତ ନୁହେଁ । ଯଦି ଗୋଟିଏ ପିଲା ନାଟକର ଏକ ଦୁଷ୍ଟ ଚରିତ୍ରରେ ଅଭିନୟ କରି ସମସ୍ତଙ୍କର ପ୍ରଶଂସାର୍ହ ହୋଇଅଛି ତାହାର ଅର୍ଥ ନୁହେଁ ଯେ ଆଉ ଯେବେ ନାଟକ ପରିବେଷଣ କରାଯିବ ସେଥିରେ ଯଦି ଏକ ଦୁଷ୍ଟ ଚରିତ୍ର ଥାଏ ତେବେ ସେ ସେହି ଦୁଷ୍ଟ ଚରିତ୍ରର ଅଭିନୟ କରିବ । ଛାତ୍ରଟି ପୁଣି ଦୁଷ୍ଟ ଚରିତ୍ରରେ ଅଭିନୟ କରିବା ଦ୍ୱାରା ନାଟକଟି ଅନ୍ୟମାନଙ୍କ ପାଇଁ ବେଶ୍ ଉପଭୋଗ୍ୟ

ହୋଇପାରେ, ମାତ୍ର ବାରମ୍ବାର ଏହି ପ୍ରକାର ଭୂମିକାରେ ଅଭିନୟ କରିବା ଫଳରେ ଛାତ୍ର ଉପରେ ନାଟକର ବହୁ କୁପ୍ରଭାବ ମଧ୍ୟ ପଡ଼ିପାରେ । ରଙ୍ଗମଞ୍ଚର ଛଳନାତ୍ମକ ଅଭିନୟର ପ୍ରଭାବ ବାସ୍ତବ ଜୀବନର ଗତିଧାରାକୁ ପ୍ରଭାବିତ କରିବା ଅସମ୍ଭବ ନୁହେଁ । ତେଣୁ କୌଣସି ଛାତ୍ର ଏକ ପ୍ରକାର ଅଭିନୟରେ ବୈଶିଷ୍ଟ୍ୟ ପ୍ରତିପାଦନ କରିବା ପାଇଁ ଚେଷ୍ଟା କରାଯିବା ଉଚିତ ନୁହେଁ । ବିଦ୍ୟାଳୟରେ ବିଭିନ୍ନ ଭାଷାରେ ପଢ଼ାଯାଉଥିବା ବିଷୟଗୁଡ଼ିକ ନାଟକ ମାଧ୍ୟମରେ ଅଧିକ ସରସ, ସୁନ୍ଦର ଓ ଜୀବନ୍ତ କରାଯାଇପାରେ ଏବଂ ଏହାଦ୍ୱାରା ବିଷୟଗୁଡ଼ିକ ଉପଭୋଗ୍ୟ ହେବା ସଙ୍ଗେ ସଙ୍ଗେ ଶିକ୍ଷଣୀୟ ମଧ୍ୟ ହୋଇପାରେ । ଏହି ପ୍ରକାର ଶିକ୍ଷାର ପ୍ରଭାବ ମଧ୍ୟ ଅଧିକ ସ୍ଥାୟୀ ହୋଇପାରେ । ତେଣୁ ଏହି ଦୃଷ୍ଟିରୁ ନାଟକ କାର୍ଯ୍ୟକ୍ରମ ପରିଚାଳିତ ହେବା ଦରକାର, ଉତ୍କୃଷ୍ଟ ଅଭିନେତା ସୃଷ୍ଟି କରିବା ଉଦ୍ଦେଶ୍ୟରେ ନୁହେଁ । ଯାହାହେଉ ଶିକ୍ଷାଗତ ଲକ୍ଷ୍ୟ ହାସଲ ହେବା ସଙ୍ଗେ ସଙ୍ଗେ ଯଦି କେତେକ ଉତ୍କୃଷ୍ଟ ଅଭିନେତା ମଧ୍ୟ ବାହାରି ପାରନ୍ତି ତେବେ ସେଥିରେ ଆପତ୍ତି କରିବାର କିଛି ନାହିଁ ।

ଅନେକ ସମୟରେ ଦର୍ଶକମାନଙ୍କୁ ମୁଗ୍ଧ କରିବା ପାଇଁ ନାଟକର ବିଷୟବସ୍ତୁ ପରିବର୍ତ୍ତିତ ତଥା ପରିମାର୍ଜିତ ହୋଇଥାଏ । ଏ ସମ୍ବନ୍ଧରେ ଆମ୍ଭମାନଙ୍କର ମନେ ରଖିବା ଉଚିତ ଯେ ଛାତ୍ରମାନେ ପେଶାଦାର ଅଭିନେତା ନୁହନ୍ତି କିମ୍ବା ବିଦ୍ୟାଳୟ ଏକ ପେଶାଦାର ରଙ୍ଗମଞ୍ଚ ନୁହେଁ । ନାଟକ ନିଶ୍ଚୟ ବହୁ ଦର୍ଶକଙ୍କ ସମ୍ମୁଖରେ ଅଭିନୀତ ହେବ; ମାତ୍ର କେବଳ ଦର୍ଶକମାନଙ୍କର ମନୋରଞ୍ଜନ ନାଟକର ଲକ୍ଷ୍ୟ ନ ହୋଇ ପ୍ରଧାନତଃ ତାହା ଛାତ୍ରମାନଙ୍କ ପକ୍ଷେ କି ପ୍ରକାର ଶିକ୍ଷଣୀୟ ପ୍ରଭାବ ଓ ପରିବେଶ ସୃଷ୍ଟି କରିବ ତାହାହିଁ ବିଚାରକୁ ନିଆଯିବା ଉଚିତ । ଯେଉଁ ନାଟକର ଶିକ୍ଷାଗତ ମୂଲ୍ୟ ଯଥେଷ୍ଟ ଅଧିକ ତାହା ଯଦି ଦର୍ଶକମାନଙ୍କ ଦ୍ୱାରା ବିଶେଷ ଆଦୃତ ନ ହୁଏ ତେବେ ସେଥିରେ ବିଦ୍ୟାଳୟର କର୍ମକର୍ତ୍ତାମାନେ ଦୁଃଖିତ ହେବାର କିଛି ନାହିଁ । ଦର୍ଶକମାନଙ୍କ ଦୃଷ୍ଟିରୁ କେବଳ ଏତିକି ସାବଧାନତା ଅବଲମ୍ବନ କରାଯିବା ଉଚିତ ଯେ ଛାତ୍ରମାନେ ଯାହା ପ୍ରଦର୍ଶନ କରିବାକୁ ଯାଉଛନ୍ତି ସେଥିପାଇଁ ସେମାନେ ଭଲଭାବରେ ପ୍ରସ୍ତୁତ ହୋଇଅଛନ୍ତି କି ନାହିଁ । ନାଟକଟିର ବିଷୟବସ୍ତୁ ଭଲଭାବରେ ମନେ ନ ରଖି ବା କୌଣସି ଏକ ଭୂମିକାରେ ଅଭିନୟ କରିବା ପୂର୍ବରୁ ଯଥେଷ୍ଟ ଅଭ୍ୟାସ ନ କରି ରଙ୍ଗମଞ୍ଚ ଉପରେ ସେହିସବୁ ଦୁର୍ବଳତା ଦର୍ଶକମାନଙ୍କ ଆଗରେ ଉପସ୍ଥାପନ କରିବା ବାଞ୍ଛନୀୟ ନୁହେଁ । ସଂପୃକ୍ତ ଶିକ୍ଷକ ଏହି ବିଷୟପ୍ରତି ବିଶେଷ ଦୃଷ୍ଟି ଦେବା ବିଧେୟ । ସମସ୍ତ ସମୟରେ ରଙ୍ଗମଞ୍ଚର ବିଭିନ୍ନ ଉପକରଣ ଆକର୍ଷଣୀୟ ହୋଇ ନ ପାରେ, ରଙ୍ଗମଞ୍ଚର ସାଜସଜ୍ଜା ଅତ୍ୟନ୍ତ ଚିତ୍ତାକର୍ଷକ ହୋଇ ନ ପାରେ କାରଣ ଏଥିପାଇଁ ଆବଶ୍ୟକ ଅର୍ଥ ବିଦ୍ୟାଳୟ ପକ୍ଷରେ ଯୋଗାଇ ଦେବା ସମ୍ଭବପର ହୋଇ ନ ପାରେ । ତେଣୁ ଏହି ସବୁ ବିଷୟ ପ୍ରତି ଦୃଷ୍ଟି ନ ରଖି ବା ଏଥିଲାଗି

ଅଯଥା ବ୍ୟୟ ନ ହୋଇ ଅଭିନୀତ ହେବାକୁ ଯାଉଥିବା ବିଷୟଗୁଡ଼ିକର ଗୁଣାତ୍ମକ ଅଭିବ୍ୟକ୍ତି ଉପରେ ଜୋର ଦେବା ଉଚିତ ହେବ ।

ରଙ୍ଗମଞ୍ଚ ପାଇଁ ଆବଶ୍ୟକ ହେଉଥିବା ଉପକରଣଗୁଡ଼ିକର ଅଭାବ ବିଦ୍ୟାଳୟ ପାଇଁ ଏକ ସମସ୍ୟା ହୋଇଥାଏ । ଚୌକି, ଟେବୁଲ, ବାକ୍ସ ପ୍ରଭୃତି ଅତି ସାଧାରଣ ଜିନିଷ ସହାୟରେ ମଧ୍ୟ କେତେକ ଅଭିନୟ ଚିତ୍ତାକର୍ଷକ ଭାବରେ ଉପସ୍ଥାପନା କରାଯାଇପାରେ । ରଙ୍ଗମଞ୍ଚ ପାଇଁ ଅନେକ ଜିନିଷ ତିଆରି କରିବାକୁ ଛାତ୍ରମାନଙ୍କୁ ସମର୍ଥ କରିପାରିବା ହେଉଛି ନାଟକର ଅନ୍ୟତମ ଶିକ୍ଷଣୀୟ ଦିଗ । ତେଣୁ ଛାତ୍ରମାନେ ଯଦି କେତେକ ଉପକରଣ ନିଜେ ତିଆରି କରିବାକୁ ଚାହାଁନ୍ତି ତାହାହେଲେ ସେ ଦିଗରେ ସେମାନଙ୍କୁ ଉତ୍ସାହିତ କରାଯିବା ଏକାନ୍ତ ଆବଶ୍ୟକ । ଏହି ପଦ୍ଧତିରେ ଧୀରେ ଧୀରେ କେତେ ବର୍ଷ ମଧ୍ୟରେ ଅନେକ ଉପକରଣ ପ୍ରସ୍ତୁତ କରାଯାଇପାରେ । ଯଦି ସମ୍ଭବ ହୁଏ ତେବେ ବିଦ୍ୟାଳୟର ରଙ୍ଗମଞ୍ଚ ପାଇଁ ଏକ ସ୍ୱତନ୍ତ୍ର ଗୃହ ରହିବା ଆବଶ୍ୟକ । ଏହି ଗୃହରେ ଛାତ୍ରମାନେ ବିଭିନ୍ନ ଆବୃତ୍ତି ଓ ଅଭିନୟ ଅଭ୍ୟାସ କରିପାରିବେ, ରଙ୍ଗମଞ୍ଚ ପାଇଁ ଆବଶ୍ୟକ ଉପକରଣଗୁଡ଼ିକ ଏଠାରେ ରଖାଯାଇ ପାରିବ । ପରଦାଗୁଡ଼ିକ ଗୃହରେ ଏପରି ଖଞ୍ଜା ହୋଇଥିବା ଆବଶ୍ୟକ ଯେପରି ଦରକାରବେଳେ ସେଗୁଡ଼ିକ ସହଜରେ ଟଣାଯାଇ ପାରିବ; ଅର୍ଥାତ ଗୃହଟି ଗୋଟିଏ ରଙ୍ଗମଞ୍ଚଭଳି ବ୍ୟବହୃତ ହୋଇପାରିବ ।

ଛାତ୍ରମାନଙ୍କୁ ନାଟକ ଲେଖିବା ପାଇଁ ଉତ୍ସାହିତ କରାଯିବା ଦରକାର । ଏହାଦ୍ୱାରା ସେମାନଙ୍କର ସୃଜନ ଶକ୍ତିର ବିକାଶ ହୋଇପାରିବ । ସେମାନଙ୍କର ସ୍ୱରଚିତ ନାଟକ ଅଭିନୟ କରିବାକୁ ଉତ୍ସାହ ଦିଆଗଲେ ସେମାନେ ଏ ଦିଗରେ ବିଶେଷ ଆଗ୍ରହୀ ହେବେ । ସମୟ ସମୟରେ ପାଠ୍ୟ ବିଷୟଗୁଡ଼ିକ ନାଟକରେ ରୂପାନ୍ତର କରାଯାଇପାରେ ଏବଂ ପାଠ୍ୟ ବିଷୟ ମଧ୍ୟରେ ନାଟିକା, ଏକାଙ୍କିକା ଇତ୍ୟାଦି ଥିଲେ ସେସବୁର ଅଭିନୟ କରାଯାଇପାରେ । ଶିକ୍ଷକମାନେ ମଧ୍ୟ ବେଳେ ବେଳେ ନାଟକ ଲେଖି ଛାତ୍ରମାନଙ୍କୁ ବିଭିନ୍ନ ଭୂମିକାରେ ଅଭିନୟ କରିବାକୁ ସୁଯୋଗ ଦେଇପାରନ୍ତି । ଶିକ୍ଷକମାନଙ୍କ ଦ୍ୱାରା ରଚିତ ନାଟକ ଛାତ୍ରମାନଙ୍କ ପାଇଁ ଏକ ଏକ ଆଦର୍ଶ ବା ଉଦାହରଣ ରୂପେ କାର୍ଯ୍ୟ କରିପାରେ । ଯାହାହେଉ ଛାତ୍ରମାନେ ନିଜେ ନାଟକ ଲେଖି ଅଭିନୟ କରିବାହିଁ ସର୍ବୋତ୍କୃଷ୍ଟ ପଦ୍ଧତି ରୂପେ ଗଣ୍ୟ ହେବା ଉଚିତ । ଦରକାର ବେଳେ ଶିକ୍ଷକମଣ୍ଡଳୀ ଏକ ନାଟକ ମଞ୍ଚସ୍ଥ କରି ତାହା ଛାତ୍ରମାନଙ୍କ ସମ୍ମୁଖରେ ଏକ ଆଦର୍ଶ ରୂପେ ଉପସ୍ଥାପନା କରିପାରନ୍ତି ।

## ପୁରସ୍କାର ବିତରଣ

ବିଦ୍ୟାଳୟରେ ପାଳିତ ହେଉଥିବା ବିଭିନ୍ନ ଉତ୍ସବ ମଧ୍ୟରେ ପୁରସ୍କାର ବିତରଣୀ ଉତ୍ସବଟି ସର୍ବଶ୍ରେଷ୍ଠ ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ । ଏହି ଦିନ ବିଦ୍ୟାଳୟର

ବହୁ ଛାତ୍ର ବିଭିନ୍ନ ବିଷୟରେ ଅର୍ଜନ କରିଥିବା କୃତିତ୍ୱ ଲାଗି ପୁରସ୍କୃତ ହୁଅନ୍ତି । ପ୍ରକୃତ ପକ୍ଷେ ବହୁ ଛାତ୍ର ସାରାକାଳଧରି ଏହି ଦିନଟି ପାଇଁ ଅପେକ୍ଷା କରି ରହିଥାନ୍ତି । ଛାତ୍ରମାନଙ୍କର ଅଭିଭାବକମାନେ ଉତ୍ସାହିତ ହୋଇ ଉତ୍ସବଟିରେ ଯୋଗ ଦେଇଥାନ୍ତି । କୌଣସି ବିଶିଷ୍ଟ ଶିକ୍ଷାବିତ୍ ବା ବୁଦ୍ଧିଜୀବୀ ଉତ୍ସବଟିରେ ପୌରହିତ୍ୟ କରି ପୁରସ୍କାରଗୁଡ଼ିକ ବିତରଣ କରିଥାଆନ୍ତି । ଛାତ୍ରମାନେ ବିଭିନ୍ନ ମନୋରଞ୍ଜନ କାର୍ଯ୍ୟକ୍ରମ ମାଧ୍ୟମରେ ସେମାନଙ୍କର ପାରଦର୍ଶିତା ଉପସ୍ଥିତ ଭଦ୍ରମଣ୍ଡଳୀ ତଥା ଅଭିଭାବକମାନଙ୍କ ଆଗରେ ଉପସ୍ଥାପିତ କରି-ଥାଆନ୍ତି । ପ୍ରଧାନ ଶିକ୍ଷକ ମଧ୍ୟ ଏହିସଙ୍ଗେ ବହୁ ବିଶିଷ୍ଟ ବ୍ୟକ୍ତି ଓ ଅଭିଭାବକଙ୍କୁ ସାକ୍ଷାତ କରିବାର ଏକ ଅପୂର୍ବ ସୁଯୋଗ ପାଇଥାଆନ୍ତି । ମୋଟଉପରେ ବିଭିନ୍ନ ପ୍ରକାର କାର୍ଯ୍ୟକ୍ରମ ଓ ବିଭିନ୍ନ ବ୍ୟକ୍ତିଙ୍କର ଆଗମନ ଫଳରେ ବିଦ୍ୟାଳୟଟି କର୍ମମୁଖର ହୋଇଥାଏ । ଏହାହିଁ ଆଜିକାଲି ବିଦ୍ୟାଳୟରେ ପ୍ରଚଳିତ ପୁରସ୍କାର ବିତରଣ ଉତ୍ସବର ଏକ ସ୍ଥୂଳଚିତ୍ର ।

## ପ୍ରଚଳିତ ପଦ୍ଧତିର ଔଚିତ୍ୟ

ବର୍ତ୍ତମାନ ଯେଉଁ ପଦ୍ଧତିରେ ପୁରସ୍କାର ବିତରଣ କରାଯାଉଅଛି ଏଠାରେ ତାହାର ଔଚିତ୍ୟ ସମ୍ବନ୍ଧରେ କେତେକ ଆଲୋଚନା କରାଯାଇପାରେ । ପୁରସ୍କାର ବିତରଣ ଦ୍ୱାରା ଛାତ୍ରର କୃତିତ୍ୱକୁ ସମସ୍ତଙ୍କ ସମ୍ମୁଖରେ ସ୍ୱୀକୃତି ପ୍ରଦାନ କରାଯାଏ । ଏହାଦ୍ୱାରା ସେମାନେ ଉତ୍ସାହିତ ହୁଅନ୍ତି, ଉତ୍କର୍ଷର ଉନ୍ନତି କରିବା ଲାଗି ପ୍ରେରଣା ପାଆନ୍ତି ଏବଂ ସେହି ଅନୁସାରେ ମାର୍ଜିତ ବ୍ୟବହାର ପ୍ରଦର୍ଶନ କରିବାରେ ଆଗ୍ରହୀ ମଧ୍ୟ ହୁଅନ୍ତି । ଏଠାରେ ସ୍ୱତଃ ପ୍ରଶ୍ନ ଉଠେ ଯେ ପୁରସ୍କାରପ୍ରାପ୍ତ ହେବାଦ୍ୱାରା ଛାତ୍ରର ବାସ୍ତବ ଆଗ୍ରହ ସୃଷ୍ଟି ହୁଏ କି ? ଏହା କେବଳ ବାହ୍ୟ ଆଗ୍ରହକୁ ପ୍ରସାରିତ କରେ ନାହିଁ କି ? ଅବଶ୍ୟ ଯେଉଁ ଛାତ୍ରର କୌଣସି ଆଗ୍ରହ ନାହିଁ ତାହା ପକ୍ଷରେ ଅନାଗ୍ରହଠାରୁ ବାହ୍ୟ ଆଗ୍ରହର ଉଦ୍ରେକ ହେବା ବାଞ୍ଛନୀୟ । ପୁରସ୍କାରଗୁଡ଼ିକ ମୂଲ୍ୟବାନ ହେଲେ ଛାତ୍ରମାନେ ସେଥିପାଇଁ ଲୋଭ ପରବଶ ହୁଅନ୍ତି ନାହିଁକି ? ଏହାହିଁ ନାନା ଅବାଞ୍ଛିତ ପ୍ରତିଦ୍ୱନ୍ଦ୍ୱିତାର କାରଣ ନୁହେଁ କି ? ପୁରସ୍କାର ପ୍ରଦାନ ପାଇଁ ବ୍ୟବସ୍ଥା କଲାବେଳେ ଏହିପରି କେତେଗୁଡ଼ିଏ ବିଷୟ ମଧ୍ୟ ବିଚାରକୁ ନିଆଯିବା ଉଚିତ ।

## ପୁରସ୍କାର ବିତରଣର କେତେକ ନୀତିଗତ ବିଚାର

ପୁରସ୍କାର ବିତରଣ ଯେଉଁ ନୀତିଗୁଡ଼ିକ ଉପରେ ପର୍ଯ୍ୟବେସିତ ହେବା ଉଚିତ ତାହା ମଧ୍ୟରେ ସର୍ବପ୍ରଧାନ ନୀତି ହେଉଛି ବ୍ୟକ୍ତିଗତ ପ୍ରତିଯୋଗିତାକୁ ଯେତେଦୂର ସମ୍ଭବ ନିରୁତ୍ସାହିତ କରିବା । ପୁରସ୍କାରଗୁଡ଼ିକ ବ୍ୟକ୍ତିବିଶେଷଙ୍କୁ ଦିଆ ନ ଯାଇ ଦଳଗତ ସ୍ତରରେ

ଦିଆଯିବା ବ୍ୟବସ୍ଥାକୁ ଉତ୍ସାହ ପ୍ରଦାନ କରାଯିବା ଉଚିତ । ଯେତେବେଳେ ଦଳ ଦଳ ମଧ୍ୟରେ ବା ଗୃହ ଗୃହ ମଧ୍ୟରେ ପ୍ରତିଯୋଗିତା ହୁଏ ସେତେବେଳେ ପ୍ରତିଯୋଗୀମାନେ ବ୍ୟକ୍ତିଗତ ସ୍ୱାର୍ଥଠାରୁ ଦଳଗତ ସ୍ୱାର୍ଥ ପାଇଁ ଅଧିକ ତତ୍ପର ହୁଅନ୍ତି । ଏହି ତତ୍ପରତା କେବଳ ଖେଳପଡ଼ିଆରେ ନୁହେଁ ବା ତର୍କସଭାରେ ନୁହେଁ, ଶ୍ରେଣୀଗୃହରେ ମଧ୍ୟ ପ୍ରତିଯୋଗୀମାନଙ୍କୁ ଦଳର ବା ଗୃହର ବିଜୟ ଲାଗି ଅନୁପ୍ରାଣିତ କରିଥାଏ । ଦଳଗତ ଉନ୍ନତିର ପ୍ରଚେଷ୍ଟା ବ୍ୟକ୍ତିଗତ ଉନ୍ନତିର କାରଣ ହୋଇଥାଏ; ମାତ୍ର ଏଠାରେ ବ୍ୟକ୍ତିଗତ ଲାଭର ମୋହ ନ ଥାଏ । ଏଠାରେ ଗୋଟିଏ କପ୍ ବା ପୁରସ୍କାର ବିଭିନ୍ନ ଦଳରେ ଅସୂୟା ହେବାର କାରଣ ହୋଇ ନ ଥାଏ । ଦଳଗତ ବିଜୟରେ ଦଳ ଯେଉଁ କପ୍ ପାଏ ତାହାର ମୂଲ୍ୟ ହିସାବକୁ ନିଆଯାଏ ନାହିଁ, କେବଳ ଦଳଗତ ବିଜୟର ସଙ୍କେତ ରୂପେ ପରିଗଣିତ ହୁଏ ।

ବାର୍ଷିକ ପରୀକ୍ଷାରେ ବିଭିନ୍ନ ବିଷୟରେ କୃତିତ୍ୱ ଦେଖାଇଥିବା ହେତୁ ପ୍ରତ୍ୟେକ ଶ୍ରେଣୀରେ ପ୍ରଥମ, ଦ୍ୱିତୀୟ ଓ ତୃତୀୟ ସ୍ଥାନ ଅଧିକାର କରିଥିବା ଛାତ୍ରମାନଙ୍କୁ ଯେଉଁ ପୁରସ୍କାର ଦିଆଯାଏ ତାହା କେତେକାଂଶରେ ପରିବର୍ତ୍ତିତ ହେବା ବାଞ୍ଛନୀୟ । ପ୍ରତ୍ୟେକ ବିଷୟରେ ବାର୍ଷିକ ପରୀକ୍ଷାରେ କୌଣସି ଏକ ନିର୍ଦ୍ଦିଷ୍ଟ ଶତକଡ଼ା ହାରରୁ ଅଧିକ ନମ୍ବର ରଖିଥିବା ସମସ୍ତ ଛାତ୍ରଙ୍କୁ ଗୋଟିଏ ଗୋଟିଏ ପ୍ରଶଂସାପତ୍ର ଦିଆଯିବା ଉଚିତ । ଏହା ଫଳରେ ଅନେକ ଛାତ୍ର ପ୍ରଶଂସାପତ୍ର ପାଇବାର ସୁଯୋଗ ଲାଭ କରିବା ସଙ୍ଗେ ସଙ୍ଗେ ଉତ୍ସାହିତ ହୋଇପାରିବେ । ପ୍ରଶଂସାପତ୍ରର ବାସ୍ତବ ମୂଲ୍ୟ ଯଥେଷ୍ଟ ବେଶୀ । ଯେଉଁ ଛାତ୍ରମାନେ କେବେ ପୁରସ୍କାର ପାଇବାର ସୁଯୋଗ ପାଇ ନ ଥାନ୍ତି ସେମାନେ ପ୍ରଶଂସାପତ୍ର ପାଇଲେ ବିଶେଷ ଆନନ୍ଦିତ ହେବେ । ଯଦି ପୁରସ୍କାର ମାଧ୍ୟମରେ ଛାତ୍ର-ମାନଙ୍କୁ ଉତ୍ସାହିତ କରିବା ଆମର ଲକ୍ଷ୍ୟ ହୁଏ ତେବେ ପୁରସ୍କାର ବିତରଣ ଉତ୍ସବ ଅଧିକ ବ୍ୟୟସାପେକ୍ଷ କରି ନ ଯାଇ ବହୁ ଅଧିକ ଛାତ୍ରଙ୍କୁ ଉତ୍ସାହିତ କରିବା ସମ୍ଭବପର ହୋଇପାରିବ ।

କେତେକ ଶିକ୍ଷାବିତ୍‌ଙ୍କ ମତରେ ପୁରସ୍କାର ପ୍ରଦାନ ବ୍ୟବସ୍ଥା ଯେତେ କମ୍ ପ୍ରଚଳନ କରାଯାଇପାରେ ସେତେ ଭଲ । ଶିକ୍ଷକ ଓ ଛାତ୍ରମାନଙ୍କ ମଧ୍ୟରେ ଉତ୍ତମ ସମ୍ପର୍କ ଥିଲେ ଛାତ୍ରର କୃତିତ୍ୱ ଲାଗି ଶିକ୍ଷକଙ୍କର ମୌଖିକ ପ୍ରଶଂସାହିଁ ଛାତ୍ର ପକ୍ଷରେ ଏକ ମୂଲ୍ୟବାନ ବିଷୟରୂପେ ଗ୍ରହଣୀୟ ହେବ ଓ ତାହା ଛାତ୍ରକୁ ଯେଉଁ ଉତ୍ସାହ ଏବଂ ପ୍ରେରଣା ଦେବ ପ୍ରକୃତ ପୁରସ୍କାର ତାହା ଦେଇ ପାରିବ ନାହିଁ । ସୁଚାରୁରୂପେ କାର୍ଯ୍ୟ ସମ୍ପାଦନ କରିବାର ଯେଉଁ ସ୍ୱାଭାବିକ ଆନନ୍ଦ ଅଛି ତାହା ପୁରସ୍କାରପ୍ରାପ୍ତ ହେବାର ଆନନ୍ଦ ଠାରୁ ଅଧିକ । ଉତ୍ତମ ଆଚରଣ ପ୍ରଦର୍ଶନ କରିବା ପାଇଁ ପୁରସ୍କାର ବ୍ୟବସ୍ଥା ବନ୍ଦ କରାଯିବା ଉଚିତ କାରଣ ଅନେକ ସମୟରେ ଏହି ପ୍ରକାର ପୁରସ୍କାର ଛାତ୍ରକୁ

ଲୋକଦେଖାଣିଆ ଉତ୍ତମ ଆଚରଣ ପ୍ରଦର୍ଶନ କରାଇବାରେ ଉତ୍ସାହ ଦିଏ । ଶୁଭ ଆଚରଣ କୌଣସି ଉଦ୍ଦେଶ୍ୟମୂଳକ ନ ହୋଇ ସ୍ୱତଃସ୍ଫୂର୍ତ୍ତ ହେବା ଆବଶ୍ୟକ । ପୁରସ୍କାର ପ୍ରଲୋଭନରେ ଉତ୍ତମ ଆଚରଣ ପ୍ରଦର୍ଶନ କେତେକ କ୍ଷେତ୍ରରେ ସାମୟିକ ଓ କ୍ଷଣସ୍ଥାୟୀ ହୋଇଥାଏ । ଯେଉଁ ପୁରସ୍କାରଗୁଡ଼ିକ ଛାତ୍ରମାନଙ୍କ ମଧ୍ୟରେ ଈର୍ଷା ବା ଭେଦଭାବ ସୃଷ୍ଟି କରେ, ତାହା ସମ୍ପୂର୍ଣ୍ଣ ଅନୁତ୍ସାହିତ ହେବା ଆବଶ୍ୟକ ।

## ପର୍ଯ୍ୟଟନ ଓ ପରିଭ୍ରମଣ (Hikings and Excursions)

ଶ୍ରେଣୀଗୃହର ସୀମିତ ପରିବେଷ୍ଟନୀ ବାହାରେ ଛାତ୍ରମାନଙ୍କ ପାଇଁ ଜ୍ଞାନ ଆହରଣର ଯେଉଁ ସୁଯୋଗ ରହିଅଛି ତାହ ସୀମାହୀନ । ବିଦ୍ୟାଳୟ ବାହାରେ ରହିଥିବା ନଦୀ, ନାଳ, ପ୍ରପାତ, ସମୁଦ୍ର, ଗଛପତ୍ର, ପଶୁ, ପକ୍ଷୀ, ପାହାଡ଼, ପର୍ବତ, ମନ୍ଦିର, ମସଜିଦ୍, କାରଖାନା—ସବୁ କିଛି ଛାତ୍ରମାନଙ୍କର ଚିନ୍ତା, କଳ୍ପନା ତଥା ଜ୍ଞାନର ବିକାଶ ପାଇଁ ସହାୟକ । ତେଣୁ ପର୍ଯ୍ୟଟନ ଓ ପରିଭ୍ରମଣ ଶିକ୍ଷାର ଏକ ଅବିଚ୍ଛେଦ୍ୟ ଅଂଶରୂପେ ବିବେଚିତ ହେବା ଉଚିତ । ତେବେ ପ୍ରତ୍ୟେକ ପର୍ଯ୍ୟଟନ ଓ ପରିଭ୍ରମଣ ସୁପରିକଳ୍ପିତ ଯୋଜନା ଉପରେ ପର୍ଯ୍ୟବସିତ ନ ହେଲେ କେବଳ ଆମୋଦ ପ୍ରମୋଦହିଁ ସାର ହେବ ।

ପରିଭ୍ରମଣ ଦ୍ୱାରା ଛାତ୍ରମାନଙ୍କର ଅନେକ ବିଷୟରେ ପ୍ରତ୍ୟକ୍ଷ ଜ୍ଞାନ ଲାଭ ହୁଏ । ବିଭିନ୍ନ ପ୍ରକାର ଉଦ୍ଭିଦରେ ପତ୍ର ଓ ଫୁଲ ଦେଖି ଛାତ୍ରମାନେ ଯାହା ଶିକ୍ଷା କରିପାରିବେ ତାହା ନିଶ୍ଚୟ ଶ୍ରେଣୀ ଗୃହରେ ଅଙ୍କିତ ହେଉଥିବା ଚିତ୍ର ବା ଦେଖାଇ ଦିଆଯାଉଥିବା ଚାର୍ଟ ଓ ମଡ଼େଲଠାରୁ ଯେ ଅଧିକ ଶିକ୍ଷଣୀୟ ପରିସ୍ଥିତି ସୃଷ୍ଟି କରିବ ଏଥିରେ ସନ୍ଦେହ ନାହିଁ । ଗୋଟିଏ ଜଳବିଦ୍ୟୁତ୍ ଯୋଜନା ପ୍ରତ୍ୟକ୍ଷଭାବରେ ଦେଖି ଜଳବିଦ୍ୟୁତ ଉତ୍ପାଦନ ସମ୍ବନ୍ଧରେ ଯାହା ଜାଣିହେବ, ଇସ୍ପାତ କାରଖାନାର ଲୌହ ତରଳା ଚୁଲି ଦେଖି ଲୌହପିଣ୍ଡ ଉତ୍ପାଦନ ସମ୍ବନ୍ଧରେ ଯେଉଁ ଧାରଣା ହେବ ଶ୍ରେଣୀଗୃହର ସୀମିତ ପରିବେଷ୍ଟନୀ ମଧ୍ୟରେ ସେହି ଧାରଣା ଜନ୍ମାଇବା ଯେ ଅଧିକ କଷ୍ଟକର ଏହା ଅନସ୍ୱୀକାର୍ଯ୍ୟ । ତେଣୁ ଛାତ୍ରମାନଙ୍କର ସମ୍ବଳ ଅନୁସାରେ ଏବଂ ଶିକ୍ଷକ ଓ ଛାତ୍ରମାନଙ୍କର ସମସ୍ତ ସୁବିଧା ଅନୁସାରେ ଯେତେ ଅଧିକ ପରିଭ୍ରମଣ ଯୋଜନା କାର୍ଯ୍ୟକାରୀ କରାଯାଇପାରେ ସେତେ ଭଲ । କ୍ଷେତ୍ର ଅଭିଜ୍ଞତା (Field experiences) ଅଧିକ ଅର୍ଥବୋଧକ ଓ ଏଥିରୁ ମିଳୁଥିବା ଶିକ୍ଷାର ପ୍ରଭାବ ଅଧିକ ସ୍ଥାୟୀ । କ୍ଷେତ୍ର-କାର୍ଯ୍ୟ (Field work) ଛାତ୍ରମାନଙ୍କ ମନରେ ଯେଉଁ ଆଗ୍ରହ ସୃଷ୍ଟି କରିବ ଶ୍ରେଣୀ ଗୃହର କାର୍ଯ୍ୟାବଳୀ ତାହା କରିପାରିବ ନାହିଁ । ପ୍ରକୃତ ବସ୍ତୁ ବା ବିଷୟର ପ୍ରତ୍ୟକ୍ଷ ପର୍ଯ୍ୟବେକ୍ଷଣ ମନରେ ଯେଉଁ କୌତୁହଳ ଓ ଜିଜ୍ଞାସା ଜାତ କରାଇବ ତାହା ଶ୍ରେଣୀ ଗୃହର ଆଲୋଚନା କରିପାରିବ ନାହିଁ । ଏପରିକି କ୍ଷେତ୍ର କାର୍ଯ୍ୟରେ ଉପୁଜୁଥିବା ଅସୁବିଧା ହିଁ ଯେ ସବୁ ସମସ୍ୟାର ସମାଧାନ

ପାଇଁ ଏକ ଆହ୍ୱାନରୂପେ କାର୍ଯ୍ୟକରେ । ତେଣୁ ଶିକ୍ଷକମାନେ ବିଦ୍ୟାଳୟ ବାହାରର ଜଗତକୁ ଏକ ପରୀକ୍ଷାଗାର ରୂପେ ବିବେଚନା କରିବା ଦରକାର ଯେଉଁଠାରେ ସେମାନେ ନାନା ପ୍ରତ୍ୟକ୍ଷ ପର୍ଯ୍ୟବେକ୍ଷଣ ଓ ଅନୁଭୂତି ମାଧ୍ୟମରେ ଶିକ୍ଷାଦାନ କରିପାରିବେ ।

ବିଦ୍ୟାଳୟରେ ପରିଭ୍ରମଣ ସମ୍ବନ୍ଧୀୟ କୌଣସି କାର୍ଯ୍ୟକ୍ରମର ପରିକଳ୍ପନା କରାଗଲେ ଆର୍ଥିକ ଅସୁବିଧାହିଁ ତାହାର ପ୍ରଥମ ପ୍ରତିବନ୍ଧକ ହୁଏ । କାରଣ ପରିଭ୍ରମଣ ପ୍ରସଙ୍ଗ ଉତ୍ଥାପନ କରାଗଲେ ସଙ୍ଗେ ସଙ୍ଗେ କୌଣସି ଏକ ଦୂରସ୍ଥାନକୁ ଯିବା କଥା ପ୍ରଶ୍ନ ହୁଏ । ଯଦି ପର୍ଯ୍ୟଟନ ଓ ପରିଭ୍ରମଣର ପ୍ରଧାନ ଲକ୍ଷ୍ୟ ଛାତ୍ରମାନଙ୍କୁ ପ୍ରତ୍ୟକ୍ଷ ଜ୍ଞାନ ପ୍ରଦାନ କରିବା ହୁଏ ତାହାହେଲେ ପ୍ରଥମେ ନିକଟବର୍ତ୍ତୀ ସ୍ଥାନଗୁଡିକରେ ଥିବା ଦର୍ଶନୀୟ ଓ ଶିକ୍ଷଣୀୟ ବିଷୟଗୁଡିକ ବିଚାରକୁ ନିଆଯିବା ଉଚିତ । ଏପରି ପରିକଳ୍ପନାରେ ଆର୍ଥିକ ଅନଟନ ପ୍ରତିବନ୍ଧକ ହୁଏ ନାହିଁ, ପାଠ୍ୟ କାର୍ଯ୍ୟକ୍ରମ ଅଧିକ ସମୟ ବନ୍ଦ କରିବାକୁ ପଡେ ନାହିଁ । ନିକଟବର୍ତ୍ତୀ ସ୍ଥାନଗୁଡ଼ିକୁ ପିଲାମାନେ ଚାଲିକରି ଯାଇ ପୁଣି ଫେରିଆସିବା ସମ୍ଭବପର ହେଉଥିଲେ ଗାଡ଼ି ମଟରର ବ୍ୟବସ୍ଥା କରିବାକୁ ପଡେ ନାହିଁ । ଏ ସବୁ ବିଚାରକୁ ନିଆଯାଇ ନ ଥିବାରୁ ଅନେକ ବିଦ୍ୟାଳୟର ଛାତ୍ରଗଣ ନିକଟବର୍ତ୍ତୀ ଦର୍ଶନୀୟ ସ୍ଥାନ ଦେଖି ନ ଥାନ୍ତି କିମ୍ବା ଶିକ୍ଷାଗତ ଦୃଷ୍ଟିକୋଣରୁ ତାହାର ପର୍ଯ୍ୟବେକ୍ଷଣ ବା ପର୍ଯ୍ୟାଲୋଚନା କରି ନ ଥାନ୍ତି । ନିକଟବର୍ତ୍ତୀ ସ୍ଥାନକୁ ପର୍ଯ୍ୟଟନରେ ଯିବାର ବ୍ୟବସ୍ଥା କରାଗଲେ ଶ୍ରେଣୀର ସମସ୍ତ ଛାତ୍ର ଯାଇପାରିବେ ଯାହା ଦୂରସ୍ଥାନକୁ ଯିବାରେ ସମ୍ଭବପର ହୁଏ ନାହିଁ । ତେଣୁ ବିଦ୍ୟାଳୟର ଚତୁଃପାର୍ଶ୍ୱରେ ରହିଥିବା ଦର୍ଶନୀୟ ସ୍ଥାନ ଯେପରି ପ୍ରତ୍ୟେକ ଛାତ୍ର ଦେଖନ୍ତି ଓ ତହିଁର ଶିକ୍ଷଣୀୟ ଅଭିଜ୍ଞତା ଗ୍ରହଣ କରିବାକୁ ସମର୍ଥ ହୁଅନ୍ତି ସେ ସମ୍ବନ୍ଧରେ ଏକ ବିଧିବଦ୍ଧ ଯୋଜନା ହେବା ଦରକାର ।

ସମୟ ସମୟରେ ବିଦ୍ୟାଳୟର ଛାତ୍ରମାନେ ଦୂରବର୍ତ୍ତୀ ସ୍ଥାନଗୁଡ଼ିକୁ ପରିଭ୍ରମଣରେ ଯିବା ଆବଶ୍ୟକ । ଏଥିପାଇଁ ବିଦ୍ୟାଳୟଗୁଡ଼ିକ ବର୍ଷେ ବର୍ଷେ ସରକାରୀ ସାହାଯ୍ୟ ମଧ୍ୟ ପାଇଥାଆନ୍ତି । ପରିଭ୍ରମଣରେ ଯାଉଥିବା ଛାତ୍ରମାନଙ୍କୁ ରେଳଯାତ୍ରା ଲାଗି ରିହାତି ଦିଆଯିବାର ବ୍ୟବସ୍ଥା ମଧ୍ୟ ରହିଅଛି । ତଥାପି ଉପଯୁକ୍ତ ଭାବରେ ପରିକଳ୍ପନା କରାଯାଇ ନ ଥିଲେ ପରିଭ୍ରମଣକାରୀମାନଙ୍କୁ ନାନା ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼ିଥାଏ ।

ସାଧାରଣତଃ ଦୁର୍ଗାପୂଜା, ବଡ଼ଦିନ, ଦୋଳ ପ୍ରଭୃତି ସପ୍ତାହବ୍ୟାପୀ ବା ତଦୂର୍ଦ୍ଧ୍ୱ-କାଳ ପାଇଁ ହେଉଥିବା ଛୁଟିଦିନଗୁଡ଼ିକର ପରିଭ୍ରମଣ ପାଇଁ ସଦୁପଯୋଗ କରାଯାଇ ପାରେ । ତାହାହେଲେ ବିଦ୍ୟାଳୟ କାର୍ଯ୍ୟକ୍ରମ ଅଯଥା ବ୍ୟାହତ ହେବ ନାହିଁ । ବିଦ୍ୟାଳୟ କାର୍ଯ୍ୟକ୍ରମ ଚାଲିଥିବା ସମୟରେ ମଧ୍ୟ କିଛିଦିନ ପାଇଁ ଛାତ୍ରମାନେ ବାହାରକୁ ଯାଇପାରନ୍ତି

ମାନ୍ତ ଏହା ଯଥା ସମ୍ଭବ ପରିହାର କରିବା ଆବଶ୍ୟକ । ଛାତ୍ରମାନେ ଠିକ୍ କେଉଁଦିନ କେଉଁ ସମୟରେ ଯିବେ, କେତେଦିନ ବାହାରେ ରହିବେ ଏବଂ ଠିକ୍ କେଉଁଦିନ ଫେରିବେ ତାହା ନିର୍ଦ୍ଦିଷ୍ଟ ଭାବରେ ଯଥେଷ୍ଟ ଆଗରୁ ଅଭିଭାବକମାନଙ୍କୁ ଜଣାଇ ଦିଆଯିବା ଆବଶ୍ୟକ, କାରଣ ଏଥିପାଇଁ ଛାତ୍ର ତଥା ଅଭିଭାବକମାନଙ୍କ ପକ୍ଷେ କେତେକ ପ୍ରସ୍ତୁତି ମଧ୍ଯ ଦରକାର । ପରିଭ୍ରମଣ ଦାୟିତ୍ୱରେ ଯାଉଥିବା ଶିକ୍ଷକ ଯଥେଷ୍ଟ ପୂର୍ବରୁ ଛାତ୍ରମାନେ ପରିଭ୍ରମଣ କାଳରେ ଯେଉଁସବୁ ସ୍ଥାନରେ ରହିବେ ତା'ର ବ୍ୟବସ୍ଥା କରିବେ । ଏଥିପାଇଁ ଅନ୍ୟାନ୍ୟ ବିଦ୍ୟାଳୟ କର୍ତ୍ତୃପକ୍ଷ ବା ବିଭିନ୍ନ ଅନୁଷ୍ଠାନରୁ ଆବଶ୍ୟକ ଅନୁମତି ଆଣିବା ପ୍ରୟୋଜନ । ସାଧାରଣତଃ ଯେଉଁ ପରିଭ୍ରମଣ ଦଳରେ ଦ୍ୱିଗୁଣ, ତ୍ରିଗୁଣ ବା ଅଧିକ ସଂଖ୍ୟକ ଛାତ୍ର ଯିବାର ସମ୍ଭାବନା ଥିବ ସେମାନଙ୍କ ପାଇଁ ଦର୍ଶନୀୟ ସ୍ଥାନର ନିକଟତମ ବିଦ୍ୟାଳୟରେ ରହିବା ବ୍ୟବସ୍ଥା କରାଯାଇ ପାରିଲେ ଖର୍ଚ୍ଚର ପରିମାଣ କମିଯିବ । ଏତଦ୍‌ବ୍ୟତୀତ ସେମାନଙ୍କର ରହଣୀ କାଳରେ ସେମାନେ ଅନ୍ୟ ସ୍ଥାନର ତଥା ଅନ୍ୟ ରାଜ୍ୟର ଶିକ୍ଷକ ଓ ଛାତ୍ରମାନଙ୍କ ସଂପର୍କରେ ଆସିବାର ସୁଯୋଗ ପାଇପାରିବେ । ଛାତ୍ର-ମାନଙ୍କ ସଙ୍ଗେ ଯାଉଥିବା ଶିକ୍ଷକଙ୍କର ପରିଭ୍ରମଣ ସମ୍ବନ୍ଧରେ ବ୍ୟାପକ ଅଭିଜ୍ଞତା ଥିବା ଆବଶ୍ୟକ ଓ ବିଭିନ୍ନ ପ୍ରାଚୀନ କୀର୍ତ୍ତି ଓ ସେଗୁଡ଼ିକର ଐତିହାସିକ ତଥ୍ୟ ଇତ୍ୟାଦି ସମ୍ବନ୍ଧରେ ଜ୍ଞାନ ଥିବା ଆବଶ୍ୟକ । ଶିଳ୍ପପ୍ରଦର୍ଶନୀ, ବିଜ୍ଞାନ ମେଳା ଇତ୍ୟାଦି ଦେଖିବାକୁ ଯାଉଥିବା ବିଜ୍ଞାନ ଛାତ୍ର ଓ ଶିକ୍ଷକ ମେଳା ଅନୁଷ୍ଠିତ ହେଉଥିବା ସ୍ଥାନରେ ରହିଥିବା ପ୍ରାଚୀନ କୀର୍ତ୍ତି ମଧ୍ଯ ଦେଖିବାକୁ ଆଗ୍ରହୀ ହେବା ସ୍ୱାଭାବିକ । ତେଣୁ ସଂପୃକ୍ତ ଛାତ୍ରଛାତ୍ରୀ-ମାନେ କେଉଁ କେଉଁ ସ୍ଥାନ ଦେଖିବେ ତାହାର ବିସ୍ତୃତ ଯୋଜନା କରି ସେହି ସ୍ଥାନ-ଗୁଡ଼ିକର ପ୍ରାଧାନ୍ୟ ସମ୍ବନ୍ଧରେ ମଧ୍ୟ ପୂର୍ବରୁ ଅବହିତ ହୋଇଥିବା ଆବଶ୍ୟକ । ଏ ସବୁ କରାଯାଇ ପାରିଲେ ପରିଭ୍ରମଣ ପ୍ରକୃତରେ ଶିକ୍ଷଣୀୟ ଓ ଫଳପ୍ରଦ ହୋଇପାରିବ ।

ବୈଜ୍ଞାନିକ ଜ୍ଞାନଲାଭ ପାଇଁ ଉଦ୍ଦିଷ୍ଟ ପର୍ଯ୍ୟଟନ ଓ ପରିଭ୍ରମଣ ପାଇଁ କେତେକ ବିଶେଷ ବ୍ୟବସ୍ଥା ପ୍ରୟୋଜନ । ଛାତ୍ରମାନେ ଯଦି କଳକାରଖାନା ଜଳବିଦ୍ୟୁତ୍ ଯୋଜନା ଇତ୍ୟାଦି ଦେଖିବାକୁ ଯାଉଥାଆନ୍ତି ତେବେ ସେ ସମ୍ବନ୍ଧରେ ଆବଶ୍ୟକ ତଥ୍ୟ ଶିକ୍ଷକ ପୂର୍ବରୁ ଆଲୋଚନା କରିବା ବାଞ୍ଛନୀୟ ଏବଂ ଛାତ୍ରମାନେ କାରଖାନା ବା ବିଦ୍ୟୁତ୍ ଉତ୍ପାଦନ କେନ୍ଦ୍ରରେ କେଉଁ କେଉଁ ବିଭାଗ ବା ଯନ୍ତ୍ରପାତିର କାର୍ଯ୍ୟ ବିଶେଷ ଭାବରେ ପର୍ଯ୍ୟବେକ୍ଷଣ କରିବେ ତାହା ମଧ୍ଯ ସ୍ଥିର ହୋଇଯିବା ଆବଶ୍ୟକ । କାରଖାନାରେ ବୁଲିବା ସମୟରେ କେତେକ ମୁଖ୍ୟ ଯନ୍ତ୍ରପାତି ଚିହ୍ନାଇ ଦେବା ବ୍ୟତୀତ ଅନ୍ୟ କିଛି କରିବା ସମ୍ଭବପର ନୁହେଁ । ଯନ୍ତ୍ର ଚାଳନାର ଶବ୍ଦରେ ଆଲୋଚନା ବା ବିଶ୍ଳେଷଣ ସମ୍ଭବପର ନୁହେଁ । ତେଣୁ ଛାତ୍ରମାନେ ଯାହା ଦେଖିଲେ, ଯାହା ସେମାନଙ୍କୁ ଅବୋଧ୍ୟ ଜଣାଗଲା, ଯାହା ଧାରଣା କରିପାରିଲେ ନାହିଁ ସେ ସବୁ ସେମାନେ ଟିପି ଆଣିବା ଉଚିତ ।

ପରେ ପରିଭ୍ରମଣରୁ ଫେରି ବିଦ୍ୟାଳୟରେ ବିସ୍ତୃତ ଆଲୋଚନା କରି ସମସ୍ତ ବିଷୟରେ ସନ୍ଦେହ ଦୂର କରାଯିବା ଆବଶ୍ୟକ । ଏହି କାର୍ଯ୍ୟ ଅନ୍ୟ ଏକ ପ୍ରକାରରେ ମଧ୍ୟ କରାଯାଇ ପାରେ । ସମସ୍ତ ଛାତ୍ର ସମସ୍ତ ବିଷୟ ସାବଧାନତା ସହ ପର୍ଯ୍ୟବେକ୍ଷଣ କରିବା ଅପେକ୍ଷା ସେମାନେ କେତେଗୋଟି ଦଳରେ ବିଭକ୍ତ ହୋଇ ଗୋଟିଏ ଦଳ ଗୋଟିଏ ବିଭାଗର କାର୍ଯ୍ୟ ବିଶେଷ ଭାବରେ ଲକ୍ଷ୍ୟ କରି ଏକ ଏକ ରିପୋର୍ଟ ପ୍ରସ୍ତୁତ କରିବା ଆବଶ୍ୟକ । ଏହି ରିପୋର୍ଟଗୁଡ଼ିକ କ୍ରମାନୁସାରେ ଶ୍ରେଣୀରେ ଆଲୋଚିତ ହେବା ଦରକାର ।

ବିଭିନ୍ନ ସ୍ଥାନକୁ ପରିଭ୍ରମଣରେ ଯାଇଥିବା ଛାତ୍ରବୃନ୍ଦଙ୍କ ମଧ୍ୟରୁ ସୁଲେଖକମାନେ ପରିଦର୍ଶିତ ସ୍ଥାନ ଓ ପରିଭ୍ରମଣର ଅନ୍ୟାନ୍ୟ ବିବରଣଗୁଡ଼ିକ ସୁଚିନ୍ତିତ ପ୍ରବନ୍ଧ ଆକାରରେ ବିଦ୍ୟାଳୟର ମୁଖପତ୍ରରେ ଛପାଇ ପାରନ୍ତି । ଏହାଦ୍ୱାରା ବିଦ୍ୟାଳୟର ଅନ୍ୟାନ୍ୟ ଛାତ୍ର-ମାନେ ଏହି ପରିଭ୍ରମଣ ସମ୍ବନ୍ଧରେ ବହୁ ଆବଶ୍ୟକ ତଥ୍ୟ ପାଇବାର ସୁବିଧା ଲାଭ କରିପାରିବେ । ପରିଭ୍ରମଣ ଅତ୍ୟନ୍ତ ଚିତ୍ତାକର୍ଷକ ହୋଇଥିଲେ ବିଦ୍ୟାଳୟରେ ଗୋଟିଏ ସଭାର ଆୟୋଜନ କରି ସେଥିରେ ବିଭିନ୍ନ ଛାତ୍ର ସେମାନଙ୍କର ଅନୁଭୂତି ଓ ଅନ୍ୟ-ମାନଙ୍କର ଜ୍ଞାତବ୍ୟ ତଥ୍ୟ ସମ୍ବନ୍ଧରେ ବର୍ଣ୍ଣନା କରିପାରନ୍ତି । ଏହି ପ୍ରକାରର ସଭା ସମିତିରେ ଯୋଗ ଦେବାକୁ ଛାତ୍ରମାନେ ବିଶେଷ ଆଗ୍ରହ ପ୍ରକାଶ କରନ୍ତି, ତେଣୁ ଏହି କାର୍ଯ୍ୟକ୍ରମ ବିଦ୍ୟାଳୟ ସମୟ ନିର୍ଘଣ୍ଟ ବାହାରେ ମଧ୍ୟ ପରିଚାଳନା କରାଯାଇପାରେ ।

ଭିନ୍ନ ଭିନ୍ନ ବିଷୟ ପଢ଼ାଉଥିବା ଶିକ୍ଷକ ଭିନ୍ନ ଭିନ୍ନ ପରିଭ୍ରମଣ ପରିକଳ୍ପନା କରିପାରନ୍ତି ତେବେ ପ୍ରଧାନ ଶିକ୍ଷକ ହିଁ ଏହି ବିଭିନ୍ନ କାର୍ଯ୍ୟକ୍ରମ ମଧ୍ୟରେ ସମନ୍ୱୟ ସ୍ଥାପନ କରିପାରିବେ । ନଚେତ୍ ଏହା ସମୟ ସମ୍ପର୍କରେ ଶିକ୍ଷକମାନଙ୍କ ମଧ୍ୟରେ ଅଯଥା ପ୍ରତିଦ୍ୱନ୍ଦ୍ୱିତା ସୃଷ୍ଟିକରେ ଓ ଛାତ୍ରମାନେ ତାହାର କୁଫଳ ଭୋଗ କରନ୍ତି । କୌଣସି ପରିଭ୍ରମଣ କାର୍ଯ୍ୟକ୍ରମ ପ୍ରଧାନ ଶିକ୍ଷକଙ୍କ ଅଜ୍ଞାତରେ ପ୍ରସ୍ତୁତ କରାଯିବା ଅନୁଚିତ । ଯେଉଁ ପରିଭ୍ରମଣରେ ଅନେକ ଛାତ୍ର ଯାଉଥିବେ ଏବଂ ଛାତ୍ରମାନଙ୍କ ପ୍ରତି କେତେକ ସ୍ଥାନରେ ବିଶେଷ ସତର୍କ ଦୃଷ୍ଟି ରଖିବା ପ୍ରୟୋଜନ ହେଉଥିବ ସେଠାରେ ପରିଦର୍ଶନ ଦାୟିତ୍ୱରେ ଥିବା ଶିକ୍ଷକଙ୍କ ସଙ୍ଗେ ଆଉ କେତେଜଣ ଶିକ୍ଷକ ମଧ୍ୟ ଯାଇପାରନ୍ତି । ପ୍ରଧାନ ଶିକ୍ଷକ ନିଜେ ଛାତ୍ରମାନଙ୍କ ସହ ପରିଭ୍ରମଣରେ ଯେତେ ଅଧିକ ଥର ଯାଇପାରନ୍ତି ତାହା ସେତେ ଉତ୍ସାହପ୍ରଦ ହେବ ।

ଶିକ୍ଷକ ଯେଉଁ ଛାତ୍ରଛାତ୍ରୀମାନଙ୍କୁ ଶ୍ରେଣୀରେ ପଢ଼ାଉଥାଆନ୍ତି ସେହିମାନେ ପରିଭ୍ରମଣରେ ଗଲାବେଳେ ଭିନ୍ନ ପ୍ରକାର ଆଚରଣ ପ୍ରଦର୍ଶନ କରିବାର ସମ୍ଭାବନା ମଧ୍ୟ ଥାଏ । ସେଠାରେ ଶ୍ରେଣୀଗୃହର ଚାରିକାନ୍ଥ ଦ୍ୱାରା ସଙ୍କୁଚିତ ପରିବେଷ୍ଟନୀ ନ ଥାଏ, ଶିକ୍ଷକଙ୍କର ନିର୍ଦ୍ଦେଶାତ୍ମକ ସ୍ୱର ବି ଥାଏ । ବାହାରର ପରିବେଷ୍ଟନୀ ସେମାନଙ୍କର ମନ

ଉପରେ ଏପରି ଏକ ପ୍ରତିକ୍ରିୟା ସୃଷ୍ଟି କରେ ଯାହା ଫଳରେ ସେମାନେ ଶ୍ରେଣୀଗୃହର ଧରାବନ୍ଧା ଗତାନୁଗତ ଆଚରଣ ପ୍ରଦର୍ଶନ କରିପାରନ୍ତି ନାହିଁ । ତେଣୁ ପରିଭ୍ରମଣର ମାନସିକ ପ୍ରତିକ୍ରିୟା ସମ୍ବନ୍ଧରେ ଶିକ୍ଷକ ମଧ୍ୟ ସଚେତନ ହେବା ଆବଶ୍ୟକ । ସେ ପରିଭ୍ରମଣକାରୀ ଦଳ ମଧ୍ୟରେ ଶୃଙ୍ଖଳା ରକ୍ଷା କରିବେ ନିଶ୍ଚୟ ମାତ୍ର କୌଣସିଠାରେ ସାମାନ୍ୟ ବ୍ୟତିକ୍ରମ ହେଲେ ସେଥିଲାଗି ବ୍ୟସ୍ତ ହୋଇପଡ଼ିବା ମଧ୍ୟ ଉଚିତ ହେବ ନାହିଁ । ସେମାନଙ୍କୁ କେତେକାଂଶରେ ସ୍ୱାଧୀନ ଭାବରେ ଚଳବୁଲ କରିବାର ସୁଯୋଗ ଦେଇ ଶିକ୍ଷକ ସେମାନଙ୍କ ସମ୍ବନ୍ଧରେ ଅଧିକ ଭଲଭାବରେ ଜାଣି ପାରିବାର ସୁଯୋଗ ମଧ୍ୟ ପାଇ ପାରିବେ । ଛାତ୍ରମାନଙ୍କର ଅକୃତ୍ରିମ ଆଚରଣରୁ ଶିକ୍ଷକ ସେମାନଙ୍କ ସମ୍ବନ୍ଧରେ ଯାହା ଜାଣିପାରନ୍ତି ତାହାର ମୂଲ୍ୟ ବହୁତ ବେଶୀ ।

## ଛାତ୍ର ଶାସନ

ଯେଉଁ ବିଦ୍ୟାଳୟରେ ପ୍ରଧାନ ଶିକ୍ଷକ କଠୋର ନିୟମନିଷ୍ଠ, ଯେଉଁଠାରେ ଛାତ୍ରମାନେ ଅତ୍ୟନ୍ତ ବାଧ୍ୟ, ଯେଉଁଠାରେ ପ୍ରଧାନ ଶିକ୍ଷକ ଓ ଅନ୍ୟାନ୍ୟ ଶିକ୍ଷକମାନେ ଯାହା ଯେତେବେଳେ ଚାହାଁନ୍ତି ତାହା ଛାତ୍ରମାନଙ୍କ ଦ୍ୱାରା କରାଇପାରନ୍ତି ତାହା ଏକ ସୁପରିଚାଳିତ, ସୁଶୃଙ୍ଖଳିତ ବିଦ୍ୟାଳୟ ରୂପେ ଖ୍ୟାତି ଅର୍ଜନ କରିଥାଏ । କିନ୍ତୁ ଏହି ପ୍ରକାର ବିଦ୍ୟାଳୟର ଶୃଙ୍ଖଳା ପ୍ରକୃତ ଶୃଙ୍ଖଳା ନୁହେଁ । ଏହା ଏକ ପ୍ରକାର ଦାସତ୍ୱ ଯାହାର ବ୍ୟାପକତା ମନ ଓ ଅଭିରୁଚିକୁ ମଧ୍ୟ ଗ୍ରାସ କରିଥାଏ । ଯେଉଁଠାରେ ଶୃଙ୍ଖଳା-ବୋଧ ଜ୍ଞାନ ଆତ୍ମସଂଯମର ଏକ ଅଭିବ୍ୟକ୍ତି ସେଠାରେ ଯେଉଁ ଶୃଙ୍ଖଳା ଥାଏ ତାହା ହିଁ ପ୍ରକୃତ ଶୃଙ୍ଖଳା । ଯଦି କୌଣସି ବିଦ୍ୟାଳୟରେ ଏହି ପ୍ରକାର ଶୃଙ୍ଖଳାର ପରିକଳ୍ପନା କରାଯାଏ ତାହା ଶ୍ରେଣୀ ଗୃହର ବକ୍ତୃତା ଦ୍ୱାରା ହୋଇପାରିବ ନାହିଁ, କାର୍ଯ୍ୟକ୍ଷେତ୍ରରେ ଅଭ୍ୟାସ କରାଯାଇ ହାସଲ କରାଯାଇପାରିବ । ଏହି ଅଭ୍ୟାସ ପାଇଁ ଯେଉଁ ପରିବେଷ୍ଟନୀ ଆବଶ୍ୟକ ତାହା ହେଉଛି ସ୍ୱୟଂ ଶାସନର ବା ବିଦ୍ୟାଳୟରେ ଛାତ୍ର-ଶାସନର ଏକ ପରିବେଷ୍ଟନୀ ।

ଆମ ଦେଶ ପୃଥିବୀର ସର୍ବବୃହତ୍ତ ଗଣତାନ୍ତ୍ରିକ ରାଷ୍ଟ୍ର । ଏଠାରେ ଗଣତାନ୍ତ୍ରିକ ଶାସନର କାର୍ଯ୍ୟକାରିତା ପରୀକ୍ଷିତ ହୋଇସାରିଅଛି ଏବଂ ଏହାର ମୂଳଦୁଆ ସୁଦୃଢ଼ ହୋଇସାରିଅଛି । ତଥାପି ଏହାର ସୁରକ୍ଷା ଲାଗି ବିଦ୍ୟାଳୟ ସ୍ତରରୁହିଁ ଛାତ୍ରମାନେ ନିଜକୁ ନିଜେ ଶାସନ କରିବାରେ ତାଲିମ୍ ପାଇବା ଦରକାର । ବିଭିନ୍ନ କାର୍ଯ୍ୟରେ ନେତୃତ୍ୱ ନେବା, ନିଜର ଦୋଷଗୁଣ ବିଚାର କରିବାକୁ ସମର୍ଥ ହେବା, କୌଣସି ମୀମାଂସାରେ ପହଞ୍ଚିବା ପାଇଁ ସମସ୍ତ ବିଷୟ ବିଚାରକୁ ନେବା, ଆଇନ କାନୁନ ପ୍ରତି ଉପଯୁକ୍ତ ସମ୍ମାନ ଦେଇ ଶିଖିବା ଇତ୍ୟାଦି ବିଭିନ୍ନ ଗୁଣ ହାସଲ କରିବା ପାଇଁ ବିଦ୍ୟାଳୟ ଏକ ଉପଯୁକ୍ତ କ୍ଷେତ୍ର ରୂପେ ବିବେଚିତ ହେବା ଆବଶ୍ୟକ । ଏଥିପାଇଁ ବିଦ୍ୟାଳୟରେ ସ୍ୱୟଂ ଶାସନ ବା ଛାତ୍ର ଶାସନ ପ୍ରଚଳିତ

ହେବାହିଁ ସର୍ବୋତ୍କୃଷ୍ଟ ପନ୍ଥା । ଏହି ଆତ୍ମଶାସନ ମାଧ୍ୟମରେ ଛାତ୍ରମାନେ ପ୍ରକୃତ ଶୃଙ୍ଖଳା କ'ଣ ତାହା ଜାଣିବାକୁ ସମର୍ଥ ହୋଇପାରିବେ ।

ବିଦ୍ୟାଳୟଗୁଡ଼ିକ ଯେ ଏ ଦିଗରେ କିଛି କରୁନାହାନ୍ତି ସେପରି ନୁହେଁ । ବିଭିନ୍ନ ପ୍ରକାର ଛାତ୍ର ଶାସନ ବ୍ୟବସ୍ଥା ବିଦ୍ୟାଳୟଗୁଡ଼ିକରେ ପ୍ରଚଳିତ; ମାତ୍ର ଅନେକ ସ୍ଥାନରେ ଏହା ନାମକୁ ମାତ୍ର ପ୍ରଚଳିତ । ଛାତ୍ର ଶାସନ ପ୍ରବର୍ତ୍ତିତ ହୋଇ ମଧ୍ୟ ଯଦି ଶିକ୍ଷକ ଓ ପ୍ରଧାନ ଶିକ୍ଷକଙ୍କ ପାଖରେ କ୍ଷମତା କେନ୍ଦ୍ରୀଭୂତ ହୋଇ ରହିଲା ଏବଂ ଛାତ୍ରମାନେ ଯଦି କେବଳ ପରାମର୍ଶ ଦେଲେ କିନ୍ତୁ ପ୍ରକୃତ ଶାସନ କାର୍ଯ୍ୟ ପରିଚାଳନାରୁ ବଞ୍ଚିତ ହେଲେ, ସେପରି ଛାତ୍ର-ଶାସନ ପ୍ରଚଳିତ ହୋଇ କାହାରି ହିତ ସାଧନ କରିପାରିବ ନାହିଁ । ଏହି ଶାସନ କେତେକ ନୀତି ଉପରେ ପ୍ରତିଷ୍ଠିତ ହେବା ଆବଶ୍ୟକ ଏବଂ ଯେତେ ଦୂର ସମ୍ଭବ ମନେହେଲେହେଁ ନୀତିଗୁଡ଼ିକ ନିଷ୍ଠାର ସହିତ କାର୍ଯ୍ୟକାରୀ ହେବା ଉଚିତ । ସେହି କେତେକ ମୌଳିକ ଅସୁବିଧା ହେତୁ ଛାତ୍ର-ଶାସନ ବିଫଳ ହୁଏ ସେ ସବୁ ନିମ୍ନରେ ପ୍ରଦତ୍ତ ହେଲା ।

ଛାତ୍ରଶାସନ ବିଫଳ ହେବାର କାରଣ

ପ୍ରଥମତଃ, ଛାତ୍ରମାନଙ୍କ ହାତକୁ କ୍ଷମତା ଟେକିଦେବାକୁ ପ୍ରଧାନ ଶିକ୍ଷକ ଓ ଅନ୍ୟାନ୍ୟ ଶିକ୍ଷକମାନେ ସାଧାରଣତଃ ବିଶେଷ ଆଗ୍ରହୀ ନୁହଁନ୍ତି । ସମସ୍ତ ସମୟରେ ସେମାନେ ଏପରି କାର୍ଯ୍ୟକୁ ସେମାନଙ୍କର ଆତ୍ମମର୍ଯ୍ୟାଦା ଉପଯୋଗୀ ବୋଲି ମନେକରନ୍ତି ନାହିଁ । କୌଣସି ବିଶୃଙ୍ଖଳାଜନିତ କାର୍ଯ୍ୟକଳାପ ସମ୍ବନ୍ଧରେ ଛାତ୍ରମାନଙ୍କ କମିଟିକୁ ଜଣାଇବା ଓ ସେମାନଙ୍କର ସିଦ୍ଧାନ୍ତକୁ ମାନିନେବା—ଏସବୁ ଶିକ୍ଷକମାନେ ଆଦୌ ପସନ୍ଦ କରନ୍ତି ନାହିଁ । ଶିକ୍ଷକମାନେ ଯାହା ଯେତେବେଳେ ମନ ଇଚ୍ଛା କରିପାରିବାର ସ୍ୱାଧୀନତା ଆଉ ରହେ ନାହିଁ । ବୟୋଜ୍ୟେଷ୍ଠ ଶିକ୍ଷକମାନଙ୍କ ଠାରୁ କନିଷ୍ଠ ଶିକ୍ଷକମାନଙ୍କ ପକ୍ଷେ ନୂତନ ପରିସ୍ଥିତି ସହିତ ନିଜକୁ ମିଶାଇ ଦେବା ଅଧିକ କଷ୍ଟକର ହୁଏ । ଛାତ୍ରମାନେ କ୍ଷମତା ପାଇବା ପରେ ସମସ୍ତ ସମୟରେ କ୍ଷମତାର ସଦ୍‌ବ୍ୟବହାର କରିବାରେ ଅନଭ୍ୟସ୍ତ ଥିବା ହେତୁ ଏପରି କେତେକ କାମ କରିପାରନ୍ତି ଯାହା ପରିସ୍ଥିତିକୁ ଜଟିଳ କରିପକାଏ । ଯଦି ପ୍ରକୃତରେ ବିଦ୍ୟାଳୟ କର୍ତ୍ତୃପକ୍ଷଙ୍କର ଗଣତାନ୍ତ୍ରିକ ପଦ୍ଧତି ତଥା ଛାତ୍ର-ଶାସନରେ ବିଶ୍ୱାସ ଥାଏ ତେବେ ପ୍ରଥମେ ପ୍ରଥମେ ଉଦ୍ଭବ ହେଉଥିବା ଅସୁବିଧାଗୁଡ଼ିକ ପ୍ରତି ଭ୍ରୂକ୍ଷେପ ନ କରି ଧୈର୍ଯ୍ୟର ସହ ନୂତନ ଶାସନ ପଦ୍ଧତିର ସଫଳତା ଲାଗି ଅପେକ୍ଷା କରିବାକୁ ହେବ । ଉଭୟ ଶିକ୍ଷକ ଓ ଛାତ୍ର ନୂତନ ପଦ୍ଧତିରେ ଅଭ୍ୟସ୍ତ ହେବା ଲାଗି ସମୟ ଲାଗିବ ଏବଂ ଏକଥା ନିଶ୍ଚିତ ଯେ ସମୟର ପ୍ରବାହରେ ପ୍ରଥମରୁ ହେଉଥିବା ଭୁଲଗୁଡ଼ିକ ନିଜେ ଛାତ୍ରମାନେ ଅନୁଭବ କରିପାରିବେ ଓ କ୍ରମେ ସେ ସବୁ ସୁଧାରିନେବେ ଯାହା ଫଳରେ ବିଦ୍ୟାଳୟର ବାୟୁମଣ୍ଡଳ ସମସ୍ତଙ୍କ ପାଇଁ ଅନୁକୂଳ ଓ ସୁରୁଚିସମ୍ପନ୍ନ ହେବ ।

ଯେଉଁ ବିଦ୍ୟାଳୟରେ ପ୍ରଥମରୁ ଶିକ୍ଷକ ଓ ଛାତ୍ରମାନଙ୍କ ମଧ୍ୟରେ ସୁସମ୍ପର୍କ ପ୍ରତିଷ୍ଠିତ ହୋଇଥାଏ ସେଠାରେ କୌଣସି ନୂତନ ବ୍ୟବସ୍ଥା ପ୍ରଚଳନ କରିବାରେ ଅସୁବିଧା ହୁଏ ନାହିଁ, ତେଣୁ ଛାତ୍ର-ଶାସନ ପ୍ରଚଳନ କରିବାରେ ମଧ୍ୟ ଅସୁବିଧା ହୁଏ ନାହିଁ । ଯେଉଁ ବିଦ୍ୟାଳୟରେ ଶିକ୍ଷକମାନେ ଛାତ୍ରମାନଙ୍କୁ ଭୟ ଦେଖାଇ ଶାସନ କରିବାରେ ଅଭ୍ୟସ୍ତ ସେହିଠାରେ ଛାତ୍ର-ଶାସନ ପ୍ରଚଳନ କରିବାରେ ଅସୁବିଧା ଦେଖାଦିଏ । କେତେକ ବିଦ୍ୟାଳୟରେ ଶିକ୍ଷକମାନେ ଛାତ୍ର-ଶାସନ ପ୍ରଚଳନ କରିବା ପ୍ରଥମରୁ ହିଁ ବିରୋଧ କରିଥାଆନ୍ତି । ତେବେ ଶିକ୍ଷକମଣ୍ଡଳୀ ଯଦି ସାମୂହିକ ଭାବରେ ଏହା ପ୍ରଚଳନ କରାଯିବା ପାଇଁ ସିଦ୍ଧାନ୍ତ ଗ୍ରହଣ କରନ୍ତି ତେବେ ବିରୋଧ କରୁଥିବା ଶିକ୍ଷକମାନେ ନିଜ ନିଜର ସ୍ୱାର୍ଥ ଦୃଷ୍ଟିରୁ ସହଯୋଗ କରିବା ବାଞ୍ଛନୀୟ, ନଚେତ୍ କ୍ରମେ ଶିକ୍ଷକମଣ୍ଡଳୀରେ ସେମାନଙ୍କର ସ୍ଥାନ ଦୁଃସହ ହୋଇପଡିବ ।

ଦ୍ୱିତୀୟତଃ, ଥରେ ଛାତ୍ରମାନଙ୍କୁ ଯେ କୌଣସି ବିଷୟରେ କ୍ଷମତା ଦିଆଯିବା ପରେ ଶିକ୍ଷକ ବା ପ୍ରଧାନ ଶିକ୍ଷକ ଆଉ ସେଥିରେ ହସ୍ତକ୍ଷେପ କରିବା ଉଚିତ ନୁହେଁ । ଏହା ନୀତିଗତ ସିଦ୍ଧାନ୍ତ ହେବା ଆବଶ୍ୟକ । ବାରମ୍ବାର କୌଣସି ବିଷୟରେ ହସ୍ତକ୍ଷେପ କଲେ ଛାତ୍ରମାନେ ସେମାନଙ୍କର ଦାୟିତ୍ୱର ଗୁରୁତ୍ୱ ଉପଲବ୍ଧି କରିବେ ନାହିଁ । ସେମାନେ ନାମକୁମାତ୍ର ବିଷୟର ଆଲୋଚନା କରୁଅଛନ୍ତି ବୋଲି ମନେକରିବେ । ଏହା ଫଳରେ ନୂତନ ପଦ୍ଧତି ବିଫଳ ହେବ ଓ ପ୍ରତ୍ୟେକ ବିଷୟର ଶେଷ ସିଦ୍ଧାନ୍ତ ପାଇଁ ଛାତ୍ରମାନେ ଶିକ୍ଷକମାନଙ୍କୁ ଅପେକ୍ଷା କରି ରହିବେ । ପ୍ରକୃତ କ୍ଷମତା ପ୍ରଦାନ କରିବା ଅର୍ଥ ହେଉଛି ଛାତ୍ରମାନଙ୍କ ବିଚାର ଉପରେ ଆସ୍ଥା ସ୍ଥାପନ କରିବା । କେହି କେହି ପ୍ରଶ୍ନ କରନ୍ତି ଯେ ଛାତ୍ରମାନଙ୍କର ବିଚାରଧାରା ପରିପକ୍ୱ ହୋଇ ନ ଥିବାରୁ ସେମାନେ ଭୁଲ କରିବା ସ୍ୱାଭାବିକ ଓ ଶିକ୍ଷକଙ୍କର ଭୁଲ ସୁଧାରିନେବା ହେଉଛି କର୍ତ୍ତବ୍ୟ । ଏହିପରି ଏକ ଯୁକ୍ତି ବଳରେ ଶିକ୍ଷକମାନେ ଛାତ୍ର-ଶାସନର ବିଫଳତାର କାରଣ ହୁଅନ୍ତି । ଶିକ୍ଷକ ହସ୍ତକ୍ଷେପ କରିବା ଅପେକ୍ଷା ଛାତ୍ରମାନେ ବରଂ ଭୁଲ କରି ଶିକ୍ଷା କରିବା ଆବଶ୍ୟକ ଏବଂ ସେମାନଙ୍କର ଭୁଲ ସିଦ୍ଧାନ୍ତ କାର୍ଯ୍ୟକାରୀ କରାଇ ତ୍ରୁଟି ପ୍ରଦର୍ଶନ କରାଇଦେବା ଅଧିକ ଯୁକ୍ତିଯୁକ୍ତ ଓ ସଙ୍ଗତ ବ୍ୟବସ୍ଥା । ନିଜେ ନିଜର ଭୁଲ ବୁଝି ପାରିଲେ ଛାତ୍ରମାନେ ଯେପରି ପ୍ରଭାବିତ ହୁଅନ୍ତି ତାହା ଅନ୍ୟ କୌଣସି ପନ୍ଥାରେ ସମ୍ଭବପର ହୋଇପାରେ ନାହିଁ । ଛାତ୍ରମାନେ ପ୍ରକୃତ ଦାୟିତ୍ୱ ହୃଦୟଙ୍ଗମ କଲେ ଏବଂ ଶିକ୍ଷକମାନେ ସେମାନଙ୍କର କାର୍ଯ୍ୟକଳାପରେ ଆସ୍ଥା ସ୍ଥାପନ କଲେ ଛାତ୍ର-ଶାସନ ନିଶ୍ଚୟ ସଫଳ ହେବ ।

ତୃତୀୟତଃ ଶାସନ କ୍ଷମତାର ମୋହରେ ଛାତ୍ରମାନଙ୍କର କାର୍ଯ୍ୟକାରୀ କମିଟି ଅନ୍ୟ ଛାତ୍ରମାନଙ୍କ ଉପରେ ବିଭିନ୍ନ ପ୍ରକାର ଦଣ୍ଡ ବ୍ୟବସ୍ଥା କରିବାକୁ ପ୍ରଲୋଭିତ ହୋଇପାରନ୍ତି । ପ୍ରଥମରୁ ସତର୍କ ଦୃଷ୍ଟି ରଖା ନ ଗଲେ ସମସ୍ତ 'ଉତ୍ତମ ଛାତ୍ର-ଶାସନ

ବ୍ୟବସ୍ଥା କେବଳ ଶୃଙ୍ଖଳା ରକ୍ଷା କରିବାର ଏକ ସଂସ୍ଥାରେ ପରିଣତ ହେବାର ସମ୍ଭାବନା ରହିଅଛି । ଶୃଙ୍ଖଳାର ଯେଉଁ ସଂକୀର୍ଣ୍ଣ ଅର୍ଥ ଆମେ କରିଥାଉ ଏହି ଶୃଙ୍ଖଳା ସେହି ପ୍ରକାରର ହେବ । ଛାତ୍ରମାନଙ୍କ ମଧ୍ୟରେ ପ୍ରକୃତ ଶୃଙ୍ଖଳା ଭାବର ଉଦ୍ରେକ କରାଇ ପାରିବ ନାହିଁ । ଛାତ୍ରମାନେ ଉଭୟଭାବରେ ହୃଦୟଙ୍ଗମ କରିବା ଉଚିତ ଯେ ସେମାନଙ୍କ କ୍ଷମତା ପରିସରଭୁକ୍ତ ବହୁ ବିଷୟ ମଧ୍ୟରୁ ଗୋଟିଏ ବିଷୟ ହେଉଛି ବିଦ୍ୟାଳୟ ଓ ଦଣ୍ଡବିଧାନ । ଶ୍ରେଣୀଗୃହ ତଥା ବିଦ୍ୟାଳୟର ଚତ୍ଵର ପରିଷ୍କାର ପରିଚ୍ଛନ୍ନତା ପ୍ରତି ଦୃଷ୍ଟିଦେବା, ନିୟମିତ କ୍ରୀଡ଼ା ନିମନ୍ତେ ଓ ଗୃହ ଗୃହ ମଧ୍ୟରେ କ୍ରୀଡ଼ା ପ୍ରତିଯୋଗିତାର ବ୍ୟବସ୍ଥା କରିବା, ବିଭିନ୍ନ ସଂସଦର କର୍ମଦକ୍ଷତା ବୃଦ୍ଧି କରିବା ଇତ୍ୟାଦି ବିବିଧ କାର୍ଯ୍ୟର ତତ୍ତ୍ୱାବଧାନ କରିବା ହେଉଛି ଛାତ୍ର ଶାସନର ଲକ୍ଷ୍ୟ । ଛାତ୍ରମାନଙ୍କ କାର୍ଯ୍ୟର ପରିସର ଯେତେ ବ୍ୟାପକ ହେବ ଏହି ପଦ୍ଧତି ସେତେ ସଫଳ ହେବ ।

ଚତୁର୍ଥତଃ ଯେଉଁ ବିଦ୍ୟାଳୟଗୁଡ଼ିକରେ ସ୍ୱୟଂ-ଶାସନ ପ୍ରବର୍ତ୍ତିତ ସେଠାରେ ସମୟେ ସମୟେ ଛାତ୍ରମାନଙ୍କର ବହୁ ସମୟ ଶାସନ ଦାୟିତ୍ୱ ପରିଚାଳନା ହେତୁ ନଷ୍ଟ ହେଉଛି ବୋଲି କେତେକ ଆପତ୍ତି କରିଥାଆନ୍ତି । ବିଶେଷତଃ ଶେଷ ବର୍ଷର ଛାତ୍ରମାନେ ଏହି ଆପତ୍ତି କରିଥାଆନ୍ତି । ଏହି ଛାତ୍ରମାନଙ୍କୁ ସ୍ପଷ୍ଟ ବୁଝାଇ ଦିଆଯିବା ଉଚିତ ଯେ ବିଦ୍ୟାଳୟ କେବଳ ସେମାନଙ୍କୁ ପାଠପଢ଼ାଇ ପାଶ୍ କରାଇବା ଲାଗି ଉଦ୍ଦିଷ୍ଟ ନୁହେଁ । ବିଦ୍ୟାଳୟ ସ୍ତରରେ ସେମାନଙ୍କୁ ଭବିଷ୍ୟତ୍‌ରେ ଉତ୍ତମ ନାଗରିକ ରୂପେ ଜୀବନଯାପନ କରିବା ଦିଗରେ ସହାୟକ ହେଲାଭଳି ଆବଶ୍ୟକ ତାଲିମ ମଧ୍ୟ ଦିଆଯିବ । ତେଣୁ ସେମାନେ ସେମାନଙ୍କ ଉପରେ ନ୍ୟସ୍ତ ଦାୟିତ୍ୱ ଅକୁଣ୍ଠିତ ଚିତ୍ତରେ ବହନ କରିବା ଉଚିତ । ଏଥି ସଙ୍ଗେ ସଙ୍ଗେ ଛାତ୍ର-ଶାସନ ସମ୍ବିଧାନରେ ଏପରି ବ୍ୟବସ୍ଥା ରଖାଯିବା ଉଚିତ ଯେପରି ବିଭିନ୍ନ ଦାୟିତ୍ୱ ଜଣେ ଦୁଇଜଣଙ୍କ ଉପରେ ନ୍ୟସ୍ତ ନ ହୋଇ ବହୁ ଛାତ୍ରଙ୍କ ମଧ୍ୟରେ ବାଣ୍ଟି ହୋଇଯାଏ । ତାହାହେଲେ କେହି ନ୍ୟସ୍ତ ଦାୟିତ୍ୱ ଏକ ଗୁରୁଭାର ବୋଲି ମନେ କରିବେ ନାହିଁ । ଏତଦ୍‌ବ୍ୟତୀତ ଯେ କୌଣସି ଗଣତାନ୍ତ୍ରିକ ପଦ୍ଧତିରେ ଯେତେ ଅଧିକ ବ୍ୟକ୍ତି ସକ୍ରିୟ ସହଯୋଗ କରନ୍ତି ସେତେ ମଙ୍ଗଳ କାରଣ ଅଧିକରୁ ଅଧିକ ଛାତ୍ର ସିଧାସଳଖ ଦାୟିତ୍ୱ ବହନ କରି ଆବଶ୍ୟକ ତାଲିମ୍ ପାଇପାରିବେ ।

ପଞ୍ଚମତଃ, ନିର୍ବାଚିତ ଛାତ୍ର ପ୍ରତିନିଧିମାନେ ଯଦି ଅଯୋଗ୍ୟ ହୁଅନ୍ତି ତେବେ ବିଦ୍ୟାଳୟ କାର୍ଯ୍ୟ ପରିଚାଳନାରେ ବହୁତ ଅସୁବିଧା ଉପୁଜେ । ବିଶେଷତଃ ଛାତ୍ର ଉନ୍ନୟନ୍‌ ବା ସଂସଦର ସଭାପତି ଯେ କି ଜଣେ ବିଶେଷ କର୍ମତତ୍ପର ବ୍ୟକ୍ତି ହେବା ଆବଶ୍ୟକ ସେ ଯଦି ଅଯୋଗ୍ୟ ହୁଅନ୍ତି ତେବେ ଏକ ଅଚଳ ଅବସ୍ଥା ସୃଷ୍ଟି ହୁଏ । ଫଳରେ ସ୍ୱୟଂ ଶାସନର ଲକ୍ଷ୍ୟ ସୁଦୂର ପରାହତ ହୁଏ । ଏପରି କ୍ଷେତ୍ରରେ ପ୍ରଧାନ ଶିକ୍ଷକ ବଡ଼ ଦ୍ୱନ୍ଦ୍ୱରେ

ପଡନ୍ତି । ନିର୍ବାଚନ ରଦ୍ଦ କରିଦେଲେ ତାହା ଗୋଟିଏ ଖରାପ ନଜିର ରୂପେ ରହିଯାଏ, ଏବଂ ଛାତ୍ରମାନଙ୍କର ନିର୍ବାଚନ ଉପରୁ ଆସ୍ଥା ତୁଟିଯାଏ । ନିର୍ବାଚନ ରଦ୍ଦ ନ କଲେ ଅନେକ ଅନୁଚିତ କାର୍ଯ୍ୟକୁ ପ୍ରଶ୍ରୟ ଦେବାକୁ ହୁଏ । ଯାହାହେଉ ପ୍ରଧାନ ଶିକ୍ଷକ ଯାହା ହେଲେ ମଧ୍ୟ ନିର୍ବାଚନ ରଦ୍ଦ କରିବା ଉଚିତ ନୁହେଁ । କାରଣ ଛାତ୍ରମାନେ ଏହିପରି ଅଯୋଗ୍ୟ ପ୍ରତିନିଧି ନିର୍ବାଚନ କରି ତାହାର କୁଫଳ ଭୋଗିଲେ ଭବିଷ୍ୟତରେ ଏଥିପାଇଁ ବିଶେଷ ସାବଧାନ ହେବେ । ଗଣତାନ୍ତ୍ରିକ ଶାସନରେ ଏହାହିଁ ଏକ ଦୁର୍ବଳତା । ସମୟେ ସମୟେ ଏହି ଅସୁବିଧା ନ ଭୋଗିବାକୁ ବର୍ଷକରେ ଥରେ ନିର୍ବାଚନ କରି ନ ଯାଇ ଛଅ ମାସରେ ଥରେ ନିର୍ବାଚନ କରାଯାଇପାରେ । ଏପରି ହେଲେ ଅଯୋଗ୍ୟ ପ୍ରତିନିଧିମାନେ ଅଳ୍ପଦିନ ପରେ କଟିଯିବେ ଏବଂ ଛାତ୍ରମାନଙ୍କୁ ଦୀର୍ଘଦିନ ଧରି କୁଫଳ ଭୋଗ କରିବାକୁ ପଡ଼ିବ ନାହିଁ । ଅଯୋଗ୍ୟ ପ୍ରତିନିଧି ନିର୍ବାଚିତ ହେଲେ କି ଅସୁବିଧା ହୁଏ ତାହା ଛାତ୍ରମାନେ ବିଦ୍ୟାଳୟ ସ୍ତରରୁ ହିଁ ଶିକ୍ଷା କରିପାରିବେ ।

ସର୍ବଶେଷରେ ଆଉ ଗୋଟିଏ ଅସୁବିଧା ଉଲ୍ଲେଖ କରାଯାଇପାରେ । ତାହା ହେଲା ସମସ୍ତ ସମସ୍ତରେ ବିଭିନ୍ନ ବିଷୟ ପାଇଁ ଗଠିତ ହୋଇଥିବା କମିଟିଗୁଡ଼ିକ ସେମାନଙ୍କର କାମ ଠିକ୍ କରିପାରନ୍ତି ନାହିଁ କାରଣ ସେମାନେ ସେମାନଙ୍କର ଦାୟିତ୍ୱ ଠିକ୍ ବୁଝିପାରନ୍ତି ନାହିଁ । ପ୍ରଥମେ ପ୍ରଥମେ ଛାତ୍ରମାନେ ଶାସନ ପରିଚାଳନା କଲେ ଏପରି ହେବା ଅସ୍ୱାଭାବିକ ନୁହେଁ । ସେମାନେ ଏ କ୍ଷେତ୍ରରେ ଉପଯୁକ୍ତ ଦିଗଦର୍ଶନ ଚାହାନ୍ତି ଯାହା କେବଳ ଶିକ୍ଷକମାନଙ୍କ ଦ୍ୱାରା ସମ୍ଭବପର ହୋଇପାରେ । ଏହି ଦିଗଦର୍ଶନ ହସ୍ତକ୍ଷେପ ଦ୍ୱାରା ନୁହେଁ, ଉପଯୁକ୍ତ ବନ୍ଧୁତ୍ୱପୂର୍ଣ୍ଣ ବାତାବରଣ ଦ୍ୱାରା କେବଳ ସମ୍ଭବପର । ଶିକ୍ଷକ ବିଭିନ୍ନ କମିଟିର ବିଚାର ଆଲୋଚନାରେ ହସ୍ତକ୍ଷେପ କରି ନ ପାରନ୍ତି; ମାତ୍ର କମିଟି ନିୟମିତ ଭାବରେ ତାଙ୍କର ବୈଠକ ନ ଡକାଇଲେ ବା କୌଣସି ପ୍ରକାରେ କାଳକ୍ଷେପଣ ନୀତି ଧରି ତାଙ୍କର କାର୍ଯ୍ୟକାଳ ବିତାଇଦେଲେ ସମ୍ପୃକ୍ତ ଶିକ୍ଷକ ଏଥିପାଇଁ କମିଟିର ସଦସ୍ୟମାନଙ୍କୁ ସେମାନଙ୍କର ଦାୟିତ୍ୱ ସମ୍ବନ୍ଧରେ ସଚେତନ କରାଇଦେବା ଉଚିତ । ଛାତ୍ରମାନଙ୍କୁ ଦାୟିତ୍ୱ ଦେଇ ଦେବାର ଅର୍ଥ ନୁହେଁ ଯେ ଶିକ୍ଷକମାନେ କିଛି ନ କରି ଚୁପଚାପ ବସି ରହିବେ । ଦାୟିତ୍ୱ ବହନ କରିବାର ଦକ୍ଷତାର ଅଭିବୃଦ୍ଧି ନ ଘଟିଲେ ଛାତ୍ରମାନେ ପରବର୍ତ୍ତୀ ଜୀବନରେ କର୍ତ୍ତବ୍ୟ ପରାଙ୍ମୁଖ ହେବେ । ତେଣୁ ଦାୟିତ୍ୱ ଗ୍ରହଣ କରିବା ଏବଂ ଦାୟିତ୍ୱବାନ ନାଗରିକ ଭାବରେ କାମ କରିବାର ଅଭ୍ୟାସ ବିଦ୍ୟାଳୟରେ ଗଢ଼ି ଉଠିବା ଆବଶ୍ୟକ ।

କେବଳ ସ୍ୱୟଂ-ଶାସିତ ବ୍ୟବସ୍ଥା ଛାତ୍ରମାନଙ୍କୁ ଯାହା ଶିକ୍ଷାଦିଏ ବିଦ୍ୟାଳୟର ଅନ୍ୟ କୌଣସି କାର୍ଯ୍ୟକ୍ରମ ତାହା କରିପାରେ ନାହିଁ । ଛାତ୍ରମାନେ ଯେତେବେଳେ

ବିଦ୍ୟାଳୟଟି ତାଙ୍କର ନିଜର ଓ ଏହାର ସୁପରିଚାଳନା ଲାଗି ସେମାନଙ୍କର ପ୍ରତ୍ୟେକଙ୍କର ଦାୟିତ୍ୱ ରହିଛି ବୋଲି ମନେ କରନ୍ତି ସେତେବେଳେ ବିଦ୍ୟାଳୟରେ କୌଣସି ସମସ୍ୟା ରହେ ନାହିଁ । ଆଇନ ବା ଶୃଙ୍ଖଳାଜନିତ ସମସ୍ୟା ତ ଆଦୌ ରହେ ନାହିଁ । କାରଣ ଛାତ୍ରମାନେ ସେମାନେ କରୁଥିବା ଆଇନ ମାନି ଚଳନ୍ତି ଓ ବ୍ୟତିକ୍ରମ ହେଲେ ସେମାନଙ୍କର ପ୍ରତିନିଧିମାନଙ୍କ ଦ୍ୱାରା ଦଣ୍ଡିତ ହୁଅନ୍ତି । ପ୍ରକୃତରେ ଏ ପ୍ରକାର ଶୃଙ୍ଖଳା ସ୍ୱେଚ୍ଛାକୃତ ଶୃଙ୍ଖଳା । ଏହା କାହାର ଧମକ ବା ଭୟପ୍ରଦର୍ଶନ ଦ୍ୱାରା ଆଚରଣ କରାଯାଇ ନ ଥାଏ ।

ଆମକୁ ଏହା ମଧ୍ୟ ସ୍ୱୀକାର କରିବାକୁ ହେବ ଯେ ଛାତ୍ର-ଶାସନ ବ୍ୟବସ୍ଥା ଯେ କୌଣସି ଶିକ୍ଷକମଣ୍ଡଳୀ ବା ପ୍ରଧାନ ଶିକ୍ଷକଙ୍କ ଦ୍ୱାରା ପ୍ରବର୍ତ୍ତିତ ହୋଇ ନ ପାରେ, ଏହା କରିବାକୁ ଶିକ୍ଷକମାନଙ୍କର ମଧ୍ୟ ଉପଯୁକ୍ତ ଗୁଣ ଥିବା ଦରକାର । ଯାହା ଆମେ ଯେ କୌଣସି ବିଦ୍ୟାଳୟରେ ପାଇ ନ ପାରୁ । ଯାହାହେଉ କୌଣସି ବିଦ୍ୟାଳୟର ଶିକ୍ଷକମଣ୍ଡଳୀ ଯଦି ସ୍ୱୟଂ ଶାସନ ପଦ୍ଧତି ଆଦୌ କାର୍ଯ୍ୟକାରୀ ହୋଇ ପାରିବ ନାହିଁ ବୋଲି ବିଶ୍ୱାସ କରୁଥାଆନ୍ତି ତେବେ ସେମାନେ ବରଂ ଏ ପଦ୍ଧତି ପ୍ରବର୍ତ୍ତନ ନ କରିବା ଭଲ । ଯଦି ସେମାନେ ଏହା କାର୍ଯ୍ୟକାରୀ କରିବା ଏକ କଷ୍ଟକର ବ୍ୟାପାର ଭାବୁଥାଆନ୍ତି ତେବେ ସେମାନେ ଏହା ପ୍ରଚଳନ କରିପାରନ୍ତି କାରଣ ଶିକ୍ଷାସ୍ତରରେ ଅସ୍ୱାସସାଧ ବିଷୟର ଯେ ପ୍ରବର୍ତ୍ତନ କରି ନ ହିବ ସେପରି ନୁହେଁ । ଅନ୍ୟମାନେ କୌଣସି କାମ କଷ୍ଟ ପଡ଼ିବ ବୋଲି ତାଠାରୁ ଯେ ଦୂରରେ ରହିବା ଏହା ଅଯୌକ୍ତିକ ପନ୍ଥା ।

## ସ୍ୱୟଂ-ଶାସନ ବ୍ୟବସ୍ଥାର ସାଂଗଠନିକ ରୂପରେଖ

ବର୍ତ୍ତମାନ ସ୍ୱୟଂ-ଶାସନ ବ୍ୟବସ୍ଥାର ପ୍ରକୃତ ସାଙ୍ଗଠନିକ ରୂପରେଖ କ'ଣ ହେବ ତାହାହିଁ ଆଲୋଚନା କରାଯାଉ । ପ୍ରଥମେ ବିଦ୍ୟାଳୟର ପ୍ରତ୍ୟେକ ଶ୍ରେଣୀପାଇଁ ଗୋଟିଏ ଗୋଟିଏ ଶ୍ରେଣୀ କମିଟି ଗଠିତ ହେବା ଉଚିତ । ଏହି କମିଟିରେ ଜଣେ ସଭାପତି ରହିବେ ଯେ କି ଶ୍ରେଣୀର ସମସ୍ତ କାର୍ଯ୍ୟ ବୁଝାବୁଝି କରିବେ । ତାଙ୍କୁ ସାହାଯ୍ୟ କରିବା ପାଇଁ କେତେଜଣ ସଭ୍ୟ ମଧ୍ୟ ରହିବା ଦରକାର । ଶ୍ରେଣୀ ମୁଖପାତ୍ର ବା ପତ୍ରିକା ପ୍ରକାଶନ ଦାୟିତ୍ୱରେ ଜଣେ ଛାତ୍ର ରହିବା ଉଚିତ । ଶ୍ରେଣୀର କ୍ରୀଡ଼ା କାର୍ଯ୍ୟକ୍ରମ ପାଇଁ ଜଣେ ଛାତ୍ର ରହିପାରନ୍ତି । ଶ୍ରେଣୀଗୃହ ତଥା ଶ୍ରେଣୀର ଛାତ୍ରମାନଙ୍କର ପରିଷ୍କାର ପରିଚ୍ଛନ୍ନତା ଦେଖି-ବାକୁ ମଧ୍ୟ ଜଣେ ଛାତ୍ର ରହିପାରନ୍ତି । ଯାହାହେଉ ଶ୍ରେଣୀ କମିଟିର ସଭାପତି ଓ ଅନ୍ୟାନ୍ୟ ସଭ୍ୟମାନେ ଶ୍ରେଣୀର ଛାତ୍ରମାନଙ୍କ ଦ୍ୱାରା ନିର୍ବାଚିତ ହେବା ଦରକାର । ଏହି କମିଟି ଶ୍ରେଣୀର ଛାତ୍ରମାନେ ଯାହା ଅପରାଧ କରିବେ ତାହା ବିଚାର କରିପାରିବେ ଓ ଆବଶ୍ୟକ ଦଣ୍ଡବିଧାନ କରିପାରିବେ । ଯଦି କେହି ଗୁରୁତର ଶୃଙ୍ଖଳାଭଙ୍ଗ ଅପରାଧରେ

ଖୁବ୍ କଠିନ ଦଣ୍ଡ ପାଇବା ଉଚିତ ବୋଲି କମିଟି ବିବେଚନା କରନ୍ତି ତାହାହେଲେ ସେହି ପ୍ରକାର ଦଣ୍ଡ ବିଧାନର ସୁପାରିଶ୍ ପ୍ରଧାନ ଶିକ୍ଷକଙ୍କ ପାଖକୁ କରାଯିବା ଉଚିତ । ପ୍ରଧାନ ଶିକ୍ଷକ ଚାହିଁଲେ ସ୍ୱତନ୍ତ୍ର ବିଚାରଧାରା ପ୍ରୟୋଗ କରି କମିଟିକୁ ପୁନଃବିଚାର କରି ଦଣ୍ଡ ଲାଘବ କରିବାକୁ ପରାମର୍ଶ ଦେଇପାରନ୍ତି ଓ ସାଧାରଣତଃ ଏହି ପରାମର୍ଶ ଗ୍ରହଣୀୟ ହୁଏ । ଯାହାହେଉ ଗଣତାନ୍ତ୍ରିକ ପଦ୍ଧତିରେ ଦୋଷୀ ସାବ୍ୟସ୍ତ ହୋଇଥିବା ବ୍ୟକ୍ତିର ଅପିଲ କରିବାର ଅଧିକାର ରହିଅଛି । ତେଣୁ ଦଣ୍ଡିତ ହେବାକୁ ଯାଉଥିବା ଛାତ୍ରଟି କମିଟିର ଦଣ୍ଡାଦେଶ ବିରୋଧରେ ବିଦ୍ୟାଳୟର ସାଧାରଣ କମିଟିରେ ଅପିଲ କରିପାରନ୍ତି ନଚେତ୍ ସମସ୍ତ ବିଦ୍ୟାଳୟର ସଭାରେ ଅପିଲ କରିପାରନ୍ତି । ଗଣତାନ୍ତ୍ରିକ ଶାସନର ସଫଳ କାର୍ଯ୍ୟକାରିତା ଦୃଷ୍ଟିରୁ ଯେତେବେଳେ ଶିକ୍ଷକ କୌଣସି ଏକ ଛାତ୍ର ଉପରେ ଶୃଙ୍ଖଳାଗତ ଶାସ୍ତି ବିଧାନର ଆବଶ୍ୟକତା ଉପଲବ୍‌ଧି କରିବେ ସେ ତାହା ଶ୍ରେଣୀ କମିଟିକୁ ଜଣାଇ ଦେବେ । କମିଟି ବିଚାର କରି ଉପଯୁକ୍ତ ଦଣ୍ଡବିଧାନ କରିବେ ବା ତାକୁ ଦୋଷମୁକ୍ତ କରିପାରିବେ । ବାସ୍ତବ କ୍ଷେତ୍ରରେ କମିଟିର ସିଦ୍ଧାନ୍ତ ଅଧିକାଂଶ ସ୍ଥଳରେ ଦଣ୍ଡଦେବା ସପକ୍ଷରେ ହୋଇଥାଏ । ପୂର୍ବରୁ କୁହାଯାଇଅଛି କପରି ଶିକ୍ଷକମାନେ ଛାତ୍ରମାନଙ୍କୁ କ୍ଷମତା ଦେବାକୁ ଚାହାଁନ୍ତି ନାହିଁ କାରଣ ସମୟ ସମୟରେ ଏହା ଶିକ୍ଷକ-ଛାତ୍ର ସଂପର୍କରେ ଜଟିଳତା ସୃଷ୍ଟି କରିଥାଏ । ଶିକ୍ଷକ ଚାହୁଁଥିବା ସ୍ଥଳେ ଛାତ୍ର ପ୍ରତି ଦଣ୍ଡ ବିଧାନ କରା ନ ଗଲେ ଶିକ୍ଷକ ତାଙ୍କର ସମ୍ମାନରେ ଆଞ୍ଚ ଆସିଲା ବୋଲି ମନେ କରନ୍ତି । ଯାହାହେଉ ପ୍ରାଥମିକ ଅବସ୍ଥାରେ ବିଦ୍ୟାଳୟରେ ଗଣତାନ୍ତ୍ରିକ ଶାସନର ଭିତ୍ତି ସୁଦୃଢ଼ ନ ହେବା ପର୍ଯ୍ୟନ୍ତ କେତେକ ଅସୁବିଧା ଉପୁଜି ପାରେ; ମାତ୍ର ସମୟ ପ୍ରବାହରେ ଉଭୟ ଶିକ୍ଷକମଣ୍ଡଳୀ ଓ ଛାତ୍ରବୃନ୍ଦ ଏହି ଶାସନ ପଦ୍ଧତିରେ ଅଭ୍ୟସ୍ତ ହୋଇଯିବେ ।

ସମସ୍ତ ବିଦ୍ୟାଳୟ ପାଇଁ ଗୋଟିଏ ସାଧାରଣ କମିଟି ରହିବା ଦରକାର । ସେଥିରେ ମଧ୍ୟ ଜଣେ ସଭାପତି, ସାଧାରଣ ସମ୍ପାଦକ, କ୍ରୀଡ଼ା ସଂପାଦକ, ସାହିତ୍ୟ ସଂସଦ ସଂପାଦକ ରହି ପାରନ୍ତି । ଶ୍ରେଣୀ କମିଟି ଶ୍ରେଣୀ ଲାଗି ଯାହା କରିବେ ସାଧାରଣ କମିଟି ବିଦ୍ୟାଳୟ ପାଇଁ ତାହା କରିବେ । ଏଥିରେ କୌଣସି କାର୍ଯ୍ୟର ପୁନରାବୃତ୍ତି ହେବାର ସମ୍ଭାବନା ନାହିଁ କାରଣ ସମସ୍ତ ବିଦ୍ୟାଳୟ ପାଇଁ କେତେକ ସିଦ୍ଧାନ୍ତ ନେବା ପ୍ରୟୋଜନ ଯାହା କୌଣସି ଗୋଟିଏ ଶ୍ରେଣୀର ଛାତ୍ର ବା କମିଟି କରି ନ ପାରନ୍ତି । ବିଦ୍ୟାଳୟ ଯଦି କୌଣସି କ୍ରୀଡ଼ା ପ୍ରତିଯୋଗିତାରେ ଅଂଶ ଗ୍ରହଣ କରିବ ବା ବିଦ୍ୟାଳୟକୁ ଯଦି କୌଣସି ବିଶିଷ୍ଟ ବ୍ୟକ୍ତି ନିମନ୍ତ୍ରିତ ହୋଇ ଆସି ଛାତ୍ରମାନଙ୍କୁ ଉଦ୍‌ବୋଧନ ଦେବେ ତାହା ବିଦ୍ୟାଳୟର କ୍ରୀଡ଼ା ସଂପାଦକ ବା ସାହିତ୍ୟ ସଂସଦ ସମ୍ପାଦକ କରିପାରିବେ। ଶ୍ରେଣୀ କମିଟିର ସଭ୍ୟମାନେ ଏ ଦିଗରେ ସିଦ୍ଧାନ୍ତ ନେଇ ପାରିବେ ନାହିଁ । ଶ୍ରେଣୀ କମିଟିର ବିଚାରରେ କେହି ଅସନ୍ତୁଷ୍ଟ ହେଲେ ସେ ସାଧାରଣ କମିଟିକୁ ଅପିଲ କରିପାରନ୍ତି । ସାଧାରଣ କମିଟିର ସଭ୍ୟମାନେ ବିଦ୍ୟାଳୟର ସମସ୍ତ ଛାତ୍ରଙ୍କ ଦ୍ୱାରା ନିର୍ବାଚିତ ହେବା

ବାଞ୍ଛନୀୟ । ସାଧାରଣ କମିଟିରେ ପ୍ରତ୍ୟେକ ଶ୍ରେଣୀରୁ ଜଣେ ଜଣେ ପ୍ରତିନିଧି ରହିବା ଆବଶ୍ୟକ । ଯେଉଁ ଶ୍ରେଣୀଗୁଡ଼ିକର ଛାତ୍ର ସଂଖ୍ୟା ଯଥେଷ୍ଟ ବେଶୀ ସେ କ୍ଷେତ୍ରରେ ଏକାଧିକ ଶ୍ରେଣୀ ପ୍ରତିନିଧି ସ୍ଥାନ ପାଇବା ଉଚିତ । ଶ୍ରେଣୀ ପ୍ରତିନିଧିମାନେ କେବଳ ସେହି ଶ୍ରେଣୀର ଛାତ୍ରମାନଙ୍କ ଦ୍ୱାରା ନିର୍ବାଚିତ ହେବେ । ସାଧାରଣ କମିଟି ତାଙ୍କର କେତେକ ସଭ୍ୟଙ୍କୁ ନେଇ ଗୋଟିଏ କାର୍ଯ୍ୟକାରୀ କମିଟି ନିଯୁକ୍ତ କରିପାରନ୍ତି । କାର୍ଯ୍ୟକାରୀ କମିଟିର ସଭ୍ୟମାନେ ବାରମ୍ବାର ବୈଠକରେ ମିଳିତ ହୋଇ ପ୍ରାପ୍ତ ସମସ୍ତ କାର୍ଯ୍ୟପନ୍ଥା ସ୍ଥିର କରନ୍ତି । ସାଧାରଣ କମିଟି ସମସ୍ତ ବିଦ୍ୟାଳୟର ସଭା ନିକଟରେ ଦାୟୀ । ମଝିରେ ମଝିରେ ବିଦ୍ୟାଳୟର ସାଧାରଣ ସଭାରେ ବିଦ୍ୟାଳୟ ସାଧାରଣ କମିଟିର ସଭାପତି ଓ ଅନ୍ୟାନ୍ୟ ସଭ୍ୟମାନେ କ'ଣ କରୁଅଛନ୍ତି ବା କରିବାକୁ ଯାଉଅଛନ୍ତି ତାହା ସମସ୍ତଙ୍କୁ ଅବଗତ କରାଇ ଦେଇପାରନ୍ତି । ସେମାନଙ୍କର କୌଣସି କାର୍ଯ୍ୟକଳାପ ସମ୍ବନ୍ଧରେ ସେଠାରେ ସମାଲୋଚନା ମଧ୍ୟ କରାଯାଇପାରେ । ବିଦ୍ୟାଳୟରେ ଗୃହ-ବ୍ୟବସ୍ଥା ଥିଲେ ଶ୍ରେଣୀ କମିଟି ପରି ଗୋଟିଏ ଗୋଟିଏ ଗୃହ କମିଟି ଗଢ଼ାଯାଇପାରେ ଓ ଏହି କମିଟି ଗୃହର ସମସ୍ତ ସଭ୍ୟଙ୍କ ପାଇଁ ଉଦ୍ଦିଷ୍ଟ ବିଭିନ୍ନ କାର୍ଯ୍ୟ ପରିଚାଳନା କରିପାରନ୍ତି । ଯଦି ପ୍ରତ୍ୟେକ ଗୃହରେ ପ୍ରତ୍ୟେକ ଶ୍ରେଣୀର ଛାତ୍ର ଅନ୍ତର୍ଭୁକ୍ତ ହୋଇଥିବେ ତେବେ ପ୍ରତ୍ୟେକ ଶ୍ରେଣୀର ଜଣେ ଜଣେ ନିର୍ବାଚିତ ପ୍ରତିନିଧି ମିଶି ଗୃହ କମିଟି ଗଠନ କରିବେ ଓ ଏହି କମିଟିରେ ସର୍ବୋଚ୍ଚ ଶ୍ରେଣୀର ନିର୍ବାଚିତ ପ୍ରତିନିଧି ସଭାପତିତ୍ୱ କରିବେ । ବିଦ୍ୟାଳୟର ସାଧାରଣ ସଭାରେ ତଥା ସାଧାରଣ କମିଟି ଦ୍ୱାରା ଆୟୋଜିତ ସଭାରେ ବିଦ୍ୟାଳୟର ସର୍ଦ୍ଦାର ସଭାପତିତ୍ୱ କରିବେ ।

ଶ୍ରେଣୀ କମିଟି, ଗୃହ କମିଟି, ସାଧାରଣ କମିଟି ନିଜସ୍ୱ ସଭାସମିତିଗୁଡ଼ିକର ବିବରଣୀ ଲିପିବଦ୍ଧ କରି ରଖିବେ ଏବଂ ଏହି କାର୍ଯ୍ୟ କମିଟିଗୁଡ଼ିକର ସାଧାରଣ ସଂପାଦକଙ୍କର ଦାୟିତ୍ୱ । ପ୍ରତ୍ୟେକ କମିଟିର ଗଠନ ପଦ୍ଧତି, କାର୍ଯ୍ୟର ପରିସର ସଭ୍ୟ ନିର୍ବାଚନ ପ୍ରଣାଳୀ ବିଦ୍ୟାଳୟର ସମ୍ବିଧାନରେ ଲିପିବଦ୍ଧ ହେବା ଆବଶ୍ୟକ । ତାହାହେଲେ ସମସ୍ତେ ଗୋଟିଏ ନିୟମର ବଶବର୍ତ୍ତୀ ହୋଇ କାର୍ଯ୍ୟ କରିବେ । ସମସ୍ତେ ନିଜ ନିଜର ସୀମା ମଧ୍ୟରେ ରହି ମଧ୍ୟ କାର୍ଯ୍ୟ କରିବେ । ପ୍ରତ୍ୟେକ କମିଟିର ସଭାପତି ଓ ଅନ୍ୟାନ୍ୟ ସଦସ୍ୟମାନଙ୍କର କ୍ଷମତା ସ୍ପଷ୍ଟ ଭାବରେ ଉଲ୍ଲେଖ ରହିବା ବାଞ୍ଛନୀୟ । ଏହାଦ୍ୱାରା ସମସ୍ତେ ନିଜ ନିଜର ଦାୟିତ୍ୱ ହୃଦୟଙ୍ଗମ କରିବା ସହଜ ହେବ । ବିଦ୍ୟାଳୟରେ ଛାତ୍ର-ଶାସନ ପ୍ରଚଳନ କରାଗଲେ ଯେ ବିଦ୍ୟାଳୟର ସମସ୍ତ ସମସ୍ୟାର ହଠାତ୍ ସମାଧାନ ହୋଇଯିବ ବା ଶୃଙ୍ଖଳାଗତ ଶାସ୍ତିବିଧାନ ଆଦୌ ପ୍ରୟୋଜନ ହେବନାହିଁ ସେପରି ନୁହେଁ । ପ୍ରଚଳିତ ପଦ୍ଧତିରେ ଶୃଙ୍ଖଳା ଆଣିବା କଷ୍ଟ ସହଜ ମାତ୍ର ଗଣତାନ୍ତ୍ରିକ ପଦ୍ଧତିରେ ପ୍ରକୃତ ଶୃଙ୍ଖଳା ଆଣିବାକୁ ହେଲେ ଚିନ୍ତା ବୈର୍ଯ୍ୟ ଦରକାର ଓ କଷ୍ଟସାଧ୍ୟ ଯେ ହେବ ଏଥିରେ ସନ୍ଦେହ ନାହିଁ ।

## ଅନ୍ୟାନ୍ୟ ସହ-ପାଠ୍ୟକ୍ରମ କାର୍ଯ୍ୟାବଳୀ

ଏ ପର୍ଯ୍ୟନ୍ତ ବର୍ଣ୍ଣିତ ହୋଇଥିବା ସହ-ପାଠ୍ୟକ୍ରମ କାର୍ଯ୍ୟାବଳୀ ବ୍ୟତୀତ ଅନ୍ୟୁନ ଅନେକ କାର୍ଯ୍ୟକ୍ରମ ଜରିଆରେ ବିଦ୍ୟାଳୟ ଜୀବନ ସରସ, ସୁନ୍ଦର ଓ ଉପଯୋଗୀ କରାଯାଇପାରେ । ସେ ସମସ୍ତ ଏଠାରେ ଗୋଟି ଗୋଟି କରି ବର୍ଣ୍ଣନା କରିବା ସମ୍ଭବପର ନୁହେଁ । ତେବେ ପ୍ରତ୍ୟେକ କାର୍ଯ୍ୟକ୍ରମ ଯେ କୌଣସି କୌଣସି ଭଲ ଉଦ୍ଦେଶ୍ୟ ସାଧନ କରିବା ଲାଗି ଉଦ୍ଦିଷ୍ଟ ଏଥିରେ ସନ୍ଦେହ ନାହିଁ ।

### ବିଜ୍ଞାନ ସଂସଦ (Science Clubs)

ଆଜିକାଲି ଅନେକ ବିଦ୍ୟାଳୟରେ ବିଜ୍ଞାନ ସଂସଦ ପ୍ରତିଷ୍ଠିତ ହୋଇଅଛି । ବିଦ୍ୟାଳୟ ସ୍ତରରେ ବିଜ୍ଞାନ ସଂସଦ ସ୍ଥାପିତ ହେବାରେ ଭାରତରେ ବିଶେଷ ଅଗ୍ରଗତି ହୋଇ ନାହିଁ କାରଣ ଏହା ଏକ ନୂତନ ପରିକଳ୍ପନା । ୧୯୫୭-୫୮ ମସିହାରେ ସେତେବେଳର ମାଧ୍ୟମିକ ଶିକ୍ଷା ସମ୍ପ୍ରସାରଣ ଯୋଜନା ନିର୍ଦ୍ଦେଶାଳୟ (Directorate of Extension Programmes for Secondary Education) ଏ ଦିଗରେ ପଦକ୍ଷେପ ନେଇ ଭାରତରେ ମାଧ୍ୟମିକ ବିଦ୍ୟାଳୟଗୁଡ଼ିକରେ ବିଜ୍ଞାନ ସଂସଦ ପ୍ରତିଷ୍ଠା କାର୍ଯ୍ୟକ୍ରମ ଉତ୍ସାହିତ କରିଥିଲେ । ଏହି ସଂସ୍ଥା ସଂସଦଗୁଡ଼ିକୁ ବାରଶହ ଟଙ୍କା ପର୍ଯ୍ୟନ୍ତ ସାହାଯ୍ୟ କରିଥିଲେ । ଆଜି ଅନେକ ବିଦ୍ୟାଳୟରେ ଏହି ସଂସଦ ପ୍ରତିଷ୍ଠିତ ହୋଇଅଛି ଏବଂ ଅନେକ ବିଦ୍ୟାଳୟରେ ପ୍ରତିଷ୍ଠିତ ହେବା ପରେ ଆଦୌ କାର୍ଯ୍ୟ କରିପାରୁନାହିଁ ।

ଏହି ବିଜ୍ଞାନ ଯୁଗରେ ମାଧ୍ୟମିକ ସ୍ତରବୁଦ୍ଧି ବିଭିନ୍ନ କାର୍ଯ୍ୟକ୍ରମ ମାଧ୍ୟମରେ ବୈଜ୍ଞାନିକ ପ୍ରତିଭାର ବିକାଶ ପାଇଁ ସୁଯୋଗ ଦେବା ବିଜ୍ଞାନ ସଂସଦର ଲକ୍ଷ୍ୟ । ଏହି ସଂସଦର ସଭ୍ୟମାନେ ବିଦ୍ୟାଳୟର ସମସ୍ତ-ନିର୍ଦ୍ଦେଶ ଦ୍ୱାରାରେ ବିଭିନ୍ନ ପ୍ରକାର ନୂଆ ନୂଆ ପରୀକ୍ଷା କରନ୍ତି ଓ, ମଡେଲ ପ୍ରଭୃତି ତିଆରି କରନ୍ତି । ବିଶିଷ୍ଟ ବୈଜ୍ଞାନିକମାନଙ୍କୁ ଡାକି ସହଜବୋଧ ବକ୍ତୃତାର ଆୟୋଜନ କରନ୍ତି । ମଝିରେ ମଝିରେ ବିଦ୍ୟାଳୟର ପୁରସ୍କାର ବିତରଣ ଉତ୍ସବରେ, ଅଭିଭାବକ ଉତ୍ସବରେ ବିଜ୍ଞାନ ପ୍ରଦର୍ଶନୀ ଆୟୋଜନ କରନ୍ତି ଓ ବିଭିନ୍ନ ସ୍ଥାନରେ ହେଉଥିବା ବିଜ୍ଞାନ ମେଳାରେ ଯୋଗ ଦିଅନ୍ତି । ଛାତ୍ରମାନେ ନୂଆ ନୂଆ ଚିତ୍ତାକର୍ଷକ ବିଷୟ ପଢ଼ି ସେ ସମ୍ବନ୍ଧୀୟ ଲେଖା ଲେଖି ସଂସଦରେ ପଢ଼ନ୍ତି ଓ ଆଲୋଚନା କରନ୍ତି । ଏହି କାର୍ଯ୍ୟକ୍ରମଗୁଡ଼ିକ ମାଧ୍ୟମରେ ବହୁ ଛାତ୍ରଙ୍କର ସୁପ୍ତ ପ୍ରତିଭା ଜାଗ୍ରତ ହେବାରେ ଯେ ସୁଯୋଗ ମିଳିବ ଏଥିରେ ସନ୍ଦେହ ନାହିଁ । କିନ୍ତୁ ନାନା ଅସୁବିଧାରୁ ଏହା ସଫଳତାର ସହ କାର୍ଯ୍ୟକାରୀ ହେଉନାହିଁ । ଆର୍ଥିକ ଅସୁବିଧା ଏହାର ଏକ ଘୋର

ଅନୁଭବନ୍ତି । ପିଲାମାନେ ତାଙ୍କ ମନରେ ଉଦ୍ରେକ ହେଉଥିବା ଧାରଣାର ସତ୍ୟାସତ୍ୟ ପାଇଁ ପରୀକ୍ଷା କରନ୍ତୁ ବା ସୃଷ୍ଟି କରନ୍ତୁ ବା କୌଣସି ବଶିଷ୍ଟ ବୈଜ୍ଞାନକଙ୍କୁ ଡ଼ାକନ୍ତୁ, ସବୁଥିରେ ଟଙ୍କା ଦରକାର । ଅନେକ ବଦ୍ୟାଳୟରେ ଉତ୍ସାହୀ ବଜ୍ଞାନ ଶିକ୍ଷକ ଥିଲେ ମଧ୍ୟ ଏହି କାର୍ଯ୍ୟକ୍ରମ ପ୍ରଧାନତଃ ଆର୍ଥିକ ଅନଟନରୁ ଠିକ୍ ଠିକ୍ କାର୍ଯ୍ୟକାରୀ ହୋଇପାରୁ ନାହିଁ । ଦେଶର ଲୋକମାନଙ୍କର ଆର୍ଥିକ ଅସ୍ୱଚ୍ଛଳତା ହେତୁ ଛାତ୍ରମାନେ ପ୍ରତ୍ୟେକ ମାସରେ ଚାନ୍ଦାଦେଇ ଏହି କାର୍ଯ୍ୟକ୍ରମ ଜୀବନ୍ତ ରଖି ପାରୁନାହାନ୍ତି । ଅନେକ ସ୍ଥଳରେ ପ୍ରଧାନ ଶିକ୍ଷକଙ୍କର ସହଯୋଗ ଅଭାବ ହେଉଅଛି । ଏସବୁ କାର୍ଯ୍ୟକ୍ରମ ଠିକ୍ ଭାବରେ ଚାଲିବା ଅର୍ଥ ବଦ୍ୟାଳୟର ବଜ୍ଞାନାଗାର ଅଧିକ କେତେ ଘଣ୍ଟା ଖୋଲା ରହିବା ଦରକାର । ଛାତ୍ରମାନେ ବଜ୍ଞାନାଗାରରୁ ସ୍ଥାୟୀ ପଦାର୍ଥଗୁଡ଼ିକ ଆଣି ଫେରାଇବାର ବ୍ୟବସ୍ଥା ମଧ୍ୟ ଦରକାର । ଏସବୁ ସଭ୍ୟମାନେ ବଦ୍ୟାଳୟରୁ ବଭିନ୍ନ ରାସାୟନିକ ପଦାର୍ଥ ନେଇ ଖର୍ଚ୍ଚ କରି ନ ପାରନ୍ତି; ମାତ୍ର ନେଇଁ ସ୍ଥାୟୀ ପଦାର୍ଥଗୁଡ଼ିକ ବଜ୍ଞାନାଗାରରେ ଥିବ ସେ ସବୁର ଯେତେ ଅଧିକ ସଦ୍‌ବ୍ୟବହାର ହୋଇପାରିବ ସେତେ ଭଲ । ସମସ୍ତ ସମୟରେ ପ୍ରଧାନ ଶିକ୍ଷକ ଏହିସବୁ ସୁଯୋଗ ଦେବାରେ କୁଣ୍ଠିତ ହୁଅନ୍ତି, ଫଳରେ ବଜ୍ଞାନ ଶିକ୍ଷକ ଅସହାୟ ବୋଧ କରନ୍ତି ।

## ବାଳଚର ସଂଘ ଓ ରେଡ଼କ୍ରସ ସଂସ୍ଥା

ବଦ୍ୟାଳୟରେ ବାଳଚର ସଂଘ ରେଡ଼କ୍ରସ ସଂସ୍ଥା ପ୍ରଭୃତିର ଶାଖା ଖୋଲାଯାଇ ପିଲାମାନଙ୍କୁ ଆବଶ୍ୟକ ତାଲିମ୍ ଦିଆଯାଇ ସେମାନଙ୍କ ମନରେ ସେବା ଓ ଶୃଙ୍ଖଳାର ମନୋବୃତ୍ତି ଜାଗ୍ରତ କରାଯାଇପାରେ । ବାଳଚର ସଂଘର ସେଉଁସବୁ ଖେଳ, ଅନ୍ୟାନ୍ୟ ଦକ୍ଷତା ସମ୍ବନ୍ଧୀୟ କାର୍ଯ୍ୟକ୍ରମ ରହିଅଛି ତାହା ମାଧ୍ୟମରେ ଛାତ୍ରମାନଙ୍କ ମନରେ ସାମାଜିକ ସେବା, ଉତ୍ତମ ବ୍ୟବହାର, ନେତୃତ୍ୱ ପାଇଁ ସମ୍ମାନ, ରାଷ୍ଟ୍ରପାଇଁ ଆନୁଗତ୍ୟ ଓ ଯେ କୌଣସି ପରିସ୍ଥିତିର ମୁକାବିଲା କରିବା ପାଇଁ ପ୍ରସ୍ତୁତ ଇତ୍ୟାଦି ବହୁଗୁଣର ଭିତ୍ତି ସ୍ଥାପିତ ହୁଏ । ରେଡ଼କ୍ରସ ସଂସ୍ଥାର ସଭ୍ୟ ହେବା ଫଳରେ ଯଦି ପ୍ରତ୍ୟେକ ବର୍ଷ ଗୋଟିଏ ଗୋଟିଏ ବଦ୍ୟାଳୟରୁ ପଚାଶ ବା ଶହେ ଛାତ୍ର କେବଳ ପ୍ରାଥମିକ ଚିକିତ୍ସାରେ ତାଲିମ ପାଇ ପାରିବେ ତାହା ଭାରତ ପରି ଏକ ଦେଶ ପକ୍ଷେ ଅତ୍ୟନ୍ତ ମୂଲ୍ୟବାନ ହେବ । ଏହି ଛାତ୍ରମାନେ ବଭିନ୍ନ ଯାତ୍ରା ବା ମେଳାରେ ଲୋକମାନଙ୍କୁ ସାହାଯ୍ୟ କରିପାରିବେ ଏବଂ ବାତ୍ୟା, ବନ୍ୟା ପୀଡ଼ିତ ବା ସଂକ୍ରାମକ ବ୍ୟାଧିଗ୍ରସ୍ତ ଅଞ୍ଚଳରେ ସେବା କରିପାରିବେ ।

ଆଜିକାଲି କେତକେ ବଦ୍ୟାଳୟରେ ଛାତ୍ରମାନଙ୍କଠାରୁ ଏହି ସବୁ ସଂସ୍ଥା ପାଇଁ ମାସିକ ବା ବାର୍ଷିକ ଚାନ୍ଦା ମଧ୍ୟ ସଂଗୃହୀତ ହେଉଅଛି । ଯାହାହେଉ ନିସ୍ୱାର୍ଥପର ସେବାପାଇଁ ଉଦ୍ଦିଷ୍ଟ ଏହି ସଂସ୍ଥାଗୁଡ଼ିକ ସର୍ବଦା ଉତ୍ସାହିତ କରାଯିବା ଉଚିତ ଓ ବଦ୍ୟାଳୟରେ ଏଗୁଡ଼ି

ଶିକ୍ଷକ ତଥା ଛାତ୍ରମାନଙ୍କୁ ଯେଉଁ ସୁବିଧା ସୁଯୋଗ ଦିଆଯିବା ଉଚିତ ସେଥିରୁ ସେମାନଙ୍କୁ ଆଦୌ ବଞ୍ଚିତ କରିବା ଉଚିତ ନୁହେଁ । ବିଶେଷତଃ ବାତ୍ୟା, ବନ୍ୟାକ୍ରୁଷ୍ଟ ଓ ନାନା ପ୍ରାକୃତିକ ବିପଦଗ୍ରସ୍ତ ପ୍ରଦେଶର ବିଦ୍ୟାଳୟଗୁଡ଼ିକରେ ଏପ୍ରକାର ସାହାଯ୍ୟକାରୀ ଯନ୍ତ୍ରା-ପାତି ଯେ ଧ୍ୱଂସ୍ତ କ୍ଷେତ ହୋଇଅଛି ଏଥିରେ ସନ୍ଦେହ ନାହିଁ ।

## ବଗିଚା କାମ

ଆଜି ମଧ୍ୟ ଅନେକ ବିଦ୍ୟାଳୟ ଅଛି ଯେଉଁଠାରେ ଛାତ୍ରାବାସର ଅନ୍ତେବାସୀମାନେ ବର୍ଷସାରା ସେମାନଙ୍କର ବ୍ୟବହାର ପାଇଁ ଆବଶ୍ୟକ ପନିପରିବା ଉତ୍ପନ୍ନ କରନ୍ତି । ଅନ୍ୟ ପକ୍ଷରେ ଅଧିକାଂଶ ବିଦ୍ୟାଳୟର ସମ୍ମୁଖଭାଗ ହତାରେ ମଧ୍ୟ ଗୋଟିଏ ଫୁଲଗଛ ନ ଥାଏ । ଯେ କୌଣସି ବିଦ୍ୟାଳୟରେ ପାଠ୍ୟ ନିର୍ଘଣ୍ଟରେ ବଗିଚାକାମ ପାଇଁ ଗୋଟିଏ ପିରିଅଡ ରହିବା ଉଚିତ । ବିଦ୍ୟାଳୟରେ ଯଥେଷ୍ଟ ଜମି ଥିଲେ ପ୍ରତ୍ୟେକ ଶ୍ରେଣୀ ପାଇଁ ଗୋଟିଏ ଗୋଟିଏ ଅଂଶ ନିର୍ଦ୍ଦିଷ୍ଟ ହୋଇଯିବା ଉଚିତ । ପ୍ରତ୍ୟେକ ଶ୍ରେଣୀର ଛାତ୍ରମାନେ ବଗିଚାକାମ ପିରିଅଡରେ ଓ ଆବଶ୍ୟକ ହେଲେ ଅନ୍ୟ ସମୟରେ କାମ କରି କିଛି ନା କିଛି ଫଳ ଫୁଲ ଉତ୍ପାଦନ କରିବା ଉଚିତ । ଛାତ୍ରାବାସର ଅନ୍ତେବାସୀମାନେ ବଗିଚା-କାମ କରି ସେମାନଙ୍କର ଆବଶ୍ୟକ ପନିପରିବାର ଚାହିଦା ଆଂଶିକ ଭାବରେ ଅନ୍ତତଃ ପୂରଣ କରିବା ଉଚିତ । ମୋଟ ଉପରେ ବଗିଚାକାମ ଦ୍ୱାରା ଛାତ୍ରମାନଙ୍କର ଶ୍ରମ ମର୍ଯ୍ୟାଦା ବଢିବା ସଙ୍ଗେ ସଙ୍ଗେ ସେମାନେ ସ୍ୱାବଲମ୍ବନଶୀଳ ହେବା ଶିକ୍ଷା କରିପାରିବେ । ଗୋଟିଏ ଉଦ୍ଭିଦର ଅଙ୍କୁରୋଦ୍‌ଗମଠାରୁ ତାହା ପତ୍ର, ଫୁଲ, ଫଳ ଧାରଣ କରିବା ପର୍ଯ୍ୟନ୍ତ ପ୍ରତ୍ୟେକ ଅବସ୍ଥା ଯେ ଛାତ୍ରମାନଙ୍କ ପକ୍ଷେ ଶିକ୍ଷଣୀୟ ଏଥିରେ ସନ୍ଦେହ ନାହିଁ । ଛାତ୍ର-ମାନଙ୍କର ପର୍ଯ୍ୟବେକ୍ଷଣ ଦକ୍ଷତା ବୃଦ୍ଧି ପାଇବା ସଙ୍ଗେ ସଙ୍ଗେ ଏହା ସେମାନଙ୍କର ପାଠ୍ୟକ୍ରମ ଅନ୍ତର୍ଭୁକ୍ତ ବିଷୟଗୁଡ଼ିକ ଅଧିକ ଭଲ ଭାବରେ ହୃଦୟଙ୍ଗମ କରିବାରେ ସହାୟକ ହେବ । ବିଶେଷ ଆଗ୍ରହୀ ଛାତ୍ରମାନଙ୍କର ଏହା ଏପରି ଏକ ଅଭ୍ୟାସରେ ପରିଣତ ହେବ ଯେ ସେମାନେ ପରବର୍ତ୍ତୀ ଜୀବନରେ ଏହାକୁ ଏକ ଅବସର କାର୍ଯ୍ୟକ୍ରମ ମଧ୍ୟରେ ଗ୍ରହଣ କରିନେବେ । ଯାହାହେଉ ଏହି କାର୍ଯ୍ୟକ୍ରମର ଉତ୍ପାଦନ ମୂଲ୍ୟ ଉପରେ ଅଧିକ ଦୃଷ୍ଟି ନ ଦେଇ ପ୍ରତ୍ୟେକ ଛାତ୍ର ଯେପରି ଏଥିରେ ଅଂଶ ଗ୍ରହଣ କରନ୍ତି ସେହି ଅନୁସାରେ ଏକ ସୁଚିନ୍ତିତ ପରିକଳ୍ପନା କାର୍ଯ୍ୟକାରୀ ହେବା ଉଚିତ ।

## ପ୍ରଶ୍ନାବଳୀ

୧ । ବିଦ୍ୟାଳୟରେ ସହ-ପାଠ୍ୟକ୍ରମ କାର୍ଯ୍ୟାବଳୀର ଆବଶ୍ୟକତା ସମ୍ବନ୍ଧରେ ଲେଖ ।

୨ । ବିଦ୍ୟାଳୟରେ କ୍ରୀଡ଼ା ସଙ୍ଗଠନ ପାଇଁ ନାନା ଅସୁବିଧାର ସମ୍ମୁଖୀନ ହେବାକୁ ହୁଏ, ସେ ସବୁ କଣ ?

୩। ବିଦ୍ୟାଳୟର ଚତୁଃପାର୍ଶ୍ୱରେ ଥିବା ଗ୍ରାମଗୁଡ଼ିକରେ କ୍ରୀଡ଼ା ପ୍ରସାର କରିବାରେ ବିଦ୍ୟାଳୟ କି ଭୂମିକା ଗ୍ରହଣ କରିପାରିବ ?

୪। ବିଦ୍ୟାଳୟରେ ନିୟମିତ ଭାବରେ ତର୍କସଭାର ଆୟୋଜନ କରିବା ପାଇଁ କି କି ସାଂଗଠନିକ ବ୍ୟବସ୍ଥା କରିବାକୁ ହେବ ?

୫। ତର୍କସଭାର ବ୍ୟବସ୍ଥା ଅପେକ୍ଷା ଦଳଗତ ଆଲୋଚନା ଉପରେ ଅଧିକ ପ୍ରାଧାନ୍ୟ ଦିଆଯିବା ଦରକାର ବୋଲି କେତେକଙ୍କର ମତ । କାହିଁକି ?

୬। ପ୍ରଚଳିତ ପୁରସ୍କାର ବିତରଣ ପ୍ରଥାରେ ପ୍ରକୃତ ଉଦ୍ଦେଶ୍ୟ ସାଧିତ ହେଉଅଛି କି ? କି କି ସାବଧାନତା ଅବଲମ୍ବନ କରାଯାଇ ଏହାକୁ ଅଧିକ ଫଳପ୍ରଦ କରିହେବ ?

୭। "ପର୍ଯ୍ୟଟନ ଓ ପରିଭ୍ରମଣ ଶିକ୍ଷାର ଏକ ଅବିଚ୍ଛେଦ୍ୟ ଅଙ୍ଗ" । ଆଲୋଚନା କର ।

୮। ଛାତ୍ର ବିଶୃଙ୍ଖଳା କ୍ରମଶଃ ଉତ୍କଟ ହେଉଥିବା ବେଳେ ଛାତ୍ର-ଶାସନ ଫଳପ୍ରଦ ହୋଇପାରିବ କି ? ନିଜର ମତାମତ ଦିଅ ।

୯। ବିଦ୍ୟାଳୟଗୁଡ଼ିକରେ ଛାତ୍ର-ଶାସନ ବିଫଳ ହେବାର କାରଣଗୁଡ଼ିକ ଲେଖ । ଏ କ୍ଷେତ୍ରରେ ପ୍ରଧାନ ଶିକ୍ଷକ ଓ ଅନ୍ୟାନ୍ୟ ଶିକ୍ଷକମାନଙ୍କର ଭୂମିକା କ'ଣ ?

୧୦। ସ୍ୱୟଂଶାସନ ବ୍ୟବସ୍ଥା ପ୍ରଚଳନ କରିବା ପାଇଁ କି ପ୍ରକାର ସାଙ୍ଗଠନିକ ବ୍ୟବସ୍ଥା ଆବଶ୍ୟକ ତାହାର ଏକ ଚିତ୍ର ଦିଅ ।

୧୧। ବିଦ୍ୟାଳୟରେ ଛାତ୍ର ସଂସଦ କାହିଁକି ଓ କିପରି ସଂଗଠିତ ହେବା ଦରକାର ସେ ସମ୍ବନ୍ଧରେ ଲେଖ ।

୧୨। ଏକ ସହ-ପାଠ୍ୟକ୍ରମ କାର୍ଯ୍ୟରୂପେ ବିଦ୍ୟାଳୟରେ ବଗିଚାକାମ କୌଣସି ଉଦ୍ଦେଶ୍ୟ ସାଧନ କରିପାରିବ କି ? ଆଲୋଚନା କର ।



# ଚତୁର୍ଦ୍ଦଶ ଅଧ୍ୟାୟ

## ବିଦ୍ୟାଳୟ-ଗୋଷ୍ଠୀ ସମ୍ପର୍କ

## (School-Community relationship)

### ବିଦ୍ୟାଳୟ-ଗୋଷ୍ଠୀ ସମ୍ପର୍କର ଆବଶ୍ୟକତା

ପୂର୍ବବର୍ତ୍ତୀ ଏକ ଅଧ୍ୟାୟରେ ବର୍ଣ୍ଣିତ ହୋଇଅଛି ଯେ ବିଦ୍ୟାଳୟ ଉପରେ କ୍ରମେ କେତେକ ସାମାଜିକ ଦାୟିତ୍ୱ ନ୍ୟସ୍ତ ହେଉଅଛି ଏବଂ ସେଥିପାଇଁ ବିଦ୍ୟାଳୟ ଏକ କ୍ଷୁଦ୍ର ସମାଜରେ ରୂପାନ୍ତରିତ ହେବା ଆବଶ୍ୟକ । ବିଦ୍ୟାଳୟ ଗୋଷ୍ଠୀଠାରୁ ଯେପରି ବିଚ୍ଛିନ୍ନ ହୋଇ ରହିଅଛି ତାହାର ପରିସମାପ୍ତି ଘଟିବା ଏକାନ୍ତ ଆବଶ୍ୟକ । ଏକ ବୃହତ୍ତର ଗୋଷ୍ଠୀ ମଧ୍ୟରେ ବିଦ୍ୟାଳୟ କେବଳ ଏକ କ୍ଷୁଦ୍ର ଗୋଷ୍ଠି ନୁହେଁ । ବିଦ୍ୟାଳୟ କାର୍ଯ୍ୟକ୍ରମ ମଧ୍ୟରେ ବାସ୍ତବ ଗୋଷ୍ଠୀ ଅନୁଭୂତି ପାଇଁ ବ୍ୟବସ୍ଥା ରହିବା ଦରକାର । ପ୍ରକୃତ ପକ୍ଷରେ ବିଦ୍ୟାଳୟ ଓ ଗୋଷ୍ଠୀ ଭିତରେ ଏପରି ସମ୍ପର୍କ ରହିବା ଆବଶ୍ୟକ ଯାହା ଫଳରେ ଗୋଷ୍ଠୀ ଜୀବନର ବାସ୍ତବ ଅନୁଭୂତି ଓ ସମସ୍ୟା ବିଦ୍ୟାଳୟ ଶିକ୍ଷାକୁ ପ୍ରଭାବିତ କରିବ ଏବଂ ବିଦ୍ୟାଳୟରେ ଛାତ୍ରମାନଙ୍କର ଲବ୍ଧଜ୍ଞାନ, ଦକ୍ଷତା, ମୂଲ୍ୟବୋଧ ଇତ୍ୟାଦି ଗୋଷ୍ଠୀ ତଥା ଗୃହର ବିଭିନ୍ନ ସମସ୍ୟା ସମାଧାନରେ ସହାୟକ ହେବ । ଏହା ସମ୍ଭବପର ହୋଇପାରିଲେ ଶିକ୍ଷକ, ଛାତ୍ର ଓ ଅଭିଭାବକମାନଙ୍କର ସମଷ୍ଟିରେ ଏକ ଦୃଢ଼ ପରସ୍ପର ସାହାଯ୍ୟକାରୀ ସ୍ୱାଭାବିକ ଦଳ ପ୍ରତିଷ୍ଠିତ ହୋଇପାରିବ । ଗୋଷ୍ଠୀର ମଙ୍ଗଳ ଲାଗି ଛାତ୍ର-ମାନେ ବିଭିନ୍ନ ସମାଜ ସେବା କାର୍ଯ୍ୟକ୍ରମରେ ସକ୍ରିୟ ଅଂଶ ଗ୍ରହଣ କରିବା ଉଚିତ । ବିଦ୍ୟାଳୟରେ କେବଳ ସମାଜ ସେବାର ଆଦର୍ଶ ସମ୍ବନ୍ଧରେ ତାତ୍ତ୍ୱିକ ଆଲୋଚନା ନ ହୋଇ ଛାତ୍ରମାନଙ୍କର ସକ୍ରିୟ ଅଂଶ ଗ୍ରହଣ ପାଇଁ ଯାହା ଆବଶ୍ୟକ ତାହା ପୂରଣ କରି ଦିଆଯିବା ଉଚିତ । ଯଦି ଗ୍ରାମ କିମ୍ବା ସହରର ଏକ ଅଂଶ ଅପରିଷ୍କାର ଅପରିଚ୍ଛନ୍ନ ହୋଇ ମଶା ଓ ମାଛିରେ ପୂର୍ଣ୍ଣ ହୋଇଅଛି ଓ ରୋଗ ସଂକ୍ରମଣର ଏକ କେନ୍ଦ୍ର ହୋଇଅଛି ତାହାହେଲେ ପାର୍ଶ୍ୱବର୍ତ୍ତୀ ବିଦ୍ୟାଳୟର ଛାତ୍ରମାନେ ସ୍ଥାନୀୟ ଅଧିବାସୀମାନଙ୍କୁ

ଏଥିପାଇଁ ଆବଶ୍ୟକ ଶିକ୍ଷା ଦେଇପାରିବେ, ଜନଚେତନା ଜାଗ୍ରତ କରିପାରିବେ ଏବଂ ସେମାନେ ନିଜେ ଏକ ପରିଚ୍ଛନ୍ନତା ଅଭିଯାନ (Campaign) ଚଳାଇ ସେଥିରେ ସକ୍ରିୟ ଅଂଶ ଗ୍ରହଣ କରି ପାରିବେ ଓ ଅନ୍ୟମାନଙ୍କ ସମ୍ମୁଖରେ ଏକ ଆଦର୍ଶର ଉପସ୍ଥାପନା କରିପାରିବେ । ଛାତ୍ରମାନେ ସଫେଇ ଆରମ୍ଭ କରିଦେଲେ ଗ୍ରାମ କିମ୍ବା ସହରବାସୀ ଅତି ଆଗ୍ରହର ସହ ସେମାନଙ୍କ ସଙ୍ଗେ ଯୋଗଦେବେ ଓ ଛାତ୍ରମାନେ ଏକ ଅଭୂତପୂର୍ବ ଅନୁପମ ଅନୁଭୂତିର ଅଧିକାରୀ ହେବେ । ସେହିପରି ଗୋଷ୍ଠୀ ମଧ୍ୟରେ ରହିଥିବା ବୁଦ୍ଧିଜୀବୀ ତଥା ବିଭିନ୍ନ ସମାଜସେବା ବୃତ୍ତି ଅବଲମ୍ବନ କରିଥିବା ବ୍ୟକ୍ତିମାନଙ୍କୁ ମଝିରେ ମଝିରେ ବିଦ୍ୟାଳୟକୁ ନିମନ୍ତ୍ରଣ କରି ସେମାନଙ୍କଠାରୁ ସେମାନଙ୍କର କାର୍ଯ୍ୟ ତଥା ତାହାର ସମାଜରେ ସ୍ଥିତି ଓ ଆବଶ୍ୟକତା ସମ୍ବନ୍ଧରେ ଛାତ୍ରମାନେ ଶୁଣିପାରିବେ । ଏହି ପ୍ରକାରେ ପ୍ରାରମ୍ଭିକ ଅବସ୍ଥାରେ ବାହ୍ୟ ଜୀବନଧାରା ଧୀରେ ଧୀରେ ବିଦ୍ୟାଳୟ ମଧ୍ୟକୁ ପ୍ରବାହିତ ହୋଇ ଗୋଷ୍ଠୀ ଓ ବିଦ୍ୟାଳୟ ମଧ୍ୟସ୍ଥିତ ପ୍ରାଚୀର ଭାଙ୍ଗି ଦେଇପାରେ ।

ଶ୍ରେଣୀ ଗୃହରେ ଶିକ୍ଷାଲାଭ କରିବା ଯେପରି ଏକ ମୁଖ୍ୟ ବିଷୟ, ବିଭିନ୍ନ ସାମାଜିକ ଓ ବାସ୍ତବ କାର୍ଯ୍ୟକ୍ରମରେ ଭାଗନେବା ସେହିପରି ଏକ ମୁଖ୍ୟ ବିଷୟରୂପେ ବିବେଚିତ ହେବା ଦରକାର । ଏହି ଦୁଇଟି ଦିଗରେ ସମଗୁରୁତ୍ୱ ଉପଲବ୍ଧି ନ କଲେ ଚରିତ୍ର-ଗଠନ ତଥା ବ୍ୟକ୍ତିତ୍ୱର ବିକାଶ ସମ୍ଭବପର ନୁହେଁ । ଶ୍ରେଣୀ ଗୃହରେ ଯେଉଁ ଆଦର୍ଶ ଓ ମୂଲ୍ୟବୋଧର ଅବତାରଣା କରାଯାଏ ବାହ୍ୟ ଜଗତରେ ତାହାର ଅଭ୍ୟାସ ପାଇଁ ପ୍ରଶସ୍ତ କ୍ଷେତ୍ର ତଥା କାର୍ଯ୍ୟକ୍ରମ ମଧ୍ୟ ରହିବା ଉଚିତ, ତା ନ ହେଲେ ତାତ୍ତ୍ୱିକ ଆଲୋଚନା ଓ ବାସ୍ତବ ଜୀବନ ମଧ୍ୟରେ ଏତେ ପାର୍ଥକ୍ୟ ରହିଯିବ ଯେ ଛାତ୍ରଟିଏ ବିଦ୍ୟାଳୟ ଶିକ୍ଷା ସମାପ୍ତ କଲାପରେ ସମାଜରେ ନିଜକୁ ଖାପ ଖୁଆଇ ପାରିବ ନାହିଁ । ଛାତ୍ରମାନେ ଯେଉଁ କାର୍ଯ୍ୟକ୍ରମଗୁଡ଼ିକ ମାଧ୍ୟମରେ ଗୋଷ୍ଠୀ ଜୀବନ ସହ ସମ୍ପୃକ୍ତ ହୋଇପାରିବେ ତାହାର କେତେକ ସୂଚନା ନିମ୍ନରେ ପ୍ରଦତ୍ତ ହେଲା ।

## ନିରକ୍ଷରତା ଦୂରୀକରଣ

ଭାରତରେ ନିରକ୍ଷର ଲୋକଙ୍କ ସଂଖ୍ୟା ଶତକଡ଼ା ସତୁରୀ ଭାଗରୁ ଅଧିକ । ଯେଉଁ ଦେଶରେ ନିରକ୍ଷର ଲୋକଙ୍କ ସଂଖ୍ୟା ଯେତେ ଅଧିକ ସେ ଦେଶର ଯେକୌଣସି ଯୋଜନା, ସଫଳତାର ସହ କାର୍ଯ୍ୟକାରୀ କରିବା ସେତିକି କଷ୍ଟକର । କିନ୍ତୁ ଏହି ସମସ୍ୟା ଏତେ ବ୍ୟାପକ ଯେ ସରକାରଙ୍କ ବହୁ ଚେଷ୍ଟା ସତ୍ତ୍ୱେ ଏ ଦିଗରେ ବିଶେଷ ଅଗ୍ରଗତି ହେଉନାହିଁ । ଏ ଦିଗରେ ପ୍ରକୃତ ଅଗ୍ରଗତି ପାଇଁ ଆବଶ୍ୟକ ଏକ ଦୃଢ଼ ମନୋବଳ । ପ୍ରଥମେ ରାଷ୍ଟ୍ରନାୟକଙ୍କ ଓ ବୁଦ୍ଧିଜୀବୀମାନଙ୍କର ହୃଦ୍‌ବୋଧ ହେବା ଆବଶ୍ୟକ ଯେ; ନିରକ୍ଷରତା ହିଁ ଜାତୀୟ

ଭିନ୍ନସ୍ଥଳ ବାଧାପ୍ରାପ୍ତ ହୁଏ । ତାପରେ ସେମାନେ ସେମାନଙ୍କର ଏହି ଦୃଢ଼ ଧାରଣା ଲୋକମାନଙ୍କ ଆଗରେ ଉପସ୍ଥାପନା କରି ପାରିଲେ ଓ ସେଥିପାଇଁ ଏକ ସାମୂହିକ ପ୍ରଚେଷ୍ଟା କରାଇପାରିଲେ କେବଳ ନିରକ୍ଷରତା ଦୂର ହୋଇପାରିବ । ଦେଶ ଯଦି କୃତ ସଙ୍କଳ୍ପ ହୁଏ ଏବଂ ସେଥିପାଇଁ ପ୍ରତ୍ୟେକ ଶିକ୍ଷିତ ଲୋକ ସାମାନ୍ୟ ତ୍ୟାଗ କରିବାକୁ ପ୍ରସ୍ତୁତ ହୁଅନ୍ତି ତାହାହେଲେ କେବଳ ଆଗାମୀ କେତେ ବର୍ଷ ମଧ୍ୟରେ ନିରକ୍ଷତା ଦୂର ହୋଇପାରେ । ଯାହାହେଉ ଦେଶବାସୀ ଜାତୀୟ ଭାବଧାରାରେ ଉଦ୍‌ବୁଦ୍ଧ ହୋଇ ଯେବେ ସାମୂହିକ ପ୍ରଚେଷ୍ଟା ଆରମ୍ଭ କରିବେ ସେଥିପାଇଁ ଅପେକ୍ଷା ନ କରି ବିଦ୍ୟାଳୟ ତରଫରୁ ଏକ ସୁପରିକଳ୍ପିତ ଯୋଜନା କରାଯାଇପାରେ । ନିରକ୍ଷରତା ଦୂରୀକରଣ ପ୍ରଧାନତଃ ଏକ ପ୍ରୌଢ଼ ଶିକ୍ଷା କାର୍ଯ୍ୟକ୍ରମ ରୂପେ ଗୃହୀତ ହୋଇପାରେ ।

ନିରକ୍ଷରତା ଦୂରୀକରଣ ଏକ ସ୍ୱେଚ୍ଛାମୂଳକ କାର୍ଯ୍ୟ । ତେଣୁ ଏହା ବ୍ୟକ୍ତିଗତ ଆଗ୍ରହ ଉପରେ ବହୁ ପରିମାଣରେ ନିର୍ଭର କରେ । ତେଣୁ ବିଦ୍ୟାଳୟରୁ ପ୍ରକୃତ ଆଗ୍ରହୀ ଛାତ୍ରମାନଙ୍କୁ ବାଛି ଏହି କାର୍ଯ୍ୟ ଆରମ୍ଭ କରାଯାଇପାରେ । ବିଦ୍ୟାଳୟରେ ଶ୍ରେଣୀଗୃହର ଅଭାବ ନ ଥିବାରୁ ବିଦ୍ୟାଳୟଟି ଏକ ରାତ୍ରି ବିଦ୍ୟାଳୟରେ ପରିଣତ କରାଯାଇପାରେ ଏବଂ ଉପର ଶ୍ରେଣୀର ଛାତ୍ରମାନେ ଶିକ୍ଷକଙ୍କର ନିର୍ଦ୍ଦେଶନାରେ ପାଳି କରି ଏହି ନିରକ୍ଷର ଯୁବକ ଓ ପ୍ରୌଢ଼ମାନଙ୍କୁ କେତେଗୋଟି ଦଳରେ ବିଭକ୍ତ କରି ଅଧ୍ୟାପନା କରାଇ ପାରନ୍ତି । ଏହି ପଦ୍ଧତିରେ ପାଠପଢ଼ା ହେଲେ ଜଣେ ଛାତ୍ର ସବୁଦିନେ ଏହି କାର୍ଯ୍ୟରେ ସମୟ ବ୍ୟୟ କରିବେ ନାହିଁ । ଅର୍ଥାତ୍ ୧୦।୧୫ ଦିନ ମଧ୍ୟରେ ଥରେ ତାଙ୍କର ପାଳି ପଡ଼ିପାରେ । ମାତ୍ର ପ୍ରତ୍ୟେକ ଦିନ ଭିନ୍ନ ଭିନ୍ନ ବ୍ୟକ୍ତି ପାଠପଢ଼ାଇଲେ ଶିକ୍ଷା କାର୍ଯ୍ୟକ୍ରମର ନିରବଚ୍ଛିନ୍ନତା ରହିବ ନାହିଁ । ତେଣୁ ପ୍ରତ୍ୟେକ ଛାତ୍ର ମାତ୍ର କେତେଜଣଙ୍କର ଦାୟିତ୍ୱ ନେଇ ପ୍ରତିଦିନ ଅଳ୍ପସମୟ ପାଠ ପଢ଼ାଇ ପାରନ୍ତି । ଗୋଟିଏ ଦଳ ଯୁବକ ବା ପ୍ରୌଢ଼ ସାକ୍ଷର ହେବା ପରେ ପରବର୍ତ୍ତୀ ଦଳଙ୍କ ପାଇଁ ଅନ୍ୟ ଛାତ୍ର ନିୟୋଜିତ ହୋଇପାରନ୍ତି । ଯେ ଯେତେବେଳେ ଆସିଲେ ପଢ଼ିବେ ଏପରି ନ କରି କୌଣସି ଏକ ସମୟରେ ଗୋଟିଏ ଦଳ ନିରକ୍ଷରଙ୍କୁ ସାକ୍ଷର କରିବାର କାର୍ଯ୍ୟକ୍ରମ ହାତକୁ ନିଆଯାଇପାରେ । ଛଅମାସ ପରେ ନୂଆ ଦଳ ରାତ୍ରି ବିଦ୍ୟାଳୟରେ ଯୋଗ ଦେଇପାରନ୍ତି । ଏପରି ନ କଲେ ମିଳିତ ଭାବରେ କେତେଜଣ ନିରକ୍ଷରଙ୍କର ଦାୟିତ୍ୱ ଜଣେ ନେଇପାରିବ ନାହିଁ କାରଣ ସମସ୍ତଙ୍କର ପାଠ୍ୟ ବିଷୟର ଅଗ୍ରଗତି ଭିନ୍ନ ଭିନ୍ନ ।

ନିରକ୍ଷରତା ଦୂରୀକରଣ କାର୍ଯ୍ୟକ୍ରମ ହାତକୁ ନେଲେ ଗୋଟିଏ ବିଶେଷ ଅସୁବିଧାର ସମ୍ମୁଖୀନ ହେବାକୁ ହୁଏ । ତାହା ହେଲା ଶ୍ରେଣୀଗୃହ, ପାଠୋପକରଣ, ଶିକ୍ଷକସବୁ ଠିକ୍ ଥିଲାପରେ ମଧ୍ୟ ଉପଯୁକ୍ତ ସଂଖ୍ୟକ ନିରକ୍ଷରଙ୍କର ଉପସ୍ଥିତିର ଅଭାବ ହୁଏ । ଯେଉଁ ନିରକ୍ଷର

ଲୋକ ଜୀବନର ଅର୍ଦ୍ଧାଧିକକାଳ କଟାଇ ସାରିଲେଣି ସେମାନେ ନିରକ୍ଷରତା ଜନିତ ଅସୁବିଧାରେ ଏତେ ଅଭ୍ୟସ୍ତ ହୋଇଗଲେଣି ଯେ ସାକ୍ଷରତା ପ୍ରୟୋଜନତା ହୃଦୟଙ୍ଗମ କରିପାରନ୍ତି ନାହିଁ । ନିରକ୍ଷର ଲୋକମାନେ ସାଧାରଣତଃ ଦୈହିକ ପରିଶ୍ରମ କରୁଥିବା ଶ୍ରେଣୀର ବ୍ୟକ୍ତି ହୋଇଥିବାରୁ ଦିନର କଠିନ ପରିଶ୍ରମ ପରେ ଅନ୍ୟ କୌଣସି କାର୍ଯ୍ୟରେ ମନ ଦେବାକୁ ଧୈର୍ଯ୍ୟ ଓ ଆଗ୍ରହ ନ ଥାଏ । ତେଣୁ ଏଥିପାଇଁ ଆବଶ୍ୟକ ହେଉଛି ପ୍ରଚାର ମାଧ୍ୟମରେ ଲୋକମାନଙ୍କ ମନରେ ଆଗ୍ରହ ଓ ଉଦ୍ଦୀପନା ସୃଷ୍ଟି କରିବା । ବିଦ୍ୟାଳୟର ଛାତ୍ର ଓ ଶିକ୍ଷକମାନଙ୍କର ଏ ଦିଗରେ ମଧ୍ୟ ନିର୍ଦ୍ଦିଷ୍ଟ ଭୂମିକା ରହିଅଛି ।

କେବଳ ସାକ୍ଷର କରି ଲୋକମାନଙ୍କୁ ଛାଡ଼ିଦେଲେ ସେମାନେ ମାତ୍ର ଦୁଇତିନି ବର୍ଷ ପରେ ପୁଣି ସେହି ନିରକ୍ଷରରୁ ସେହି ନିରକ୍ଷର ହୋଇଯାଆନ୍ତି । ବିଦ୍ୟାଳୟରେ ପ୍ରଥମ ଓ ଦ୍ୱିତୀୟ ଶ୍ରେଣୀ ପର୍ଯ୍ୟନ୍ତ ପାଠପଢି ପଢ଼ା ଛାଡ଼ି ଦେଉଥିବା ପିଲାମାନଙ୍କର ମଧ୍ୟ ଏହି ଅବସ୍ଥା । ତେଣୁ ସାକ୍ଷର କରାଇବା ସଙ୍ଗେ ସଙ୍ଗେ ନବସାକ୍ଷରମାନଙ୍କୁ ସେମାନଙ୍କ ପାଇଁ ଉପଯୁକ୍ତ ବହିପତ୍ର ପଢ଼ିବାର ବ୍ୟବସ୍ଥା ହେବା ଦରକାର । ବିଦ୍ୟାଳୟ ନିଜର ପାଠାଗାର ମାଧ୍ୟମରେ ଏ ଦିଗରେ କିଛି ନ କଲେ ସାକ୍ଷର କରାଇବା କାର୍ଯ୍ୟକ୍ରମ ନିରର୍ଥକ ହୋଇଯିବ । ମୋଟଉପରେ ବିଦ୍ୟାଳୟ ଗୋଷ୍ଠୀର ପ୍ରାଣ କେନ୍ଦ୍ର ରୂପେ କାର୍ଯ୍ୟକରିବା ଉଚିତ ଏବଂ ଧୀରେ ଧୀରେ ପିଲାମାନଙ୍କର ବିଦ୍ୟାଳୟ ଲୋକମାନଙ୍କ ବିଦ୍ୟାଳୟ (People's School)ରେ ରୂପାନ୍ତରିତ ହେବା ଆବଶ୍ୟକ ।

## ପ୍ରୌଢ଼ଶିକ୍ଷା (Adult Education) କାର୍ଯ୍ୟକ୍ରମ

ବିଦ୍ୟାଳୟ ତରଫରୁ ବିଭିନ୍ନ ପ୍ରକାର ପ୍ରୌଢ଼ଶିକ୍ଷା କାର୍ଯ୍ୟକ୍ରମର ବ୍ୟବସ୍ଥା କରାଯାଇ-ପାରେ । ବିଦ୍ୟାଳୟ ଶିକ୍ଷାରେ ଅନେକ ପାଠ୍ୟକ୍ରମ ଅନ୍ତର୍ଭୁକ୍ତ ଯାହା ସମାଜର ଯେ କୌଣସି ବ୍ୟକ୍ତିଙ୍କ ପକ୍ଷେ ଜାଣିବା ଦରକାର । ଅନେକ ପାଠ୍ୟକ୍ରମ ବହିର୍ଭୂତ ବିଷୟ ସମ୍ବନ୍ଧରେ ମଧ୍ୟ ଛାତ୍ରମାନଙ୍କୁ ଅବହିତ କରାଯିବାର ଚେଷ୍ଟା କରାଯାଉଅଛି । ଦେଶରେ ଦୃଷ୍ଟିହୀନ ଲୋକଙ୍କ ସଂଖ୍ୟା ବୃଦ୍ଧି ପାଇଲେ କର୍ତ୍ତୃପକ୍ଷ ଭାବୁଅଛନ୍ତି ଯେ ଦୃଷ୍ଟିହୀନତା ନିରୋଧ ସମ୍ବନ୍ଧରେ ବିଦ୍ୟାଳୟ ସ୍ତରରୁ ଛାତ୍ରମାନେ ଜ୍ଞାନଲାଭ କରିବା ଉଚିତ । ଯାତାୟତ ନିୟମ ଲୋକମାନେ ଜାଣି ନ ଥିବାରୁ ଗମନାଗମନରେ ବହୁ ଅସୁବିଧା ହୁଏ । ତେଣୁ ଅନେକଙ୍କର ମତ ଯେ, ବିଦ୍ୟାଳୟରେ ଛାତ୍ରମାନଙ୍କୁ ଯାତାୟତ ନିୟମ (Traffic ruels) ଶିକ୍ଷା ଦିଆଯିବା ଉଚିତ । ବସନ୍ତ, ହଇଜା ପ୍ରଭୃତି ସଂକ୍ରାମକ ରୋଗର ନିରାକରଣ ତ ପାଠ୍ୟକ୍ରମର ଅନ୍ତର୍ଭୁକ୍ତ । ତଥାପି ସମସ୍ତ ସମୟରେ ରୋଗ ବିଶେଷଜ୍ଞମାନେ ଅସି ବିଦ୍ୟାଳୟରେ ଏ ସମ୍ବନ୍ଧରେ ବକ୍ତୃତା ଦିଅନ୍ତି । ମ୍ୟାଜିକ୍‌ଲଣ୍ଠନ ସାହାଯ୍ୟରେ ବିଭିନ୍ନ ଚିତ୍ର ଦେଖାଇ ବିଷୟଟି ହୃଦୟଗ୍ରାହୀ କରିବାକୁ ଚେଷ୍ଟା କରନ୍ତି । ତେଣୁ ଯେତେବେଳେ

ବିଦ୍ୟାଳୟରେ ଏହି ପ୍ରକାର ବକ୍ତୃତାର ଆୟୋଜନ କରାଯାଉଥିବ ସେତେବେଳେ ତାହା ଚତୁଃପାର୍ଶ୍ୱର ଲୋକମାନଙ୍କ ପାଇଁ ଉନ୍ମୁକ୍ତ ରହିବା ଉଚିତ । ବିଦ୍ୟାଳୟ ଏହି ପ୍ରକାର ଲୋକମାନଙ୍କୁ କେତେକ ଆବଶ୍ୟକ ତଥ୍ୟ ଯୋଗାଇବାରେ ବା କେତେକ ଅନ୍ଧ ବିଶ୍ୱାସ ଦୂର କରିବାରେ ସାହାଯ୍ୟ କରିପାରେ ।

ସମୟ ସମୟରେ ବିଜ୍ଞାନ ସଂସଦ ତଥା ଅନ୍ୟାନ୍ୟ ବିଭାଗ ଦ୍ୱାରା ଆୟୋଜିତ ପ୍ରଦର୍ଶନୀ ସର୍ବସାଧାରଣଙ୍କ ପାଇଁ ଉନ୍ମୁକ୍ତ ରଖାଗଲେ ତାହା ଲୋକମାନଙ୍କ ପକ୍ଷେ ବହୁ ଜ୍ଞାତବ୍ୟ ଓ ଶିକ୍ଷଣୀୟ ବିଷୟ ଜାଣିବାର ସହାୟକ ହେବ । ଗ୍ରାମ୍ୟ ପୁସ୍ତକାଗାର ସ୍ଥାପନ କରିବାରେ ବିଦ୍ୟାଳୟ ମଧ୍ୟ ଗ୍ରାମବାସୀମାନଙ୍କୁ ସାହାଯ୍ୟ କରିପାରିବ । ବିଦ୍ୟାଳୟ ମଧ୍ୟ ଏହାର ପାଠାଗାର ସର୍ବସାଧାରଣଙ୍କ ପାଇଁ ପ୍ରତିଦିନ ନିର୍ଦ୍ଦିଷ୍ଟ କେତେ ଘଣ୍ଟା ପର୍ଯ୍ୟନ୍ତ ଖୋଲି ରଖିପାରେ ଯଦ୍ୱାରା ଚତୁଃପାର୍ଶ୍ୱର ଆଗ୍ରହୀ ବ୍ୟକ୍ତିମାନେ ଆସି ପାଠାଗାରରେ ଦୈନିକ ଖବର କାଗଜ ପଢ଼ିପାରନ୍ତି ବା ରେଡ଼ିଓରୁ ସମ୍ବାଦ ଶୁଣିପାରନ୍ତି । ଯାହାହେଉ ଏଥିପାଇଁ ଉତ୍ତମ ସାଂଗଠନିକ ବ୍ୟବସ୍ଥା କରାଯିବା ଉଚିତ ଏବଂ କେତେକ ଗ୍ରନ୍ଥ ଓ ଶିକ୍ଷକଙ୍କୁ ନିର୍ଦ୍ଦିଷ୍ଟ ଦାୟିତ୍ୱ ଦିଆଯିବା ଉଚିତ । ତା ନ ହେଲେ କିଏ କେତେବେଳେ ଆସିବେ ବା ଯିବେ ଏ ସମ୍ବନ୍ଧରେ ବିଦ୍ୟାଳୟ ନିର୍ଦ୍ଦିଷ୍ଟଭାବରେ କୌଣସି ବିଷୟ ଅବଗତ ହୋଇପାରିବ ନାହିଁ ।

ପୁରସ୍କାର ବିତରଣ, ଅଭିଭାବକ ଦିବସ ଇତ୍ୟାଦି ଯେଉଁ ଉତ୍ସବରେ ବିଚିତ୍ର କାର୍ଯ୍ୟକ୍ରମ ପରିବେଷଣ କରାଯାଏ ସେସବୁ ଏପରି ମାର୍ଜିତ ଓ ଶିକ୍ଷଣୀୟ ହେବା ଆବଶ୍ୟକ ଯାହା ସାଧାରଣ ଲୋକମାନଙ୍କ ଉପରେ ପ୍ରଭାବ ପକାଇପାରିବ । ଆମୋଦ ପ୍ରମୋଦ ଲାଗି ଉଦ୍ଦିଷ୍ଟ କାର୍ଯ୍ୟକ୍ରମଗୁଡ଼ିକରେ ଶିକ୍ଷଣୀୟ ଉପାଦାନ ରହିବା ବାଞ୍ଛନୀୟ ।

## ସମବାୟ ଭଣ୍ଡାର

ସମବାୟ ଭିତ୍ତିରେ କିପରି ବିଭିନ୍ନ କାର୍ଯ୍ୟ କରାଯାଇପାରେ ତାହାର ଏକ ଆଦର୍ଶ ସ୍ୱରୂପ ବିଦ୍ୟାଳୟରେ ଗୋଟିଏ ସମବାୟ ଭଣ୍ଡାର ସ୍ଥାପିତ ହେବା ଉଚିତ ଓ ସୁପରିଚାଳିତ ହେବା ଆବଶ୍ୟକ । ବିଦ୍ୟାଳୟର ଏହି ଅଭିଜ୍ଞତା ବିଦ୍ୟାଳୟ ବାହାରକୁ ସଂପ୍ରସାରିତ ହୋଇପାରେ । ସମବାୟ ଭଣ୍ଡାର ପରିଚାଳନାରେ ଅଭିଜ୍ଞ ଶିକ୍ଷକମାନଙ୍କ ସହାୟତାରେ ଗ୍ରାମାଞ୍ଚଳରେ ସମବାୟ ଭଣ୍ଡାର ସ୍ଥାପନ କରାଯାଇପାରେ ।

## ସ୍ୱାସ୍ଥ୍ୟ ସଂକ୍ରାନ୍ତୀୟ କାର୍ଯ୍ୟକ୍ରମ

ବିଦ୍ୟାଳୟର ଚତୁଃପାର୍ଶ୍ୱର ପରିବେଷ୍ଟନୀ ସ୍ୱାସ୍ଥ୍ୟକର କରିବା ପାଇଁ ବିବିଧ କାର୍ଯ୍ୟକ୍ରମ ହାତକୁ ନିଆଯାଇପାରେ । ଅଳିଆ, ଆବର୍ଜନା ସଫାକରିବା, ଜଳ ପୋଖରୀ

ପରିଷ୍କାର କରିବା ଇତ୍ୟାଦି ବହୁ କାର୍ଯ୍ୟକ୍ରମରେ ଛାତ୍ରମାନେ ପ୍ରତ୍ୟକ୍ଷ ଅଂଶ ଗ୍ରହଣ କରି ଲୋକମାନଙ୍କ ସମ୍ମୁଖରେ ଆଦର୍ଶ ଉପସ୍ଥାପନା କରିପାରନ୍ତି । ଛାତ୍ରମାନେ ଯେତେ ସଫେଇ କଲେ ତାହା ଯେତେ ଗୁରୁତ୍ୱପୂର୍ଣ୍ଣ ନୁହେଁ ତାହାଠାରୁ ଅଧିକ ଗୁରୁତ୍ୱପୂର୍ଣ୍ଣ ହେଉଛି ସେମାନେ ଜନସାଧାରଣଙ୍କୁ ସ୍ୱାସ୍ଥ୍ୟରକ୍ଷା ବା ପରିଚ୍ଛନ୍ନତାର ଆବଶ୍ୟକତା ସମ୍ବନ୍ଧରେ କେତେଦୂର ଆଗ୍ରହୀ କରାଇପାରିଲେ । ଏବେ ମଧ୍ୟ ଏ ଦେଶରେ ବହୁ ଅଞ୍ଚଳରେ ହଇଜା, ବସନ୍ତ ସମ୍ବନ୍ଧରେ ସେହି ଠାକୁରାଣୀ ପୂଜା ଓ ପଣାପାଣିର ବ୍ୟବସ୍ଥା ରହିଅଛି । ବିଦ୍ୟାଳୟର ଛାତ୍ରମାନେ ଏହିପରି ସଂକ୍ରାମକ ରୋଗ ଲାଗିଥିବା ସମୟରେ ଗ୍ରାମବାସୀମାନଙ୍କୁ ଉପଯୁକ୍ତ ପ୍ରତିଷେଧକ ବ୍ୟବସ୍ଥା ସମ୍ବନ୍ଧରେ ସଚେତନ କରାଇପାରନ୍ତି, ସାହାଯ୍ୟ କରିପାରନ୍ତି ଏବଂ ଅଯଥା ଅନ୍ଧବିଶ୍ୱାସ ଦୂର କରାଇପାରନ୍ତି ।

## କୃଷି କାର୍ଯ୍ୟକ୍ରମ

ଗ୍ରାମର କୃଷକମାନଙ୍କୁ ଆଧୁନିକ କୃଷି ପଦ୍ଧତି ଅବଲମ୍ବନ କରିବାରେ ବିଦ୍ୟାଳୟ ମଧ୍ୟ କେତେକାଂଶରେ ସାହାଯ୍ୟ କରିପାରେ । କୃଷିପାଇଁ ଦରକାର ହେଉଥିବା ଉନ୍ନତ ବିହନ, ଖତ, ସାର ଆଦି କେଉଁଠାରୁ ଓ କିପରି ମିଳିବ ସେ ସମ୍ବନ୍ଧରେ ଆବଶ୍ୟକ ତଥ୍ୟ ବିଦ୍ୟାଳୟ ତରଫରୁ କୃଷକମାନଙ୍କୁ ଯୋଗାଇ ଦିଆଯାଇପାରେ । ଅବଶ୍ୟ ସରକାରଙ୍କର କୃଷି ବିଭାଗ ତରଫରୁ ଏ ଦିଗରେ ବହୁ ଉଦ୍ୟମ ହେଉଅଛି, ଯେପରି କୃଷି ସମ୍ବନ୍ଧୀୟ ବିଭିନ୍ନ ଜ୍ଞାତବ୍ୟ ବିଷୟ କୃଷକମାନଙ୍କ ମଧ୍ୟରେ ପହଞ୍ଚି ପାରିବ । ତଥାପି ସବୁଜ ବିପ୍ଳବର ସଫଳତା ଲାଗି ବିଦ୍ୟାଳୟ ମଧ୍ୟ କେତେକ ପଦକ୍ଷେପ ନେଇପାରେ । ସମ୍ଭବ ହେଲେ ବିଦ୍ୟାଳୟର କୃଷି କ୍ଷେତ୍ରରେ ବା ଗ୍ରେଟ ଗ୍ରେଟ ପଟାଳରେ ଆଧୁନିକ କୃଷି ପ୍ରଣାଳୀ ଅବଲମ୍ବନ କରି ଆଦର୍ଶ ପ୍ରଦର୍ଶନ କ୍ଷେତ୍ର ପାଇଁ ବ୍ୟବସ୍ଥା କରାଯାଇପାରେ । କହିବାଠାରୁ କାମରେ ଦେଖାଇଦେବା ଯେ କୌଣସି କ୍ଷେତ୍ରରେ ଅଧିକ ପ୍ରଭାବ ପକାଏ । ପୁଣି ବିଦ୍ୟାଳୟଗୁଡ଼ିକର ନିମ୍ନ ଶ୍ରେଣୀରେ କୃଷି ଏକ ପାଠ୍ୟ ବିଷୟ ରୂପେ ରହିଥିବାରୁ ଏବଂ କେତେକ ବିଦ୍ୟାଳୟର ଉଚ୍ଚ ମାଧ୍ୟମିକ ସ୍ତରରେ କୃଷି ଏକ ଇଚ୍ଛାଧୀନ ବିଷୟ ରୂପେ ରହିଥିବାରୁ ଆଦର୍ଶ କ୍ଷେତ୍ର ପ୍ରଦର୍ଶନ ଦ୍ୱାରା ଛାତ୍ରମାନଙ୍କ ଶିକ୍ଷାଲାଭ ବାସ୍ତବମୁଖୀ ହୋଇପାରିବ ।

## ଅନ୍ଧବିଶ୍ୱାସର ଦୂରୀକରଣ :

ସମାଜରେ ବିଭିନ୍ନ ସ୍ତରରେ ଯେପରି ସାମାଜିକ କୁସଂସ୍କାର ଓ ଅନ୍ଧବିଶ୍ୱାସ ରହିଅଛି ତାହାର ଦୂରୀକରଣ ଲାଗି ବିଦ୍ୟାଳୟ ତରଫରୁ ଉପଯୁକ୍ତ ଶିକ୍ଷା ଦିଆଯାଇ-ପାରେ । ପୂର୍ବରୁ ବିଭିନ୍ନ ରୋଗ ଓ ଅନ୍ଧବିଶ୍ୱାସ ସମ୍ବନ୍ଧରେ ଆଲୋଚିତ ହୋଇଅଛି । ସମାଜର ବିଭିନ୍ନ ସ୍ତରରେ ଯେଉଁସବୁ କୁସଂସ୍କାର ରହିଅଛି ତାହା ବିରୋଧରେ ମଧ୍ୟ

ଜନମତ ଜାଗ୍ରତ କରାଯାଇପାରେ । ଏବେ ମଧ୍ୟ ସମାଜରେ ଉଚ୍ଚ ନୀଚଭେଦ ପ୍ରଥା, ଛୁଆଁ ଅଛୁଆଁ ନୀତି ଓ ଅନ୍ୟାନ୍ୟ ଅନେକ କୁସଂସ୍କାର ରହିଅଛି ।

## କ୍ରୀଡ଼ା ଓ ଅବସର ବିନୋଦନ

ପୂର୍ବରୁ ଆଲୋଚିତ ହୋଇଅଛି ଯେ ବିଦ୍ୟାଳୟରେ ବିଭିନ୍ନ ପ୍ରକାର କ୍ରୀଡ଼ା ପ୍ରତି-ଯୋଗିତା ଆୟୋଜନ କରାଯାଇପାରେ ଏବଂ ବିଦ୍ୟାଳୟ ଚତୁଃପାର୍ଶ୍ୱରେ ବାସ କରୁଥିବା ବ୍ୟକ୍ତିମାନେ ସେଥିରେ ଅଂଶ ଗ୍ରହଣ କରିପାରନ୍ତି । ଗ୍ରାମାଞ୍ଚଳରେ କ୍ରୀଡ଼ା-କସରତର ଉନ୍ନତି ଲାଗି ଓ ବିଭିନ୍ନ ବୟସର ବ୍ୟକ୍ତିମାନଙ୍କର କ୍ରୀଡ଼ା ଏବଂ ଅଭ୍ୟାସରେ ପରିଣତ ହେବା ଲାଗି ବିଦ୍ୟାଳୟ ତରଫରୁ କେତେକ ନିର୍ଦ୍ଦିଷ୍ଟ ପଦକ୍ଷେପ ନିଆଯାଇପାରେ ।

## ସାମ୍ପ୍ରଦାୟିକ ଭେଦଭାବର ଦୂରୀକରଣ

ସାଂପ୍ରଦାୟିକ ଭେଦଭାବ ତଥା ଉଚ୍ଚ ନୀଚ ମନୋଭାବ ଦୂରୀକରଣ ଦିଗରେ ବିଦ୍ୟାଳୟର ଏକ ନିର୍ଦ୍ଦିଷ୍ଟ ଭୂମିକା ରହିଅଛି । ବିଦ୍ୟାଳୟରେ ସମସ୍ତ ସଂପ୍ରଦାୟର ଛାତ୍ର ଏକ ସଙ୍ଗେ ମିଳିମିଶି କାର୍ଯ୍ୟ କରିବା ଫଳରେ ବିଦ୍ୟାଳୟର ବାହାର ଜୀବନ ପ୍ରଭାବିତ ହୁଏ । ବିଦ୍ୟାଳୟରେ ମଧ୍ୟ ଏପରି କୌଣସି କାର୍ଯ୍ୟକ୍ରମ ରହିବା ଉଚିତ ନୁହେଁ ଯାହା ସାଂପ୍ରଦାୟିକ ତିକ୍ତତା ସୃଷ୍ଟି କରିବ ।

ବିଦ୍ୟାଳୟର ଛାତ୍ରମାନଙ୍କ ମଧ୍ୟରେ ଧନୀ, ନିର୍ଦ୍ଧନ, ଛୁଆଁ, ଅଛୁଆଁ ଭେଦଭାବ ଯେପରି ଆଦୌ ନ ରହେ ତାହା ଦେଖିବାର କଥା । ସମସ୍ତ ଛାତ୍ର ଏକ ପରିବାରର ସନ୍ତାନ ଭଳି ଚଳିବା ଆବଶ୍ୟକ, ନଚେତ୍ କେତେକ ଛାତ୍ରଙ୍କ ମନରେ ହୀନମନ୍ୟତା ଓ କେତେକଙ୍କ ମନରେ ଅଧିମନ୍ୟତା ଜାତ ହେବା ସ୍ୱାଭାବିକ । ଗଣତାନ୍ତ୍ରିକ ସମାଜରେ ଏହି ଉଭୟ ମନୋଭାବରୁ କୌଣସି ଗୋଟିଏ ମଧ୍ୟ ସ୍ପୃହଣୀୟ ନୁହେଁ ।

## ଶ୍ରମ ଶିବିର

ଏକ ସପ୍ତାହ ବା ତଦୂର୍ଦ୍ଧ୍ୱ କାଳପାଇଁ ହେଉଥିବା ଛୁଟିଗୁଡ଼ିକରେ ବିଦ୍ୟାଳୟ ତରଫରୁ ଶ୍ରମ ଶିବିର ସ୍ଥାପନା କରାଯାଇ ରାସ୍ତାଘାଟ ତିଆରି କରାଯାଇପାରେ । ଆଜିକାଲି ବହୁ ସମାଜ ସେବା ସଂସ୍ଥା ଓ ବିଭିନ୍ନ ବିଦ୍ୟାଳୟ, ମହାବିଦ୍ୟାଳୟ ଦ୍ୱାରା ଏହି ପ୍ରକାର ଶିବିର ପରିଚାଳନା କରାଯାଉଅଛି। ଛାତ୍ରମାନେ ଏକତ୍ରିତ ହୋଇ ଗୋଟିଏ ସ୍ଥାନରେ ବାସ କରି ଶ୍ରମଦାନ ଦ୍ୱାରା କୌଣସି ରାସ୍ତାଘାଟ ତିଆରି କରି ପାରିଲେ ସେମାନେ ଦୈହିକ ଶ୍ରମକୁ ଉପଯୁକ୍ତ ମର୍ଯ୍ୟାଦା ଦେବା ସଙ୍ଗେ ସଙ୍ଗେ ଗୋଷ୍ଠୀଗତ ଜୀବନ ଯାପନରେ ପ୍ରତ୍ୟକ୍ଷ

ଅନୁଭୂତି ଲାଭ କରିପାରିବେ ଏବଂ ଗ୍ରାମ ବା ସହରବାସୀଙ୍କୁ ସେମାନଙ୍କ ପରିଶ୍ରମରେ ନିର୍ମିତ ଗୋଟିଏ ରାସ୍ତା ଉପହାର ରୂପେ ଦେଇପାରିବେ । ତେବେ ଏହି କାର୍ଯ୍ୟକ୍ରମ କେବଳ ଛୁଟି ଦିବସରେ ରଖାଗଲେ ବିଦ୍ୟାଳୟର ସ୍ୱାଭାବିକ କାର୍ଯ୍ୟକ୍ରମ ବାଧାପ୍ରାପ୍ତ ହେବ ନାହିଁ ଏବଂ ଛୁଟି ଦିବସ ବା ଅବସର ଏକ ଉତ୍କୃଷ୍ଟ ଉପାୟରେ ଯାପିତ ହେବ । ଏଥିପାଇଁ ଏକ ସୁଚିନ୍ତିତ ପରିକଳ୍ପନା ଦରକାର ଯଦ୍ୱାରା ଛାତ୍ରମାନଙ୍କ ପାଇଁ ଆବଶ୍ୟକ ଉପକରଣ, ଖାଦ୍ୟପେୟ, ବାସସ୍ଥଳୀର କୌଣସି ଅସୁବିଧା ରହିବ ନାହିଁ । ଶ୍ରମ ଶିବିରର ସନ୍ଧ୍ୟାଗୁଡ଼ିକ ବିଭିନ୍ନ ସାଂସ୍କୃତିକ କାର୍ଯ୍ୟକ୍ରମ ଲାଗି ରଖାଯାଇପାରେ ଓ ଏଥିରେ ଛାତ୍ର, ଶିକ୍ଷକ, ଗ୍ରାମବାସୀ ବା ସହରବାସୀ ସମସ୍ତେ ଅଂଶ ଗ୍ରହଣ କରିପାରନ୍ତି ।

## କାରିଗରୀ ବିଦ୍ୟା ଓ କୁଟୀର ଶିଳ୍ପ

ପ୍ରାୟ ସମସ୍ତ ବିଦ୍ୟାଳୟରେ କୌଣସି ନା କୌଣସି କାରିଗରୀ ଶିକ୍ଷାଦାନର ବ୍ୟବସ୍ଥା ଅଛି ଓ ଏଥିପାଇଁ ସ୍ୱତନ୍ତ୍ର ତାଲିମପ୍ରାପ୍ତ ଶିକ୍ଷକ ମଧ୍ୟ ଅଛନ୍ତି । ଯଦି ଶିଳ୍ପ ଶିକ୍ଷାପାଇଁ ବ୍ୟବସ୍ଥା ରହିଥିବା ବିଦ୍ୟାଳୟରେ ନିକଟବର୍ତ୍ତୀ ଗ୍ରାମର କେତେକ ଯୁବକଙ୍କୁ ବିଦ୍ୟାଳୟର ସମସ୍ତ ନିର୍ଘଣ୍ଟ ବାହାରେ କିଛି ସମୟ ଲାଗି ଶିଳ୍ପ ଶିକ୍ଷା ଦିଆଯାଇପାରେ ତେବେ ଏହା କେତେକାଂଶରେ ବେକାର ସମସ୍ୟା ସମାଧାନରେ ସହାୟକ ହେବ । ଯେଉଁ ବିଦ୍ୟାଳୟରେ କାଷ୍ଠକାର୍ଯ୍ୟ, ବୟନଶିଳ୍ପ ଇତ୍ୟାଦି ଶିକ୍ଷାଦାନର ବ୍ୟବସ୍ଥା ଅଛି ସେଠାରେ ପାର୍ଶ୍ୱବର୍ତ୍ତୀ ଅଞ୍ଚଳର ଲୋକମାନଙ୍କୁ ଏ ଦିଗରେ ତାଲିମ ଦିଆଯାଇ ପାରିଲେ କେତେକ କୁଟୀରଶିଳ୍ପ ମଧ୍ୟ ଗଢ଼ିଉଠିବ । ଅନେକ ସ୍ଥାନରେ କୁଟୀରଶିଳ୍ପ ସ୍ଥାପନ ପାଇଁ ଆଗ୍ରହୀ ବ୍ୟକ୍ତି ବା ଆର୍ଥିକ ସ୍ୱଚ୍ଛଳତାର ଅଭାବ ନ ଥିଲେ ମଧ୍ୟ କେତେକ କାରିଗରୀ ତଥା ବୈଷୟିକ ବିଦ୍ୟାରେ ତାଲିମ୍ ଅଭାବରୁ ତାହା ସମ୍ଭବପର ହେଉନାହିଁ । ବିଦ୍ୟାଳୟ ଏ ଦିଗରେ କିଛି କରି ପାରିଲେ ସମାଜର ଏକ ବିରାଟ ଅଭାବ ପୂର୍ତ୍ତି କରିବା ଦିଗରେ ସହାୟକ ହେବ ।

ଏ ପର୍ଯ୍ୟନ୍ତ ଯେତେଗୁଡ଼ିଏ କାର୍ଯ୍ୟକ୍ରମର ସଂକ୍ଷିପ୍ତ ସୂଚନା ଦିଆଯାଇଅଛି ସେ ସମସ୍ତ କାର୍ଯ୍ୟ ଯେ କୌଣସି ବିଦ୍ୟାଳୟ ପକ୍ଷେ ଏକକାଳୀନ ହାତକୁ ନେବା କଷ୍ଟକର ବ୍ୟାପାର । ତେବେ ଏଥି ମଧ୍ୟରୁ କେତେକ କାର୍ଯ୍ୟକ୍ରମ ବିଦ୍ୟାଳୟରେ କାର୍ଯ୍ୟକାରୀ କରିଇ ବାହାର ଲୋକଙ୍କୁ ଅଂଶଗ୍ରହଣର ସୁଯୋଗ ଦିଆଯାଇ ପାରିବ, ମାତ୍ର ଅନ୍ୟଗୁଡ଼ିକ, ବିଦ୍ୟାଳୟର ବାହ୍ୟ ବାତାବରଣ ମଧ୍ୟରେ କାର୍ଯ୍ୟକାରୀ କରିଯାଇ ପାରିବ । ଯାହାହେଉ ଆଉ ଗୋଟିଏ ଦିଗପ୍ରତି ଆମ୍ଭେମାନେ ସଚେତନ ରହିବା ଆବଶ୍ୟକ; ତାହା ହେଉଛି ବିଦ୍ୟାଳୟ ଯେଉଁ ଗ୍ରାମ ବା ସହରରେ ଅବସ୍ଥିତ ସେଠାର ସ୍ଥାନୀୟ ସମସ୍ୟା ତଥା ସୁବିଧା ସୁଯୋଗ ଅନ୍ୟ ସ୍ଥାନ ଠାରୁ ଭିନ୍ନ । ଯେ କୌଣସି ଯୋଜନା ପ୍ରଣୟନ କଲାବେଳେ

ସ୍ଥାନୀୟ ସମସ୍ୟା ଆଖିଆଗରେ ରଖି ବିଧିବଦ୍ଧ କାର୍ଯ୍ୟପନ୍ଥା ସ୍ଥିର କରାଯିବା ଆବଶ୍ୟକ । ତେଣୁ ଗୋଟିଏ ବିଦ୍ୟାଳୟରେ ଯେଉଁ ଯେଉଁ କାର୍ଯ୍ୟକ୍ରମ ଗୋଷ୍ଠୀ ସମ୍ପର୍କ ସ୍ଥାପନ ଓ ଅଭିବୃଦ୍ଧିଲାଗି ଉଦ୍ଦିଷ୍ଟ ଅନ୍ୟ ଗୋଟିଏ ବିଦ୍ୟାଳୟରେ ସେଗୁଡିକର ଆବଶ୍ୟକତା ପାଇ ନ ପାରେ । ସମସ୍ତ ଦିଗରୁ ବିଚାର କରି ଏପରି ଯୋଜନା ପ୍ରଣୟନ କରାଯିବା ଆବଶ୍ୟକ ଯାହା ଉଭୟ ବିଦ୍ୟାଳୟ ଓ ଗୋଷ୍ଠୀ ପାଇଁ ପୂର୍ଣ୍ଣମାତ୍ରାରେ ଫଳପ୍ରଦ ହେବ, ନଚେତ୍ ଅର୍ଥବ୍ୟୟ ଓ ପରିଶ୍ରମ ଅନୁସାରେ ଆନୁପାତିକ ସୁଫଳ ମିଳି ନ ପାରେ ।

## ପ୍ରଶ୍ନାବଳୀ

୧ । ବିଦ୍ୟାଳୟ ଓ ଗୋଷ୍ଠୀ ମଧ୍ୟରେ ସୁସମ୍ପର୍କର ଆବଶ୍ୟକତା ସମ୍ବନ୍ଧରେ ଲେଖ ।

୨ । ନିରକ୍ଷରତା ଦୂରୀକରଣ ଦିଗରେ ବିଦ୍ୟାଳୟ ଏକ ମୁଖ୍ୟ ଭୂମିକା ଗ୍ରହଣ କରିପାରିବ ବୋଲି ସମସ୍ତେ ଏକମତ । ଏହି କାର୍ଯ୍ୟକ୍ରମ ଉପଯୁକ୍ତ ଭାବରେ କିପରି ସଙ୍ଗଠିତ ହୋଇପାରେ, ତାହା ଲେଖ ।

୩ । ଗୋଷ୍ଠୀ ସହ ଅଧିକ ସମ୍ପର୍କ ସ୍ଥାପନ ପାଇଁ ବିଦ୍ୟାଳୟ କେଉଁ କେଉଁ କାର୍ଯ୍ୟକ୍ରମ ହାତକୁ ନେଇପାରେ ସେ ସବୁର ଏକ ସଂକ୍ଷିପ୍ତ ବିବରଣୀ ଦିଅ ।

୪ । ଶ୍ରମ ଶିବିର ଦ୍ୱାରା କୌଣସି ଉଦ୍ଦେଶ୍ୟ ଯଥାର୍ଥରେ ସାଧିତ ହେଉଅଛି କି ? ନିଜର ମତାମତ ଦିଅ ।

୫ । ବିଦ୍ୟାଳୟ ପାଠ୍ୟକ୍ରମ ଓ ଗୋଷ୍ଠୀ ଉନ୍ନୟନ କାର୍ଯ୍ୟକ୍ରମ ମଧ୍ୟରେ କି ପ୍ରକାର ସମନ୍ୱୟ ସ୍ଥାପନ କରି ହେବ ତାହା ଆଲୋଚନା କର ।

# ପଞ୍ଚଦଶ ଅଧ୍ୟାୟ

## ପରୀକ୍ଷା, ବସ୍ତୁନିଷ୍ଠ ପରୀକ୍ଷଣ ଓ କ୍ରମପଞ୍ଜୀତ ବିବରଣୀ

ଏହି ପୁସ୍ତକର ପ୍ରଥମ ଭାଗରେ ଏକ ସ୍ୱତନ୍ତ୍ର ଅଧ୍ୟାୟରେ ପ୍ରଚଳିତ ପରୀକ୍ଷା ପଦ୍ଧତିର ତ୍ରୁଟି ତଥା ନୂତନ ମୂଲ୍ୟାୟନ ପଦ୍ଧତିର ଆବଶ୍ୟକତା ସମ୍ବନ୍ଧରେ ଆଲୋଚନା କରାଯାଇଅଛି । ଏଠାରେ ସେ ସବୁର ପୁନରାବୃତ୍ତି ନିଷ୍ପ୍ରୟୋଜନ । ବର୍ତ୍ତମାନ ବିଦ୍ୟାଳୟରେ ପ୍ରଚଳିତ ପରୀକ୍ଷା କି ପ୍ରକାର ପ୍ରଶ୍ନାବଳୀ ଦ୍ୱାରା ଉନ୍ନତ ହୋଇପାରିବ ତାହାହିଁ ଏଠାରେ ମୁଖ୍ୟତଃ ଆଲୋଚନା କରାଯିବ ।

### ପ୍ରଚଳିତ ପରୀକ୍ଷା ପଦ୍ଧତି

ବିଦ୍ୟାଳୟ ତଥା ମାଧ୍ୟମିକ ଶିକ୍ଷା ପରିଷଦରେ ଛାତ୍ରମାନଙ୍କ ପାଇଁ ବିଭିନ୍ନ ବିଷୟରେ ଯେଉଁ ପରୀକ୍ଷା କରାଯାଏ ତାହା ନିବନ୍ଧାତ୍ମକ ( Essay type ) । ଅବଶ୍ୟ କେତେକ ମାଧ୍ୟମିକ ଶିକ୍ଷାପରିଷଦ କୌଣସି କୌଣସି ବିଷୟରେ ଶତକଡ଼ା ଦଶ ପନ୍ଦର ଭାଗ ମାତ୍ର ବସ୍ତୁନିଷ୍ଠ ପ୍ରଶ୍ନ ପଚାରୁଛନ୍ତି । ବିଦ୍ୟାଳୟଗୁଡ଼ିକ ମଧ୍ୟ ସେହି ନୀତି ଅନୁସରଣ କରୁଛନ୍ତି । କୌଣସି ପରୀକ୍ଷାରେ ବସ୍ତୁନିଷ୍ଠ ପ୍ରଶ୍ନ ପକାଇବା ଓ ତାହା ଶତକଡ଼ା ଦଶ ପନ୍ଦର ଭାଗ ମଧ୍ୟରେ ସୀମିତ ରଖିବା ଏକ ପରସ୍ପର ବିରୋଧୀ କାର୍ଯ୍ୟକ୍ରମ । ବସ୍ତୁନିଷ୍ଠ ପ୍ରଶ୍ନ ପକାଇବା ଦ୍ୱାରା ପରୀକ୍ଷା ପଦ୍ଧତିର ତ୍ରୁଟି ସମ୍ବନ୍ଧରେ ସଚେତନ ହେବାର ଯେତିକି ସୂଚନା ମିଳେ ଏହି ପ୍ରକାର ପ୍ରଶ୍ନର ସ୍ୱଳ୍ପତାରୁ ସେତିକି ଆନ୍ତରିକତାର ଅଭାବ ବା ଅପାରଗତାର ସୂଚନା ମଧ୍ୟ ମିଳିଥାଏ । ଆଜି ସମସ୍ତେ ମୁକ୍ତକଣ୍ଠରେ ନିବନ୍ଧାତ୍ମକ ପରୀକ୍ଷାର ବ୍ୟକ୍ତିନିଷ୍ଠ ଉପାଦାନ (Subjective element) ବିଷୟଟି ସ୍ୱୀକାର କରିଅଛନ୍ତି ମାତ୍ର ପ୍ରଶ୍ନଗୁଡ଼ିକ ବସ୍ତୁନିଷ୍ଠ କରିବା ପାଇଁ ସାହସିକ ପଦକ୍ଷେପ ନେଉନାହାଁନ୍ତି । ଏହାର ମଧ୍ୟ କେତେକ କାରଣ ରହିଅଛି ।

ପ୍ରଥମତଃ ନିବନ୍ଧାତ୍ମକ ପରୀକ୍ଷାରେ ଶହ ଶହ ବର୍ଷର ପରମ୍ପରା ରହିଅଛି । ମୂଳରେ ଯିଏ ଯାହା କହିଲେ ମଧ୍ୟ ଶହ ଶହ ବର୍ଷର ପରମ୍ପରା ଭାଙ୍ଗିଦେବାକୁ ଅନେକେ ସାହସ କରିପାରୁ ନାହାନ୍ତି—ଏହା ଏକ ମାନସିକ ଭୟ । ଶିକ୍ଷା ବିଭାଗର ଯେଉଁ ବୟୋଜ୍ୟେଷ୍ଠ କର୍ମକର୍ତ୍ତାମାନଙ୍କ ଉପରେ ଶିକ୍ଷାର ବୈପ୍ଳବିକ ପରିବର୍ତ୍ତନ ଆଣିବା ନିର୍ଭର କରୁଅଛି ସେମାନେ ବସ୍ତୁନିଷ୍ଠ ପରୀକ୍ଷାର ସଫଳତା ସମ୍ବନ୍ଧରେ ସନ୍ଦିହାନ କାରଣ ସେମାନେ ନିଜେ ନିବନ୍ଧାତ୍ମକ ପରୀକ୍ଷାର ଉପାଧି ଧାରଣ କରିଅଛନ୍ତି ଏବଂ ସେହି ଉପାଧି ଉପରେ ସେମାନଙ୍କର ଅତୁଟ ଆସ୍ଥା ମଧ୍ୟ ରହିଅଛି । ଆଉ ଗୋଟିଏ ବିଷୟ ଆମକୁ ମୁକ୍ତ କଣ୍ଠରେ ସ୍ୱୀକାର କରିବାକୁ ହେବ ଯେ ଶିକ୍ଷା ସମ୍ବନ୍ଧୀୟ ନାନା ସଂସ୍କାର ଶିକ୍ଷକମାନଙ୍କର ଆନ୍ତରିକତାର ଅଭାବ ହେତୁ ସଫଳ ହେଉନାହିଁ; କାରଣ ଯେ କୌଣସି ନୂତନ ପଦ୍ଧତିର ପ୍ରଚଳନ ହେଲେ ଶିକ୍ଷକମାନଙ୍କୁ ହିଁ ଅଧିକ ପରିଶ୍ରମ କରିବାକୁ ପଡ଼ିବ ।

ଉପର୍ଯ୍ୟୁକ୍ତ ବିଷୟଗୁଡ଼ିକ ବ୍ୟତୀତ ଆମକୁ ମନେରଖିବାକୁ ହେବ ଯେ କେତେକ ବିଷୟର ମୂଲ୍ୟାୟନ ପାଇଁ ନିବନ୍ଧାତ୍ମକ ପରୀକ୍ଷା ଉପଯୁକ୍ତ । ପୂର୍ବବର୍ତ୍ତୀ ଅଧ୍ୟାୟରେ ବର୍ଣ୍ଣାଇ ଦିଆଯାଇଅଛି ଯେ, ଶିକ୍ଷାର ଲକ୍ଷ୍ୟ ଓ ମୂଲ୍ୟାୟନର ବ୍ୟବସ୍ଥା ଓତଃପ୍ରୋତ ଭାବରେ ଜଡ଼ିତ । ପାଠ୍ୟକ୍ରମର ଯେଉଁ ବିଷୟଗୁଡ଼ିକ ମାଧ୍ୟମରେ ପିଲାମାନଙ୍କର ଭାବବ୍ୟକ୍ତ କରିବା ଶକ୍ତିର ଉନ୍ନତ କରିବା ଲକ୍ଷ୍ୟ ତାହା ପରୀକ୍ଷା କରିବାକୁ ନିବନ୍ଧାତ୍ମକ ପ୍ରଶ୍ନ ଯେ ବସ୍ତୁନିଷ୍ଠ ପ୍ରଶ୍ନଠାରୁ ଅଧିକ ଉପଯୋଗୀ ଏଥିରେ ସନ୍ଦେହ ନାହିଁ । ତେଣୁ ନିବନ୍ଧାତ୍ମକ ପ୍ରଶ୍ନ ପୁରାପୁରି ଉଠାଇ ଦେଲେ ବା କେବଳ ବସ୍ତୁନିଷ୍ଠ ପ୍ରଶ୍ନଦ୍ୱାରା ପରୀକ୍ଷା କଲେ ଯେ ସମସ୍ୟାର ସମାଧାନ ହେବ ତାହା ନୁହେଁ । ଉଭୟ ପ୍ରକାର ପ୍ରଶ୍ନର ଉପଯୋଗିତା ରହିଅଛି; ମାତ୍ର ଆମେ କେବଳ ନିବନ୍ଧାତ୍ମକ ପରୀକ୍ଷା ଉପରେ ଗୁରୁତ୍ୱ ଦେଉଥିବାରୁ ସମୁଦାୟ ପରୀକ୍ଷା ପଦ୍ଧତି ଅତ୍ୟନ୍ତ ତ୍ରୁଟିପୂର୍ଣ୍ଣ ହୋଇଯାଇଅଛି । ବାସ୍ତବରେ ଶିକ୍ଷାର ଲକ୍ଷ୍ୟ କେତେଦୂର ସାଧିତ ହୋଇଅଛି ତାହା ଜାଣିବାକୁ ଲକ୍ଷ୍ୟନିଷ୍ଠ ପ୍ରଶ୍ନ (Objective test) ଦିଆଯିବା ଉଚିତ । ସେହି ଲକ୍ଷ୍ୟନିଷ୍ଠ ପ୍ରଶ୍ନ ନିବନ୍ଧାତ୍ମକ (Essay type) ବା ବସ୍ତୁନିଷ୍ଠ (Objective type) ହୋଇପାରେ । ସାଧାରଣତଃ ଲୋକମାନେ ଲକ୍ଷ୍ୟନିଷ୍ଠ ଓ ବସ୍ତୁନିଷ୍ଠ ପରୀକ୍ଷା (Objective test and objective type test)ର ଅର୍ଥ ସମାନ ବୋଲି ଭାବୁଥିବାରୁ ଏ କ୍ଷେତ୍ରରେ କେତେକ ଭ୍ରମ ଧାରଣା ସୃଷ୍ଟି ହୁଏ ।

### ଉନ୍ନତ ନିବନ୍ଧାତ୍ମକ ପ୍ରଶ୍ନ

ଯେ କୌଣସି ପରୀକ୍ଷା (Test)ର ଦୁଇଟି ଅତ୍ୟାବଶ୍ୟକ ଗୁଣ ହେଉଛି ବୈଧତା (Validity) ଓ ବିଶ୍ୱସ୍ତତା (Reliability) । ଏ ଦୁଇଟି ଗୁଣ ପରିସଂଖ୍ୟାନ ପଦ୍ଧତିରେ ମପାଯାଇପାରେ । ବୈଧତା ଓ ବିଶ୍ୱସ୍ତତା ମଧ୍ୟ ବିଭିନ୍ନ ପ୍ରକାରର । ଯାହାହେଉ

ଏଠାରେ ସେ ଦୁଇଟି ଗୁଣ ସମ୍ବନ୍ଧରେ ବିସ୍ତୃତ ଆଲୋଚନା କରିବା ସମ୍ଭବପର ନୁହେଁ । ତେବେ ଏ ଦୁଇଟି ଶବ୍ଦର ନିହିତ ଅର୍ଥ ସମ୍ବନ୍ଧରେ ସମ୍ୟକ୍ ସୂଚନା ଦିଆଯାଇପାରେ । ଗୋଟିଏ ପରୀକ୍ଷଣ ଦ୍ୱାରା ଆମେ ଯାହା ମାପ କରିବାକୁ ଚାହୁଁ ତାହାହିଁ ମାପ କରାଯାଇ ପାରିଲେ ପରୀକ୍ଷଣଟି ବୈଧ ବୋଲି ବିବେଚିତ ହୁଏ । ବର୍ତ୍ତମାନର ନିବନ୍ଧାତ୍ମକ ପରୀକ୍ଷା-ଗୁଡ଼ିକ କୌଣସି ନିର୍ଦ୍ଦିଷ୍ଟ ଶିକ୍ଷଣୀୟ ଲକ୍ଷ୍ୟ ମାପିବା ଉଦ୍ଦେଶ୍ୟରେ ଦିଆଯାଇ ନ ଥାଏ । ତେଣୁ ଆମେ ଉତ୍ତରଗୁଡ଼ିକର ଯେଉଁ ମାନ ନିର୍ଦ୍ଧାରଣ କରୁ ତାହା ଯେ କାହାର ମାନ ନିର୍ଦ୍ଧାରଣ କରେ ତାହା କହିବା କଷ୍ଟକର । ଉତ୍ତରଟିର ଭାଷା, ଭାବ, ହସ୍ତାକ୍ଷର, ବିଷୟବସ୍ତୁ ଇତ୍ୟାଦି ମଧ୍ୟରୁ କେଉଁ ଗୋଟିକର ମାନ ଯେ ଆମେ ନିର୍ଣ୍ଣୟ କରୁ ତାହା କହିହେବ ନାହିଁ । କେତେବେଳେ ଆମେ ଛାତ୍ରଟିର ଭାଷାରେ ମୁଗ୍ଧ ହୋଇ ବିଷୟବସ୍ତୁଟିର ଗୁରୁତ୍ୱ ବିଷୟ ସମ୍ପୂର୍ଣ୍ଣ ଭୁଲିଯାଉ । କେତେବେଳେ ଛାତ୍ରଟିର ଆକର୍ଷଣୀୟ ହସ୍ତାକ୍ଷର ଯୋଗେ ଆମ୍ଭେ ଅନ୍ୟାନ୍ୟ ଲକ୍ଷ୍ୟଗୁଡ଼ିକ ସମ୍ବନ୍ଧରେ ଉଦାସୀନ ରହୁ । ତେଣୁ କେଉଁ ଅନୁସାରେ ଯେ ପରୀକ୍ଷଣର ବୈଧତା ନିରୂପଣ ହେବ ତାହା ପରୀକ୍ଷକଙ୍କ ପାଇଁ ମଧ୍ୟ ଅସ୍ପଷ୍ଟ ।

ପରୀକ୍ଷା ସଙ୍ଗତ (Consistency) ହେଉଛି ବିଶ୍ୱସ୍ତତା । ଧରେ ଗୋଟିଏ ଶ୍ରେଣୀର ପିଲାମାନେ ପରୀକ୍ଷା ଦେଇ କୌଣସି ଏକ ପରୀକ୍ଷଣରେ ଯେଉଁ ନମ୍ବର ରଖିଲେ ଯଦି ସେମାନେ ପନ୍ଦର ଦିନ ବା ମାସେ ପରେ ସେହି ପରୀକ୍ଷା ଦେଇ ପ୍ରାୟ ସେତିକି ସେତିକି ନମ୍ବର ରଖି ପାରନ୍ତି ତେବେ ତାହା ପରୀକ୍ଷଣର ବିଶ୍ୱସ୍ତତା ସୂଚାଇଦିଏ । ନିବନ୍ଧାତ୍ମକ ପରୀକ୍ଷାରେ ଛାତ୍ରମାନେ ଥରେ ଯାହା ଲେଖିବେ କିଛିଦିନ ପରେ ଭିନ୍ନ ଦୃଷ୍ଟିକୋଣରୁ ସେହି ପରୀକ୍ଷଣର ପ୍ରଶ୍ନଗୁଡ଼ିକର ଭିନ୍ନ ପ୍ରକାର ଉତ୍ତର ଲେଖିବାର ସମ୍ଭାବନା ତ ଅଛି । କିନ୍ତୁ ଏହାଠାରୁ ଆହୁରି ଜଟିଳ ବିଷୟ ହେଉଛି ଯେ ଜଣେ ପରୀକ୍ଷକ ଥରେ ଗୋଟିଏ ଉତ୍ତର ଦେଖି ଯାହା ନମ୍ବର ଦେବେ ସେହି ଉତ୍ତରଟିକୁ ତାଙ୍କୁ ଆଉଥରେ ପରୀକ୍ଷା କରିବାକୁ ଦେଲେ ସେ ଭିନ୍ନ ନମ୍ବର ଦେବେ । ଭିନ୍ନ ଭିନ୍ନ ପରୀକ୍ଷକ ହେଲେ ମୂଲ୍ୟାୟନର ପାର୍ଥକ୍ୟ ସମସ୍ତ ସମୟରେ ଆଶାଗତ ହୋଇଥାଏ । ପରୀକ୍ଷା କରି ଦେଖାଯାଇଅଛି ଯେ ଗୋଟିଏ ଛାତ୍ରର ପରୀକ୍ଷା ଖାତାର ଅବିକଳ ନକଲ କରାଇ ଏକ ଶହ ପରୀକ୍ଷା ଖାତା କରି ସେସବୁ ଏକଶହ ପ୍ରତିଷ୍ଠିତ ପରୀକ୍ଷକଙ୍କୁ ଦିଆଯିବାରେ କେହି କେହି ସେହି ଏକା ଉତ୍ତର ପାଇଁ ଶତକଡ଼ା ସତାଇଶ ନମ୍ବର ଦେବାସ୍ଥଳେ କେହି କେହି ଶତକଡ଼ା ପଞ୍ଚାଅଣୀ ନମ୍ବର ଦେଲେ । ଏ କ୍ଷେତ୍ରରେ ମୂଲ୍ୟାୟନ ପାଇଁ ସମସ୍ତ ପରୀକ୍ଷକଙ୍କୁ ଏକ ପ୍ରକାର ନିର୍ଦ୍ଦେଶ ମଧ୍ୟ ଦିଆଯାଇଥିଲା । ବହୁ ବିଶ୍ୱବିଦ୍ୟାଳୟରେ ସ୍ନାତକୋତ୍ତର ଉପାଧିପାଇଁ ହେଉଥିବା ପରୀକ୍ଷାର ଉତ୍ତର ଖାତାଗୁଡ଼ିକ ଦୁଇଜଣ ପରୀକ୍ଷକଙ୍କ ଦ୍ୱାରା ମୂଲ୍ୟାୟନ କରାଯାଏ । ଅଧିକାଂଶ କ୍ଷେତ୍ରରେ ଏହି ଦୁଇଜଣ ପରୀକ୍ଷକଙ୍କ ଦ୍ୱାରାପ୍ରଦତ୍ତ ନମ୍ବର ଭିନ୍ନ ଭିନ୍ନ ହେବା ଏକ ସାଧାରଣ କଥା ।

ଥରେ ଥରେ ଦୁଇ ପରୀକ୍ଷକଙ୍କର ପ୍ରଦତ୍ତ ନମ୍ବର ମଧ୍ୟରେ ଏତେ ପାର୍ଥକ୍ୟ ଥାଏ ଯେ ତୃତୀୟ ପରୀକ୍ଷକ ଖାତା ଦେଖି ଶେଷ ସିଦ୍ଧାନ୍ତ ଗ୍ରହଣ କରନ୍ତି । ତେଣୁ ପ୍ରଚଳିତ ନିବନ୍ଧାତ୍ମକ ପରୀକ୍ଷାର ବିଶ୍ୱସ୍ତତା ଆଦୌ ନାହିଁ କହିଲେ ଚଳେ ।

ନିବନ୍ଧାତ୍ମକ ପରୀକ୍ଷାର ଉନ୍ନତିଲାଗି ବିଭିନ୍ନ ପଦକ୍ଷେପ ନିଆଯାଇପାରେ । ପ୍ରଥମତଃ, ପ୍ରଶ୍ନଗୁଡ଼ିକ ସୁନିର୍ଦ୍ଦିଷ୍ଟ ଲକ୍ଷ୍ୟ ଉପରେ ପର୍ଯ୍ୟବସିତ ହେବା ଦରକାର, ନଚେତ୍ ପରୀକ୍ଷଣର ବୈଧତା ରହିବ ନାହିଁ । ପ୍ରଶ୍ନଗୁଡ଼ିକର ଭାଷା ଏପରି ହେବା ଉଚିତ ଯେ ପରୀକ୍ଷକ ଠିକ୍ କ'ଣ ଚାହୁଁଛନ୍ତି ତାହା ଛାତ୍ର ପକ୍ଷେ ବୁଝିବା କଷ୍ଟକର ହେବ ନାହିଁ । ''ଯାହା ଜାଣ ଲେଖ'' ଇତ୍ୟାଦି ଶବ୍ଦଗୁଡ଼ିକ ପ୍ରଶ୍ନପତ୍ରରେ ସ୍ଥାନ ପାଇବା ଉଚିତ ନୁହେଁ । ପରୀକ୍ଷକ ଠିକ୍ କ'ଣ ଜାଣିବାକୁ ଚାହୁଁଛନ୍ତି ତାହା ସୂଚିତ ହେବା ଆବଶ୍ୟକ । "ଆକବରଙ୍କ ସମ୍ବନ୍ଧରେ ଯାହା ଜାଣ ଲେଖ'' ପ୍ରଶ୍ନ ନ କରି ଆକବରଙ୍କ ରାଜପୁତମାନଙ୍କ ସହ ସମ୍ପର୍କ ବା ଆକବରଙ୍କ ରାଜ୍ୟବିସ୍ତାର ସମ୍ବନ୍ଧୀୟ ନିର୍ଦ୍ଦିଷ୍ଟ . ପ୍ରଶ୍ନ ପଚରାଯିବା ଉଚିତ । ସେହିପରି ବିଜ୍ଞାନରେ ଖରଜଳ ସମ୍ବନ୍ଧରେ ଯାହା ଜାଣ ଲେଖ'' ନ ପଚାରି ''ଖରଜଳ କାହାକୁ କହନ୍ତି, ଏହା କେତେ ପ୍ରକାରର ଏବଂ ଜଳର ସ୍ଥାୟୀ ଖରତ୍ୱ କେଉଁ ପ୍ରକାରରେ ଦୂର କରାଯାଇପାରେ'' ଏହି ପ୍ରକାରର ପ୍ରଶ୍ନ ପଚରା ଯାଇପାରେ । ଏଥିପାଇଁ ବରଂ ଗୋଟିଏ ନିବନ୍ଧାତ୍ମକ ପ୍ରଶ୍ନ ପରିବର୍ତ୍ତେ ଦୁଇ ତିନିଗୋଟି ପ୍ରଶ୍ନ ଦିଆଯାଇପାରେ ଯେଉଁଗୁଡ଼ିକର ଉତ୍ତର ସଂକ୍ଷିପ୍ତ ହେବ ।

ନିବନ୍ଧାତ୍ମକ ପ୍ରଶ୍ନଗୁଡ଼ିକର ମୂଲ୍ୟାୟନ କରିବା ସମୟରେ ପ୍ରଶ୍ନରେ ଯାହା ପଚରା ଯାଇଅଛି କେବଳ ତାହାର ଉପରେ ଗୁରୁତ୍ୱ ଦିଆଯିବା ଉଚିତ । ଯଦି ବିଜ୍ଞାନ ପ୍ରଶ୍ନଟି ଅମ୍ଳଜାନର ଧର୍ମ ସମ୍ବନ୍ଧରେ ହୋଇଥାଏ ତେବେ ପରୀକ୍ଷାର୍ଥୀ ଧର୍ମ ସମ୍ବନ୍ଧରେ ଯେତେଗୁଡ଼ିଏ ବିଷୟ ଲେଖିଅଛି ତାହାରି ଉପରେ ଗୁରୁତ୍ୱ ଦିଆଯିବା ଉଚିତ । ଛାତ୍ରର ଭାଷା, ହସ୍ତାକ୍ଷର ଆଦି ମୂଲ୍ୟାୟନ ପଦ୍ଧତିକୁ ଆଦୌ ପ୍ରଭାବିତ କରିବା ଉଚିତ ନୁହେଁ । ଛାତ୍ରର ଭାଷା ହସ୍ତାକ୍ଷର ଆଦିର ମୂଲ୍ୟାୟନ ସ୍ୱତନ୍ତ୍ର ପରୀକ୍ଷଣ ଦ୍ୱାରା କରାଯାଇପାରେ । ତେଣୁ ପରୀକ୍ଷାରେ ପ୍ରଶ୍ନଗୁଡ଼ିକ ଦେବା ପୂର୍ବରୁ ପ୍ରତ୍ୟେକ ପ୍ରଶ୍ନର ଗୋଟିଏ ଗୋଟିଏ ଆଦର୍ଶ ଉତ୍ତର (model answer) ପ୍ରସ୍ତୁତ କରାଇବା ଉଚିତ ଓ ସେହି ଅନୁସାରେ ଠିକ୍ କେଉଁ ବିଷୟଟି ଉତ୍ତରରେ ଅନ୍ତର୍ଭୁକ୍ତ ହୋଇଗଲେ କେତେ ନମ୍ବର ମିଳିବା ଉଚିତ ତାହା ନିର୍ଦ୍ଧାରିତ ହୋଇଯିବା ଆବଶ୍ୟକ । ତାହାହେଲେ ବ୍ୟକ୍ତିନିଷ୍ଠତା (Subjectivity) ଅନେକାଂଶରେ ହ୍ରାସ ପାଇବ, ପରୀକ୍ଷଣରେ ବିଶ୍ୱସ୍ତତା ମଧ୍ୟ ବୃଦ୍ଧି ପାଇବ ।

ପରୀକ୍ଷଣ ମାଧ୍ୟମରେ ଛାତ୍ରର ଅବଗତି (Information) ବା ପ୍ରୟୋଗ ଜ୍ଞାନର ମୂଲ୍ୟାୟନ କରିବାର ଲକ୍ଷ୍ୟ ଥିଲେ ସେ କ୍ଷେତ୍ରରେ ନିବନ୍ଧାତ୍ମକ ପ୍ରଶ୍ନ ଆବଶ୍ୟକ ।

ହୋଇ ନ ପାରେ । ଗଣିତ, ଭୂଗୋଳ, ବିଜ୍ଞାନ ପ୍ରଭୃତି ବିଷୟର ଜ୍ଞାନ ଉପରେ ସାଧାରଣତଃ ଗୁରୁତ୍ୱ ଆରୋପ କରାଯାଏ, ଭାଷା ଉପରେ ନୁହେଁ । ତେଣୁ ଏହି ବିଷୟଗୁଡ଼ିକ ବସ୍ତୁନିଷ୍ଠ ପ୍ରଶ୍ନଦ୍ୱାରା ପରୀକ୍ଷିତ ହେଲେ ନିବନ୍ଧାତ୍ମକ ପ୍ରଶ୍ନର ଦୋଷ ଦୁର୍ବଳତା କୌଣସି ପ୍ରଭାବ ପକାଇ ପାରିବ ନାହିଁ । ବସ୍ତୁନିଷ୍ଠ ପ୍ରଶ୍ନ ତିଆରି କରିବା ପାଇଁ ଅନେକ ଗୁଡ଼ିଏ ନିର୍ଦ୍ଦିଷ୍ଟ ନୀତି ନିୟମ ଅନୁସରଣ କରିବାକୁ ହୁଏ । ତେଣୁ ଏହି ପ୍ରକାର ପ୍ରଶ୍ନ ତିଆରି କରିବା ସମୟ ସାପେକ୍ଷ । ବସ୍ତୁନିଷ୍ଠ ପରୀକ୍ଷଣ ପାଇଁ ବିଭିନ୍ନ ପ୍ରକାର ପ୍ରଶ୍ନ ପ୍ରସ୍ତୁତ କରିବାର ନିୟମମାନ ନିମ୍ନରେ ପ୍ରଦତ୍ତ ହେଲା ।

## ବସ୍ତୁନିଷ୍ଠ ପରୀକ୍ଷଣ (Objective type test)

ବସ୍ତୁନିଷ୍ଠ ପରୀକ୍ଷଣ ବିଭିନ୍ନ ପ୍ରକାରର ହୋଇଥାଏ । ସେ ସବୁ ମଧ୍ୟ ସ୍ମରଣ (Recall), ବିକଳ୍ପ ଅନୁକ୍ରିୟା (Alternative response) ବହୁବରଣୀୟ (Multiple choice), ମେଳକ (Matching), ବିଷୟକ ପରୀକ୍ଷା ପ୍ରଧାନ । ଏତଦ୍‌ବ୍ୟତୀତ ଅନ୍ୟାନ୍ୟ କେତେ ପ୍ରକାର ବସ୍ତୁନିଷ୍ଠ ପରୀକ୍ଷଣ ମଧ୍ୟ ଅଛି ।

## ସ୍ମରଣବିଷୟକ ପରୀକ୍ଷଣ

ସ୍ମରଣ ବିଷୟକ ପରୀକ୍ଷଣ କେହି କେହି ଅବାଧ ଅନୁକ୍ରିୟା ପରୀକ୍ଷଣ (Free Response Test) ବୋଲି କହିଥାନ୍ତି । ଏହି ପ୍ରକାର ପରୀକ୍ଷଣରେ ପ୍ରଶ୍ନଗୁଡ଼ିକ ସିଧାସଳଖ ପଚରା ଯାଇଥାଏ । ଏହି ପ୍ରକାର ପ୍ରଶ୍ନଲାଗି ଗ୍ରହିତାକୁ ତାହାର ଅନୁକ୍ରିୟା (Response) ସାଧାରଣତଃ ଗୋଟିଏ ଶବ୍ଦରେ ବା ଗୋଟିଏ ସଂଖ୍ୟାରେ ବା ଖୁବ୍ ବେଶୀ ବାକ୍ୟାଂଶରେ (Phrase) ପ୍ରକାଶ କରିବାକୁ ପଡେ । ଅନ୍ୟାନ୍ୟ ବସ୍ତୁନିଷ୍ଠ ପରୀକ୍ଷଣ ପରି ଗ୍ରହିତାକୁ ଏଠାରେ ଉପସ୍ଥାପନା କରାଯାଇଥିବା ବିଭିନ୍ନ ଉତ୍ତର ମଧ୍ୟରୁ ଗୋଟିକୁ ବାଛିବାକୁ ପଡ଼େ ନାହିଁ । ଉତ୍ତର ଏଠାରେ ସ୍ମରଣ କରିବାକୁ ପଡ଼େ ଅର୍ଥାତ୍ ଯେ କୌଣସି ଅନୁକ୍ରିୟା ପାଇଁ ସେ ମୁକ୍ତ ।

## ସୁବିଧା ଓ ସୀମାବଦ୍ଧତା (Advantages and Limitations)

ଏହି ପ୍ରକାର ପରୀକ୍ଷଣର ପ୍ରଶ୍ନଗୁଡ଼ିକ ସହଜ ସମସ୍ତେ ଅଭ୍ୟସ୍ତ । ତେଣୁ ଏହାର ଏକ ପ୍ରାକୃତିକତା (Naturalness) ରହିଅଛି । ଏ ପ୍ରକାର ପ୍ରଶ୍ନପାଇଁ ଅନୁମାନ (Guess କରି କୌଣସି ଉତ୍ତର ଦେବା ସମ୍ଭବପର ନୁହେଁ, କାରଣ ପିଲାଟି ଉତ୍ତର ପାଇଁ ଯେତେ କଥା ଭାବିପାରେ ସେଗୁଡ଼ିକ ମଧ୍ୟରୁ ବାଛି ଗୋଟିଏ ଉତ୍ତର ଦିଏ । ଯେ କୌଣସି ବିଷୟର

ପରୀକ୍ଷା ପାଇଁ ଏହି ପ୍ରକାର ପ୍ରଶ୍ନ ପଚରା ଯାଇପାରେ । ଗଣିତ ଓ ବିଜ୍ଞାନରେ କେତେକ ପ୍ରଶ୍ନ ପଚରା ଯାଇପାରେ ଯାହାର ଉତ୍ତର ଦେବାଲାଗି ଛାତ୍ରଟିକୁ ମନେ ମନେ କେତେକ ଗଣନା କରିବାକୁ ପଡ଼ିପାରେ । ବିଭିନ୍ନ ପ୍ରକାର ମାନଚିତ୍ର ଓ ଗ୍ରାଫରେ ଅନେକ ଅଂଶ କେବଳ ସଂଖ୍ୟାଦ୍ୱାରା ଚିହ୍ନିତ କରି ସେହି ଚିହ୍ନିତ ସ୍ଥାନ ସମ୍ବନ୍ଧରେ ନିର୍ଦ୍ଦିଷ୍ଟ ପ୍ରଶ୍ନ ପଚରା ଯାଇପାରେ ।

ଏହି ପ୍ରକାର ପ୍ରଶ୍ନର ଏକ ପ୍ରଧାନ ଦୁର୍ବଳତା ହେଉଅଛି ଯେ ଏହା କେବଳ ବିଭିନ୍ନ ଘଟଣା ବା ତଥ୍ୟ ସମ୍ବନ୍ଧୀୟ ଜ୍ଞାନ (Factual Knowledge) ମାପ କରିପାରେ; ତେଣୁ ବିଭିନ୍ନ ବିଷୟ ମନେରଖିବା ଉପରେ ଗୁରୁତ୍ୱ ଆରୋପ କରେ । ବିଭିନ୍ନ ବିଷୟ ମନେରଖିବା ଅବାଞ୍ଛନୀୟ ନୁହେଁ । ମାତ୍ର ଏଠୁ ସେଠୁ ସମ୍ପର୍କ ବିହୀନ ତଥ୍ୟ ସମ୍ବନ୍ଧରେ ପ୍ରଶ୍ନ ପଚାରିବା ଦ୍ୱାରା ଛାତ୍ରର ବୁଝିପାରିବା ଶକ୍ତି ବା ଅନ୍ୟ କୌଣସି ମାନସିକ ପ୍ରକ୍ରିୟା ସମ୍ବନ୍ଧରେ କିଛି ଜଣାଯାଏ ନାହିଁ । ଏହି ଦିଗପ୍ରତି ଦୃଷ୍ଟିରଖି ସାବଧାନତା ସହ ପ୍ରଶ୍ନଗୁଡ଼ିକ ପ୍ରସ୍ତୁତ ହେବା ଉଚିତ ।

**ନିୟମାବଳୀ**

(୧) ଏପରି ଶବ୍ଦଦ୍ୱାରା ପ୍ରଶ୍ନଟି ଗଠିତ ହେବା ଉଚିତ ଯାହାର ମାତ୍ର ଗୋଟିଏ ଠିକ୍ ଉତ୍ତର ଥିବ; ଉଦାହରଣସ୍ୱରୂପ "ଆଉରଙ୍ଗଜେବଙ୍କ କେଉଁ ନୀତି ମୋଗଲ ସାମ୍ରାଜ୍ୟ ପତନର କାରଣ ହୋଇଥିଲା ?" ଏହି ପ୍ରଶ୍ନର କୌଣସି ନିର୍ଦ୍ଦିଷ୍ଟ ଉତ୍ତର ପାଇବା ସମ୍ଭବ ନୁହେଁ । ଆଉରଙ୍ଗଜେବଙ୍କର ଧର୍ମାନ୍ଧତା, ଦାକ୍ଷିଣାତ୍ୟ ନୀତି, ଶିଖମାନଙ୍କ ସହ ସମ୍ପର୍କ, ଦୀର୍ଘକାଳ ଲାଗି ରାଜଧାନୀରୁ ଅନୁପସ୍ଥିତି ଇତ୍ୟାଦି ବିଭିନ୍ନ ବିଷୟ ଏଥିପାଇଁ ଦାୟୀ । ଅନ୍ୟ ଗୋଟିଏ ଉଦାହରଣ—"ଅମ୍ଳଜାନ ତିଆରି କରିବା ପାଇଁ କେଉଁ ଦୁଇଟି ରାସାୟନିକ ପଦାର୍ଥ ଦରକାର ?" ଏହି ପ୍ରଶ୍ନର ବିଭିନ୍ନ ଉତ୍ତର ହୋଇପାରେ; ମାତ୍ର ଯଦି ପ୍ରଶ୍ନଟି ଟିକିଏ ପରିମାର୍ଜିତ ହୋଇ ବିଜ୍ଞାନାଗାରରେ ଅମ୍ଳଜାନ ପ୍ରସ୍ତୁତ କରିବା ପାଇଁ କେଉଁ ଦୁଇଟି ରାସାୟନିକ ପଦାର୍ଥ ଦରକାର ବୋଲି ପଚରାଯାଆନ୍ତା ତେବେ ମାତ୍ର ଦୁଇଟି ରାସାୟନିକ ପଦାର୍ଥ "ପଟାସିୟମ କ୍ଲୋରେଟ ଓ ମାଙ୍ଗାନିଜ ଡାଇଅକ୍ସାଇଡ" ଠିକ ଉତ୍ତର ରୂପେ ମିଳନ୍ତା । ଆଉ ଗୋଟିଏ ପ୍ରଶ୍ନ ବିଚାର କରାଯାଉ । ପ୍ରଶ୍ନଟି ହେଉଅଛି "ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ କିଏ ?"—ଉତ୍ତରରେ ବିଭିନ୍ନ ଛାତ୍ର ବିଭିନ୍ନ ପ୍ରକାର ଉତ୍ତର ଲେଖିଲେ ; ଯଥା—ସ୍ୱର୍ଗୀୟ ପଣ୍ଡିତ ଜବାହାରଲାଲ ନେହେରୁ, ପଣ୍ଡିତ ନେହରୁ, ଜବାହାରଲାଲ ନେହରୁ, ଜବାହାରଲାଲ, ନେହେରୁ ଇତ୍ୟାଦି । ଏହି ଛାତ୍ରମାନେ ସେହି ଗୋଟିଏ ବ୍ୟକ୍ତିଙ୍କ ନାମ ବିଭିନ୍ନ ପ୍ରକାରରେ ପ୍ରକାଶ କରିଅଛନ୍ତି । ମାତ୍ର ସମସ୍ତ ସମୟରେ କୌଣସି ପରୀକ୍ଷକ ଛାତ୍ରଟି ପୂର୍ଣ୍ଣନାମ ଲେଖି ନ ଥିବା ହେତୁ ଶେଷୋକ୍ତ ଉତ୍ତରଗୁଡ଼ିକ ପାଇଁ ନମ୍ବର ଦେଇ ନ ପାରନ୍ତି ଯଦିଚ ପିଲାଟି ଠିକ୍ ବୁଝିଛି ପ୍ରଥମ ପ୍ରଧାନ

ମନ୍ତ୍ରୀ କିଏ । ତେଣୁ ଏପରି କୌଣସି ପ୍ରଶ୍ନ ଦିଆଯିବା ଉଚିତ ନୁହେଁ ଯାହାର ଉତ୍ତର ବିବାଦାସ୍ପଦ ହେବ । ଯଦି ଗ୍ରନ୍ଥ ପକ୍ଷେ ଏହି ବିଷୟଟି ଜାଣିବା ଅତ୍ୟାବଶ୍ୟକ ବୋଲି ମନେ ହେଉଥାଏ ତେବେ ଅନ୍ୟ କୌଣସି ପ୍ରକାର ପ୍ରଶ୍ନଦ୍ୱାରା ତାହା ଜାଣିହେବ ।

(୨) ପ୍ରଶ୍ନଗୁଡ଼ିକ ଏପରି ଭାବରେ ଗଠିତ ହେବା ଉଚିତ ଯାହାର ଉତ୍ତର ପାଇଁ ଗୋଟିଏ ଶବ୍ଦ ବା ସଂଖ୍ୟା ବା ଖୁବ୍ ବେଶୀ ଗୋଟିଏ ବାକ୍ୟାଂଶ ଯଥେଷ୍ଟ ହେବ । ଏହା ଦ୍ୱାରା ଉତ୍ତରଗୁଡ଼ିକ ସଂଶୋଧନ କରିବା ସହଜ ହେବ ଓ ବସ୍ତୁନିଷ୍ଠତା ବଜାୟ ରହିହେବ ।

(୩) ପାଠ୍ୟପୁସ୍ତକରେ ଦିଆଯାଇଥିବା ବାକ୍ୟଗୁଡ଼ିକ ଅବିକଳ ଉଦ୍ଧାର କରି ପ୍ରଶ୍ନ ତିଆରି କରିବା ଉଚିତ ନୁହେଁ । ଏହା କରାଗଲେ ପିଲାମାନେ ଘୋଷି ମନେ ରଖିବାକୁ ଉତ୍ସାହିତ ହେବେ ।

(୪) ପ୍ରଶ୍ନଗୁଡ଼ିକ ସିଧାସଳଖ ପଚରାଯିବା ଉଚିତ । ଯେପରି—"ଚକ୍ଷୁନାଗାରରେ ଅମ୍ଳଜାନ ପ୍ରସ୍ତୁତ କଲାବେଳେ କେଉଁ ରାସାୟନିକ ପଦାର୍ଥଟି ଅନୁଘଟକ ରୂପେ କାର୍ଯ୍ୟକରେ ?"

ଏପରି ପ୍ରଶ୍ନ ପଚରାଯିବା ଉଚିତ ନୁହେଁ—ଯେପରି ଚକ୍ଷୁନାଗାରର ଅମ୍ଳଜାନ ପ୍ରସ୍ତୁତ କଲାବେଳେ ଅନୁଘଟକ ରୂପେ କାର୍ଯ୍ୟ କରୁଥିବା ରାସାୟନିକ ପଦାର୍ଥଟି ହେଉଛି—

(୫) ପ୍ରତ୍ୟେକ ପ୍ରଶ୍ନ ଶେଷରେ ଉତ୍ତରଗୁଡ଼ିକ ଲେଖିବା ପାଇଁ ସ୍ଥାନ ଏପରି ଭାବରେ ରହିବା ଉଚିତ ଯେପରି ଉତ୍ତରଗୁଡ଼ିକ ଗୋଟିଏ ସ୍ତମ୍ଭ ଆକାରରେ ରହିବ ।

## ପୂର୍ତ୍ତିବିଷୟକ ପରୀକ୍ଷଣ (Completion Tests)

ପୂର୍ତ୍ତିବିଷୟକ ପ୍ରଶ୍ନ ହେଉଅଛି ଏକ ବିଶେଷ ଧରଣର ସ୍ୱତଃ ଅନୁସ୍ମୃତି ବିଷୟକ ପ୍ରଶ୍ନ । ଏହି ପ୍ରକାର ପ୍ରଶ୍ନରେ ଗୋଟିଏ ଗୋଟିଏ ବାକ୍ୟ ମଧ୍ୟରୁ ଏକ ବା ଏକାଧିକ ପ୍ରଧାନ ଶବ୍ଦ ବା ବାକ୍ୟାଂଶ ଉଠାଇ ଦିଆଯାଇ ସେଠାରେ ଗୋଟିଏ ଗୋଟିଏ ଖାଲି ଗାର ରଖି ଦିଆଯାଇଥାଏ । ପରୀକ୍ଷାର୍ଥୀ ସେହି ଶୂନ୍ୟସ୍ଥାନ ପୂରଣକରେ । ସାଧାରଣତଃ ପ୍ରତ୍ୟେକ ଶୂନ୍ୟସ୍ଥାନ ପାଇଁ ଗୋଟିଏ ନମ୍ବର ଦିଆଯାଇଥାଏ । ଏହି ପ୍ରକାର ପ୍ରଶ୍ନର ସୁବିଧା ଓ ସୀମାବଦ୍ଧତା ସ୍ମରଣ ବିଷୟକ ପ୍ରଶ୍ନସଙ୍ଗେ ସମାନ, କେବଳ ଏହି ପ୍ରକାର ପ୍ରଶ୍ନର ଗଠନ ପାଇଁ କେତେକ ସ୍ୱତନ୍ତ୍ର ନିୟମ ଅନୁସରଣ କରାଯିବା ଉଚିତ ।

## ନିୟମାବଳୀ

(୧) ପୂର୍ତ୍ତିବିଷୟକ ପରୀକ୍ଷାରେ ଅନିର୍ଦ୍ଦିଷ୍ଟ ଅର୍ଥସୂଚକ ବାକ୍ୟଗୁଡ଼ିକ ବ୍ୟବହୃତ ହେବା ଉଚିତ ନୁହେଁ । ଉଦାହରଣସ୍ୱରୂପ, ଗୋଟିଏ ପ୍ରଶ୍ନ ହେଲା—ମହାତ୍ମାଗାନ୍ଧୀ—ରେ

ଜନ୍ମ ଗ୍ରହଣ କରିଥିଲେ ।" ଜଣେ ଛାତ୍ର ଏହି ଶୂନ୍ୟସ୍ଥାନ—ରେ 'ଭାରତବର୍ଷ', 'ପୋରବନ୍ଦର' '୧୮୬୯ ଖ୍ରୀଷ୍ଟାବ୍ଦ', ଅକ୍ଟୋବରମାସ ଯାହା ଲେଖିଲେ ମଧ୍ୟ ଠିକ୍ ହେବ । ତେଣୁ ପରୀକ୍ଷକ ପରୀକ୍ଷାର୍ଥୀଠାରୁ କ'ଣ ଚାହୁଁଛନ୍ତି ତାହା ସ୍ପଷ୍ଟ ହେବା ଉଚିତ । ସେ ଦେଶ, ସ୍ଥାନ, ସମୟ ଯାହା ଚାହୁଁଛନ୍ତି ତାହା ପ୍ରଶ୍ନରୁ ଜଣା ପଡ଼ିବା ଆବଶ୍ୟକ ।

(୨) ବହୁତ ବେଶି ଶୂନ୍ୟସ୍ଥାନ ଗୋଟିଏ ବାକ୍ୟରେ ରହିବା ଅନୁଚିତ । ଉଦାହରଣସ୍ୱରୂପ, ଜଣେ ଶିକ୍ଷକ ପିଲାମାନଙ୍କୁ ପରିମିତିରେ ପଢ଼ାଇଛନ୍ତି ଯେ ଗୋଟିଏ ଆୟତକ୍ଷେତ୍ରର କ୍ଷେତ୍ରଫଳ ତାହାର ଭୂମି ଓ ଉଚ୍ଚତାର ଗୁଣଫଳ ସଙ୍ଗେ ସମାନ । ପିଲାମାନେ ଠିକ୍ ବୁଝିଛନ୍ତି କି ନାହିଁ ତାହା ଜାଣିବାକୁ, ମନେ କରନ୍ତୁ ସେ ଗୋଟିଏ ପ୍ରଶ୍ନ ଦେଲେ "—କୁ—ଦ୍ୱାରା ଭାଗକଲେ—ପାଇପାରିବା । ତାଙ୍କର ଉଦ୍ଦେଶ୍ୟ ଯେ ପିଲାମାନେ ଲେଖିବେ କ୍ଷେତ୍ରଫଳକୁ ଭୂମିଦ୍ୱାରା ଭାଗକଲେ ଉଚ୍ଚତା ପାଇପାରିବା । ଜଣେ ଛାତ୍ର ଯଦି କ୍ଷେତ୍ରଫଳକୁ ଉଚ୍ଚତା ଦ୍ୱାରା ଭାଗକଲେ ଭୂମି ପାଇପାରିବା ଲେଖନ୍ତି ତେବେ ତାଙ୍କର ଉତ୍ତର ମଧ୍ୟ ଯଥାର୍ଥ । ଯେ ଲେଖିବେ ୧୫କୁ ୫ ଦ୍ୱାରା ଭାଗକଲେ ୩ ପାଇପାରିବା ତାଙ୍କର ଉତ୍ତର ମଧ୍ୟ ଯଥାର୍ଥ । ଏହିପରି ଅସଂଖ୍ୟ ଉତ୍ତର ସମ୍ଭବ ହୋଇପାରେ । ତେଣୁ ସମସ୍ତ ପ୍ରଧାନ ଶବ୍ଦ ଖାଲି କରିଦେଇ ଛାତ୍ରକୁ ତାହା ପୂରଣ କରିବାକୁ କହିବା ଅର୍ଥହୀନ ।

(୩) ସିଧା ସଳଖ ପୁସ୍ତକର ବାକ୍ୟ ଉଠାଇଆଣି ପ୍ରଶ୍ନ ପତ୍ରରେ ଦେବା ଅନୁଚିତ ।

(୪) ପ୍ରଶ୍ନରେ କ୍ରମହୀନ ପର୍ଯ୍ୟାୟ (Unordered Series) ସ୍ଥାନ ପାଇବା ଉଚିତ ନୁହେଁ । ଉଦାହରଣସ୍ୱରୂପ, ଯଦି ଆମର ପ୍ରଶ୍ନ ହେଲା ---

"ଓଡ଼ିଶାର ସୀମାକୁ ଲାଗିଥିବା ଚାରିଗୋଟି ରାଜ୍ୟ ହେଉଛି—, —, —ଓ— ।" ଏହି ପ୍ରଶ୍ନର ଉତ୍ତର ପାଇଁ ଜଣେ ଛାତ୍ର ପଶ୍ଚିମବଙ୍ଗ, ବିହାର, ମଧ୍ୟପ୍ରଦେଶ, ଆନ୍ଧ୍ର ଲେଖିଲେ ଉତ୍ତର ଠିକ ହେବ ଅର୍ଥାତ୍ ଏହି ଚାରିଗୋଟି ପ୍ରଦେଶର ନାମ ଚବିଶଟି ପ୍ରକାର କ୍ରମରେ ଲେଖା ଯାଇପାରିବ । ଏହି ପ୍ରକାର ଉତ୍ତର ସଂଶୋଧନ କରିବା ଅଯଥା କଷ୍ଟସାଧ୍ୟ ହୁଏ । ତେଣୁ ଯଦି ଏ ପ୍ରକାର ପ୍ରଶ୍ନ ଦେବା ଅତ୍ୟାବଶ୍ୟକ ମନେହୁଏ ତେବେ ଛାତ୍ରମାନେ କେଉଁ କ୍ରମରେ ଉତ୍ତର ଲେଖିବେ ତାହାମଧ୍ୟ କୁହାଯିବା ଆବଶ୍ୟକ ।

(୫) ପ୍ରଶ୍ନରେ ଶୂନ୍ୟସ୍ଥାନ ପାଇଁ ଦିଆଯାଉଥିବା ରେଖାର ଲମ୍ବ ସର୍ବଦା ସମାନ ହେବା ଆବଶ୍ୟକ । ନଚେତ୍ ପରୀକ୍ଷକ ଅଜାଣତରେ ଗୋଟିଏ ବଡ଼ ଶବ୍ଦ ପାଇଁ ଲମ୍ବରେଖା ଓ ଗୋଟିଏ ଛୋଟ ଶବ୍ଦ ପାଇଁ କ୍ଷୁଦ୍ରରେଖା ଗାର ଦେଇପାରନ୍ତି । ଏଥିରୁ ପରୀକ୍ଷାର୍ଥୀ

କେଉଁ ସ୍ଥାନରେ କି ପ୍ରକାର ଶବ୍ଦ ପୂର୍ଣ୍ଣ ହେବ ସେ ସମ୍ବନ୍ଧରେ କିଛି ଧାରଣା କରିପାରେ ।

ବାସ୍ତବ କ୍ଷେତ୍ରରେ ଶୂନ୍ୟସ୍ଥାନଗୁଡ଼ିକରେ (୧), (୨), (୩) ପ୍ରଭୃତି ଲେଖି ପ୍ରଶ୍ନର ଡାହାଣ ପାଖରେ ପୁଣି ୧, ୨, ୩ ଲେଖି ସ୍ଥାନ ଛାଡ଼ିଦେଲେ ଛାତ୍ରଟି ୧ ସ୍ଥାନରେ (୧) ର ଉତ୍ତର, ୨ ସ୍ଥାନରେ (୨) ର ଉତ୍ତର ଲେଖିପାରିବେ । ଉଦାହରଣସ୍ୱରୂପ, ନିମ୍ନରେ ଗୋଟିଏ ପ୍ରଶ୍ନ ଲେଖାଯାଇଅଛି ।

ପ୍ରଶ୍ନ—ଆମ ଜାତୀୟ ପତାକାରେ ଯେଉଁ ତିନିଗୋଟି ରଙ୍ଗ ଦେଖିବାକୁ ପାଉ (ନିମ୍ନରୁ ଊର୍ଦ୍ଧ୍ୱକୁ) ତାହା (୧), (୨) ଓ (୩)

୧——
୨——
୩——

ବାକ୍ୟ ମଝିରେ ଥିବା ଶୂନ୍ୟସ୍ଥାନରେ ଶବ୍ଦଗୁଡ଼ିକ ପୂରଣ ହେବା ଉଚିତ ନୁହେଁ ।

(୬) ଫଳାଙ୍କ ସୂଚି (Scoring key) ରେ ସମସ୍ତ ଗ୍ରହଣଯୋଗ୍ୟ ଉତ୍ତର ସ୍ଥାନ ପାଇବା ଉଚିତ ।

ସମସ୍ତ ସାବଧାନତା ସତ୍ତ୍ୱେ ଯଦି ଜଣାଯାଏ ଯେ ଏପରି କୌଣସି ପ୍ରଶ୍ନ ରହିଯାଇଅଛି ଯାହାର ଦୁଇ ତିନିଗୋଟି ଉତ୍ତର ସମ୍ଭବପର ତେବେ ସେହି ଉତ୍ତରଗୁଡ଼ିକ ବିନା ଦ୍ୱିଧାରେ ଫଳାଙ୍କ ସୂଚିରେ ଅନ୍ତର୍ଭୁକ୍ତ କରାଯିବା ଉଚିତ । ଯେ କୌଣସି ପ୍ରକାରର ବସ୍ତୁନିଷ୍ଠ ପରୀକ୍ଷଣ ପାଇଁ ଫଳାଙ୍କ ସୂଚି ପ୍ରସ୍ତୁତ କରାଯିବା ଉଚିତ ଅର୍ଥାତ୍ ଏଥିରେ ପ୍ରଶ୍ନର ଠିକ୍ ଉତ୍ତରଗୁଡ଼ିକ କ୍ରମ ଅନୁସାରେ ଲେଖା ହୋଇଥିବ । ପିଲାମାନଙ୍କୁ ପରୀକ୍ଷା କରିବା ପୂର୍ବରୁ ଏହା ପ୍ରସ୍ତୁତ ହୋଇଥିବା ଦରକାର । ତାହାହେଲେ କେବଳ ପରୀକ୍ଷକ ନୁହନ୍ତି ଯେ କୌଣସି ପାଠ ପଢ଼ୁଆ ବ୍ୟକ୍ତି ସେହି ସୂଚି ଦେଖି ଉତ୍ତରଗୁଡ଼ିକ ସଂଶୋଧନ କରିପାରିବେ ।

## ବିକଳ୍ପ ଅନୁକ୍ରିୟା ପରୀକ୍ଷଣ (Alternative Response Test)

ଏହି ପ୍ରକାର ପରୀକ୍ଷଣରେ ପ୍ରଶ୍ନଗୁଡ଼ିକ ଗୋଟିଏ ଗୋଟିଏ ବାକ୍ୟ ବା ବିବୃତି ଆକାରରେ ଦିଆଯାଇଥାଏ ଯାହାର ଦୁଇଟି ସମ୍ଭାବ୍ୟ ଅନୁକ୍ରିୟା ଥାଏ । ସେଥିମଧ୍ୟରୁ ଗୋଟିଏ ଠିକ୍ ଅନ୍ୟଟି ଭୁଲ । ସମ୍ଭାବ୍ୟ ଅନୁକ୍ରିୟା ଦୁଇଟି ହଁ-ନା, ଠିକ୍-ଭୁଲ,

ସତ୍ୟ-ମିଥ୍ୟା ଏହିପରି ଭାବରେ ଦିଆଯାଇଥାଏ । ସେଥିମଧ୍ୟରୁ ଯେଉଁଟି ଠିକ୍, ତାହାକୁ ଚିହ୍ନିତ କରିବାକୁ ଛାତ୍ରମାନଙ୍କୁ ନିର୍ଦ୍ଦେଶ ଦିଆଯାଇଥାଏ ।

## ସୁବିଧା ଓ ସୀମାବଧାରଣ

ଏହି ପ୍ରକାର ପରୀକ୍ଷଣ ପ୍ରସ୍ତୁତ କରିବା ସହଜ । ଏହା ବିଭିନ୍ନ ପ୍ରକାର ବିଷୟବସ୍ତୁ ପାଇଁ ପ୍ରସ୍ତୁତ କରାଯାଇପାରେ । ଏହାର ଫଳାଙ୍କ ନିର୍ଣ୍ଣୟ କରିବାରେ ବସ୍ତୁନିଷ୍ଠତା ଥାଏ । ଶ୍ରେଣୀ ଶିକ୍ଷକମାନଙ୍କ ପକ୍ଷେ ଏହା ମଧ୍ୟ ସହଜବୋଧ୍ୟ । ଏହି ପରୀକ୍ଷଣର ପ୍ରଶ୍ନଗୁଡ଼ିକ ଅନ୍ୟ ଯେକୌଣସି ପ୍ରକାରର ବସ୍ତୁନିଷ୍ଠ ପ୍ରଶ୍ନଠାରୁ କମ୍ ସମୟ ମଧ୍ୟରେ ଉତ୍ତର କରିହୁଏ । ଏହି ପରୀକ୍ଷଣର ସପକ୍ଷରେ ଅନେକ କଥା ଥିବା ସତ୍ତ୍ୱେ ଏହା ଏକ ସର୍ବାଧିକ ସମାଲୋଚିତ ପରୀକ୍ଷଣ ବ୍ୟବସ୍ଥା । ଏହାର ସର୍ବପ୍ରଧାନ ଦୁର୍ବଳତା ହେଉଅଛି ଯେ, ଜଣେ ଅନୁମାନ କରି ଏହିପ୍ରକାର ପ୍ରଶ୍ନର ଶତକଡ଼ା ୫୦ ଭାଗ ଠିକ୍ କରି ଦେଇପାରେ । ଅବଶ୍ୟ ଗାଣିତିକ ସୂତ୍ର ପ୍ରୟୋଗ କରି ଜଣେ ଲୋକର ଏହି ପରୀକ୍ଷଣର ଠକାମି ଦ୍ୱାରା ଅର୍ଜିତ ଫଳାଙ୍କ ଯଥେଷ୍ଟ ପରିମାଣରେ ସଂଶୋଧନ କରି ଦିଆଯାଇପାରେ; ମାତ୍ର ଜଣେ ସଚ୍ଚୋଟ ଭାବରେ ଉତ୍ତର ଲେଖିଥିଲେ ତାହାର ଫଳାଙ୍କ ମଧ୍ୟ ସଂଶୋଧିତ ହେବ । କେବଳ ଅନୁମାନ କରି ଉତ୍ତର ଦେଉଥିବା ଛାତ୍ରମାନେ ଦଣ୍ଡିତ ହେବା ବିଧେୟ କିନ୍ତୁ କୌଣସି ସୂତ୍ର ପ୍ରୟୋଗ କଲେ ତାହା ସମସ୍ତଙ୍କ ପାଇଁ ପ୍ରଯୁଜ୍ୟ ହେବ ଓ ନିଷ୍ପାପ ଛାତ୍ର ମଧ୍ୟ ଦଣ୍ଡିତ ହେବେ । କେବଳ ଛାତ୍ରଟିଏ ହଁ—ନାଁ ଲେଖିଦେଲେ ସେଥିରୁ ଛାତ୍ରର ଜ୍ଞାନ ସମ୍ବନ୍ଧରେ ଅନେକ ବିଷୟ ଜାଣି ହୁଏନାହିଁ । ମନେକରନ୍ତୁ ଜଣେ ଛାତ୍ର "ପ୍ରଥମ ପାନିପଥ ଯୁଦ୍ଧ ୧୫୨୪ ଖ୍ରୀଷ୍ଟାବ୍ଦରେ ହୋଇଥିଲା" ପ୍ରଶ୍ନର ଉତ୍ତର ନାଁ ଲେଖିଲେ ମଧ୍ୟ ସେ ଯେ ପ୍ରଥମ ପାନିପଥ-ଯୁଦ୍ଧ ଠିକ୍ କେବେ ହୋଇଥିଲା ତାହା ଜାଣିଅଛି ବୋଲି କହିହେବ ନାହିଁ ।

ଏହି ପ୍ରକାର ପ୍ରଶ୍ନ ତିଆରି କରିବା ପାଇଁ ଯଥେଷ୍ଟ ଦକ୍ଷତା ଓ ସାବଧାନତା ଆବଶ୍ୟକ । ନଚେତ୍ କେବଳ ପ୍ରଶ୍ନର ସ୍ୱରରୁ ଜଣେ ତାହା ଠିକ୍ କିମ୍ବା ଭୁଲ ଜାଣିନେଇ ପାରେ । ନିମ୍ନରେ ଏହି ପରୀକ୍ଷା ପ୍ରସ୍ତୁତିର ନିୟମାବଳୀ ପ୍ରଦତ୍ତ ହେଲା ।

## ନିୟମାବଳୀ

(୧) ବାକ୍ୟଗୁଡ଼ିକରେ ନିର୍ଦ୍ଦିଷ୍ଟ ନିର୍ଦ୍ଧାରକ (Specific determiners) ନ ରଖିବାକୁ ସର୍ବଦା ଚେଷ୍ଟା କରିବା ଉଚିତ ।

ଯେଉଁ ଶବ୍ଦଗୁଡ଼ିକ ନିର୍ଦ୍ଦିଷ୍ଟ ନିର୍ଦ୍ଧାରକ ରୂପେ କାର୍ଯ୍ୟ କରେ ସେସବୁ ହେଲା— 'ସାଧାରଣତଃ', 'ପ୍ରାୟ', 'ହୋଇପାରେ', 'ଆଦୌ ନୁହେଁ', 'କେବେ ସମ୍ଭବପର

ନୁହେଁ, 'ସର୍ବଦା', 'କେବେବି' ଇତ୍ୟାଦି । ଏଥିମଧ୍ୟରୁ ଯେଉଁ ଶବ୍ଦଗୁଡ଼ିକ ବ୍ୟବହାର ଫଳରେ ବାକ୍ୟଟି ବା ବିବୃତିଟି କଠୋର ହୁଏ, ସେପରି ବାକ୍ୟର ଉତ୍ତର ଅଧିକାଂଶ ସ୍ଥଳରେ ନାଁ ହେବ । ସର୍ବଦା, ଆଦୌ ନୁହେଁ, ସମସ୍ତେ, କେବେ ନୁହେଁ ଏହିପରି ଶବ୍ଦଗୁଡ଼ିକ ଥିଲେ ବାକ୍ୟଟିର ଉତ୍ତର ନାଁ ବା ମିଥ୍ୟା ବା ଭୁଲ ହେବ କାରଣ ପ୍ରତ୍ୟେକ ନିୟମର ବ୍ୟତିକ୍ରମ ଅଛି । କୌଣସି ବିଷୟ ସର୍ବଦା ସଂଘଟିତ ହେବା ଯେପରି କଷ୍ଟକର କେବେ ନ ହେବା ମଧ୍ୟ ସେହିପରି କଷ୍ଟକର । ଯେଉଁ ବାକ୍ୟଗୁଡ଼ିକରେ 'ସାଧାରଣତଃ', 'ପ୍ରାୟ','ସମସ୍ତ ସମୟରେ', ଏହିପରି ଶବ୍ଦଗୁଡ଼ିକ ଥାଏ ସେଗୁଡ଼ିକର ଉତ୍ତର ଅଧିକାଂଶ କ୍ଷେତ୍ରରେ ହଁ ବା ସତ୍ୟ ବା ଠିକ୍ ହେବ । ଉଦାହରଣସ୍ୱରୂପ—

"ଯବକ୍ଷାରଜାନ ଅନ୍ୟ କୌଣସି ମୌଳିକ ପଦାର୍ଥ ସହ ରାସାୟନିକ ପ୍ରକ୍ରିୟାରେ ଆଦୌ ଭାଗନିଏ ନାହିଁ ।"

ଏହା ଏକ ମିଥ୍ୟା ବିବୃତି, କାରଣ ଯବକ୍ଷାରଜାନ ଉଚ୍ଚ ତାପରେ ବିଭିନ୍ନ ମୌଳିକ ପଦାର୍ଥ ସହ ମିଶେ । ସେହିପରି 'ଯବକ୍ଷାରଜାନ ସାଧାରଣତଃ ଗୋଟିଏ ନିଷ୍କ୍ରିୟ ଗ୍ୟାସ୍'—ଏହା ସତ୍ୟ କାରଣ ସାଧାରଣ ତାପ ସ୍ତରରେ ଏହି ଗ୍ୟାସ କାହା ସଙ୍ଗେ ସହଜରେ ମିଶେ ନାହିଁ ।

(୨) ଗୋଟିଏ ବିକଳ୍ପ ଅନୁକ୍ରିୟା ପରୀକ୍ଷଣରେ ସମାନ ସଂଖ୍ୟକ ଠିକ୍ ଓ ଭୁଲ ପ୍ରଶ୍ନ ରହିବା ଉଚିତ । ମନେକରନ୍ତୁ ଗୋଟିଏ ପରୀକ୍ଷଣରେ ଏହିଥିରେ ୫୦ ଗୋଟି ପ୍ରଶ୍ନ ମଧ୍ୟରୁ ୨୫ ଗୋଟି ଠିକ୍ ଓ ଆଉ ୨୫ ଗୋଟି ଭୁଲ । ଜଣେ ଛାତ୍ର ପଢ଼ କରୁ ନ ପଢ଼ି ସବୁ ପ୍ରଶ୍ନର ଉତ୍ତର ଠିକ୍ ଲେଖିଦିଏ ତେବେ ସେ ୨୫ ନମ୍ବର ପାଇଯିବ । ଏହିପରି ଠକିବାକୁ ଚୁହୁଁଥିବା ପିଲାର ଫଳାଙ୍କ ପ୍ରତି ଯଦି ଆମେ ସଂଶୋଧନ ସୂତ୍ର (Correction Formula) ପ୍ରୟୋଗ କରୁ ତେବେ ଏ କ୍ଷେତ୍ରରେ ପିଲାଟି ୨୫ଟି ଠିକ୍ ଉତ୍ତର ପାଇଁ ୨୫ ନମ୍ବର ପାଇବ ଓ ୨୫ଟି ଭୁଲ ଉତ୍ତର ପାଇଁ ୨୫ ନମ୍ବର ହରାଇବ ଅର୍ଥାତ୍ ସେ ଆଦୌ ନମ୍ବର ପାଇବ ନାହିଁ । ତେବେ ସଂଶୋଧନ ସୂତ୍ରର ବ୍ୟବହାର କିପରି ସୀମିତ ତାହା ପୂର୍ବରୁ ବୁଝାଯାଇଅଛି । ଯାହାହେଉ ସମାନ ସଂଖ୍ୟକ ଠିକ୍ ଓ ଭୁଲ ପ୍ରଶ୍ନ ଦେଇ ପିଲାମାନଙ୍କୁ ତାହା ଜଣାଇଦେବା ଆବଶ୍ୟକ ।

(୩) ପାଠ୍ୟପୁସ୍ତକର ଅବିକଳ ଭାଷାରେ ପ୍ରଶ୍ନ ପ୍ରସ୍ତୁତ କରାଯିବା ଉଚିତ ନୁହେଁ ।

(୪) ପ୍ରତାରଣା ମୂଳକ ବାକ୍ୟ ବା ବିବୃତି ଦେବା ଉଚିତ ନୁହେଁ । ଉଦାହରଣ ସ୍ୱରୂପ ଗୋଟିଏ ପ୍ରଶ୍ନ ହେଲା—

"ପ୍ରଥମ ପାନିପଥ ଯୁଦ୍ଧ ବାବର ଓ ଇବ୍ରାହିମ ଲୋଦୀଙ୍କ ମଧ୍ୟରେ ୧୫୨୬ ଖ୍ରୀ: ପୂ: ରେ ହୋଇଥିଲା ।" ଏଠାରେ ଖ୍ରୀ:ଅ: ସ୍ଥାନରେ ଖ୍ରୀ:ପୂ: ଲେଖାଯିବା ଦ୍ୱାରା ବାକ୍ୟଟି ପ୍ରତାରଣାମୂଳକ ହୋଇଅଛି । ଏପରି ପ୍ରଶ୍ନ ସର୍ବଦା ପରିତ୍ୟାଗ କରାଯିବା ବାଞ୍ଛନୀୟ ।

(୫) ସ୍ପଷ୍ଟତର, ଅପରିଚିତ ତଥା ସାହିତ୍ୟିକ ଶୈଳୀର ସାହାଯ୍ୟରେ ବାକ୍ୟଗୁଡ଼ିକ ଗଠିତ ହେବା ଉଚିତ ନୁହେଁ । ଏପରି ହେଲେ ଛାତ୍ରର ସାହିତ୍ୟିକ ଦକ୍ଷତା ମାପିବା ସାର ହେବ । ଏହି କାରଣରୁ ଲମ୍ବା ଲମ୍ବା ଜଟିଳ ବାକ୍ୟ ମଧ୍ୟ ବ୍ୟବହୃତ ହେବା ଅନୁଚିତ ।

(୬) ଏହି ପ୍ରକାର ପରୀକ୍ଷଣ ପ୍ରସ୍ତୁତ କଲାବେଳେ ପାଞ୍ଚଗୋଟି ପ୍ରଶ୍ନ ଲେଖିସାରି ଅଳ୍ପସ୍ଥାନ ଛାଡ଼ିଦେବା ଉଚିତ । ତା'ପରେ ପୁଣି ପାଞ୍ଚଗୋଟି ପ୍ରଶ୍ନ ଲେଖିସାରି ଅଳ୍ପସ୍ଥାନ ଛାଡ଼ିଦେବା ଉଚିତ । ଏହିପରି ନ ଲେଖିଲେ ପ୍ରଶ୍ନଗୁଡ଼ିକ ପଢ଼ିବା ସମୟରେ ଦୃଷ୍ଟିଶକ୍ତି ଉପରେ ଅଯଥା ଚାପ ପଡ଼େ ।

(୭) ଗୋଟିଏ ପରୀକ୍ଷଣରେ ଅନ୍ୟୂନ ୫୦ ଗୋଟି ପ୍ରଶ୍ନ ରଖାଗଲେ ଅନୁମାନ କରି ଉତ୍ତର ଦେବାର ସମ୍ଭାବନା ସଙ୍କୀର୍ଣ୍ଣ ହେବ । ନିମ୍ନରେ ବିକଳ୍ପ ଅନୁକ୍ରିୟା ପରୀକ୍ଷାର କେତେଗୁଡ଼ିଏ ଉଦାହରଣ ସାଧାରଣ ବିଜ୍ଞାନରୁ ପ୍ରଦତ୍ତ ହେଲା ।

ଉଦାହରଣ

ନିମ୍ନଲିଖିତ ବାକ୍ୟଗୁଡ଼ିକ ପଢ଼ି ଯେଉଁଟି ଠିକ ବୋଲି ଭାବିବ T ଘରପାଖରେ ଗୋଟିଏ ମଣ୍ଡଳୀ ଟାଣିଦେବ, ଯେଉଁଟି ମିଥ୍ୟାବୋଲି ଭାବିବ ସେଠାରେ F ଘର ପାଖରେ ଗୋଟିଏ ମଣ୍ଡଳୀ ଟାଣିଦେବ ।

T.F ଯେଉଁ ଶିଳା ଭୂଗର୍ଭରୁ ଭୂପୃଷ୍ଠକୁ ଆସିବା ବାଟରେ କଠିନତା ପ୍ରାପ୍ତହୁଏ ତାହା ଆଗ୍ନେୟ ଶିଳାର ଅନ୍ତର୍ଭୁକ୍ତ ।

T.F କୋଇଲା ଏକ ଅବକ୍ଷିପ୍ତ ଅଜୈବିକ ଶିଳା ।

T.F ମାର୍ବଲ ଏକ ରୂପାନ୍ତରିତ ଶିଳା ।

T.F ଆକାଶପୋତ ଓ ଉଡ଼ାଜାହାଜ ଉଡ଼ିବାର ମୂଳତତ୍ତ୍ୱ ସମାନ ।

T.F ଜଳର ନିମ୍ନଗାମୀ ଗଭୀରତା ଉପରେ ନିର୍ଭର କରେ ନାହିଁ ।

T.F ପ୍ରତଞ୍ଜଳନ ଯୋଗୁଁ ସ୍ୱଚ୍ଛଜଳର ନଦୀରେ ମାଛରଙ୍କା ଲକ୍ଷ୍ୟଭ୍ରଷ୍ଟ ହୁଏ ।

T.F ଶବ୍ଦ ଜଳମଧ୍ୟରେ ବାୟୁଠାରୁ ଅଧିକ ବେଗରେ ଗତି କରିପାରେ ।

T.F ଶ୍ରୁତି ସମ୍ପୃକ୍ତରୁ ଶବ୍ଦବାହୀ ସ୍ନାୟୁଗୁଡ଼ିକ ମସ୍ତିଷ୍କକୁ ଯାଇଅଛି ।

T.F କ୍ୟାଲେଣ୍ଡର ମଣି ରାତ୍ରିର ପ୍ରଥମ ଭାଗରେ ବେଶୀ କାମୁଡ଼େ ।

T.F ପରମୁଟିଟ ପଦ୍ଧତିରେ କେବଳ ସ୍ଥାୟୀ ଖରତ୍ୱ ଦୂର ହୁଏ ।

## ଇତିହାସ

T.F ସିକନ୍ଦରଲୋଦୀ ବଙ୍ଗଦେଶ ପର୍ଯ୍ୟନ୍ତ ତାଙ୍କର ରାଜ୍ୟ ବିସ୍ତାର କରିଥିଲେ ।

T.F ଆକବର ବହୁ ଯୋଗ୍ୟ ହିନ୍ଦୁମାନଙ୍କୁ ଉଚ୍ଚ ରାଜକାର୍ଯ୍ୟରେ ନିଯୁକ୍ତ କରିଥିଲେ ।

T.F ଆକବର ବହୁ ଯୁଦ୍ଧରେ ଲିପ୍ତ ହୋଇ ସୈନ୍ୟ ବିଭାଗରେ ସଂସ୍କାର କରି ପାରି ନ ଥିଲେ ।

T.F ଆକବର ଦୀନଇଲାହି ନାମକ ଏକ ନୂତନ ଧର୍ମ ପ୍ରଚାର କରିଥିଲେ ଏବଂ ଅନ୍ୟମାନଙ୍କୁ ଏହି ଧର୍ମ ଗ୍ରହଣ କରିବା ଲାଗି ବାଧ୍ୟ କରିଥିଲେ ।

T.F ସାର୍ ଟମାସ ରୋ ମଧ୍ୟ ଜାହାଙ୍ଗୀରଙ୍କଠାରୁ ଇଂରେଜ ବଣିକମାନଙ୍କ ପାଇଁ କୌଣସି ସୁବିଧା ହାସଲ କରିପାରି ନ ଥିଲେ ।

T.F ଜାହାଙ୍ଗୀରଙ୍କ ସମୟରେ ମୋଗଲର ପତନ ଆରମ୍ଭ ହୋଇ ପାରିଥିଲା ।

## ପ୍ରବରଣୀୟ ବିଷୟ ପରୀକ୍ଷଣ (Multiple choice Tests)

ପ୍ରବରଣୀୟ ବିଷୟକ ପରୀକ୍ଷଣରେ ପ୍ରତ୍ୟେକ ପ୍ରଶ୍ନ ପରେ ପରେ ଚାରି ପାଞ୍ଚଗୋଟି ସମ୍ଭାବ୍ୟ ଉତ୍ତର ଦିଆଯାଇଥାଏ ଯାହା ମଧ୍ୟରୁ କେବଳ ଗୋଟିଏ ଠିକ୍ ବା ଅନ୍ୟାନ୍ୟ ଉତ୍ତରଗୁଡ଼ିକଠାରୁ ଅଧିକ ଉପଯୁକ୍ତ । ଗୁଡିଏ ଠିକ୍ ବା ସର୍ବୋତ୍କୃଷ୍ଟ ଉତ୍ତରଟି ଚିହ୍ନାଇଦିଏ ।

## ସୁବିଧା ଓ ସୀମାବଧାରଣ

ଏହି ପରୀକ୍ଷଣ ଅନ୍ୟ ସମସ୍ତ ପ୍ରକାର ପରୀକ୍ଷଣ ମଧ୍ୟରେ ସର୍ବୋତ୍କୃଷ୍ଟ ବୋଲି ବିବେଚିତ ହୁଏ । ଲିଣ୍ଡକୁଇଷ୍ଟ (Lindquist)ଙ୍କ ପରି ପ୍ରଖ୍ୟାତ ପରୀକ୍ଷଣ ବିଶେଷଜ୍ଞଙ୍କ ମତରେ, "ଏହା ସମସ୍ତ ପ୍ରକାର ପରୀକ୍ଷଣ ଠାରୁ ନିଶ୍ଚୟ ଉନ୍ନତ ଧରଣର ।" ବିଶେଷତଃ ଯେତେବେଳେ ସ୍ଥିର ବିଚାର, ଉଚିତ ବୃଦ୍ଧିମତ୍ତା, ଯୁକ୍ତିଯୁକ୍ତ ସିଦ୍ଧାନ୍ତ ଆଦି ଉଚ୍ଚତର ମାନସିକ ପ୍ରକ୍ରିୟା ମାପିବା ଆବଶ୍ୟକ ହୁଏ ସେତେବେଳେ ଏହି ପ୍ରକାରର ପରୀକ୍ଷଣ ବିଶେଷ ଉପଯୋଗୀ ହୋଇଥାଏ । ଏହି ପ୍ରକାର ପରୀକ୍ଷଣ ପ୍ରଶ୍ନଗୁଡ଼ିକ ପ୍ରସ୍ତୁତ କରିବାରେ ଯଥେଷ୍ଟ ସତର୍କତା ଅବଲମ୍ବନ ନ କଲେ ଏହା ପ୍ରବରଣୀୟ ପରୀକ୍ଷଣ ରୂପେ କାର୍ଯ୍ୟ କରିପାରେ ନାହିଁ ।

## ନିୟମାବଳୀ

୧—ପ୍ରଶ୍ନଗୁଡ଼ିକର ଯେଉଁ ଚାରି ପାଞ୍ଚଗୋଟି ସମ୍ଭାବ୍ୟ ଉତ୍ତର ଦିଆଯାଇଥାଏ ସେଥିମଧ୍ୟରୁ ଗୋଟିଏ ଠିକ୍ ବା ସର୍ବୋତ୍କୃଷ୍ଟ, ଅନ୍ୟଗୁଡ଼ିକ ବିକ୍ଷେପକ (distracter)

ବା ବିଭ୍ରାନ୍ତକ (Foils) ରୂପେ କାର୍ଯ୍ୟ କରିବା ପାଇଁ ଉଦ୍ଦିଷ୍ଟ । ତେଣୁ ଏହି ବିକ୍ଷେପକ-ଗୁଡ଼ିକ ଏପରି ପ୍ରସ୍ତୁତ ହେବା ଉଚିତ ଯେପରି ତାହା ଠିକ୍ ବୋଲି ମନେହେଉ ନ ଥିବ ମାତ୍ର ଠିକ୍ ହୋଇ ନ ଥିବ । ଏପରି ନ ହେଲେ ଛାତ୍ରମାନେ ଠିକ୍ ଉତ୍ତରଟିକୁ ସହଜରେ ବାଛିନେବା ଏବଂ ପରୀକ୍ଷଣଟି ପ୍ରବରଣୀୟ ହୋଇ ପାରିବ ନାହିଁ । ପ୍ରକୃତରେ ପ୍ରଶ୍ନକର୍ତ୍ତା ଅତ୍ୟନ୍ତ ଶ୍ରବତନ୍ତ୍ର ପ୍ରଶ୍ନ ପ୍ରସ୍ତୁତ ନ କଲେ ସେ ଭଲ ବିକ୍ଷେପକ ବା ବିଭ୍ରାନ୍ତକ ଦେଇ ପାରିବେ ନାହିଁ । ଯଦି ଗୋଟିଏ ପ୍ରଶ୍ନର ଚାରିଗୋଟି ସମ୍ଭାବ୍ୟ ଉତ୍ତର ମଧ୍ୟରୁ ଗୋଟିଏ ଠିକ୍ ହୁଏ ଏବଂ ଅନ୍ୟ ତିନଗୋଟି ବିଭ୍ରାନ୍ତକ ମଧ୍ୟରୁ ଦୁଇଟି ଦ୍ୱାରା କେହି ବିଭ୍ରାନ୍ତ ନ ହୁଅନ୍ତି ତେବେ ପ୍ରଶ୍ନଟି ଗୋଟିଏ ବିକଳ୍ପ ଅନୁକିସ୍ତ ପରୀକ୍ଷଣର ପ୍ରଶ୍ନ ସଙ୍ଗେ ସମାନ ହୋଇଯିବ । ଏହା ଜାଣିବା ପାଇଁ ପରୀକ୍ଷାପରେ ବିକ୍ଷେପକ ବିଶ୍ଳେଷଣ (distracter analysis) କରାଯାଇ ଦେଖାଯାଇପାରେ ଯେ ସମସ୍ତ ବିକ୍ଷେପକ କାର୍ଯ୍ୟକାରୀ ହୋଇଅଛି କି ନାହିଁ ଅର୍ଥାତ୍ ସମସ୍ତ ବିକ୍ଷେପକ କାହାକୁ ନା କାହାକୁ ବିଭ୍ରାନ୍ତ କରିଥିବା ଦରକାର । ନଚେତ୍ ସେହି ପ୍ରଶ୍ନ ଆବଶ୍ୟକାନୁଯାୟୀ ପରିମାର୍ଜିତ ହେବା ବାଞ୍ଛନୀୟ ।

(୬) ଅଜାଣତରେ ହେଉ ବା ଅନିଚ୍ଛା ପୂର୍ବକ ହେଉ ଠିକ୍ ଉତ୍ତରଟି କ୍ରମାଗତ ଗୋଟିଏ ସ୍ଥାନରେ ରହିବା ଉଚିତ ନୁହେଁ ।

ପ୍ରଶ୍ନକର୍ତ୍ତାମାନେ ସାଧାରଣତଃ ଠିକ୍ ଉତ୍ତରଟି ପ୍ରଥମେ ବା ଶେଷରେ ନ ଦେଇ ମଝିରେ ରଖି ଦିଅନ୍ତି । ବିକ୍ଷେପକଗୁଡ଼ିକ ପ୍ରଥମେ ଓ ଶେଷରେ ଦେଇଥାନ୍ତି । ଏପରି କରାଗଲେ ଜଣେ ଚତୁର ଛାତ୍ର କେତେଗୁଡ଼ିଏ ପ୍ରଶ୍ନର ଉତ୍ତର ବାହାରକରି ସାରିବା ପରେ ପ୍ରଶ୍ନକର୍ତ୍ତାଙ୍କର ଏହି ମନୋବୃତ୍ତି ଜାଣିଯିବ ଏବଂ ତା'ପରେ କେବଳ ମଝିରେ ଦିଆଯାଇ ଥିବା ଦୁଇତିନଗୋଟି ସମ୍ଭାବ୍ୟ ଉତ୍ତର ମଧ୍ୟରୁ ଠିକ୍ ଉତ୍ତରଟି ଖୋଜି ବାହାର-କରିବାକୁ ଚେଷ୍ଟା କରିବ ।

(୭) ପାଠ୍ୟପୁସ୍ତକର ଅବିକଳ ଭାଷା ପ୍ରଶ୍ନ ବା ଉତ୍ତରରେ ବ୍ୟବହାର କରାଯିବା ଉଚିତ ନୁହେଁ ।

(୮) ଗୋଟିଏ ପ୍ରଶ୍ନର ଉତ୍ତର ବାହାର କରିବା ଦ୍ୱାରା ଛାତ୍ରଟି ଅନ୍ୟ ପ୍ରଶ୍ନର ଉତ୍ତର ବାହାର କରିବାକୁ ଯେପରି ସୁବିଧା ନ ପାଏ । ତେଣୁ ପ୍ରତ୍ୟେକ ପ୍ରଶ୍ନ ଗୋଟିଏ ଗୋଟିଏ ପୃଥକ୍ ବିଷୟ ପରୀକ୍ଷଣ କରିବାକୁ ଉଦ୍ଦିଷ୍ଟ ହୋଇଥିବା ଆବଶ୍ୟକ ।

(୫) ଏହି ପ୍ରକାର ପରୀକ୍ଷଣରେ ମଧ୍ୟ ନିର୍ଦ୍ଦିଷ୍ଟ ନିର୍ଦ୍ଧାରକ ପ୍ରଶ୍ନର ଉତ୍ତର ନିର୍ଣ୍ଣୟ କରିବାରେ କି ପ୍ରକାର ସାହାଯ୍ୟ କରେ ତାହା ପୂର୍ବରୁ ବିକଳ୍ପ ଅନୁକିସ୍ତ ପରୀକ୍ଷଣ ପ୍ରସଙ୍ଗରେ କୁହାଯାଇଅଛି ।

(୬) ପ୍ରତ୍ୟେକ ପ୍ରଶ୍ନର ପାଞ୍ଚଗୋଟି ସମ୍ଭାବ୍ୟ ଉତ୍ତର ଦିଆଯିବା ସବୁଠାରୁ ଭଲ। ଏହାଦ୍ୱାରା ଅନୁମାନ କରି ଉତ୍ତର ବାହାର କରିବାର ସମ୍ଭାବନା ସର୍ବନିମ୍ନ ବ୍ୟବସ୍ଥାକୁ ଆସିଯାଏ।

(୭) "ଉପରୋକ୍ତ କୌଣସି ଉତ୍ତରଟି ନୁହେଁ"—ଏହା କେତେକ କ୍ଷେତ୍ରରେ ସର୍ବଶେଷ ସମ୍ଭାବ୍ୟ ଉତ୍ତର ବା ପସନ୍ଦରୂପେ ଦିଆଯାଇପାରେ। ସେହିପରି "ଉପରୋକ୍ତ ସମସ୍ତ ଉତ୍ତର ଠିକ୍" ବୋଲି ଏକ ସମ୍ଭାବ୍ୟ ଉତ୍ତର ରଖାଯାଇ ପାରେ। ଉଦାହରଣସ୍ୱରୂପ—

ପ୍ରଶ୍ନ—PQR△ର ମଧ୍ୟମା RS. ନିମ୍ନଲିଖିତ ବିଷୟଗୁଡ଼ିକ ମଧ୍ୟରୁ କେଉଁଟି ଠିକ୍?

I. RS, PQ ଉପରେ ଲମ୍ବ।
II. RS, ∠QRPକୁ ସମଦ୍ୱିଖଣ୍ଡ କରୁଅଛି।
III. PQR ଗୋଟିଏ ସମକୋଣୀ ତ୍ରିଭୁଜ।
A. ଉପରୋକ୍ତ କୌଣସିଟି ଠିକ୍ ନୁହେଁ।
B. କେବଳ I ଠିକ୍।
C. କେବଳ II ଠିକ୍।
D. କେବଳ III ଠିକ୍।
E. I, II ଓ III ଠିକ୍।

(·) ପ୍ରଶ୍ନଗୁଡ଼ିକ ନମ୍ବର ସଂଖ୍ୟାରେ ଓ ସମ୍ଭାବ୍ୟ ଉତ୍ତରଗୁଡ଼ିକ ଅକ୍ଷରରେ ଦର୍ଶାଇବା ଆବଶ୍ୟକ।

ପ୍ରବିରଣୀସ୍ଥ ପରୀକ୍ଷଣର ଉଦାହରଣ ନିମ୍ନରେ ପ୍ରଦତ୍ତ ହେଲା।

## ଇତିହାସ

### ଉଦାହରଣ

୧। ପ୍ରାଚୀନକାଳରେ ହିନ୍ଦୁଧର୍ମ ଭାରତରେ ସୀମାବଦ୍ଧ ହୋଇ ରହିଥିଲା, କାରଣ—
(କ) ଏହାର ନୀତିଗୁଡ଼ିକ ଜଟିଳ ଥିଲା।
(ଖ) କୌଣସି ବଡ଼ ରାଜା ଏହି ଧର୍ମକୁ ଗ୍ରହଣ କରି ନ ଥିଲେ।
(ଗ) ଏହି ଧର୍ମର ପ୍ରଚାର ସଂସ୍ଥା ନ ଥିଲା।
(ଘ) ଭାରତୀୟ ଉପନିବେଶଗୁଡ଼ିକରେ ବାସ କରୁଥିବା ଲୋକେ ବୌଦ୍ଧ ଧର୍ମକୁ ପସନ୍ଦ କଲେ।

(ଙ) ଏହି ଧର୍ମରେ ଜାତିଭେଦ ଥିବାରୁ ବିଦେଶୀ ଲୋକେ ଏହାକୁ ସ୍ୱୀକାରିଲେ ନାହିଁ ।

୨ । ଗୁପ୍ତଯୁଗରେ ଚୀନ ସହ ଭାରତର ବାଣିଜ୍ୟ କାରବାର ଚାଲୁଥିବାର ପ୍ରମାଣ ମିଳେ, କାରଣ—

(କ) କାଳିଦାସ ମେଘଦୂତରେ ଚୀନ ଦେଶର ରେଶମ ବସ୍ତ୍ରର ବର୍ଣ୍ଣନା କରିଅଛନ୍ତି ।

(ଖ) ଫାହିୟାନ ପୂର୍ବଭାରତୀୟ ଦ୍ୱୀପପୁଞ୍ଜ ଦେଇ ଭାରତୀୟ ଜାହାଜରେ ଦେଶକୁ ଫେରିଥିଲେ ।

(ଗ) ଗୁପ୍ତଯୁଗରେ କୃଷ୍ଣାନଦୀ ତୀରରେ ଚୀନ ନାମକ ଏକ କ୍ଷୁଦ୍ର ପଲ୍ଲୀ ଥିଲା ।

(ଘ) ସେ ବେଳର ଆନ୍ଧ୍ର ରାଜାଙ୍କ ମୁଦ୍ରାରେ ବଡ଼ ବଡ଼ ଜାହାଜ ଛବି ଦେଖାଯାଏ ।

(ଙ) ଅଜନ୍ତା ଗୁମ୍ଫାର ବଡ଼ ବଡ଼ ଜାହାଜରେ ତୈଳଚିତ୍ର ରହିଅଛି ।

୩ । ମାମୁଦଙ୍କଦ୍ୱାରା ପଞ୍ଜାବରେ ମୁସଲମାନ ରାଜତ୍ୱ ସ୍ଥାପିତ ହେଲେହେଁ ହିନ୍ଦୁ ରାଜାମାନେ ତା'ର ଗୁରୁତ୍ୱ ପ୍ରତି ନଜର ଦେଇ ନ ଥିଲେ, କାରଣ—

(କ) ସେମାନେ ଭାବୁଥିଲେ ମୁସଲମାନ ଆକ୍ରମଣକାରୀମାନେ ଭାରତର ଗାଙ୍ଗେୟ ସମତଳ ଭୂମିକୁ ଆସିବାକୁ ଭୟ କରିବେ ।

(ଖ) ଭାରତୀୟ ହିନ୍ଦୁରାଜାମାନେ ବୀର ଥିଲେ ମଧ୍ୟ ପରସ୍ପର ମଧ୍ୟରେ କଳହ କରୁଥିଲେ ।

(ଗ) ସୁଦୃଢ଼ ସୈନ୍ୟ ଗଠନ କରି ବିଦେଶୀ ଆକ୍ରମଣ ବ୍ୟର୍ଥ କରିବାକୁ ରାଜାମାନେ ନିଜ କର୍ତ୍ତବ୍ୟ ମନେକରୁ ନ ଥିଲେ ।

(ଘ) ମାମୁଦଙ୍କୁ ତଡ଼ିଦେବା ପାଇଁ ସେମାନଙ୍କର ଯଥେଷ୍ଟ ଶକ୍ତି ନ ଥିଲା ।

(ଙ) ପଞ୍ଜାବ ସେତେବେଳେ ଅବହେଳିତ ଅଞ୍ଚଳ ଥିଲା ।

୪ । ପ୍ୟାରିସ ଶାନ୍ତି ସମ୍ମିଳନୀ ୧୮୫୬ ଖ୍ରୀଷ୍ଟାବ୍ଦରେ ଇଟାଲୀର ସ୍ୱାଧୀନତା ସ୍ୱୀକାର କରିଥିଲା, କାରଣ—

(କ) ବିସମାର୍କ ଇଟାଲୀର ସ୍ୱାଧୀନତା ଇଚ୍ଛା କରିଥିଲେ ।

(ଖ) ଏଥିପାଇଁ ଇଂଲଣ୍ଡର ଲର୍ଡ କ୍ଲାରେନଡନ ପ୍ରସ୍ତାବ ଦେଇଥିଲେ ।

(ଗ) ଫରାସୀ ସମ୍ରାଟ ତୃତୀୟ ନେପୋଲିଅନ ଇଟାଲୀକୁ ସ୍ୱାଧୀନ ହେବା ପାଇଁ ସାହାଯ୍ୟ କରୁଥିଲେ ।

(ଘ) କାବୁଲ ଏଥିପାଇଁ ଋଣ ଦେଇଥିଲେ ।
(ଙ) ସ୍ୱାଧୀନ ଇଟାଲୀ ଫ୍ରାନସ ପକ୍ଷରେ ମଙ୍ଗଳ କାରକ ହୋଇଥାନ୍ତା ।

୫ । ସମାଜ ସଂସ୍କାରକ ହିସାବରେ ବେଣ୍ଟିକ୍ ପ୍ରସିଦ୍ଧ, କାରଣ—

(କ) ସେ ଭାରତୀୟମାନଙ୍କୁ ଉଚ୍ଚ ପଦରେ ନିଯୁକ୍ତି ଦେଇଥିଲେ ।
(ଖ) ସେ ଠଗ ଦମନ କରିଥିଲେ ।
(ଗ) ସେ କାଛାଡ଼, କୁର୍ଗ ଓ ମଣିପୁର ରାଜ୍ୟର କ୍ଷମତା ହାତକୁ ନେଇଥିଲେ ।
(ଘ) ସତୀଦାହ ପ୍ରଥା ଉଠାଇ ଦେଇଥିଲେ ।
(ଙ) ସେ କ୍ଷେତ୍ରହିତକର କାର୍ଯ୍ୟ ପ୍ରତି ଦୃଷ୍ଟି ଦେଇଥିଲେ ।

୬ । ସିପାହୀ ବିଦ୍ରୋହକୁ ଭାରତବର୍ଷର ପ୍ରଥମ ଜାତୀୟ ଯୁଦ୍ଧ କୁହାଯାଏ, କାରଣ –

(କ) ଭାରତୀୟ ସିପାହୀମାନେ ଇଂରେଜମାନଙ୍କ ବିରୁଦ୍ଧରେ ଯୁଦ୍ଧ କରିଥିଲେ ।
(ଖ) ଦେଶୀୟ ରାଜାମାନେ ରାଜ୍ୟସ୍ୱତ୍ୱଲୋପ ନୀତିଦ୍ୱାରା ଅସନ୍ତୁଷ୍ଟ ହୋଇ ଯୁଦ୍ଧ କରିଥିଲେ ।
(ଗ) ରାଜା, ପ୍ରଜା, ହିନ୍ଦୁ, ମୁସଲମାନ ସମସ୍ତେ ଏହି ବିଦ୍ରୋହରେ ଯୋଗଦାନ କରିଥିଲେ ।
(ଘ) ଜନସାଧାରଣ ଧର୍ମନାଶର ଆଶଙ୍କା କରି ବିଦ୍ରୋହ କରିଥିଲେ ।
(ଙ) ଭାରତବର୍ଷର କେତେକ ରାଜ୍ୟର ରାଜା ଓ ନବାବମାନେ ଏହି ବିଦ୍ରୋହର ନେତୃତ୍ୱ ନେଇଥିଲେ ।

୭ । ୧୯୦୪ରୁ ସ୍ୱଦେଶୀ ଆନ୍ଦୋଳନ ତୀବ୍ର ଆକାର ଧାରଣ କଲା, କାରଣ—

(କ) ସେତେବେଳେ ଲର୍ଡ କର୍ଜନ ନାମକ ଜଣେ ଦାମ୍ଭିକ ବଡ଼ଲାଟ ଦେଶ ଶାସନ କରୁଥିଲେ ।
(ଖ) ଲର୍ଡ କର୍ଜନ ବଙ୍ଗଦେଶକୁ ଦୁଇଭାଗ କରିବାକୁ ବସିଲେ ।
(ଗ) ଜାତୀୟ କଂଗ୍ରେସ ବିଲାତି ବର୍ଜନ କରିବାକୁ ଶିଖାଇଲେ ।
(ଘ) ବିପ୍ଳବୀମାନେ ହିଂସାତ୍ମକ କାଣ୍ଡ ଭିଆଇଲେ ।
(ଙ) ଜନମତ ପ୍ରତି କର୍ଜନଙ୍କର ଭ୍ରୂକ୍ଷେପ ନ ଥିଲା ।

୮ । ମୌର୍ଯ୍ୟଯୁଗରେ ଭାରତୀୟ ସମାଜରେ ପରଦା ପ୍ରଥା ନ ଥିଲା ବୋଲି ଜଣାଯାଏ, କାରଣ –

(କ) ନାରୀମାନେ ବୌଦ୍ଧ ସଂଘରେ ଯୋଗଦେଇ ଭିକ୍ଷୁଣୀ ହେଉଥିଲେ ।

(ଖ) ଅଶୋକ ନିଜ କନ୍ୟା ସୁରୁମତୀ ଓ ସଙ୍ଘମିତ୍ରାଙ୍କୁ ଧର୍ମ ପ୍ରଚ୍ଚାର ପାଇଁ ନେପାଳ ଓ ସିଂହଳକୁ ପଠାଇଥିଲେ ।

(ଗ) ଚନ୍ଦ୍ରଗୁପ୍ତଙ୍କ କାଷ୍ଠ ପ୍ରାସାଦକୁ ସ୍ତ୍ରୀ ପ୍ରହରୀମାନେ ଜଗି ରହୁଥିଲେ ।

(ଘ) ଗ୍ରୀକ୍ ସଭ୍ୟତା ସଂସ୍ପର୍ଶରେ ଆସି ଭାରତୀୟ ସ୍ତ୍ରୀମାନେ ସ୍ୱାଧୀନଚେତା ହୋଇଥିଲେ ।

(ଙ) ଅଶୋକ ନାରୀମାନଙ୍କୁ ରାଜକାର୍ଯ୍ୟରେ ନିଯୁକ୍ତ କରୁଥିଲେ ।

## ବିଜ୍ଞାନ

୧ । ଆଲୋକର ଉତ୍ସ ଅତ୍ୟନ୍ତ କ୍ଷୁଦ୍ର ଓ ଅସ୍ୱଚ୍ଛ ପଦାର୍ଥର ଆକାର ବଡ଼ ହେଲେ କେଉଁ ପ୍ରକାରର ଛାୟା ସୃଷ୍ଟି ହେବ ?

(କ) କେବଳ ପ୍ରଚ୍ଛାୟା ସୃଷ୍ଟି ହେବ ।

(ଖ) କେବଳ ଉପଚ୍ଛାୟା ସୃଷ୍ଟି ହେବ ।

(ଗ) ପ୍ରଚ୍ଛାୟା ଓ ଉପଚ୍ଛାୟା ଉଭୟ ସୃଷ୍ଟି ହେବ ।

(ଘ) ପ୍ରଚ୍ଛାୟା କ୍ରମଶଃ ଛୋଟ ହୋଇ ଶେଷରେ ଅଦୃଶ୍ୟ ହୋଇଯିବ ।

(ଙ) ଅସ୍ୱଚ୍ଛ ବସ୍ତୁ ଓ ପରଦା ମଧ୍ୟରେ ଦୂରତା ନ ଜାଣିଲେ କହିବା ଅସମ୍ଭବ ।

୨ । ଉଚ୍ଚ ପାର୍ବତୀୟ ସ୍ଥାନରେ ଫୁଟାଇ କଲେ ଡାଲି, ମାଂସ ଇତ୍ୟାଦି ଭଲ ସିଝେନାହିଁ, କାରଣ—

(କ) ଉଚ୍ଚ ପାର୍ବତୀୟ ଅଞ୍ଚଳରେ ଅମ୍ଳଜାନ କମ୍ ଥିବା ହେତୁ ଜାଳ ଭଲ ଜଳେ ନାହିଁ ।

(ଖ) ବାୟୁର ଚାପ କମ୍ ଥିବାରୁ କମ୍ ଉତ୍ତାପରେ ଜଳ ବାଷ୍ପୀଭୂତ ହେବାକୁ ଆରମ୍ଭ କରେ ।

(ଗ) ଜଳ ଶୀଘ୍ର ଶୀଘ୍ର ବାଷ୍ପୀଭୂତ ହେବାରୁ ବାରମ୍ବାର ହାଣ୍ଡିରେ ପାଣି ଦେବାକୁ ପଡ଼େ ।

(ଘ) ପାର୍ବତ୍ୟ ଅଞ୍ଚଳରେ ଅଧିକ ଥଣ୍ଡା ଅନୁଭୂତ ହେଉଥିବାରୁ ତାପମାତ୍ରାର ପ୍ରଭାବ କମିଯାଏ ।

(ଙ) ଉଚ୍ଚ ପାର୍ବତ୍ୟ ଅଞ୍ଚଳରେ ମିଳୁଥିବା କାଠ ବା କୋଇଲାର ତାପ ଉତ୍ପାଦକାଂଶ କମ୍ ।

୩ । ଜଣେ ସୁସ୍ଥ ଲୋକର ଦେହର ତାପମାତ୍ରା ୯୮·୪ ଡ଼ିଗ୍ରୀ ଫାରେନ ହିଟ୍ । ଏହି ତାପମାତ୍ରାର ପରିମାଣ ସେଣ୍ଟିଗ୍ରେଡ଼ରେ— ।

(କ) $(98.4 \times \frac{5}{9}) = 54.7$ ଗ୍ରାସ୍ତ
(ଖ) $(98.4 \times \frac{5}{9}) - 32 = 92.7$ ଗ୍ରାସ୍ତ
(ଗ) $(98.4 - 32)\frac{5}{9} = 35.8$ ଗ୍ରାସ୍ତ
(ଘ) $(98.4 \times \frac{9}{5}) = 177.12$ ଗ୍ରାସ୍ତ
(ଙ) $(98.4 + 32)\frac{5}{9} = 72.5$ ଗ୍ରାସ୍ତ

୪ । ହେମନ୍ତ, ଶୀତ ଓ ବସନ୍ତ ଋତୁର ପ୍ରଥମାର୍ଦ୍ଧରେ ସାଧାରଣତଃ ଶିଶିରପାତ ହେବାର ଦେଖାଯାଏ, କାରଣ—

(କ) ଅନ୍ୟାନ୍ୟ ଋତୁରେ ଶିଶିର ପଡ଼ିଲେ ମଧ୍ୟ ସକାଳକୁ ଶିଶିର ଉଡ଼ିଯାଇଥାଏ ।
(ଖ) ଅନ୍ୟାନ୍ୟ ଋତୁମାନଙ୍କରେ ରାତିର ତାପମାତ୍ରା ଶିଶିର ବିନ୍ଦୁ ଗଠିତ ହେବା ଉପଯୋଗୀ ନିମ୍ନ ତାପମାତ୍ରାକୁ ଆସେ ନାହିଁ ।
(ଗ) ଏହି ଋତୁମାନଙ୍କରେ ଗଛରେ ଯଥେଷ୍ଟ ପତ୍ର ଓ ତଳେ ଘାସ ଥାଏ ।
(ଘ) ଅନ୍ୟାନ୍ୟ ଋତୁରେ ବାୟୁରେ ଯଥେଷ୍ଟ ଜଳକଣା ନ ଥାଏ ।
(ଙ) ଏହି ଋତୁମାନଙ୍କରେ ଦିନର ତାପମାତ୍ରା ଅନ୍ୟ ଋତୁର ଦିନବେଳର ତାପମାତ୍ରା ଠାରୁ କମ୍ ।

୫ । ଖରଜଳରେ ଲୁଗା ସଫାକଲେ ଧୋବାମାନଙ୍କୁ ଅଧିକ ପରିମାଣରେ ଖାରସୋଡ଼ା ଖର୍ଚ୍ଚ କରିବାକୁ ପଡ଼େ, କାରଣ—

(କ) ଖରଜଳରେ ଲୁଗାଗୁଡ଼ିକ ଅଧିକ ମଇଳା ହୋଇଯାଏ ।
(ଖ) ଖରଜଳରେ ଦ୍ରବୀଭୂତ ପଦାର୍ଥଗୁଡ଼ିକ ଲୁଗା ଉପରେ ଏକ ପତଳା ଆବରଣ ପକାଇଦିଏ ।
(ଗ) ଖରଜଳରେ ଖାରସୋଡ଼ାର କୌଣସି ରାସାୟନିକ ପ୍ରକ୍ରିୟା ହୁଏ ନାହିଁ ।
(ଘ) ଖାରସୋଡ଼ାର କିଛି ଅଂଶ ଖରତ୍ୱ ନଷ୍ଟ କରିବାକୁ ଲାଗେ ।
(ଙ) ଖର ଜଳରେ ଡାଲି ସିଝେ ନାହିଁ—ଏଣୁ ବେଶୀ ସୋଡା ଲାଗିବ ବୋଲି ଧୋବାମାନେ ଭାବିଥାଆନ୍ତି ।

୬ । କେଉଁଟି ରାସାୟନିକ ପରିବର୍ତ୍ତନର ଉଦାହରଣ ନୁହେଁ ।

(କ) ମହମବତୀ ଜଳିଲେ ଧୀରେ ଧୀରେ ଅଦୃଶ୍ୟ ହୁଏ ।
(ଖ) ଲୁହା ଗନ୍ଧକ ଠିକ୍ ଅନୁପାତରେ ମିଶିଲେ ଲୌହ ସଲଫାଇଡ ହୁଏ ।
(ଗ) ଜଳ ବରଫରେ ପରିଣତ ହେଲେ ଆୟତନ ବୃଦ୍ଧି ହୁଏ ।

(ଘ) ଶରୀରରେ ଶ୍ୱେତସାର ଜାର୍ଣ୍ଣ ହୋଇ ଗ୍ଲୁକୋଜରେ ପରିଣତ ହୁଏ ।
(ଙ) ଲଘୁଗନ୍ଧକାମ୍ଳରେ ଦସ୍ତା ମିଶିଲେ ଉଦ୍‌ଜାନ ବାହାରେ ।

୭ । ହଇଜା ବ୍ୟାପିବା ସମୟରେ ଖାଲି ପେଟରେ ନ ରହିବା ଉଚିତ, କାରଣ—

(କ) ଖାଲିପେଟ ହେତୁ ହଇଜା ଜୀବାଣୁ ପେଟ ଭିତରକୁ ସହଜରେ ପ୍ରବେଶ କରି ପାରନ୍ତି ।
(ଖ) ଖାଲି ପେଟରେ ରହିଲେ ଝାଡ଼ା ହୋଇ ପରେ ତାହା ହଇଜାରେ ପରିଣତ ହୁଏ ।
(ଗ) ଏହାର ବୈଜ୍ଞାନିକ କାରଣ କିଛି ନାହିଁ, ପ୍ରଚଳିତ ବହୁ କୁସଂସ୍କାର ମଧ୍ୟରୁ ଏହି ନିୟମ ଅନ୍ୟତମ ।
(ଘ) ଖାଦ୍ୟ ପେଟରେ ଥିବା ପର୍ଯ୍ୟନ୍ତ ତହିଁରେ ଥିବା ଭିଟାମିନ ରୋଗ ନିବାରକ ଶକ୍ତି ଦେଉଥାଏ ।
(ଙ) ଖାଦ୍ୟ ପାକସ୍ଥଳୀରେ ଥିବା ପର୍ଯ୍ୟନ୍ତ ପାଚକ ରସ ଝରୁଥାଏ, ଯାହା ଜୀବାଣୁମାନଙ୍କୁ ମାରିପକାଏ ।

୮ । ଜଳର ବିଦ୍ୟୁତ୍ ବିଶ୍ଳେଷଣ ପରୀକ୍ଷା କଲାବେଳେ ଜଳରେ ସାମାନ୍ୟ ଗନ୍ଧକାମ୍ଳ ମିଶାଇ ଦିଆଯାଇଥାଏ, କାରଣ—

(କ) ଗନ୍ଧକାମ୍ଳ ଉଦ୍‌ଜାନ ଗ୍ୟାସ ତିଆରି କରିବାରେ ସାହାଯ୍ୟ କରିଥାଏ ।
(ଖ) ଗନ୍ଧକାମ୍ଳରେ ଅମ୍ଳଜାନ ଥିବାରୁ ଅମ୍ଳଜାନ ସହଜରେ ନିର୍ଗତ ହୁଏ ।
(ଗ) ଗନ୍ଧକାମ୍ଳ ଜଳରେ ଥିବା ମଇଳା ଅଂଶ ନଷ୍ଟ କରିଦିଏ ।
(ଘ) ଗନ୍ଧକାମ୍ଳ ଭୋଲ୍‌ଟାମିଟର ପ୍ଲାଟିନମ ତାର ପରିଷ୍କାର ରଖେ ।
(ଙ) ଗନ୍ଧକାମ୍ଳ ମିଶିବା ଫଳରେ ବିଦ୍ୟୁତ୍‌ଶକ୍ତି ସହଜରେ ପରିଚାଳିତ ହୁଏ ।

ଉପରୋକ୍ତ ଉଦାହରଣଗୁଡ଼ିକ ପରି ବିଭିନ୍ନ ବିଷୟରେ ପ୍ରବରଣୀୟ ବିଷୟକ ପରୀକ୍ଷଣ ପ୍ରସ୍ତୁତ କରାଯାଇପାରେ ।

## ମେଳକ ବିଷୟକ ପରୀକ୍ଷଣ (Matching test)

ମେଳକ ବିଷୟକ ପରୀକ୍ଷଣରେ ଦୁଇଟି ସ୍ତମ୍ଭ ଥାଏ । ଗୋଟିଏ ସ୍ତମ୍ଭରେ ପ୍ରଶ୍ନଗୁଡ଼ିକ ଓ ଅନ୍ୟ ସ୍ତମ୍ଭରେ ଉତ୍ତରଗୁଡ଼ିକ ଦିଆଯାଇଥାଏ । ଛାତ୍ରଟି ପ୍ରଥମ ସ୍ତମ୍ଭର ପ୍ରତ୍ୟେକ ପ୍ରଶ୍ନପାଇଁ ଦ୍ୱିତୀୟ ସ୍ତମ୍ଭରୁ ଉପଯୁକ୍ତ ଉତ୍ତର ବାଛିଥାଏ । ସମୟ ସମୟରେ ପ୍ରଥମ ସ୍ତମ୍ଭରେ କେତେକ ଅସମ୍ପୂର୍ଣ୍ଣ ବାକ୍ୟ ଦିଆଯାଇଥାଏ । ଦ୍ୱିତୀୟ ସ୍ତମ୍ଭରେ ଦିଆଯାଇଥିବା ଶବ୍ଦଗୁଡ଼ିକରୁ ମଧ୍ୟ

ଗୋଟିଏ ଗୋଟିଏ ଉପଯୁକ୍ତ ଶବ୍ଦ ବାଛି ବାକ୍ୟଗୁଡ଼ିକ ସମ୍ପୂର୍ଣ୍ଣ କରିବାକୁ ହୁଏ । ଏହି ପ୍ରକାର ପରୀକ୍ଷଣ ମଧ୍ୟ ବହୁ ବିଷୟ ପାଇଁ ପ୍ରସ୍ତୁତ କରାଯାଇପାରେ ।

## ସୁବିଧା ଓ ସମାବଧାରଣ

କେତେକ ବିଷୟ ଶିକ୍ଷା କଲା ବେଳେ ପରସ୍ପର ସଂପୃକ୍ତ ଦୁଇଟି ବିଷୟ ମନରେ ସ୍ଥାନ ପାଇଥାଏ ; ଭିନ୍ନ ଘଟଣା—ସମୟ, ଘଟଣା—ସ୍ଥାନ, ଘଟଣା— ବ୍ୟକ୍ତି ଇତ୍ୟାଦି ଏହାର ଉଦାହରଣ । ପରସ୍ପର ସହ ସଂପୃକ୍ତ ଦୁଇଟି ବିଷୟ ଛାତ୍ରଟି ଜାଣିଅଛି କି ନାହିଁ ତାହା ମେଳକ ବିଷୟକ ପରୀକ୍ଷଣରୁ ସହଜରେ ଜାଣି ହେବ ।

କୌଣସି ବିଷୟରେ କଏ, କ'ଣ, କାହିଁକି, କେଉଁଠାରେ ଜାଣିବାକୁ ଏହି ପରୀକ୍ଷଣ ବ୍ୟବହୃତ ହେଉଥିବାରୁ ଏଥିରେ ଛାତ୍ରର ପ୍ରକୃତ ବୁଝିପାରିବା ଶକ୍ତି ଜଣାପଡ଼େ ନାହିଁ, କେବଳ ସ୍ମୃତି ଶକ୍ତି ସମ୍ବନ୍ଧରେ ତାହା ସୂଚନା ମିଳେ । ଠିକ୍ ଭାବରେ ପ୍ରଶ୍ନ-ଗୁଡ଼ିକ ତିଆରି ନ ହୋଇଥିଲେ ଛାତ୍ରଙ୍କ ପକ୍ଷେ ଉତ୍ତର ଦେବାକୁ ଅଧିକ ସମୟ ଲାଗେ ।

## ନିୟମାବଳୀ

୧ । କେଉଁ ବିଷୟଟି ପ୍ରଶ୍ନ ସ୍ତମ୍ଭରେ ଓ କେଉଁ ବିଷୟଟି ଉତ୍ତର ସ୍ତମ୍ଭରେ ଲେଖାଯିବ ସେ ସମ୍ବନ୍ଧରେ ନିଶ୍ଚିତ ହେବା ଆବଶ୍ୟକ ।

ଆମେ ଯଦି ବୁଝିବୁ ଯେ ଛାତ୍ରଟି ଇତିହାସରୁ ଭିନ୍ନ ଯୁଦ୍ଧ କେଉଁ କେଉଁ ବର୍ଷ ହୋଇଥିଲା ତାହା ଜାଣି ଅଛି କି ନାହିଁ, ତେବେ ଭିନ୍ନ ଯୁଦ୍ଧର ନାମ ପ୍ରଶ୍ନ ସ୍ତମ୍ଭରେ ଓ ବର୍ଷଗୁଡ଼ିକ ଉତ୍ତର ସ୍ତମ୍ଭରେ ବା ବର୍ଷଗୁଡ଼ିକ ପ୍ରଶ୍ନ ସ୍ତମ୍ଭରେ ଓ ଯୁଦ୍ଧର ନାମ ଉତ୍ତର ସ୍ତମ୍ଭରେ ଦେଇ ପାରୁ । କିନ୍ତୁ ଯେଉଁଠାରେ ଆମେ ଭିନ୍ନ ଲେଖକ ଓ ତାଙ୍କ ଦ୍ୱାରା ଲିଖିତ ବହି ପିଲାଟି ଜାଣି ଅଛି କି ନାହିଁ ପରୀକ୍ଷା କରିବାକୁ ବୁଝିବୁ ସେଠାରେ ବହି-ଗୁଡ଼ିକର ନାମ ପ୍ରଶ୍ନ ସ୍ତମ୍ଭରେ ଓ ଲେଖକମାନଙ୍କର ନାମ ଉତ୍ତର ସ୍ତମ୍ଭରେ ରଖାଯିବା ଉଚିତ । ଯେଉଁଠାରେ ଗୋଟିଏ ସହ—ବହୁତର ସମ୍ପର୍କ ସେଠାରେ –'ବହୁତ' ପ୍ରଶ୍ନ ସ୍ତମ୍ଭରେ ଓ 'ଗୋଟିଏ' ଉତ୍ତର ସ୍ତମ୍ଭରେ ରଖାଯିବା ଉଚିତ ।

୨ । ଗୋଟିଏ ମେଳକ ପ୍ରଶ୍ନରେ ଏକ ପ୍ରକାର ବିଷୟ ଅନ୍ତର୍ଭୁକ୍ତ ହେବା ଦରକାର । ଯୁଦ୍ଧ—ଘଟିଥିବା ବର୍ଷ ଉପରେ ଗୋଟିଏ ପ୍ରଶ୍ନ ଦରକାର । ପ୍ରଶ୍ନ ସ୍ତମ୍ଭରେ ଯୁଦ୍ଧର ନାମ, ଲେଖକର ନାମ, ସ୍ଥାନର ନାମ ଇତ୍ୟାଦି ଦେଇ ଉତ୍ତର ସ୍ତମ୍ଭରେ ବର୍ଷ, ଲେଖକ, ଘଟଣା ରଖାଯିବା ଅନୁଚିତ ।

୩ । ଉତ୍ତରଗୁଡ଼ିକରେ ବିଭିନ୍ନ ବର୍ଷ ଲେଖାଥିଲେ ତାହା କ୍ରମ ଅନୁସାରେ ସଜ୍ଜିତ ହେବା ଆବଶ୍ୟକ ।

୪ । ସମସ୍ତ ପ୍ରଶ୍ନ ଓ ଉତ୍ତର ଗୋଟିଏ ପୃଷ୍ଠାରେ ରଖାଯିବା ଆବଶ୍ୟକ ।

୫ । କୌଣସି ମେଳକ ବିଷୟକ ପ୍ରଶ୍ନରେ ୧୦--୧୫ ଗୋଟିରୁ ଅଧିକ ବିଷୟ ରଖାଯିବା ଉଚିତ ନୁହେଁ ।

୬ । ପ୍ରଶ୍ନସ୍ତମ୍ଭରୁ ଉତ୍ତର ସ୍ତମ୍ଭରେ ରହିଥିବା ବିଷୟର ସଂଖ୍ୟା ଅଧିକ ହେବା ଉଚିତ । ଯଦି ପ୍ରଶ୍ନ ସ୍ତମ୍ଭରେ ପାଞ୍ଚଗୋଟି ଓ ଉତ୍ତର ସ୍ତମ୍ଭରେ ପାଞ୍ଚଗୋଟି ବିଷୟ ଥାଏ ତେବେ ଚାରିଗୋଟି ପ୍ରଶ୍ନ ଉତ୍ତର କଲାପରେ ପଞ୍ଚମ ପ୍ରଶ୍ନର ଉତ୍ତର ବଳେ ବଳେ ମିଳିଯିବ । ତେଣୁ ଶେଷ ପ୍ରଶ୍ନର ଉତ୍ତର ପାଇଁ ଉତ୍ତର ସ୍ତମ୍ଭରେ ଅନ୍ତତଃ ଚାରି ପାଞ୍ଚଗୋଟି ସମ୍ଭାବ୍ୟ ପ୍ରଶ୍ନର ଉତ୍ତର ରହିଥିବା ଦରକାର । ମେଳକ ପ୍ରଶ୍ନର ଉଦାହରଣ ନିମ୍ନରେ ପ୍ରଦତ୍ତ ହେଲା ।

ଉଦାହରଣ

## ଇତିହାସ

ପ୍ରଥମ ସ୍ତମ୍ଭରେ ଲେଖାଥିବା ଯୁଦ୍ଧଗୁଡ଼ିକ ଯେଉଁ ବର୍ଷ ହୋଇଥିଲା ତାହା ଦ୍ୱିତୀୟ ସ୍ତମ୍ଭରୁ ବାଛି ବାମ ପାର୍ଶ୍ୱସ୍ଥ ଖାଲି ସ୍ଥାନରେ (—) ଲେଖ । ବର୍ଷଗୁଡ଼ିକ ଯେଉଁ ଅକ୍ଷର ଦ୍ୱାରା ଚିହ୍ନିତ ହୋଇଅଛି ସେହି ଅକ୍ଷରଟି କେବଳ ଲେଖିବ ।

| ପ୍ରଥମ ସ୍ତମ୍ଭ | ଦ୍ୱିତୀୟ ସ୍ତମ୍ଭ |
|---|---|
| (—) ୧ । ଦ୍ୱିତୀୟ ଆଫଗାନ ସମର | (କ) ୧୫୨୪ ଖ୍ରୀ: ଅ: |
| (—) ୨ । ତୃତୀୟ ମରହଟ୍ଟା ସମର | (ଖ) ୧୫୨୬ ଖ୍ରୀ: ଅ: |
| (—) ୩ । ଦ୍ୱିତୀୟ ବ୍ରହ୍ମସମର | (ଗ) ୧୬୫୭ ଖ୍ରୀ: ଅ: |
| (—) ୪ । ଚତୁର୍ଥ ମହୀଶୂର ସମର | (ଘ) ୧୬୨୮ ଖ୍ରୀ: ଅ: |
| (—) ୫ । ସିପାହୀ ବିଦ୍ରୋହ | (ଙ) ୧୬୮୦ ଖ୍ରୀ: ଅ: |
| (—) ୬ । ପଲାସୀ ଯୁଦ୍ଧ | (ଚ) ୧୭୯୯ ଖ୍ରୀ: ଅ: |
| (—) ୭ । ପ୍ରଥମ ପାଣିପଥ ଯୁଦ୍ଧ | (ଛ) ୧୮୧୭ ଖ୍ରୀ: ଅ: |
| | (ଜ) ୧୮୫୨ ଖ୍ରୀ: ଅ: |
| | (ଝ) ୧୮୫୭ ଖ୍ରୀ: ଅ: |
| | (ଞ) ୧୮୫୭ ଖ୍ରୀ: ଅ: |

## ଭୂଗୋଳ

ପ୍ରଥମ ସ୍ତମ୍ଭରେ କେତେକ ପ୍ରକାର ଜଳବାୟୁର ବୈଶିଷ୍ଟ୍ୟ ଦିଆଯାଇଅଛି । ତାହା କି ପ୍ରକାର ଜଳବାୟୁ ତାହା ଦ୍ୱିତୀୟ ସ୍ତମ୍ଭରୁ ବାଛି ପ୍ରଥମ ସ୍ତମ୍ଭର ବାମ ପାର୍ଶ୍ୱରେ ଦିଆଯାଇଥିବା ଖାଲି ସ୍ଥାନରେ ଲେଖ ।

| ପ୍ରଥମ ସ୍ତମ୍ଭ | ଦ୍ୱିତୀୟ ସ୍ତମ୍ଭ |
|---|---|
| (—) ୧ । ଗ୍ରୀଷ୍ମଋତୁ ଅଳ୍ପକାଳ ପାଇଁ ହୁଏ, ଏହା ଶୁଷ୍କ ଓ ଶୀତଳ । ଶୀତକାଳ ଅତ୍ୟନ୍ତ ଶୀତଳ ଓ ବରଫପଡ଼ି ମଧ୍ୟ ହୁଏ । | (କ) ଭୂମଧ୍ୟ ସାଗରୀୟ ଜଳବାୟୁ |
| (—) ୨ । ଗ୍ରୀଷ୍ମଋତୁ ଦୀର୍ଘକାଳ ପାଇଁ ହୁଏ, ଅତ୍ୟନ୍ତ ଉଷ୍ମ ଓ ବୃଷ୍ଟିପାତ ୧୦୦ ସେ.ମି.ରୁ ଅଧିକ । ଶୀତକାଳ ଅଳ୍ପକାଳ ପାଇଁ ହୁଏ ମାତ୍ର ଶୁଷ୍କ ଓ ଶୀତଳ । | (ଖ) ମୌସୁମୀ ଜଳବାୟୁ |
| (—) ୩ । ଗ୍ରୀଷ୍ମକାଳ ଉଷ୍ମ ଓ ଶୁଷ୍କ । ଶୀତକାଳ ଆର୍ଦ୍ର, ସାଧାରଣ ଭାବେ ଉଷ୍ମ । | (ଗ) ତୁନ୍ଦ୍ରା ଅଞ୍ଚଳ ଜଳବାୟୁ |
| (—) ୪ । ଗ୍ରୀଷ୍ମକାଳ ଉଷ୍ମ ଓ ଆର୍ଦ୍ର, ଶୀତକାଳ ଶୀତଳ ଓ ଶୁଷ୍କ । | (ଘ) ନାତିଶୀତୋଷ୍ଣ ମହାଦେଶୀୟ ଜଳବାୟୁ |
| | (ଙ) ନାତିଶୀତୋଷ୍ଣ ସାମୁଦ୍ରିକ ଜଳବାୟୁ |
| | (ଚ) ଚୀନଦେଶୀୟ ଜଳବାୟୁ |
| | (ଛ) ସୁଦାନୀୟ ଜଳବାୟୁ |
| | (ଜ) ନିରକ୍ଷୀୟ ଜଳବାୟୁ |

### ଅନ୍ୟାନ୍ୟ ବସ୍ତୁନିଷ୍ଠ ପରୀକ୍ଷଣ

ଏପର୍ଯ୍ୟନ୍ତ ଯେତେ ପ୍ରକାର ବସ୍ତୁନିଷ୍ଠ ପରୀକ୍ଷଣ ସମ୍ବନ୍ଧରେ ଆଲୋଚନା କରାଗଲା ସେଗୁଡ଼ିକ ବ୍ୟତୀତ ଆଉ ମଧ୍ୟ କେତେକପ୍ରକାରର ପ୍ରଶ୍ନ ପଚରାଯାଇପାରେ । ଉଦାହରଣ-ସ୍ୱରୂପ, ପୁନଃ ସଜ୍ଜୀକରଣ (Rearangement) ପରୀକ୍ଷଣରେ ଆମେ ସୌରମଣ୍ଡଳର କେତେଗୋଟି ଗ୍ରହର ନାମଲେଖି ସେହି ଗ୍ରହଗୁଡ଼ିକର ନାମ ସୂର୍ଯ୍ୟଙ୍କଠାରୁ ଦୂରତା କ୍ରମରେ ସଜାଇ ରଖିବାକୁ କହିପାରୁ । ଗ୍ରହଗୁଡ଼ିକର ନାମ ସେଗୁଡ଼ିକର ଆକାର ଅନୁସାରେ ସଜାଇ ଲେଖିବାକୁ ମଧ୍ୟ ପଚାରିପାରୁ । ଚିହ୍ନଟୀକରଣ (Identification) ପରୀକ୍ଷଣରେ ଆମେ ବିଭିନ୍ନ ବସ୍ତୁ ଚିହ୍ନାଇବା ପାଇଁ ପ୍ରଶ୍ନ ପଚାରିପାରୁ । ଉଦାହରଣସ୍ୱରୂପ; ଆମେ ବିଭିନ୍ନ ପଦାର୍ଥ; ଯଥା— କାଠ, ତେଲ, ଜଳ, ମାର୍ବଲ, ଅମ୍ଳଜାନ, ବାୟୁ ଲେଖି ପିଲାଙ୍କୁ

ନିର୍ଦ୍ଦେଶ ଦେଇପାରୁ ଯେ, ଏହି ତାଲିକାରେ ଯେଉଁଟି ମୌଳିକ ପଦାର୍ଥ ତାହା ପାର୍ଶ୍ୱରେ 'କ', ଯେଉଁଟି ଯୌଗିକ ପଦାର୍ଥ ତାହା ପାଖରେ 'ଖ' ଓ ଯେଉଁଟି ମିଶ୍ରଣ ତାହା ପାଖରେ 'ଗ' ଲେଖ ।

## ବସ୍ତୁନିଷ୍ଠ ପରୀକ୍ଷଣର ପ୍ରସ୍ତୁତି ପାଇଁ କେତେକ ନିୟମ

ଯାହାହେଉ ଗୋଟିଏ ବସ୍ତୁନିଷ୍ଠ ପରୀକ୍ଷଣ ପ୍ରସ୍ତୁତ କରିବା ପାଇଁ କେତେକ ସତର୍କତା ମଧ୍ୟ ଅବଲମ୍ବନ କରିବାକୁ ହେବ । ଗୋଟିଏ ପରୀକ୍ଷଣରେ ବିଭିନ୍ନ ପ୍ରକାରର ବସ୍ତୁନିଷ୍ଠ ପ୍ରଶ୍ନ ଥିଲେ ଏକ ପ୍ରକାର ପ୍ରଶ୍ନଗୁଡ଼ିକ ଏକ ସଙ୍ଗେ ରଖାଯିବା ଉଚିତ । ସମସ୍ତ ବିକଳ୍ପ ଅନୁକ୍ରିୟା ପ୍ରଶ୍ନାବଳୀ ଏକ ସଙ୍ଗେ, ପ୍ରତ୍ୟାହରଣୀୟ ପ୍ରଶ୍ନାବଳୀ ଏକ ସଙ୍ଗେ ରହିବା ଉଚିତ । ଯେତେଦୂର ସମ୍ଭବ ସହଜ ପ୍ରଶ୍ନଗୁଡ଼ିକ ପ୍ରଥମେ ଓ କଠିନ ପ୍ରଶ୍ନଗୁଡ଼ିକ ଶେଷ ଆଡ଼କୁ ରଖାଯିବା ଆବଶ୍ୟକ । ଏହି କ୍ରମ ପ୍ରତ୍ୟେକ ପ୍ରକାର ପ୍ରଶ୍ନାବଳୀ ପାଇଁ ଅନୁସୃତ ହେବା ବାଞ୍ଛନୀୟ । ପ୍ରଶ୍ନଗୁଡ଼ିକ ପଠିତ ବିଷୟଗୁଡ଼ିକରେ ଯେତେ ଅଧିକ ପରିବ୍ୟାପ୍ତ ହୋଇପାରେ ସେତେ ଭଲ । ଆଜିକାଲି ଛାତ୍ରମାନେ ସେପରି ପ୍ରଶ୍ନ ନିର୍ବାଚନ କରି ପଢ଼ୁଅଛନ୍ତି ଏବଂ ତା' ଫଳରେ ସମସ୍ତ ସମୟରେ ନିର୍ବାଚିତ ପ୍ରଶ୍ନଗୁଡ଼ିକ ପରୀକ୍ଷାରେ ଆସିଲେ ଅଧିକ ନମ୍ବର, ନ ଆସିଲେ ଅତ୍ୟଳ୍ପ ନମ୍ବର ରଖୁଅଛନ୍ତି ତାହା କ୍ରମଶଃ ଦୂର ହୋଇଯିବ । କେବଳ ଯେ ବ୍ୟାପକ ଭାବରେ ପଠିତ ବିଷୟ ପ୍ରଶ୍ନାବଳୀର ପରିସରଭୁକ୍ତ ହେବା ବାଞ୍ଛନୀୟ ତାହା ନୁହେଁ, ବରଂ କେଉଁ ପଠିତ ବିଷୟ ଉପରେ କେତେ ଗୁରୁତ୍ୱ ଆରୋପ କରାଯିବ ତାହା ପ୍ରଥମରୁ ସ୍ଥିର କରିଦେବା ଉଚିତ । ଶିକ୍ଷକ ଷାଣ୍ମାସିକ ବା ବାର୍ଷିକ ପରୀକ୍ଷା ପାଇଁ ପ୍ରଶ୍ନ ପତ୍ର ତିଆରି କଲାବେଳେ କ'ଣ କ'ଣ ବିଷୟ ପଢ଼ାଇ ସାରିଛନ୍ତି ଓ ତନ୍ମଧ୍ୟରୁ କେଉଁ ବିଷୟଟି ପାଇଁ କେତେ ନମ୍ବର ରଖାଯିବ ତାହା ପ୍ରଥମରୁ ସ୍ଥିର କରିନେବା ଆବଶ୍ୟକ ।

ସର୍ବଶେଷରେ ଆଉ ଗୋଟିଏ ବିଷୟ ଭୁଲିଯିବା ଉଚିତ ନୁହେଁ । ଗଣିତ, ଇତିହାସ, ଭୂଗୋଳ ଆଦି ବିଭିନ୍ନ ବିଷୟ ନିର୍ଦ୍ଦିଷ୍ଟ ଲକ୍ଷ୍ୟ ସାଧନ ପାଇଁ ପାଠ୍ୟକ୍ରମରେ ରଖାଯାଇଅଛି । ଲକ୍ଷ୍ୟସାଧନ ହେଲେ ଛାତ୍ରର ଆଚରଣରେ ପରିବର୍ତ୍ତନ ଆସେ । ତେଣୁ ଲକ୍ଷ୍ୟ ଓ ପରିବର୍ତ୍ତିତ ଆଚରଣ ପ୍ରତି ଦୃଷ୍ଟି ଦିଆ ନ ଯାଇ ପ୍ରଶ୍ନ ପତ୍ର ପ୍ରସ୍ତୁତ କରାଯାଇ-ପାରେନା । ଉଦାହରଣସ୍ୱରୂପ, "ବିଜ୍ଞାନ ସମ୍ବନ୍ଧୀୟ ଶବ୍ଦ, ଘଟଣା, ନିୟମ ଆଦିର ଜ୍ଞାନ ଲାଭ କରିବାକୁ ସମର୍ଥ ହେବା"— ବିଜ୍ଞାନ ଶିକ୍ଷାର ଏକ ଲକ୍ଷ୍ୟ । ଯେଉଁ ଛାତ୍ର ଏହି ଲକ୍ଷ୍ୟ ହାସଲ କରିଥିବ ତାହାର ଆଚରଣ ପରିବର୍ତ୍ତିତ ହୋଇଥିବ, ଯଥା — ସେ

(୧) ବିଜ୍ଞାନ ସମ୍ବନ୍ଧୀୟ ଘଟଣା, ଶବ୍ଦ, ନିୟମ ଆଦି ସ୍ମରଣ କରିପାରିବ (୨)

ବିଜ୍ଞାନ ସମ୍ବନ୍ଧୀୟ ବିଭିନ୍ନ ବସ୍ତୁ ଚିହ୍ନି ଶ୍ରେଣୀ ବିଭାଗ କରିପାରିବ, (୩) ବିଭିନ୍ନ ବୈଜ୍ଞାନିକ ପଦ୍ଧତି ମଧ୍ୟରେ ତୁଳନା କରିପାରିବ, (୪) ବୈଜ୍ଞାନିକ କାରଣ ଓ ଫଳାଫଳ ମଧ୍ୟରେ ଠିକ୍ ସମ୍ପର୍କ ଦେଖିପାରିବ ଇତ୍ୟାଦି । ସେହିପରି ଯେବେ "ଛାତ୍ରମାନେ ବୈଜ୍ଞାନିକ ଜ୍ଞାନ ସେମାନଙ୍କର ଦୈନନ୍ଦିନ ଜୀବନରେ ପ୍ରୟୋଗ କରିବାକୁ ସମର୍ଥ ହେବା"—ବିଜ୍ଞାନ ଶିକ୍ଷାର ଅନ୍ୟତମ ଲକ୍ଷ୍ୟ ହୁଏ ତେବେ ଯେଉଁ ଛାତ୍ର ଏହି ଲକ୍ଷ୍ୟ ସାଧନ କରିଥିବ ତାହାର ଆଚରଣ ପରିବର୍ତ୍ତିତ ହୋଇଥିବ, ଯଥା—ସେ (୧) ବିଭିନ୍ନ ବିଷୟ ଦିଆ ଥିଲେ ସିଦ୍ଧାନ୍ତ ଗ୍ରହଣ କରିପାରିବ (୨) କୌଣସି ପରୀକ୍ଷା କରିବାକୁ କି ସାବଧାନତା ଅବଲମ୍ବନ କରିବାକୁ ହେବ କହିପାରିବ (୩) କୌଣସି ଭବିଷ୍ୟତ ଫଳାଫଳ କହି ପାରିବ (୪) କୌଣସି ପରୀକ୍ଷା ପାଇଁ ନୂତନ ବା ପରିମାର୍ଜିତ ପଦ୍ଧତିର ପ୍ରସ୍ତାବ ଦେଇପାରିବ (୫) ଏକ ବୈଜ୍ଞାନିକ ଘଟଣା ବା ଅନୁଭୂତିର କାରଣ ନିର୍ଣ୍ଣୟ କରିପାରିବ ଇତ୍ୟାଦି । ତେଣୁ ପ୍ରତ୍ୟେକ ପ୍ରଶ୍ନ ଲେଖିବା ଆଗରୁ ପ୍ରଥମେ ଲକ୍ଷ୍ୟ, ତା' ପରେ ଆଚରଣ' ତା' ପରେ ପ୍ରଶ୍ନଟିର ବିଷୟବସ୍ତୁ ଲେଖିବା ଉଚିତ । ପରେ କେବଳ ପ୍ରଶ୍ନଗୁଡ଼ିକୁ ନେଇ ଏକପରୀକ୍ଷଣ ରୂପରେ ସଜାଇ ଦିଆଯିବା ଦରକାର ।

### କ୍ରମସଞ୍ଚିତ ବିବରଣୀ (Cummulative records)

ଯେ କୌଣସି ଛାତ୍ର ବିଦ୍ୟାଳୟରେ ପ୍ରବେଶ କରିବା ପରଠାରୁ ବିଦ୍ୟାଳୟ ପରିତ୍ୟାଗ କରିବା ପର୍ଯ୍ୟନ୍ତ ଯାହା ଶିକ୍ଷା କରିଅଛି, ଯେଉଁ ଯେଉଁ ବିଷୟରେ କୃତିତ୍ୱ ଅର୍ଜନ କରିଅଛି ଏବଂ ଯେଉଁ ଯେଉଁ ଦିଗରେ ତାହାର ଆଗ୍ରହ, ସାମର୍ଥ୍ୟ ତଥା ବ୍ୟକ୍ତିତ୍ୱର ବିକାଶ ଘଟିଅଛି ସେ ସବୁର ଏକ ଲିପିବଦ୍ଧ ବିବରଣୀ ଯେ ରଖାଯିବା ଏକାନ୍ତ ଆବଶ୍ୟକ ଏଥିରେ କାହାରି ତିଳେ ମାତ୍ର ସନ୍ଦେହ ନାହିଁ । ମନୁଷ୍ୟ ପକ୍ଷରେ ବିଦ୍ୟାଳୟ ଜୀବନ ଏକ ନିର୍ମାଣାତ୍ମକ କାଳ (Formative Period) । ଏହି ସମୟରେ ଛାତ୍ରର ଚରିତ୍ର ଗଠିତ ହୁଏ ଏବଂ ତାହାର ସାମାଜିକ, ନୈତିକ, ବୈଷୟିକ ଗୁଣାବଳୀର ଅଭିବୃଦ୍ଧି ନିର୍ଦ୍ଦିଷ୍ଟ ରୂପରେଖ ନିଏ । ବିବରଣୀ କେବଳ ଇତିହାସ । ତେଣୁ ଲିପିବଦ୍ଧ ହେଲେ ତାହା ବୃଦ୍ଧିର ଦିଗ ନିୟନ୍ତ୍ରଣ କରିପାରିବ ନାହିଁ, କିନ୍ତୁ ଯେଉଁ ଆଗନ୍ତୁ ଶିକ୍ଷକ ଏହି ଅଭିବୃଦ୍ଧି ଠିକ୍ ବାଟରେ ନିୟନ୍ତ୍ରଣ କରିବାକୁ ଚାହିଁବେ ବା ସେଥିପାଇଁ ଆବଶ୍ୟକ ମୌଳିକ ତଥ୍ୟ ଖୋଜିବାକୁ ଚାହିଁବେ ତାଙ୍କୁ ଏହି କ୍ରମ ସଞ୍ଚିତ ବିବରଣୀ ସବୁମତେ ସାହାଯ୍ୟ କରିପାରିବ । ଛାତ୍ରର ବିଭିନ୍ନ ଦିଗରେ ଅନ୍ତର୍ଗତ ବିବରଣୀରୁ ଅଧ୍ୟୟନ କରି ତାହାକୁ ଆବଶ୍ୟକ ସାହାଯ୍ୟ ଯୋଗାଇ ଦେଇହେବ ।

ପୂର୍ବରୁ ପରୀକ୍ଷା ପଦ୍ଧତି କିପରି ପରିମାର୍ଜିତ ହୋଇପାରେ ତାହା ବୁଝାଯାଇଅଛି । ବସ୍ତୁନିଷ୍ଠ ପରୀକ୍ଷଣ ଦ୍ୱାରା ମୂଲ୍ୟାୟନ ପଦ୍ଧତି କିପରି ଅଧିକ ଫଳପ୍ରଦ କରିହେବ ତାହା ମଧ୍ୟ ବୁଝାଯାଇଅଛି । ପୁସ୍ତକର ପ୍ରଥମ ଭାଗରେ ଅନ୍ତଃ ସମୀକ୍ଷାର ଗୁରୁତ୍ୱ ମଧ୍ୟ

ଅନ୍ୱେଷିତ ହୋଇଅଛି । ଯାହାହେଉ ଅନ୍ତଃ ସମୀକ୍ଷା ଓ ବାହ୍ୟ ସମୀକ୍ଷା ମିଳିତ ଭାବରେ ଛାତ୍ରର ସର୍ବଦିଗ ବିକାଶର ରୂପରେଖ ସମ୍ବନ୍ଧରେ ଉପଯୁକ୍ତ ତଥ୍ୟ ଦେଇପାରିବ ନାହିଁ ଯଦିଓ ଏସବୁ ଛାତ୍ରର ଭବିଷ୍ୟତ ଶିକ୍ଷା ଓ ବୃତ୍ତି ନିର୍ଣ୍ଣୟ କରିବାରେ ପ୍ରଧାନ ସହାୟକ । କ୍ରମସଞ୍ଚିତ ବିବରଣୀ ଛାତ୍ରର ବୌଦ୍ଧିକ ବିକାଶର ତଥ୍ୟ ଦେବା ସଙ୍ଗେ ସଙ୍ଗେ ତାହାର ଅନ୍ୟାନ୍ୟ ଦିଗରେ ଅଗ୍ରଗତି ସମ୍ବନ୍ଧରେ ମଧ୍ୟ ସୂଚନା ଦେଇପାରିବ ।

ଆଜି ଦେଶର ଅନେକ ବିଦ୍ୟାଳୟରେ ଏହି କ୍ରମସଞ୍ଚିତ ବିବରଣୀର ପ୍ରଚଳନ କରାଯାଇଅଛି, ତଥାପି ଅଧିକାଂଶ ବିଦ୍ୟାଳୟରେ ଏହା ପ୍ରଚଳିତ ହୋଇନାହିଁ କିମ୍ବା ଏହାର ପ୍ରଚଳନ ବାଧ୍ୟତାମୂଳକ ହୋଇନାହିଁ । କ୍ରମସଞ୍ଚିତ ବିବରଣୀର ପ୍ରଚଳନ ଫଳରେ ଶିକ୍ଷକମାନଙ୍କର କାର୍ଯ୍ୟଭାର ଯେ ବଢ଼ିଯାଏ ଏଥିରେ ସନ୍ଦେହ ନାହିଁ ମାତ୍ର ପରିଶ୍ରମ ତୁଳନାରେ ଏହାର ସୁଫଳ ଅଧିକ । ପ୍ରକୃତ କ୍ଷେତ୍ରରେ ଦେଖିବାକୁ ଗଲେ ଶିକ୍ଷକମାନେ ଏ ଦିଗରେ ଅଭ୍ୟସ୍ତ ହୋଇନାହାନ୍ତି । ଥରେ ଏହି ବିବରଣୀ ଲିପିବଦ୍ଧ କରିବାରେ ଶିକ୍ଷକମାନେ ଅଭ୍ୟସ୍ତ ହେଲେ ସେମାନେ ବିଦ୍ୟାଳୟର ଯେ କୌଣସି ଅନ୍ୟାନ୍ୟ ଅତ୍ୟାବଶ୍ୟକ କାର୍ଯ୍ୟକ୍ରମ ପରି ଏହାକୁ ସ୍ଥାନ ଦେବେ । ଏଥିପାଇଁ ମଧ୍ୟ ପ୍ରଶାସନିକ ତତ୍ପରତା ତଥା ଦକ୍ଷତା କେତେକାଂଶରେ ଆବଶ୍ୟକ ହେଉଅଛି ।

ବିଦ୍ୟାଳୟଗୁଡ଼ିକରେ କ୍ରମବର୍ଦ୍ଧମାନ ଛାତ୍ର ସଂଖ୍ୟା ବୃଦ୍ଧିରୁ କୌଣସି ଜଣେ ଶିକ୍ଷକଙ୍କ ପକ୍ଷେ ଏହି ବିବରଣୀ ରଖିବାର ଦାୟିତ୍ୱ ନେବା ଏକ ଅସମ୍ଭବ ବ୍ୟାପାର । କେତେକ ବିଦ୍ୟାଳୟରେ ଉପଦେଶନ (Guidance) କାର୍ଯ୍ୟକ୍ରମ ପାଇଁ ଶିକ୍ଷକ ନିଯୁକ୍ତ ହୋଇଥିଲେହେଁ ଅନ୍ୟ ଶିକ୍ଷକମାନଙ୍କୁ ଏ ଦାୟିତ୍ୱ ବହନ କରିବାକୁ ହେବ । ତେଣୁ ଶ୍ରେଣୀଶିକ୍ଷକ ଏହି କ୍ରମସଞ୍ଚିତ ବିବରଣୀ ଦାୟିତ୍ୱରେ ରହିବା ଯୁକ୍ତିଯୁକ୍ତ ମନେ ହୁଏ, କାରଣ ଶ୍ରେଣୀର ଛାତ୍ରମାନଙ୍କୁ ସେ ଯେପରି ଘନିଷ୍ଠ ଭାବରେ ଜାଣନ୍ତି ବା ଜାଣିବା ଆଶା କରାଯାଏ ତାହା ଅନ୍ୟମାନଙ୍କ ପକ୍ଷେ ସମ୍ଭବ ନୁହେଁ । କେତେକ ବିଦ୍ୟାଳୟରେ ଶ୍ରେଣୀଶିକ୍ଷକ ଗୋଟିଏ ଦଳ ଛାତ୍ରଙ୍କ ସହ ଏକ ବର୍ଷ କାର୍ଯ୍ୟ କଲାପରେ ପରବର୍ଷ ସେହି ଶ୍ରେଣୀରୁ ଉତ୍ତୀର୍ଣ୍ଣ ହୋଇଥିବା ଅନ୍ୟାନ୍ୟ ଛାତ୍ରଙ୍କ ସଙ୍ଗେ କାର୍ଯ୍ୟ କରନ୍ତି । କେତେକ ବିଦ୍ୟାଳୟରେ ଛାତ୍ରମାନଙ୍କ ସହ ଶିକ୍ଷକ ଶ୍ରେଣୀ ପରିବର୍ତ୍ତନ କରୁଥାନ୍ତି । ଯାହାହେଉ ଶିକ୍ଷକ ଛାତ୍ରମାନଙ୍କ ଦାୟିତ୍ୱରେ ଏକ ବା ଏକାଧିକ ବର୍ଷ ରହିବା ପ୍ରଧାନ କଥା ନୁହେଁ, ସେ ସେମାନଙ୍କର କେତେ ଘନିଷ୍ଠ ସମ୍ପର୍କରେ ଆସୁଅଛନ୍ତି ତାହାହିଁ ପ୍ରଧାନ ବିଷୟ । ତାଙ୍କର ଏହି ସମ୍ପର୍କ ଉପରେ କ୍ରମସଞ୍ଚିତ ବିବରଣୀର ସଫଳତା ଅନେକାଂଶରେ ନିର୍ଭର କରେ ।

ଶିକ୍ଷକମାନେ ଏହି ଦାୟିତ୍ୱ ସୁଷ୍ଠୁରୂପେ ସମ୍ପାଦନ କରି ପାରିବେ କି ନାହିଁ ଏ ସମ୍ବନ୍ଧରେ ମଧ୍ୟ କେତେକ ସନ୍ଦିହାନ । ସେମାନେ ସେମାନଙ୍କର ବ୍ୟକ୍ତିଗତ ବିସ୍ତର ଓ

ଦିଙ୍ମୂଳ ଧାରଣାର ବଶବର୍ତ୍ତୀ ହୋଇ ଛାତ୍ରମାନଙ୍କ ସମ୍ବନ୍ଧରେ ନିରପେକ୍ଷ ମତାମତ ଲିପିବଦ୍ଧ କରି ପାରିବେ କି ? ଏହି ପ୍ରକାର ସନ୍ଦେହ ପ୍ରକୃତରେ ଏକ ଅଯଥା ଆଶଙ୍କା । ଏହା ସତ୍ୟ ଯେ ଏହି ଦାୟିତ୍ୱ ତୁଲାଇବାକୁ ତାଲିମପ୍ରାପ୍ତ ଶିକ୍ଷକଙ୍କର ଆବଶ୍ୟକତା ରହିଅଛି । ଏଣୁ ବିଭିନ୍ନ ପ୍ରଶିକ୍ଷଣ ମହାବିଦ୍ୟାଳୟ, ରାଜ୍ୟ ଉପଦେଶନ ବିଭାଗ ମିଳିତ ଭାବରେ ଶିକ୍ଷକମାନଙ୍କୁ ତାଲିମ୍ ଦେବା କାର୍ଯ୍ୟକ୍ରମ ହାତକୁ ନେଇପାରନ୍ତି । ବର୍ତ୍ତମାନ ଏ ଦିଗରେ ତାଲିମ୍ ଦେବା କାର୍ଯ୍ୟକ୍ରମ ବହୁ ରାଜ୍ୟରେ ଅବ୍ୟାହତ ରହିଅଛି । ତେଣୁ ଶିକ୍ଷକମାନେ ତାଲିମ୍ ପାଇବା ପରେ ଏହି କାର୍ଯ୍ୟରେ କିଛିକାଳ ଅଭ୍ୟସ୍ତ ହୋଇଗଲେ ଏବଂ ପ୍ରଧାନ ଶିକ୍ଷକ, ବିଦ୍ୟାଳୟ ପରିଦର୍ଶକ ଏହାର ଉପଯୁକ୍ତ ତତ୍ତ୍ୱାବଧାନ କଲେ ଓ ଏହି କାର୍ଯ୍ୟକ୍ରମକୁ ଉତ୍ସାହିତ କଲେ କୌଣସି ଅସୁବିଧା ଉପୁଜିବାର ଅବକାଶ ରହିବ ନାହିଁ ।

ବିବରଣୀର ଆକାର ପ୍ରକାର କ'ଣ ହେବ ଓ ଏଥିରେ କେଉଁ କେଉଁ ବିଷୟର ଅଗ୍ରଗତି ସମ୍ବନ୍ଧରେ ବିବରଣୀ ରଖାଯିବ ସେ ସମ୍ବନ୍ଧରେ କୌଣସି ନିର୍ଦ୍ଦିଷ୍ଟତା ନାହିଁ । କେହି କେହି କ୍ଷୁଦ୍ର ପୁସ୍ତିକା ଆକାରରେ କ୍ରମସଞ୍ଚିତ ବିବରଣୀ ରଖିଥାଆନ୍ତି । ପୁସ୍ତିକାର ପ୍ରତ୍ୟେକ ପୃଷ୍ଠାରେ ଭିନ୍ନ ଭିନ୍ନ ଦିଗର ଅଗ୍ରଗତି ଲିଖିତ ହୋଇଥାଏ । ବିବରଣୀରେ ବ୍ୟବହୃତ ହେଉଥିବା ଶବ୍ଦଗୁଡ଼ିକର ବ୍ୟାଖ୍ୟା ଅନ୍ୟ ଏକ କ୍ଷୁଦ୍ର ପୁସ୍ତିକାରେ ଦିଆଯାଇ-ଥାଏ । କୌଣସି କୌଣସିଠାରେ ଖଣ୍ଡିଏ ବଡ଼ ମୋଟା କାଗଜରେ ବିଭିନ୍ନ ସ୍ଥାନରେ ବିଭିନ୍ନ ଦିଗର ଅଗ୍ରଗତି ଲିପିବଦ୍ଧ କରିବାକୁ ସ୍ଥାନ ନିର୍ଦ୍ଦିଷ୍ଟ ହୋଇଥାଏ । ଏହି ବଡ଼ କାଗଜ ଖଣ୍ଡିକ ସଙ୍ଗି ଗୋଟିଏ ଖୋଳ ମଧ୍ୟରେ ରଖାଯାଏ । ଯାହାହେଉ ବିବରଣୀର ଆକାର ପ୍ରକାର ଯେପରି ହେଉନା କାହିଁକି ସେଥିରେ ଅନ୍ୟୂନ କେଉଁ କେଉଁ ବିଷୟ ସ୍ଥାନ ପାଇବ ତାହାହିଁ ବିଚାର କରିବା କଥା । ପ୍ରାଥମିକ ସ୍ତରରେ ଚତୁର୍ଥ ଶ୍ରେଣୀ ପରଠାରୁ ଏହି ବିବରଣୀ ରଖିବାର ଆବଶ୍ୟକତା ସମ୍ବନ୍ଧରେ କୋଠାରୀ କମିଶନ ମତ ଦେଇଅଛନ୍ତି । ତେଣୁ ଏହା ସୁସ୍ପଷ୍ଟ ଯେ ବିବରଣୀର ବିଷୟବସ୍ତୁ ଏପରି ସରଳ, ସୁବୋଧ୍ୟ ହେବା ଉଚିତ, ଯେପରି ଯେ କୌଣସି ଶିକ୍ଷକ ଏହାର ଦାୟିତ୍ୱ ନେଇ-ପାରିବେ । ପ୍ରାଥମିକ ଶିକ୍ଷାର ପରବର୍ତ୍ତୀ ସ୍ତରରେ ଏହି ବିବରଣୀରେ ଅଧିକ ବିଷୟ ଲିପିବଦ୍ଧ କରାଯିବା ପାଇଁ ଏହା ଉଦ୍ଦିଷ୍ଟ ହେବା ବାଞ୍ଛନୀୟ । ବିଭିନ୍ନ ରାଜ୍ୟ ତଥା ଉପଦେଶନ ସଂସ୍ଥା ବିଭିନ୍ନ ପ୍ରକାରର ବିବରଣୀ ପ୍ରଚଳନ କରାଉଥିବାରୁ ଗୋଟିଏ କ୍ରମସଞ୍ଚିତ ବିବରଣୀରେ ଅନ୍ୟୂନ ଯେଉଁ ଯେଉଁ ବିଷୟ ରହିବା ଉଚିତ ସେହି ଅନୁସାରେ ଏକ ନମୁନା ପରପୃଷ୍ଠାରେ ପ୍ରଦତ୍ତ ହେଲା ।

ନମୁନା :

## କ୍ରମସଞ୍ଚିତ ବିବରଣୀ

ବିଦ୍ୟାଳୟର ନାମ........... ... .......

ଛାତ୍ର ସମ୍ବନ୍ଧରେ ତଥ୍ୟମୂଳକ ତଥ୍ୟ
ଛାତ୍ରର ନାମ—
ଜନ୍ମ ତାରିଖ—
ପିତା/ମାତାଙ୍କ ନାମ—
ପିତା/ମାତା ବା ଅଭିଭାବକଙ୍କ ବୃତ୍ତି—
ପିତା/ମାତା ବା ଅଭିଭାବକଙ୍କ ଠିକଣା—
ପୂର୍ବରୁ ପଢିଥିବା ବିଦ୍ୟାଳୟର ନାମ –

| ଖ୍ରୀଷ୍ଟାବ୍ଦରୁ | ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ | ବିଦ୍ୟାଳୟ ପରିବର୍ତ୍ତନ କରିବା କାରଣ |
|---|---|---|
| ୧, | | |
| ୨ | | |
| ୩ | | |

ପରିବାରର ଅନ୍ୟାନ୍ୟ ସନ୍ତାନ ସନ୍ତତିଙ୍କ ମଧ୍ୟରେ ଛାତ୍ରଟିର ସ୍ଥାନ—
ପରିବାରର ସଂକ୍ଷିପ୍ତ ଇତିହାସ—

## ଅଧୀତ ବିଷୟରେ ବୈଚକ୍ଷଣ

| | | ୧୯— | ୧୯— | ୧୯— |
|---|---|---|---|---|
| ବିଷୟ | ପୂର୍ଣ୍ଣାଙ୍କ | ଫଳାଙ୍କ ମନ୍ତବ୍ୟ | ଫଳାଙ୍କ ମନ୍ତବ୍ୟ | ଫଳାଙ୍କ ମନ୍ତବ୍ୟ |
| ୧ । ମାତୃଭାଷା ବା ଆଞ୍ଚଳିକ ଭାଷା | | | | |
| ୨ । ଦ୍ୱିତୀୟ ଭାଷା | | | | |
| ୩ । ଇଂରାଜୀ | | | | |
| ୪ । ଗଣିତ | | | | |
| ୫ । ବିଜ୍ଞାନ | | | | |
| ୬ । ଇତିହାସ | | | | |
| ୭ । ଭୂଗୋଳ | | | | |
| ୮ । ଇଚ୍ଛାଧୀନ ବିଷୟର ନାମ | | | | |

## କାର୍ଯ୍ୟକଳାପ (ବ୍ୟାବହାରିକ)

| | ୧୯— | | ୧୯— | | ୧୯ | |
|---|---|---|---|---|---|---|
| | କ୍ରମ (Grade) | ମନ୍ତବ୍ୟ | କ୍ରମ | ମନ୍ତବ୍ୟ | କ୍ରମ | ମନ୍ତବ୍ୟ |
| ୧ । ସ୍ୱାସ୍ଥ୍ୟ ଶିକ୍ଷା | | | | | | |
| (କ) ଶାରୀରିକ ଦକ୍ଷତା | | | | | | |
| (ଖ) କ୍ରୀଡ଼ାରେ ଅଂଶ ଗ୍ରହଣ | | | | | | |
| ୨ । କାରିଗରୀ ବିଦ୍ୟା | | | | | | |
| ୩ । ଚିତ୍ରାଙ୍କନ ଓ ଚିତ୍ରବିଦ୍ୟା | | | | | | |
| ୪ । ସାମାଜିକ ଓ ନାଗରିକ କାର୍ଯ୍ୟକଳାପ | | | | | | |
| (କ) ସେବା | | | | | | |
| (ଖ) ଦଳଗତ ମନୋଭାବ | | | | | | |
| (ଗ) ସଂଗ୍ରହ (Collection) | | | | | | |
| (ଘ) ଅଭିବ୍ୟକ୍ତି (Expression) | | | | | | |
| ୫ । ସଙ୍ଗୀତ | | | | | | |
| ୬ । ନୃତ୍ୟ | | | | | | |

## ସ୍ୱାସ୍ଥ୍ୟ ବିବରଣୀ

| | ୧୯— | ୧୯— | ୧୯— |
|---|---|---|---|
| ୧ । ଉଚ୍ଚତା | | | |
| ୨ । ଓଜନ | | | |
| ୩ । ଗ୍ରୁଢମାପ—ପ୍ରସାରିତ | | | |
| ସଙ୍କୁଚିତ | | | |
| ସାଧାରଣ | | | |
| ୪ । ସ୍ୱାସ୍ଥ୍ୟ ପରିଦର୍ଶକଙ୍କ ବିବରଣୀ | | | |

## ବ୍ୟକ୍ତିତ୍ୱର ଲକ୍ଷଣ (Personality traits)

| | ୧୯— କ୍ରମ | ୧୯— କ୍ରମ | ୧୯— କ୍ରମ |
|---|---|---|---|
| ୧ । ଉଦ୍ୟମଶୀଳତା (Initiative) | | | |
| ୨ । ସାଧୁତା (Integrity) | | | |
| ୩ । ଦୃଢ଼ତା (Persistance) | | | |
| ୪ । ନେତୃତ୍ୱ (Leadership) | | | |
| ୫ । ଆତ୍ମବିଶ୍ୱାସ (Self Confidence) | | | |
| ୬ । ଭାବ ନିୟନ୍ତ୍ରଣ (Emotional Control) | | | |
| ୭ । ସାମାଜିକ ମନୋବୃତ୍ତି (Social Aptitude) | | | |

## ସାଧାରଣ ମନ୍ତବ୍ୟ

| | ୧୯— | ୧୯— | ୧୯— |
|---|---|---|---|
| ୧ । କେଉଁ ସ୍ୱତନ୍ତ୍ର ଦାୟିତ୍ୱ ବହନ କରୁଥିଲେ | | | |
| ୨ । ବିଶେଷ ମନ୍ତବ୍ୟ | | | |
| ୩ । ଶ୍ରେଣୀଶିକ୍ଷକଙ୍କ ଦସ୍ତଖତ | | | |
| ୪ । ପ୍ରଧାନ ଶିକ୍ଷକଙ୍କ ଦସ୍ତଖତ | | | |

ବ୍ୟକ୍ତିତ୍ୱ ବିଲକ୍ଷଣ ସମ୍ବନ୍ଧରେ ଦିଆଯାଇଥିବା ଶବ୍ଦଗୁଡ଼ିକର ଅର୍ଥ ଶିକ୍ଷକ ସ୍ପଷ୍ଟ ଭାବରେ ବୁଝିଥିବା ଉଚିତ । ନଚେତ୍ ସେ କେବଳ କ୍ରମ ସ୍ଥାନରେ କ, ଖ, ବା ଗ ଲେଖିଦେବେ ଯାହାର ମୂଲ୍ୟାଙ୍କନ ନିଷ୍ଠାର ସହିତ କରାଯାଇ ନ ଥିବ । ତେଣୁ ଖଣ୍ଡିଏ କ୍ଷୁଦ୍ର ପୁସ୍ତିକାରେ ଏହି ସବୁ ଶବ୍ଦର ବ୍ୟାଖ୍ୟା ଦିଆଯିବା ଆବଶ୍ୟକ ଏବଂ ବିବରଣୀଟି ବର୍ଷର କେଉଁ ସମୟରେ କିପରି ଲିପିବଦ୍ଧ କରିବ ତାହା ମଧ୍ୟ ପୁସ୍ତିକାରେ ସ୍ପଷ୍ଟ ସୂଚିତ ହୋଇଥିବା ଆବଶ୍ୟକ । ପୁସ୍ତକଟିରେ କି ପ୍ରକାର ବ୍ୟାଖ୍ୟା ଦିଆଯିବା ଉଚିତ ତାହା ପର ପୃଷ୍ଠାରେ ପ୍ରଦତ୍ତ ହେଲା —

| ବ୍ୟକ୍ତିତ୍ୱର ଲକ୍ଷଣ | କ | ଖ | ଗ | ଘ | ଙ |
|---|---|---|---|---|---|
| ଉଦ୍ୟମ ଶୀଳତା | ଯଥେଷ୍ଟ ମୌଳିକତା ଓ ସ୍ୱାଧୀନତା ପ୍ରଦର୍ଶନ କରେ । | ଉଦ୍ୟମ ଶୀଳତା କରିବାପାଇଁ ଇଚ୍ଛୁକ | ଉଦ୍ୟମ ଶୀଳତା କରିବାକୁ କ୍ଷମ | ମୋଟ ଉପରେ ଅନିଚ୍ଛୁକ | ଅନ୍ୟମାନଙ୍କ ଉପରେ ଅତ୍ୟନ୍ତ ନିର୍ଭରଶୀଳ, ଆତ୍ମପ୍ରତ୍ୟୟହୀନ। |
| ସାଧୁତା | ଯେ କୌଣସି ପରିସ୍ଥିତିରେ ସମ୍ପୂର୍ଣ୍ଣ ବିଶ୍ୱାସଯୋଗ୍ୟ । | ଅନେକାଂଶରେ ନିର୍ଭରଯୋଗ୍ୟ । | ସାଧାରଣତଃ ନିର୍ଭରଯୋଗ୍ୟ । | ଥରେ ଥରେ ସନ୍ଦେହଜନକ । | ନିଶ୍ଚିତ ଅସାଧୁ |
| ଦୃଢ଼ାଗ୍ରହ (କେଉଁ ବିଷୟ ବା ପରିସ୍ଥିତି ଲାଗି ପାଇଁ ଉଦ୍ଦିଷ୍ଟ ତାହାର ସୂଚନା ଦେବାକୁ ହେବ । ଜଣେ ଛାତ୍ରର ଗଣିତରେ ଦୃଢ଼ାଗ୍ରହ ଥାଇପାରେ ଅନ୍ୟ ଜଣଙ୍କର ଶାରୀରିକ କାର୍ଯ୍ୟକଳାପରେ ଥାଇ ପାରେ । ) | ଦୃଢ଼ାଗ୍ରହ ସହ କାର୍ଯ୍ୟରେ ଲାଗି ପଡ଼ିଥିବ । | ସହଜରେ ବନ୍ଦ ହେବାର ନୁହେଁ । | କାର୍ଯ୍ୟରେ ବେଶ୍ ଧୀର ସ୍ଥିର | ବେଳେ ବେଳେ ଚଞ୍ଚଳ | ସହଜରେ ଗୁଣ୍ଡପଳାଏ । |

ଅନ୍ୟାନ୍ୟ ଶବ୍ଦଗୁଡ଼ିକର ଏହିପରି ବ୍ୟାଖ୍ୟା ଦିଆଯାଇପାରେ ।

ସମସ୍ତ ସମୟରେ ପ୍ରଶ୍ନ ଉଠେ କଣେ ଛାତ୍ରଙ୍କ ସମ୍ବନ୍ଧରେ ଯଦି କୌଣସି ଗୁପ୍ତ ତଥ୍ୟ ଥାଏ ଯାହା ଛାତ୍ରଟିପକ୍ଷେ ଅତୃପ୍ତିକର ବୋଧହେବ ତାହା କ୍ରମସଞ୍ଚିତ ବିବରଣୀରେ ଲିପିବଦ୍ଧ ହେବ କି ନାହିଁ । ଯେତେବେଳେ ଛାତ୍ରଟିର ସର୍ବାଙ୍ଗୀଣ ବିକାଶର ଏକ ବିବରଣୀ ରଖାଯାଉଅଛି ସେତେବେଳେ ନାନା ଅତୃପ୍ତିକର ଘଟଣା ଛାତ୍ରଟିକୁ ଠିକ୍ ବୁଝିବାରେ ଅନେକ ସାହାଯ୍ୟ କରିପାରେ । ତେଣୁ ଆବଶ୍ୟକ ନ ହେଲେ ଏହି ବିବରଣୀ ଅନ୍ୟ କେହି ଦେଖିବା ଉଚିତ ନୁହେଁ । ଯଦି କଣେ ଶିକ୍ଷକ ଛାତ୍ରଟିର କୌଣସି ସମସ୍ୟା ସମାଧାନଲାଗି ଯଥାର୍ଥରେ ଆଗ୍ରହୀ ତେବେ ସେ ଯେ କୌଣସି ଗୁପ୍ତ ବିବରଣୀ ଦେଖିବା ଅଧିକାରକ ନୁହେଁ । ଏହି ସମସ୍ୟା ଆଉ ଗୋଟିଏ ପ୍ରକାରେ ସମାଧାନ କରାଯାଇପାରେ । ଅନ୍ୟ ସମସ୍ତ ବିଷୟ କ୍ରମସଞ୍ଚିତ ବିବରଣୀରେ ଓ ଅତୃପ୍ତିକର ଘଟଣାଗୁଡ଼ିକ ଅନ୍ୟ ଏକ ଅଭିଲେଖରେ ରଖାଯାଇପାରେ । ଯେ କୌଣସି ବ୍ୟକ୍ତି କ୍ରମସଞ୍ଚିତ ବିବରଣୀ ଦେଖିପାରନ୍ତି; ମାତ୍ର ଛାତ୍ରକୁ ନିର୍ଦ୍ଦିଷ୍ଟ ଉପଦେଶ ଦେବାକୁ ଚାହୁଁଥିବା ବ୍ୟକ୍ତି କେବଳ ଗୁପ୍ତତଥ୍ୟ ଦେଖିପାରନ୍ତି ।

## ପ୍ରଶ୍ନାବଳୀ

୧ । ଶତାବ୍ଦୀ ଶତାବ୍ଦୀ ଧରି ପ୍ରଚଳିତ ହୋଇଆସୁଥିବା ପରୀକ୍ଷା ପଦ୍ଧତି ପରିବର୍ତ୍ତନ କରିବାର ଆବଶ୍ୟକତା କଣ ? ଆଲୋଚନା କର ।

୨ । ପ୍ରଚଳିତ ନିବନ୍ଧାତ୍ମକ ପ୍ରଶ୍ନଗୁଡ଼ିକ ଉନ୍ନତ ହେବାପାଇଁ କି କି ପଦକ୍ଷେପ ନିଆଯାଇପାରେ ?

୩ । ସ୍ମରଣ-ବିଷୟକ ପରୀକ୍ଷଣର ନିୟମାବଳୀ ଲେଖ ଓ କେତେକ ଉଦାହରଣ ଦିଅ ।

୪ । ବିକଳ୍ପ-ଅନୁଚିନ୍ତା ପରୀକ୍ଷଣର ଲୋକପ୍ରିୟତା ସତ୍ତ୍ୱେ ଏହା ଏକ ବହୁ ସମାଲୋଚିତ ପରୀକ୍ଷଣ । କାହିଁକି ? ଏହି ପରୀକ୍ଷଣର କେତେକ ଉଦାହରଣ ଦିଅ ।

୫ । ପ୍ରବରଣୀୟ ପରୀକ୍ଷଣ ସମସ୍ତ ପ୍ରକାର ବସ୍ତୁନିଷ୍ଠ ପରୀକ୍ଷଣ ମଧ୍ୟରେ ସର୍ବୋତ୍କୃଷ୍ଟ । କାହିଁକି ? ଏହି ପରୀକ୍ଷଣର କେତେକ ଉଦାହରଣ ଦିଅ ।

୬ । ପ୍ରବରଣୀୟ ପରୀକ୍ଷଣର ପ୍ରସ୍ତୁତି ପାଇଁ ଆବଶ୍ୟକ ନିୟମାବଳୀ ଲେଖ ।

୭ । କ୍ରମ-ସଞ୍ଚିତ ବିବରଣୀର ଆବଶ୍ୟକତା ବୁଝାଇଦିଅ ।

୮ । କ୍ରମସଞ୍ଚିତ ବିବରଣୀର ଏକ ନମୁନା ଲେଖି ସେଥିରେ କଣେ ଛାତ୍ରର ସମସ୍ତ ବିବରଣ ଲିପିବଦ୍ଧ କର ।

---

# ଷୋଡ଼ଶ ଅଧ୍ୟାୟ

## ସମୟ ନିର୍ଘଣ୍ଟ (Time-Table), ପରିକଳ୍ପନା ଓ ଆନୁସଙ୍ଗିକ କାର୍ଯ୍ୟକ୍ରମ

### ସମୟ ନିର୍ଘଣ୍ଟର ପରିକଳ୍ପନା

ପ୍ରତ୍ୟେକ ବିଦ୍ୟାଳୟର ଦୈନନ୍ଦିନ କାର୍ଯ୍ୟକ୍ରମ ଆରମ୍ଭଠାରୁ ଶେଷ ପର୍ଯ୍ୟନ୍ତ କେତେ ବେଳେ କ'ଣ ପଢ଼ାହେବ ସେଥିପାଇଁ ଏକ ସମୟ ନିର୍ଘଣ୍ଟ ପ୍ରସ୍ତୁତ ହୋଇଥାଏ । ଦିନର କାର୍ଯ୍ୟ-ସମୟକୁ କେତେକ ଭାଗରେ ବିଭକ୍ତ କରିଦେଇ ପ୍ରତ୍ୟେକ ଭାଗ ବା ପିରିଅଡ଼ ପାଇଁ ଗୋଟିଏ ବିଷୟ ନିର୍ଦ୍ଦିଷ୍ଟ କରିଦେବା ଯଥେଷ୍ଟ ନୁହେଁ । ଏହି ସମୟ ନିର୍ଘଣ୍ଟ ପ୍ରସ୍ତୁତ କଲା-ବେଳେ ବିଭିନ୍ନ ଦିଗପ୍ରତି ଦୃଷ୍ଟିଦେବାକୁ ହେବ ।

ପ୍ରଥମ କଥା ହେଲା, ଛାତ୍ରମାନେ କେତେବେଳେ କେଉଁ ବିଷୟ ପଠନ କଲାପରେ କେତେଦୂର କ୍ଳାନ୍ତିବୋଧ କରନ୍ତି ତାହା ବିଚାରକୁ ନିଆଯିବାର କଥା । ଯେଉଁ ବିଷୟ-ଗୁଡ଼ିକ ପଠନ କଲାବେଳେ ଅଧିକ ମାନସିକ ପ୍ରଯତ୍ନ (Mental-effort) ଆବଶ୍ୟକ ତାହା ଛାତ୍ରମାନଙ୍କ ପକ୍ଷେ ଅଧିକ କ୍ଳାନ୍ତିଦାୟକ ହେବ । ତେଣୁ ସେହି ବିଷୟଗୁଡ଼ିକ ଦିନର ଏପରି ସମୟରେ ପଠିତ ହେବା ଆବଶ୍ୟକ ଯେତେବେଳେ ଛାତ୍ରଟିଏ ତା'ର ସର୍ବୋତ୍ତମ ଅବସ୍ଥାରେ ଥାଏ । ପ୍ରତ୍ୟେକ ବିଦ୍ୟାଳୟରେ କାର୍ଯ୍ୟ ନିର୍ଘଣ୍ଟର ମଧ୍ୟଭାଗରେ କିଛି ସମୟ ବିରତି ପାଇଁ ରଖାଯାଇଥାଏ । ଏହାପରି ବିଦ୍ୟାଳୟ କାର୍ଯ୍ୟକ୍ରମ ମୁଖ୍ୟତଃ ଦୁଇଭାଗରେ ପୂର୍ବାହ୍ଣ ଓ ଅପରାହ୍ଣ ପାଇଁ ରଖାଯାଇଥାଏ । ପୂର୍ବାହ୍ଣର ପ୍ରତ୍ୟେକ ଭାଗ ଅପରାହ୍ଣର ଅନୁରୂପ ଭାଗଠାରୁ ଉତ୍କୃଷ୍ଟତର ଅର୍ଥାତ୍ ପୂର୍ବାହ୍ଣର ମଧ୍ୟଭାଗ ଅପରାହ୍ଣର ମଧ୍ୟଭାଗଠାରୁ ଉତ୍କୃଷ୍ଟତର ଯଦିଓ ଅପରାହ୍ଣର ମଧ୍ୟଭାଗ ପୂର୍ବାହ୍ଣର ଶେଷଭାଗଠାରୁ ଉତ୍କୃଷ୍ଟତର । ସେହିପରି ପୂର୍ବାହ୍ଣର ଶେଷଭାଗ ମଧ୍ୟ ଅପରାହ୍ଣର ଶେଷଭାଗଠାରୁ ଉତ୍କୃଷ୍ଟତର । ଦିବସର ପ୍ରଥମ ଭାଗରେ ମାନସିକ ସ୍ଫୂର୍ତ୍ତି ଓ

ଏକାଗ୍ରତା ସର୍ବାଧିକ ରହିଥାଏ ବୋଲି ଅନେକଙ୍କର ବିଶ୍ୱାସ, ମାତ୍ର ପ୍ରକୃତ ପକ୍ଷେ ଏହା ଦିବସର କାର୍ଯ୍ୟାରମ୍ଭଠାରୁ ଧୀରେ ଧୀରେ ବୃଦ୍ଧିପ୍ରାପ୍ତ ହୋଇ ମଧ୍ୟାହ୍ନର ମଧ୍ୟଭାଗରେ ଚରମ ସୀମାରେ ପହଞ୍ଚେ ଓ ତା'ପରେ କ୍ରମେ ଧୀରେ ଧୀରେ ହ୍ରାସ ହେବାକୁ ଆରମ୍ଭ କରେ । ବିରତି ପରେ ଅପରାହ୍ଣରେ ଛାତ୍ରର ମାନସିକ ସ୍ଫୂର୍ତ୍ତି ଓ ଏକାଗ୍ରତା ମଧ୍ୟ ଠିକ୍ ଏହି ପ୍ରକାରେ ବୃଦ୍ଧି ହୁଏ ଓ ହ୍ରାସପାଏ । ତେଣୁ କ୍ଳାନ୍ତିଦାୟକ ବିଷୟଗୁଡ଼ିକ ପଠିତ ହେବାପାଇଁ ସର୍ବୋତ୍କୃଷ୍ଟ ସମୟ ହେଉଛି ପୂର୍ବାହ୍ନର ମଧ୍ୟଭାଗ ତଥା ଅପରାହ୍ଣର ମଧ୍ୟଭାଗ ଏବଂ ନିକୃଷ୍ଟତମ ସମୟ ହେଉଛି ପୂର୍ବାହ୍ନ ଓ ଅପରାହ୍ଣର ଶେଷଭାଗ ।

ଯେଉଁ ରୀତିରେ ଦିବସର ଉତ୍କୃଷ୍ଟତମ ଓ ନିକୃଷ୍ଟତମ ସମୟ ନିର୍ଦ୍ଧାରଣ କରାଗଲା ଠିକ୍ ସେହି ରୀତିରେ ସପ୍ତାହର ଦିବସଗୁଡ଼ିକ ମଧ୍ୟରେ ପଠନୋପଯୁକ୍ତ ଉତ୍କୃଷ୍ଟ ଓ ନିକୃଷ୍ଟ ଦିବସ ଧାର୍ଯ୍ୟ କରାଯାଇପାରେ । ରବିବାର ଛୁଟି ପରେ ସୋମବାର ସକାଳ ଛାତ୍ରମାନଙ୍କ ପକ୍ଷେ ଅତ୍ୟନ୍ତ ବିରକ୍ତିଜନକ । ସପ୍ତାହର ଶେଷ ଦିବସରେ ଅବସନ୍ନତା ଚରମ ସୀମାରେ ପହଞ୍ଚିଥାଏ । ସାପ୍ତାହିକ କାର୍ଯ୍ୟକ୍ରମ ଦୃଷ୍ଟିରୁ ବିଚାର କରିବାକୁ ଗଲେ ମଙ୍ଗଳବାର ଓ ବୁଧବାର ସର୍ବୋତ୍କୃଷ୍ଟ । ବିଦ୍ୟାଳୟର ସମୟ-ନିର୍ଘଣ୍ଟ ପ୍ରସ୍ତୁତ କଲାବେଳେ ଏଥିପ୍ରତି ଦୃଷ୍ଟି ଦେବାକୁ ପଡ଼ିବ ।

କ୍ଳାନ୍ତି ପ୍ରଦାୟକ ବିଷୟଗୁଡ଼ିକ ଅଧିକରୁ ଅଳ୍ପକ୍ରମରେ ସଜାଇ ରଖିଲେ ତାହା ଏହି ପ୍ରକାରର ହେବ; ଯଥା—ଗଣିତ, ଇଂରାଜୀ, ଭାରତୀୟ ଭାଷା, ବିଜ୍ଞାନ, ଇତିହାସ, ଭୂଗୋଳ, ରଚନା ବା ଲିଖନ ଓ ଚିତ୍ରାଙ୍କନ । ହସ୍ତକର୍ମ ବିଷୟଗୁଡ଼ିକର ସ୍ଥାନ ଶେଷରେ ରହିବ । କେତେକ ବିଷୟ ଅନ୍ୟଠାରୁ ଅଧିକ କ୍ଳାନ୍ତି ପ୍ରଦାନ କରୁଥିବାରୁ ସର୍ବୋତ୍କୃଷ୍ଟ ପିରିଅଡ଼ଗୁଡ଼ିକ ଗଣିତ ଓ ଇଂରାଜୀପାଇଁ ରଖାଯିବା ଆବଶ୍ୟକ ଅର୍ଥାତ୍ ଏହି ବିଷୟ-ଗୁଡ଼ିକ ଦ୍ୱିତୀୟ ବା ତୃତୀୟ ପିରିଅଡ କିମ୍ବା ଷଷ୍ଠ ପିରିଅଡରେ ପଠିତ ହେବା ଉଚିତ ।

ଯେ କୌଣସି ପାଠ୍ୟ-ବିଷୟ କ୍ରମାଗତ ଦୁଇ ପିରିଅଡ଼ ପଢ଼ାଯିବା ଅନୁଚିତ । ପ୍ରତ୍ୟେକ ପିରିଅଡ଼ରେ ବିଷୟ ବଦଳ ହେଲେ ଛାତ୍ରର ମାନସିକ ସତେଜତା ସହଜରେ ମଳିନ ହୁଏ ନାହିଁ । କ୍ରମାଗତ କ୍ଳାନ୍ତିଦାୟକ ବିଷୟଗୁଡ଼ିକ ମଧ୍ୟ ପଠିତ ହେବା ଉଚିତ ନୁହେଁ । ଶିକ୍ଷକମାନେ ମଧ୍ୟ କ୍ରମାଗତ ଦୁଇ ପିରିଅଡ ଗୋଟିଏ ଶ୍ରେଣୀରେ ଗୋଟିଏ ବିଷୟ ପଢ଼ାଇଲେ ବିରକ୍ତିବୋଧ କରନ୍ତି । ଅବଶ୍ୟ କେତେକ କ୍ଷେତ୍ରରେ ବିଜ୍ଞାନ ଭଳି ପରୀକ୍ଷାମୂଳକ ପାଠ୍ୟ କ୍ରମାଗତ ଦୁଇ ପିରିଅଡ ରଖାଯିବା ଅଯୌକ୍ତିକ ହେବ ନାହିଁ । କାରଣ ଏହି ଦୁଇ ପିରିଅଡରୁ ଅର୍ଦ୍ଧେକ ବା ଅର୍ଦ୍ଧାଧିକ ସମୟ ବୈଜ୍ଞାନିକ ପରୀକ୍ଷା ପ୍ରଦର୍ଶନରେ ଓ ଅବଶିଷ୍ଟାଂଶ ପାଠ ପଢ଼ାଇବାରେ ବ୍ୟୟିତ ହେବ । ଏଠାରେ ଶିକ୍ଷକ କ୍ଳାନ୍ତିବୋଧ କରିବେ ନାହିଁ ବା ଛାତ୍ରମାନଙ୍କର ମାନସିକ ସରସତା ହ୍ରାସ ପାଇବ ନାହିଁ । ବାସ୍ତବ କ୍ଷେତ୍ରରେ ଯେଉଁଠାରେ ବିଜ୍ଞାନ ପାଠ୍ୟକ୍ରମରେ ପରୀକ୍ଷାମୂଳକ କାର୍ଯ୍ୟ ବାଧ୍ୟତାମୂଳକ ସେଠାରେ ଏକାଦିକ୍ରମେ ଦୁଇ

ପିରିଅଡ଼ ରଖାଯିବା ଆବଶ୍ୟକ । କୃଷି ଏକ ବିଷୟ ହୋଇଥିଲେ ଏବଂ ଏଥିରେ ଧନ୍ଦାମୂଳକ ପିରିଅଡ଼ ଥିଲେ ସପ୍ତାହର ଗୋଟିଏ ଦିନରେ ସେ ସମସ୍ତ ପିରିଅଡ଼ ରଖାଯିବା ଆବଶ୍ୟକ । ସପ୍ତାହରେ ଯଦି ଦୁଇଦିନ ଧନ୍ଦାମୂଳକ ପିରିଅଡ଼ ଥାଏ ତେବେ ଛାତ୍ରମାନେ ସପ୍ତାହର କୌଣସି ଏକ ଦିନ ଏକ ସଙ୍ଗେ ଚାରି ପିରିଅଡ଼ କୃଷି କ୍ଷେତ୍ରରେ କାର୍ଯ୍ୟ କରିବା ଉଚିତ । ଦୁଇ ପିରିଅଡ଼ ମଧ୍ୟ ଏହି ବିଷୟର ଧନ୍ଦାମୂଳକ ପିରିଅଡ଼ ପାଇଁ ଯଥେଷ୍ଟ ହେବ ନାହିଁ ।

ଜଣେ ଶିକ୍ଷକ ଏକାଦିକ୍ରମେ ତିନି ଚାରି ପିରିଅଡ଼ ପଢ଼ାଇଲେ କ୍ଳାନ୍ତ ହୋଇଯିବେ; ମାତ୍ର ବିଦ୍ୟାଳୟଗୁଡ଼ିକରେ ଏତେ ଶିକ୍ଷକ ନାହାଁନ୍ତି, ଯଦ୍ଦ୍ୱାରା ଜଣେ ଶିକ୍ଷକଙ୍କୁ ଏକାଦିକ୍ରମେ ମାତ୍ର ଦୁଇ ପିରିଅଡ଼ ପଢ଼ାଇବାକୁ ପଡ଼ିବ ଓ ତାହାପରେ ଏକ ପିରିଅଡ଼ ବିଶ୍ରାମ ମିଳିବ । ଏହି ଅସୁବିଧାର ସମାଧାନ କରିବାକୁ ହେଲେ ଅର୍ଥାତ୍ ଶିକ୍ଷକଙ୍କର ଶକ୍ତିର ପୂର୍ଣ୍ଣ ଉପଯୋଗ କରିବାକୁ ହେଲେ ତାଙ୍କୁ ମଝିରେ ମଝିରେ ରଚନା, ଅନୁବାଦ ଇତ୍ୟାଦି ଲିଖନ କାର୍ଯ୍ୟର ପିରିଅଡ଼ ଦିଆଯିବା ଉଚିତ । ଏହି ବ୍ୟବସ୍ଥା ଛାତ୍ରମାନଙ୍କ ପାଇଁ ମଧ୍ୟ ସୁବିଧାଜନକ ।

ପ୍ରତ୍ୟେକ ପିରିଅଡ଼ର ଦୈର୍ଘ୍ୟ କେତେ ସମୟ ପାଇଁ ହେବା ଉଚିତ ତାହା ମଧ୍ୟ ବିଚାର କରାଯାଇପାରେ । ଯଦି ବିଭିନ୍ନ ବିଷୟ ପାଇଁ ଉଦ୍ଦିଷ୍ଟ ପିରିଅଡ଼ର ସମୟ ପରିମାଣ ପାଠ ଦୃଷ୍ଟିରୁ ଭିନ୍ନ ଭିନ୍ନ ହୁଅନ୍ତା ତେବେ ତାହା ଏକ ଆଦର୍ଶ ବ୍ୟବସ୍ଥା ହୁଅନ୍ତା । ଯେଉଁ ବିଷୟଗୁଡ଼ିକ ଅଧିକ କ୍ଳାନ୍ତିଦାୟକ ସେଥିପାଇଁ କମ୍ ସମୟ ପରିମିତ ଅଧିକ ସଂଖ୍ୟକ ପିରିଅଡ଼ ଓ ଅନ୍ୟ ବିଷୟଗୁଡ଼ିକ ପାଇଁ ଅଧିକ ସମୟ ପରିମିତ ପିରିଅଡ଼ ରଖାଯିବା ଆବଶ୍ୟକ । ମାତ୍ର ବାସ୍ତବ କ୍ଷେତ୍ରରେ ଗୋଟିଏ ବଡ଼ ବିଦ୍ୟାଳୟ ପାଇଁ ଏହିପ୍ରକାର ସମୟ ନିର୍ଘଣ୍ଟ ପ୍ରସ୍ତୁତ କରି ଶିକ୍ଷକମାନଙ୍କ ମଧ୍ୟରେ କାର୍ଯ୍ୟଭାର ବଣ୍ଟନ କରିବା ଅତ୍ୟନ୍ତ କଷ୍ଟକର । କେହି କେହି ଅଧା ପିରିଅଡ଼ ପ୍ରଥାର ପରିକଳ୍ପନା କରିଅଛନ୍ତି ଅର୍ଥାତ୍ କ୍ଳାନ୍ତିଦାୟକ ବିଷୟର ପିରିଅଡ଼ରୁ ବିଷୟ ଓ ଶିକ୍ଷକ ପରିବର୍ତ୍ତନ କରି ଦିଆଯାଇପାରେ । ଏହି ପ୍ରଥାରେ ପିରିଅଡ଼ର ଦୈର୍ଘ୍ୟ ଅତ୍ୟଧିକ କମ୍ ହୋଇଥିବାରୁ ଏହାର କାର୍ଯ୍ୟକାରିତା ଫଳପ୍ରଦ ହେବ ନାହିଁ । ତେଣୁ ମଧ୍ୟବର୍ତ୍ତୀ ପନ୍ଥା ହେଉଛି ସମସ୍ତ ପିରିଅଡ଼ର ସମୟ ପରିମାଣ ସମାନ ରଖିବା ବା ପୂର୍ବାହ୍ଣର ପିରିଅଡ଼ଗୁଡ଼ିକର ଦୈର୍ଘ୍ୟ ଅପରାହ୍ଣ ପିରିଅଡ଼ଠାରୁ ସାମାନ୍ୟ ଅଧିକ ରଖିବା । ପିରିଅଡ଼ର କାଳ ପରିମାଣ ୪୦ ବା ୪୫ ମିନିଟ ରଖିବା ସର୍ବୋତ୍କୃଷ୍ଟ । ୩୫ ମିନିଟର ପିରିଅଡ଼ ରଖାଗଲେ ସମୟର ସ୍ୱଳ୍ପତା ଅନୁଭୂତ ହେବ ଏବଂ ପିରିଅଡ଼ର ଦୈର୍ଘ୍ୟ ଏକ ଘଣ୍ଟା କରିଦେଲେ ସମୟର ବିସ୍ତାର ଅତ୍ୟଧିକ ହୋଇଯିବ । ଅବଶ୍ୟ ପ୍ରାଥମିକ ବିଦ୍ୟାଳୟଗୁଡ଼ିକରେ ୪୦ ମିନିଟରୁ କମ୍ ସମୟର ପିରିଅଡ଼ ରଖାଯିବା ଅଧିକ ଯୁକ୍ତିଯୁକ୍ତ ହେବ । ବିଭିନ୍ନ ଋତୁରେ ପିରିଅଡ଼ର ଦୈର୍ଘ୍ୟ ବୃଦ୍ଧି ବା ହ୍ରାସ କରାଯିବା ମଧ୍ୟ ଉଚିତ । ଗ୍ରୀଷ୍ମ ଋତୁରେ ପିରିଅଡ଼ର ଦୈର୍ଘ୍ୟ କମାଇ ଦିଆଯିବା ଉଚିତ ଏବଂ ଥଣ୍ଡା ପାଗ ହେବାପରେ ପୁଣି ସମୟ ବଢ଼ାଇଦେବା ଆବଶ୍ୟକ ।

ପ୍ରତ୍ୟେକ ବିଦ୍ୟାଳୟରେ ଦୁଇପ୍ରକାର ସାଧାରଣ ସମୟ ନିର୍ଘଣ୍ଟ ରହିବା ଆବଶ୍ୟକ । ଗୋଟିଏ ଶିକ୍ଷକ ଅନୁଯାୟୀ ଓ ଅନ୍ୟଟି ଶ୍ରେଣୀ ଅନୁଯାୟୀ ପ୍ରସ୍ତୁତ ହେବା ଆବଶ୍ୟକ । ଶିକ୍ଷକ ଅନୁଯାୟୀ ପ୍ରସ୍ତୁତ ସମୟ ନିର୍ଘଣ୍ଟ ପ୍ରଧାନ ଶିକ୍ଷକଙ୍କ ପ୍ରକୋଷ୍ଠରେ ରଖାଯିବା ଆବଶ୍ୟକ ଓ ଏହାର ନକଲ ଶିକ୍ଷକମାନଙ୍କ ବିଶ୍ରାମ ଗୃହର କାନ୍ଥରେ ଟାଙ୍ଗି ଦିଆଯିବା ଉଚିତ । ଶ୍ରେଣୀ ଅନୁଯାୟୀ ପ୍ରସ୍ତୁତ ସମୟ ନିର୍ଘଣ୍ଟରୁ ଖଣ୍ଡିଏ ପ୍ରଧାନ ଶିକ୍ଷକଙ୍କ ପ୍ରକୋଷ୍ଠରେ ଓ ଅନ୍ୟ ନକଲଟି ବିଦ୍ୟାଳୟର ପ୍ରଧାନ ବିଜ୍ଞାପନ ପଟା (Notice Board) ପାଖରେ ଟାଙ୍ଗି ଦିଆଯିବା ଉଚିତ ଯେପରି ତାହା ସମସ୍ତେ ଦେଖିପାରିବେ । ପ୍ରତ୍ୟେକ ଶ୍ରେଣୀ ପ୍ରକୋଷ୍ଠରେ ସେହି ଶ୍ରେଣୀର ସମୟ ନିର୍ଘଣ୍ଟ ରଖାଯିବା ମଧ୍ୟ ଉଚିତ । ଯଦି ଛାତ୍ରମାନେ ବିଭିନ୍ନ ପିରିଅଡ଼ରେ ବିଭିନ୍ନ ପ୍ରକୋଷ୍ଠକୁ ଆସୁଥିବେ; ଯଥା—ବିଜ୍ଞାନ ପିରିଅଡ଼ରେ ବିଜ୍ଞାନାଗାରକୁ, ଭୂଗୋଳ ପିରିଅଡରେ ଭୂଗୋଳ ପ୍ରକୋଷ୍ଠକୁ ଆସୁଥିବେ ତେବେ ଶ୍ରେଣୀ ସମୟ ନିର୍ଘଣ୍ଟରେ ତାହା ସ୍ପଷ୍ଟ ଲିଖିତ ହେବା ଆବଶ୍ୟକ । ବର୍ଷ ଆରମ୍ଭରେ ଅନେକ ବିଦ୍ୟାଳୟରେ ପ୍ରଥମେ ପ୍ରଥମେ ଛାତ୍ରମାନେ ଜାଣିପାରନ୍ତି ନାହିଁ ଯେ, ସେମାନେ ସେହି ପିରିଅଡ଼ରେ ଶ୍ରେଣୀ ପ୍ରକୋଷ୍ଠରେ ରହିବେ ବା ଅନ୍ୟ କେଉଁ ପ୍ରକୋଷ୍ଠକୁ ଯିବେ । ଏହି ବିଭ୍ରାନ୍ତିକର ପରିସ୍ଥିତି ନ ଉପୁଜିବା ପାଇଁ ଶ୍ରେଣୀ ପ୍ରକୋଷ୍ଠର ନମ୍ବର ପିରିଅଡ଼ ସହି ସୂଚିତ ହେବା ଆବଶ୍ୟକ । ଯେଉଁଠାରେ ଭୂଗୋଳ ଶିକ୍ଷକ ଭୂଗୋଳ ପ୍ରକୋଷ୍ଠରେ ବା ବିଜ୍ଞାନ ଶିକ୍ଷକ ବିଜ୍ଞାନ ପ୍ରକୋଷ୍ଠରେ ରହୁଛନ୍ତି; କିନ୍ତୁ ଛାତ୍ରମାନେ ବିଭିନ୍ନ ପିରିଅଡ଼ରେ ଆସୁଅଛନ୍ତି ଓ ଯାଉଅଛନ୍ତି ସେଠାରେ ସେହି ପ୍ରକୋଷ୍ଠର ସ୍ୱତନ୍ତ୍ର ସମୟ ନିର୍ଘଣ୍ଟ ରଖାଯିବା ଉଚିତ ଯେଉଁଥିରେ କେଉଁ ପିରିଅଡ଼ରେ କେଉଁ ଶ୍ରେଣୀର ଛାତ୍ର ପଢ଼ିବାକୁ ଆସିବେ ତାହା ସୂଚିତ ହୋଇଥିବ ।

ଶାରୀରିକ ଶିକ୍ଷା କାର୍ଯ୍ୟକ୍ରମ ପାଇଁ ଗୋଟିଏ ସ୍ୱତନ୍ତ୍ର ସମୟ ନିର୍ଘଣ୍ଟ ପ୍ରସ୍ତୁତ ହେବା ଉଚିତ । ଯଦି ଛାତ୍ରମାନେ ଶ୍ରେଣୀ ଅନୁଯାୟୀ ବିଭିନ୍ନ ପ୍ରକାର ଖେଳ ଖେଳୁଥିବେ ତେବେ ଏହି ପିରିଅଡ଼ଗୁଡ଼ିକ ସାଧାରଣ ସମୟ ନିର୍ଘଣ୍ଟ ତଥା ଶ୍ରେଣୀ ଗୃହର ସମୟ ନିର୍ଘଣ୍ଟରେ ସୂଚିତ ହେବା ଆବଶ୍ୟକ । ଏହା ପକ୍ଷେ ଶାରୀରିକ ଶିକ୍ଷାପାଇଁ ଗୋଟିଏ ସ୍ୱତନ୍ତ୍ର ସମୟ ନିର୍ଘଣ୍ଟ ଅଧିକ ଉପଯୋଗୀ ହେବ । ପୂର୍ବରୁ ଶାରୀରିକ ଶିକ୍ଷା ସମ୍ବନ୍ଧୀୟ କାର୍ଯ୍ୟକ୍ରମରେ ପୂର୍ବବର୍ତ୍ତୀ ଏକ ଅଧ୍ୟାୟରେ କୁହାଯାଇଅଛି ଯେ ଛାତ୍ରମାନେ ସେମାନଙ୍କ ଦକ୍ଷତା ତଥା ପାରଦର୍ଶିତା ଅନୁଯାୟୀ ବିଭିନ୍ନ ଦଳରେ ବିଭକ୍ତ ହୋଇ ଖେଳ ଖେଳିବା ଉଚିତ । ତେଣୁ ଏହି ପ୍ରକାର ବ୍ୟବସ୍ଥାରେ ସାଧାରଣ ସମୟ ନିର୍ଘଣ୍ଟରେ ଖେଳ ପିରିଅଡ ସୂଚିତ ହେବା ସମ୍ଭବ ନୁହେଁ କାରଣ ଗୋଟିଏ ଦଳରେ ବିଭିନ୍ନ ଶ୍ରେଣୀର ଛାତ୍ର ରହିଥିବେ । ଯଦି କୌଣସି ଏକ ପିରିଅଡ଼ରେ ବିଦ୍ୟାଳୟର ସମସ୍ତ ଛାତ୍ରଙ୍କ ପାଇଁ ଖେଳିବାର ସୁଯୋଗ ଥାଏ ତେବେ ସେମାନେ ସେହି ପିରିଅଡ଼ରେ ଖେଳ ପଡ଼ିଆକୁ ଆସି ବିଭିନ୍ନ ଦଳଭୁକ୍ତ ହୋଇ ଖେଳିପାରିବେ । ଏହା ଏକ ଆଦର୍ଶ ବ୍ୟବସ୍ଥା ହୁଅନ୍ତା; ମାତ୍ର ଏ ଦିଗରେ ମଧ୍ୟ ଶିକ୍ଷକ,

ଖେଳୋପକରଣ ଖେଳପଡ଼ିଆ ଇତ୍ୟାଦିର ସୁବିଧା ଅସୁବିଧା ରହିଅଛି । ଯାହାହେତୁ ଛାତ୍ରମାନେ ଯେପରି ଖେଳନ୍ତୁ ପଛକେ ଏଥିପାଇଁ ଏକ ସ୍ୱତନ୍ତ୍ର ସମୟ ନିର୍ଘଣ୍ଟ ପ୍ରସ୍ତୁତ ହେବା ଆବଶ୍ୟକ । ତେବେ ବିଦ୍ୟାଳୟର ସମୟ ନିର୍ଘଣ୍ଟରେ ଡ୍ରିଲ ଓ ସାମୂହିକ ଡ୍ରିଲ ପାଇଁ ସ୍ୱତନ୍ତ୍ର ପିରିଅଡ଼ ରହିବା ଉଚିତ ଏବଂ ଏହା ପ୍ରତ୍ୟେକ ଦିନର ଅପରାହ୍ଣର ଶେଷ-ଭାଗକୁ ରଖାଯିବା ଆବଶ୍ୟକ । ଶାରୀରିକ ଶିକ୍ଷା ପାଇଁ ନିଯୁକ୍ତ ଶିକ୍ଷକ ଏହି ପିରିଅଡ ଦାୟିତ୍ୱରେ ରହିବେ । ସମସ୍ତ ସମୟରେ ଦୁଇଟି ଶ୍ରେଣୀର ଛାତ୍ରଙ୍କ ପାଇଁ ଶେଷ ପିରିଅଡ଼ରେ ଡ୍ରିଲ ରଖାଗଲେ ଶିକ୍ଷକ ଏହି ଡ୍ରିଲ ମିଳିତ ଭାବରେ ପରିଚାଳନା କରିପାରିବେ । ଯେଉଁଠାରେ ଶ୍ରେଣୀ ସଂଖ୍ୟା ଅଧିକ, ଡ୍ରିଲ ପରିଚାଳନା କରିବାକୁ ଉପଯୁକ୍ତ ଶିକ୍ଷକଙ୍କ ସଂଖ୍ୟା କମ୍, ସେଠାରେ ଉପଯୁକ୍ତ ବ୍ୟବସ୍ଥା ନ କଲେ ସଂପୃକ୍ତ ଶିକ୍ଷକଙ୍କର କାର୍ଯ୍ୟଭାର ଅତ୍ୟନ୍ତ ଗୁରୁ ହୋଇଯିବ ।

ପ୍ରତ୍ୟେକ ଦିନ ପ୍ରତ୍ୟେକ ଶିକ୍ଷକଙ୍କୁ ଦୁଇ ତିନିଗୋଟି ପିରିଅଡ଼ ଲାଗି କାର୍ଯ୍ୟରୁ ଅବ୍ୟାହତି ମିଳିବା ଆବଶ୍ୟକ । ଜଣେ ଶିକ୍ଷକ ଦକ୍ଷତା ସହ କେତେ ସମୟ କ୍ରମାଗତ ପଢ଼ାଇ ପାରିବେ ତାହାର ଏକ ସୀମା ଅଛି । ତାହାଠାରୁ ଅଧିକ ପିରିଅଡ଼ ପଢ଼ାଇଲେ ଶିକ୍ଷକ ଠିକ୍ ଭାବରେ ତାଙ୍କର କର୍ତ୍ତବ୍ୟ ସମ୍ପାଦନ କରିପାରିବେ ନାହିଁ । ତେଣୁ ପ୍ରତ୍ୟେକ ଶିକ୍ଷକଙ୍କର ଦୁଇ ତିନିଗୋଟି ବିଶ୍ରାମ ପିରିଅଡ଼ ରହିବା ଉଚିତ । ମାତ୍ର ଏହି ବିଶ୍ରାମ ପିରିଅଡ ଏପରି ବିସ୍ତୃତ ହେବା ଉଚିତ ଯେପରି ସେ ଦୁଇ ତିନିଗୋଟି ପିରିଅଡ ପଢ଼ାଇବା ପରେ ଗୋଟିଏ ପିରିଅଡ଼ ବିଶ୍ରାମ ନେଇପାରିବେ । ଶିକ୍ଷକଙ୍କ ପାଇଁ ଦୁଇଟି ବିଶ୍ରାମ ପିରିଅଡ଼ର ବ୍ୟବସ୍ଥା କରି ତାହା ଏକାଦିକ୍ରମେ ଦିବସର ଶେଷଭାଗକୁ ରଖିଲେ କୌଣସି ଫଳ ମିଳିବ ନାହିଁ । ବିଭିନ୍ନ ଶିକ୍ଷକଙ୍କର ଶିକ୍ଷାଦାନ ବିଷୟ ମଧ୍ୟ ବିଚାରକୁ ନେବା ଉଚିତ । ଯେଉଁ ଶିକ୍ଷକ ଅଧିକ ଲିଖିତ କାର୍ଯ୍ୟର ସଂଶୋଧନ କରୁଅଛନ୍ତି, ତାଙ୍କୁ ଅଧିକ ବିଶ୍ରାମ ପିରିଅଡ଼ ଦିଆଗଲେ ସେ ଛାତ୍ରମାନଙ୍କର ଲିଖିତ କାର୍ଯ୍ୟ ସଂଶୋଧନ କରିବାରେ ତାହା ବିନିଯୋଗ କରିପାରିବେ । ସେହିପରି ବିଜ୍ଞାନ ଶିକ୍ଷକଙ୍କର ବିଶ୍ରାମ ପିରିଅଡ ଅଧିକ ନ ହେଲେ ସେ ବିଭିନ୍ନ ବୈଜ୍ଞାନିକ ପରୀକ୍ଷା ପ୍ରଦର୍ଶନ ପାଇଁ ପ୍ରସ୍ତୁତ ହୋଇପାରିବେ ନାହିଁ । ଏସବୁ ବିଷୟ ମଧ୍ୟ ସମୟ ନିର୍ଘଣ୍ଟ ପ୍ରସ୍ତୁତ ସମୟରେ ବିଚାରକୁ ନିଆଯିବା ଉଚିତ ।

ଏପର୍ଯ୍ୟନ୍ତ କେବଳ କେତେକ ନୀତିର ଆଲୋଚନା କରାଯାଇଅଛି ଯେଉଁଗୁଡ଼ିକ ପ୍ରତି ସମୟ ନିର୍ଘଣ୍ଟ ପ୍ରସ୍ତୁତ କଲାବେଳେ ଉପଯୁକ୍ତ ଧ୍ୟାନ ଦେବାକୁ ହେବ । ମାତ୍ର ସମୟ ନିର୍ଘଣ୍ଟ ପ୍ରସ୍ତୁତ କଲାବେଳେ ପ୍ରକୃତପକ୍ଷେ ନାନା ଅସୁବିଧାର ସମ୍ମୁଖୀନ ହେବାକୁ ହୁଏ । ବିଦ୍ୟାଳୟରେ ଶିକ୍ଷକମାନଙ୍କର ସଂଖ୍ୟା, ଉପଯୁକ୍ତ ଯୋଗ୍ୟତା ସମ୍ପନ୍ନ ଶିକ୍ଷକଙ୍କର ସଂଖ୍ୟା ଓ ଅନ୍ୟାନ୍ୟ ସ୍ଥାନୀୟ ଅସୁବିଧା ଆଦର୍ଶ ସମୟ ନିର୍ଘଣ୍ଟ ପ୍ରସ୍ତୁତିରେ ନାନା ପ୍ରତିବନ୍ଧକ ସୃଷ୍ଟି କରେ । ଯାହାହେତୁ ବିଦ୍ୟାଳୟରେ ରହିଥିବା ସୁବିଧା ସୁଯୋଗ ଅନୁଯାୟୀ ଯେତେ ଉତ୍କୃଷ୍ଟ ସମୟ ନିର୍ଘଣ୍ଟ ପ୍ରସ୍ତୁତ କରିବା ସମ୍ଭବପର ତାହା କରାଯିବା ଉଚିତ ।

## ପାଠ୍ୟ-ପ୍ରକଳ୍ପ ଓ ପାଠ୍ୟ ଟିପ୍ପଣୀ (Schemes and Lesson notes)

### ପାଠ୍ୟ ପ୍ରକଳ୍ପର ଆବଶ୍ୟକତା

ବର୍ଷ ଆରମ୍ଭରେ ସମସ୍ତ ନିର୍ଘଣ୍ଟ ପ୍ରସ୍ତୁତ ହୋଇସାରିବା ପରେ ଶିକ୍ଷକ ଜାଣିପାରିବେ ଯେ ତାଙ୍କୁ ପ୍ରତ୍ୟେକ ସପ୍ତାହରେ କେଉଁ ଶ୍ରେଣୀରେ କେତେ ପିରିଅଡ଼ ପଢ଼ାଇବାକୁ ପଡ଼ିବ । ତା'ପରେ ସେ ବିଦ୍ୟାଳୟ ବର୍ଷ (School Session) ପାଇଁ ଏକ ପାଠ୍ୟ ପ୍ରକଳ୍ପ ତିଆରି କରିବେ । ବର୍ଷକର ପାଠ୍ୟକ୍ରମ କେବଳ ମାସ ଅନୁସାରେ ବିଭକ୍ତ କରିବା ପାଠ୍ୟ-ପ୍ରକଳ୍ପର ଲକ୍ଷ୍ୟ ନୁହେଁ । ପ୍ରତ୍ୟେକ ମାସରେ ଠିକ୍ କେତେ ପଢ଼ାହେବ ତାହା ବିସ୍ତୃତ ଭାବରେ ପାଠ୍ୟ ପ୍ରକଳ୍ପରେ ପ୍ରଦର୍ଶିତ ହୋଇଥିବା ଦରକାର । ଆବଶ୍ୟକ ହେଲେ ଶିକ୍ଷକ ପ୍ରତ୍ୟେକ ମାସରେ ମିଳୁଥିବା କାର୍ଯ୍ୟ ଦିବସର ସଂଖ୍ୟା ଓ ଛୁଟିଦିନର ସଂଖ୍ୟା ବିଷୟରେ ନେଇପାରନ୍ତି । ସେହିପରି କେଉଁ କେଉଁ ମାସରେ ମାତୃଭାଷାରେ ଓ ଇଂରାଜୀରେ ରଚନା ବା ପତ୍ରଲିଖନ ଲେଖାଯିବ ତାହା ବର୍ଷ ଆରମ୍ଭରୁ ସ୍ଥିରୀକୃତ ହୋଇଥିବା ବାଞ୍ଛନୀୟ । ଏକ ପୂର୍ବବର୍ତ୍ତୀ ଅଧ୍ୟାୟରେ ସୂଚିତ ହୋଇଅଛି ଯେ, ଯେଉଁ ବିଦ୍ୟାଳୟ-ଗୁଡ଼ିକରେ ପ୍ରତ୍ୟେକ ଶ୍ରେଣୀରେ କେତେଗୁଡ଼ିଏ ଲେଖାଏଁ ବିଭାଗ ରହିଅଛି ସେଠାରେ ଜଣେ ଶିକ୍ଷକ ସମସ୍ତ ବିଭାଗର ଗୋଟିଏ ବିଷୟ ପଢ଼ାଇବା ସମ୍ଭବପର ହୋଇ ନ ପାରେ ମାତ୍ର ଶ୍ରେଣୀର ସମସ୍ତ ବିଭାଗର ଛାତ୍ରମାନଙ୍କର ପାଠ୍ୟ ବିଷୟରେ ଅଗ୍ରଗତି ସମାନ ରହିବା ଆବଶ୍ୟକ । ଏପରି ସ୍ଥଳେ ପ୍ରତ୍ୟେକ ଶ୍ରେଣୀରେ ଗୋଟିଏ ବିଷୟ ପଢ଼ାଉଥିବା ଶିକ୍ଷକମାନେ ମିଳିତ ଭାବରେ ଏକ ପାଠ୍ୟ ପ୍ରକଳ୍ପ ପ୍ରସ୍ତୁତ କରିବା ଏକାନ୍ତ ଆବଶ୍ୟକ ।

ପାଠ୍ୟ-ପ୍ରକଳ୍ପ ପ୍ରସ୍ତୁତ ହେବାପରେ ତାହାର ଗୋଟିଏ ନକଲ ଶ୍ରେଣୀରେ ଝୁଲାଇ ଦିଆଯିବା ଆବଶ୍ୟକ । ଛାତ୍ରମାନେ ମଧ୍ୟ ପ୍ରତ୍ୟେକ ମାସରେ କେତେଦୂର ଅଗ୍ରସର ହେବା ଉଚିତ ତଥା ଆଗାମୀ ମାସଗୁଡ଼ିକ ପାଇଁ କେଉଁ କେଉଁ ବିଷୟର ପାଠ୍ୟକ୍ରମ ରହିଅଛି, ତାହା ଜାଣିବା ବାଞ୍ଛନୀୟ । ବିଭିନ୍ନ ବିଷୟର ରଚନା ଓ ପତ୍ରଲିଖନ କାର୍ଯ୍ୟକ୍ରମ ସମ୍ବନ୍ଧରେ ପୂର୍ବରୁ ଅଭିହିତ ହେଲେ ଉତ୍ସାହୀ ଓ ଆଗ୍ରହୀ ଛାତ୍ରମାନେ ତତ୍‌ସମ୍ବନ୍ଧୀୟ ଘଟଣା ଓ ତଥ୍ୟ ପୂର୍ବରୁ ସଂଗ୍ରହ କରି ପାରନ୍ତି । ବିଦ୍ୟାଳୟର ଏକ ରେଜିଷ୍ଟରରେ ସମସ୍ତ ଶିକ୍ଷକଙ୍କର ପାଠ୍ୟ-ପ୍ରକଳ୍ପ ଶ୍ରେଣୀ ଅନୁଯାୟୀ ସଜ୍ଜିତ ହୋଇ ଲିପିବଦ୍ଧ ହେବା ଆବଶ୍ୟକ । ଯେ କୌଣସି ସମୟରେ ପ୍ରଧାନ ଶିକ୍ଷକ ଏହି ପାଠ୍ୟ-ପ୍ରକଳ୍ପ ଦେଖି ପାଠ୍ୟକ୍ରମର ଆନୁମାନିକ ଅଗ୍ରଗତି ସମ୍ବନ୍ଧରେ ଅବଧାରଣ କରିପାରିବେ । ପ୍ରତ୍ୟେକ ଶିକ୍ଷକ ମାସ ଶେଷରେ ପାଠ୍ୟ-ପ୍ରକଳ୍ପ ରେଜିଷ୍ଟରରେ ତାହାଙ୍କର ପ୍ରକୃତ ଅଗ୍ରଗତି ଲିପିବଦ୍ଧ କରିବେ ଓ ଅଗ୍ରଗତି ଅତ୍ୟନ୍ତ ଅସନ୍ତୋଷଜନକ ହୋଇଥିଲେ ତାହାର ନିର୍ଦ୍ଦିଷ୍ଟ କାରଣ ଲିପିବଦ୍ଧ କରିବେ । ନୂତନ ଶିକ୍ଷକମାନଙ୍କ ପକ୍ଷରେ ଯୋଜନା ଅନୁସାରେ ଅଗ୍ରଗତି କରିବା ପ୍ରଥମେ ପ୍ରଥମେ ସମ୍ଭବପର ହୋଇ ନ

ପାରେ । ଏହା କେବଳ ଅନଭିଜ୍ଞତା ହେତୁ ହୋଇଥାଏ ଏବଂ ଏହା ବଳେ ବଳେ କେତେ ବର୍ଷ ପରେ ଦୂରୀଭୂତ ହୋଇଯାଏ । ଶିକ୍ଷକ ଅଭିଜ୍ଞତାରୁ କ୍ରମେ ଶିକ୍ଷା କରନ୍ତି ଯେ କେଉଁ ବିଷୟ ପଢ଼ାଇବା ଅଧିକ ସମୟସାପେକ୍ଷ ଓ କେଉଁଗୁଡ଼ିକ ସମୟସାପେକ୍ଷ ନୁହେଁ । ଯାହାହେଉ ଥରେ ପାଠ୍ୟ-ପ୍ରକଳ୍ପ ପ୍ରସ୍ତୁତ ହୋଇଗଲେ ଯେ ଆଉ କୌଣସି ପରିବର୍ତ୍ତନ ହୋଇପାରିବ ନାହିଁ, ସେପରି ନୁହେଁ । ଆବଶ୍ୟକ ଅନୁସାରେ, ଛାତ୍ରମାନଙ୍କର ଅଗ୍ରଗତି ଅନୁସାରେ ପରିବର୍ତ୍ତନ କରାଯିବା ଦୋଷାବହ ନୁହେଁ, ତେବେ ଯେତେଦୂର ସମ୍ଭବ ଧାର୍ଯ୍ୟ ପ୍ରକଳ୍ପରେ ପରିବର୍ତ୍ତନ ନ କରିବାକୁ ଚେଷ୍ଟା କରାଯିବା ଉଚିତ ।

## ପାଠ୍ୟ ଟିପ୍ପଣୀ (Lesson notes)ର ଆବଶ୍ୟକତା

ଏହା ଏକ ସ୍ୱୀକୃତ ସତ୍ୟ ଯେ ଶିକ୍ଷକ ଶ୍ରେଣୀକୁ ପ୍ରସ୍ତୁତ ହୋଇ ଗଲେ ତାଙ୍କର ଶିକ୍ଷାଦାନ ଅଧିକ ସରସ ଓ ଫଳପ୍ରଦ ହେବ । ଶ୍ରେଣୀରୁ ପ୍ରବେଶ କରିସାରି ଛାତ୍ରମାନଙ୍କୁ କ'ଣ ପଢ଼ାହେବ ବା କ'ଣ ପଢ଼ାଇଥିଲ ଏ ସମ୍ବନ୍ଧରେ ପ୍ରଶ୍ନ ପଚାରିବା ଶିକ୍ଷକଙ୍କ ପକ୍ଷେ ଆଦୌ ଶ୍ଳାଘଣୀୟ ନହେଁ । ଶିକ୍ଷକ ପ୍ରତ୍ୟେକ ଦିନ ବିଦ୍ୟାଳୟକୁ ଆସିବା ପୂର୍ବରୁ ସେ ଯେଉଁ ଯେଉଁ ଶ୍ରେଣୀରେ ଯେଉଁ ପାଠ ପଢ଼ାଇବେ ତାହାର ଏକ ସଂକ୍ଷିପ୍ତ ଟିପ୍ପଣୀ ପ୍ରସ୍ତୁତ କରିଥିବା ଆବଶ୍ୟକ । ସାଧାରଣ ପାଠଟୀକା ଠାରୁ ଏହା ସାମାନ୍ୟ ପୃଥକ୍ । ପାଠଟୀକାରେ ଉଭୟ ବିଷୟବସ୍ତୁ ଓ ଶିକ୍ଷାଦାନ ପଦ୍ଧତି ଉପରେ ଗୁରୁତ୍ୱ ଆରୋପ କରାଯାଇଥାଏ, ମାତ୍ର ପାଠ୍ୟ ଟିପ୍ପଣୀରେ ପ୍ରଧାନତଃ ବିଷୟବସ୍ତୁ ଉପରେ ଗୁରୁତ୍ୱ ଆରୋପ କରାଯାଏ । ପ୍ରକୃତ ପକ୍ଷରେ ଶିକ୍ଷକ ଯାହା ପଢ଼ାଇବେ ପାଠ୍ୟ ଟିପ୍ପଣୀ ତାହାର ଏକ ସାରାଂଶ ମାତ୍ର । ଏହି ପାଠ୍ୟ ଟିପ୍ପଣୀ କେତେ ସଂକ୍ଷିପ୍ତ ବା କେତେ ବିସ୍ତୃତ ହେବ ସେ ସମ୍ବନ୍ଧରେ କୌଣସି ନିର୍ଦ୍ଦିଷ୍ଟ ନିୟମ ନ ଥିଲେ ମଧ୍ୟ ଶିକ୍ଷକମାନଙ୍କ ଉପରେ ନ୍ୟସ୍ତ ବିଭିନ୍ନ ଦାୟିତ୍ୱର ଗୁରୁତ୍ୱ ଦୃଷ୍ଟିରୁ ଏହା ସଂକ୍ଷିପ୍ତ ହେବା ଆବଶ୍ୟକ ଯେପରି ତାଙ୍କୁ ଏହି ଟିପ୍ପଣୀ ଲିପିବଦ୍ଧ କରିବାକୁ ବହୁ ସମୟ ବ୍ୟୟ କରିବାକୁ ନ ପଡ଼େ । ଟିପ୍ପଣୀ ଯେତେ ସଂକ୍ଷିପ୍ତ ହେଲେ ମଧ୍ୟ ସେଥିରେ ପାଠ୍ୟ ବିଷୟ ସମ୍ବନ୍ଧୀୟ ସମସ୍ତ ପ୍ରଧାନ ତଥ୍ୟ ସୂଚିତ ହୋଇଥିବା ଆବଶ୍ୟକ ।

ପ୍ରଥମେ ପ୍ରଥମେ ଏହି ପ୍ରଥାରେ ଅନଭ୍ୟସ୍ତ ଶିକ୍ଷକମାନଙ୍କ ପକ୍ଷେ ଏହା ଅତ୍ୟନ୍ତ ବିରକ୍ତିକର ହୋଇପାରେ; ମାତ୍ର କେତେକାଳ ପରେ ଶିକ୍ଷକ ଯେ କେବଳ ଏଥିରେ ଅଭ୍ୟସ୍ତ ହେବେ ସେତିକି ନୁହେଁ, ସେ ନିଜେ ଏହି ଟିପ୍ପଣୀର ଉପକାରିତା ହୃଦୟଙ୍ଗମ କରିପାରିବେ । ଶିକ୍ଷକଙ୍କର କାର୍ଯ୍ୟଦକ୍ଷତା ବଢ଼ାଇବା ଦିଗରେ ଏହା ଏପରି ଏକ ସୁଚିନ୍ତିତ ବ୍ୟବସ୍ଥା ଯେ ବିନା ଦ୍ୱିଧାରେ ଏହା ଯେ କୌଣସି ବିଦ୍ୟାଳୟରେ ପ୍ରଚଳନ କରାଯିବା ଉଚିତ । ଶିକ୍ଷକମାନେ ପାଠ୍ୟଟିପ୍ପଣୀ ପ୍ରସ୍ତୁତ କରୁଅଛନ୍ତି କି ନାହିଁ ତାହା ପ୍ରଧାନ ଶିକ୍ଷକ

ମଝିରେ ମଝିରେ ଯାଞ୍ଚ କରିନେବା ଉଚିତ । ପ୍ରଥମେ ପ୍ରଥମେ କେତେ ଥର ଯାଞ୍ଚ କରି ନେଲେ ପରେ ଯାଞ୍ଚ କରିବା ଆବଶ୍ୟକ ହେବ ନାହିଁ ଏବଂ ପାଠ୍ୟ ଟିପ୍ପଣୀ ବିଦ୍ୟାଳୟର ଏକ ଗତାନୁଗତିକ କାର୍ଯ୍ୟକ୍ରମରେ ପରିଣତ ହୋଇଯିବ । ପାଠ୍ୟ ଟିପ୍ପଣୀ ଶିକ୍ଷକମାନଙ୍କର କାର୍ଯ୍ୟ ବିଶ୍ଳେଷଣ କରିବାରେ ଯେ ବିଶେଷ ସହାୟକ ହେବ ଏଥିରେ ସନ୍ଦେହ ନାହିଁ ।

**ଲିଖିତ କାର୍ଯ୍ୟର ସଂଶୋଧନ (Correction of Written Works)**

ବିଦ୍ୟାଳୟ ପାଠ୍ୟକ୍ରମ ଅନ୍ତର୍ଭୁକ୍ତ ବିଭିନ୍ନ ବିଷୟରେ ପଠନ କାର୍ଯ୍ୟକ୍ରମ ଯେତିକି ଗୁରୁତ୍ୱପୂର୍ଣ୍ଣ ଲିଖନ କାର୍ଯ୍ୟକ୍ରମ ଠିକ୍ ସେହିପରି ଗୁରୁତ୍ୱପୂର୍ଣ୍ଣ । ଲିଖିତ କାର୍ଯ୍ୟକ୍ରମ ମାଧ୍ୟମରେ ଶିକ୍ଷାର କେତେକ ଲକ୍ଷ୍ୟ ହାସଲ ହୁଏ ଯାହା କେବଳ ପଠନ ଦ୍ୱାରା ସମ୍ଭବପର ହୁଏ ନାହିଁ । ଗଣିତ ଶିକ୍ଷକ ପଢ଼ାଇଥିବା ସୂତ୍ର ଛାତ୍ରଟି ବୁଝିଅଛି କି ନାହିଁ ତାହା ତା'ର ଗଣିତ ପ୍ରଶ୍ନ ସମାଧାନ ଦକ୍ଷତାରୁ ଅନେକାଂଶରେ ସୂଚିତ ହୁଏ । ଛାତ୍ରର ଭାଷା, ଜ୍ଞାନ, ଲିଖନ ଶୈଳୀ ତାହାଦ୍ୱାରା ଲିଖିତ ପ୍ରବନ୍ଧରୁ ଜଣାପଡ଼ିଥାଏ । ଯାହାହେଉ ବିଦ୍ୟାଳୟରେ ଶିକ୍ଷକମାନେ ବିଭିନ୍ନ ବିଷୟ ପଢ଼ାଉଅଛନ୍ତି ଓ ବିଭିନ୍ନ ଲିଖନ କାର୍ଯ୍ୟ କରାଉଅଛନ୍ତି. ଏହା ଯେତେ ଗୁରୁତ୍ୱପୂର୍ଣ୍ଣ ନୁହେଁ ତାହାଠାରୁ ଅଧିକ ଗୁରୁତ୍ୱପୂର୍ଣ୍ଣ ହେଉଛି ଯେ ଶିକ୍ଷକମାନେ ନିୟମିତ ଲିଖିତ କାର୍ଯ୍ୟଗୁଡ଼ିକ ସଂଶୋଧନ କରି ଛାତ୍ରମାନଙ୍କୁ ସେମାନଙ୍କର ଭୁଲ ସମ୍ବନ୍ଧରେ ଅବହିତ କରାଉଅଛନ୍ତି କି ନାହିଁ । ତେଣୁ ଏଥିପାଇଁ ମଧ୍ୟ ଏକ ବିଧିବଦ୍ଧ ପରିକଳ୍ପନା ଆବଶ୍ୟକ । ପ୍ରଧାନ ଶିକ୍ଷକଙ୍କର ଦାୟିତ୍ୱ ଓ କର୍ତ୍ତବ୍ୟ ସମ୍ପର୍କରେ ପୂର୍ବବର୍ତ୍ତୀ ଅଧ୍ୟାୟରେ ଉଲ୍ଲେଖ କରାଯାଇଅଛି ଓ ସେଠାରେ ତାଙ୍କର ଲିଖିତ କାର୍ଯ୍ୟ ପରିଦର୍ଶନ କରିବା ଦାୟିତ୍ୱ ସମ୍ବନ୍ଧରେ ମଧ୍ୟ ଲେଖାଯାଇଅଛି ।

ଲିଖିତ କାର୍ଯ୍ୟ ସଂଶୋଧନ କରିବା ଏକ କଷ୍ଟକର ବ୍ୟାପାର । ଏଥିପାଇଁ ଶିକ୍ଷକଙ୍କର ଅସୀମ ଧୈର୍ଯ୍ୟ ଆବଶ୍ୟକ । ଶିକ୍ଷକ ଯଦି ଭୁଲଗୁଡ଼ିକ ଦର୍ଶାଇ ପାରିଲେ ନାହିଁ ତେବେ ତାହା ଛାତ୍ର ମନରେ ଏକ ଠିକ୍ ଧାରଣା ରୂପେ ରହିଯାଏ । ତେଣୁ ସଂଶୋଧନ କାର୍ଯ୍ୟକ୍ରମ ପାଇଁ ବିଶେଷ ସତର୍କତା ମଧ୍ୟ ଲୋଡ଼ା । କେବଳ ଏତିକି ନୁହେଁ ଶିକ୍ଷକ ଯଦି ନିୟମିତ ଲିଖିତ କାର୍ଯ୍ୟ ସଂଶୋଧନ ନ କରନ୍ତି ତେବେ ଛାତ୍ରମାନେ ମଧ୍ୟ ସେମାନଙ୍କର କାର୍ଯ୍ୟରେ ଅନିୟମିତ ହେବେ । କେତେକ ଶିକ୍ଷକ ପିଲମାନଙ୍କୁ ଲିଖିତ କାର୍ଯ୍ୟ ଦେବାରେ ଯେତେ ଆଗ୍ରହୀ ସେଗୁଡ଼ିକ ସଂଶୋଧନ କରିବାରେ ସେତେ ଆଗ୍ରହୀ ନୁହଁନ୍ତି । ଏହା ଏକ ଅନୁଚିତ ପନ୍ଥା । ଶିକ୍ଷକ ନିୟମିତ ସଂଶୋଧନ କରିପାରିଲେ ସେ ତାଙ୍କ କାର୍ଯ୍ୟସ୍ତରରୁ ଛାତ୍ରମାନଙ୍କ କାର୍ଯ୍ୟସ୍ତର ସମ୍ବନ୍ଧରେ ସମ୍ୟକ୍ ଧାରଣା କରିପାରିବେ । କେତେକ ଶିକ୍ଷକ ନିଜେ ପଢ଼ାଉଥିବା ବିଷୟଟି ଉପରେ ଏତେ ଗୁରୁତ୍ୱ ଆରୋପ କରନ୍ତି ଯେ ଗୋଟିଏ ଗୋଟିଏ ବିଷୟର ଲିଖନକାର୍ଯ୍ୟ ପାଇଁ ଛାତ୍ରକୁ ବହୁ ସମୟ ବ୍ୟୟ କରିବାକୁ ପଡ଼େ

ଏହି ଶ୍ରେଣୀର ଶିକ୍ଷକମାନେ ବିଦ୍ୟାଳୟରେ ଅନ୍ୟ ବିଷୟ ଯେ ପଢ଼ା ହେଉଅଛି ଓ ଅନ୍ୟ ଶିକ୍ଷକମାନେ ମଧ୍ୟ ଗୃହକାର୍ଯ୍ୟ ଦେଉଅଛନ୍ତି ତାହା ସମ୍ପୂର୍ଣ୍ଣ ଭୁଲିଯାଆନ୍ତି । ଯେଉଁ ଶିକ୍ଷକ ଅତ୍ୟଧିକ ଲିଖନ କାର୍ଯ୍ୟ କରନ୍ତି ସେ ଯେ ସେସବୁ ଠିକ୍ ସଂଶୋଧନ କରନ୍ତି ତାହା ମଧ୍ୟ ସନ୍ଦେହଜନକ ।

ଉପର୍ଯ୍ୟୁକ୍ତ ସମସ୍ୟାର ସମାଧାନ ପାଇଁ ଗୋଟିଏ ପନ୍ଥା ଅବଲମ୍ବନ କରାଯାଇପାରେ । ପ୍ରତ୍ୟେକ ଶ୍ରେଣୀର ମନିଟର ଗୋଟିଏ ଖାତା ରଖିବେ ଏବଂ ଶିକ୍ଷକମାନେ ଆଗାମୀ ସପ୍ତାହ ପାଇଁ ଦେଉଥିବା ଲିଖନ କାର୍ଯ୍ୟ ସେଥିରେ ଲିପିବଦ୍ଧ କରିବେ । ଏହା କରାଗଲେ ପ୍ରତ୍ୟେକ ଶିକ୍ଷକ ଗୃହକାର୍ଯ୍ୟ ଦେବା ସଙ୍ଗେ ସଙ୍ଗେ ଆଉ କେଉଁ କେଉଁ ବିଷୟରେ କ'ଣ ଲିଖନ କାର୍ଯ୍ୟ ଦିଆଯାଇଅଛି ସେ ସମ୍ବନ୍ଧରେ ଜାଣିପାରିବେ ଏବଂ ତଦନୁଯାୟୀ ତାଙ୍କ ଦ୍ୱାରା ପ୍ରଦତ୍ତ କାର୍ଯ୍ୟର ସ୍ତର ଛାତ୍ର ପକ୍ଷରେ ସମସ୍ୟା ସୃଷ୍ଟି କରିବ କି ନାହିଁ ତାହାର ଏକ ଧାରଣା କରିପାରିବେ ।

ଶିକ୍ଷକମାନେ ଭୁଲଗୁଡ଼ିକ ସଂଶୋଧନ କରିବା ସଙ୍ଗେ ସଙ୍ଗେ ଯେଉଁଗୁଡ଼ିକ ସାଧାରଣ ଭୁଲ ଅର୍ଥାତ୍ ବହୁ ଛାତ୍ର ଯେଉଁ ଭୁଲ ବାରମ୍ବାର କରୁଅଛନ୍ତି ତାହାର ଏକ ଟିପ୍ପଣୀ କରି ସେ ସମ୍ବନ୍ଧରେ ଶ୍ରେଣୀରେ ଆଲୋଚନା କରିବେ । ସାଧାରଣ ଭୁଲଗୁଡ଼ିକ କାହିଁକି ହେଉଅଛି ତାହାର କାରଣ ନିର୍ଦ୍ଧାରଣ ପାଇଁ ଶିକ୍ଷକ ଚେଷ୍ଟାକଲେ ଭୁଲଗୁଡ଼ିକ ସହଜରେ ଦୂର କରିପାରିବେ । ଥରେ ଭୁଲଗୁଡ଼ିକ ଦର୍ଶାଇବା ପରେ ଛାତ୍ରଟି ସେହି ଭୁଲ ପୁଣି କରୁଅଛନ୍ତି କି ନାହିଁ ସେ ସମ୍ବନ୍ଧରେ ଶିକ୍ଷକ ମଧ୍ୟ ସଚେତନ ରହିବେ । ପ୍ରଧାନ ଶିକ୍ଷକ କପରି ଖାତାଗୁଡ଼ିକ ଥରକୁ ଥର ମଗାଇ ସେସବୁ ଦେଖିବେ, ତାଙ୍କର ମନ୍ତବ୍ୟ ଲେଖିବେ ଓ ଦସ୍ତଖତ କରିବେ ତାହା ପୂର୍ବ ଅଧ୍ୟାୟରେ ବର୍ଣ୍ଣିତ ହୋଇଥିବାରୁ ଏଠାରେ ତାହାର ପୁନରାବୃତ୍ତି ନିଷ୍ପ୍ରୟୋଜନ ।

## ପୁସ୍ତକାଗାର (Library)

ପୁସ୍ତକାଗାର ବିଦ୍ୟାଳୟର ପ୍ରାଣକେନ୍ଦ୍ର ହେବା ପରିବର୍ତ୍ତେ ଆଜି ପ୍ରାଣହୀନ ହୋଇ ପଡ଼ିଅଛି । ପୁସ୍ତକାଗାରରୁ ଛାତ୍ରମାନେ ନିୟମିତ ବହି ନେଉନାହାଁନ୍ତି, କୌଣସି ନୂଆ ବହି କଣା ହେଉନାହିଁ ବା ଯାହା କଣା ଯାଉଅଛି ତାହା ଛାତ୍ର ତଥା ଶିକ୍ଷକ କେହି ପଢିବାକୁ ଆଗ୍ରହୀ ହେଉନାହାଁନ୍ତି—ଏହିପରି ବିଭିନ୍ନ ପ୍ରକାରର ଅଭିଯୋଗ କରାଯାଇଥାଏ । ଯାହାହେଉ, ଏ କଥା ସ୍ୱୀକାର କରିବାକୁ ହେବ ଯେ ପୁସ୍ତକାଗାର ଯେପରି କାର୍ଯ୍ୟ କରିବାର କଥା ସେପରି ହେଉନାହିଁ । ଏହାର କାର୍ଯ୍ୟକ୍ରମରେ ପ୍ରାଣ ସଞ୍ଚାରିତ ହେବା ଆବଶ୍ୟକ । ସେଥିପାଇଁ କେତେକ ପଦକ୍ଷେପ ନିଆଯିବା ଅତ୍ୟନ୍ତ ଜରୁରୀ ।

ପ୍ରଧାନ ଶିକ୍ଷକ ତଥା ଅନ୍ୟାନ୍ୟ ଶିକ୍ଷକମାନେ ଚେଷ୍ଟା କରିବା ଉଚିତ ଯେପରି ସମସ୍ତ ଆଧୁନିକ ବା ନିକଟରେ ପ୍ରକାଶିତ ପୁସ୍ତକଗୁଡ଼ିକ ପୁସ୍ତକାଗାର ପାଇଁ ଆସେ ଏବଂ ସେସବୁର ସଦୁପଯୋଗ ହୁଏ । ପୁସ୍ତକ କିଣିବା ଦାୟିତ୍ୱ ପ୍ରଧାନ ଶିକ୍ଷକଙ୍କର ହେଲେ ମଧ୍ୟ ସେ ସମସ୍ତ ନୂତନ ପ୍ରକାଶିତ ପୁସ୍ତକ ସମ୍ବନ୍ଧରେ ଅବଗତ ହେବା ସହଜ ନୁହେଁ । ତେଣୁ ଶିକ୍ଷକମାନେ ଯେଉଁ ବିଷୟ ପଢ଼ାଉଅଛନ୍ତି ସେହି ବିଷୟରେ ପ୍ରକାଶିତ ହେଉଥିବା ପୁସ୍ତକଗୁଡ଼ିକ ସମ୍ବନ୍ଧରେ ଆବଶ୍ୟକ ତଥ୍ୟ ପ୍ରଧାନ ଶିକ୍ଷକଙ୍କୁ ଯୋଗାଇ ଦେବେ । ଏଥିପାଇଁ ପ୍ରକୃତ ପନ୍ଥା ହେଉଛି ବିଷୟ-ଶିକ୍ଷକମାନେ ସେମାନଙ୍କର ଅନୁଷଙ୍ଗରେ ବିଭିନ୍ନ ପୁସ୍ତକପୁସ୍ତିକା ସମ୍ବନ୍ଧରେ ଆଲୋଚନା କରି ଯେଉଁଗୁଡ଼ିକ ପୁସ୍ତକାଗାର ପାଇଁ ଉପଯୁକ୍ତ ମନେକରିବେ ସେଗୁଡ଼ିକ ଖର୍ଦ୍ଦ କରିବାକୁ ପ୍ରଧାନ ଶିକ୍ଷକଙ୍କୁ ସୁପାରିଶ୍ କରିବେ । ପ୍ରଧାନ ଶିକ୍ଷକ ଯଥାଶୀଘ୍ର ଓ ଯଥାସମ୍ଭବ ପୁସ୍ତକଗୁଡ଼ିକ ଆଣିବାପାଇଁ ଯତ୍ନ କରିବେ । ପୁସ୍ତକଗୁଡ଼ିକ ଆଣିବା ପରେ ସେଗୁଡ଼ିକର ସଦୁପଯୋଗ ହେଉଅଛି କି ନାହିଁ ତାହା ପ୍ରଧାନ ଶିକ୍ଷକ ଯାଞ୍ଚ କରିବେ ।

ବିଦ୍ୟାଳୟରେ ଦୁଇଟି ସ୍ୱତନ୍ତ୍ର ପୁସ୍ତକାଗାର ରହିବା ବାଞ୍ଛନୀୟ । ସେଥିରୁ ଗୋଟିଏ ହେଉଛି ଶିକ୍ଷକମାନଙ୍କ ପାଇଁ ଓ ଅନ୍ୟଟି ଛାତ୍ରମାନଙ୍କ ପାଇଁ । ଉଭୟ ପୁସ୍ତକାଗାର ପାଇଁ ବିଦ୍ୟାଳୟର ପୁସ୍ତକାଗାର ପାଣ୍ଠି ଓ ଅନ୍ୟାନ୍ୟ ସୂତ୍ରରୁ ମିଳୁଥିବା ଅନୁଦାନରୁ ପୁସ୍ତକ କ୍ରୟ କରାଯାଇପାରେ । ଛାତ୍ରମାନଙ୍କ ପାଇଁ ଉଦ୍ଦିଷ୍ଟ ପୁସ୍ତକାଗାର ମଧ୍ୟ ଭିନ୍ନ ଭିନ୍ନ ପ୍ରକାରରେ ସଜ୍ଜିତ ହୋଇପାରେ । ଯଦି ବିଦ୍ୟାଳୟର ପୁସ୍ତକାଗାର ଏକ ସ୍ୱତନ୍ତ୍ର କୋଠରୀରେ ଅବସ୍ଥାପିତ ହୋଇଥାଏ କିମ୍ବା ବିଦ୍ୟାଳୟର ଏକ ସ୍ୱତନ୍ତ୍ର ପାଠାଗାର (Reading Room) ଥାଏ ତେବେ ବିଭିନ୍ନ ଶ୍ରେଣୀର ଛାତ୍ରମାନଙ୍କ ପାଇଁ ଉଦ୍ଦିଷ୍ଟ ସମସ୍ତ ପୁସ୍ତକ ସେହିଠାରେ ରଖାଯାଇପାରେ । ଛାତ୍ରମାନେ ସେମାନଙ୍କର ସମୟ ନିର୍ଘଣ୍ଟରେ ନିର୍ଦ୍ଦିଷ୍ଟ ହୋଇଥିବା ପିରିଅଡରେ ଏହି ପୁସ୍ତକାଗାରରୁ ସେମାନଙ୍କ ପାଇଁ ଉଦ୍ଦିଷ୍ଟ ବହି ନେଇପାରିବେ, ଫେରାଇପାରିବେ ଓ ସେହିଠାରେ ଅଧ୍ୟୟନ କରିପାରିବେ । ଯେଉଁଠାରେ ପ୍ରଶସ୍ତ ପାଠାଗାର ଗୃହ ନ ଥିବ ସେଠାରେ ପ୍ରତ୍ୟେକ ଶ୍ରେଣୀରେ ଶ୍ରେଣୀ ପୁସ୍ତକାଗାର (Class Library) ବ୍ୟବସ୍ଥା କରାଯାଇପାରେ ।

ପୁସ୍ତକଗୁଡ଼ିକ ଗୋଟିଏ ଘରେ ଶ୍ରେଣୀ ଅନୁସାରେ ସଜ୍ଜିତ ହୋଇ ରହିଲେ ଅନେକ ସୁବିଧା ମିଳେ । ଯଦି କେତେକ ଛାତ୍ର ସେମାନଙ୍କ ପାଇଁ ଉଦ୍ଦିଷ୍ଟ ପୁସ୍ତକଗୁଡ଼ିକ ପଠନ କରି ବୁଝି ନ ପାରନ୍ତି ତେବେ ସେମାନେ ତାହାଠାରୁ ନିମ୍ନଶ୍ରେଣୀ ପାଇଁ ଉଦ୍ଦିଷ୍ଟ ପୁସ୍ତକ ଅଧ୍ୟୟନ କରିପାରନ୍ତି । ଠିକ୍ ସେହିପରି ମେଧାବୀ ଓ ଆଗ୍ରହୀ ଛାତ୍ରମାନେ ସେମାନଙ୍କର ଉଚ୍ଚତର ଶ୍ରେଣୀଗୁଡ଼ିକ ପାଇଁ ଉଦ୍ଦିଷ୍ଟ ପୁସ୍ତକଗୁଡ଼ିକ ପଢ଼ି ଲାଭବାନ ହୋଇପାରନ୍ତି । ଏହି ବ୍ୟବସ୍ଥା ପ୍ରଚଳନ କରାଗଲେ ଶ୍ରେଣୀ ପୁସ୍ତକାଗାରଗୁଡ଼ିକରେ

ବିବିଧ ପ୍ରକାର ବହି ରଖିବା ଆବଶ୍ୟକ ହୁଏ ନାହିଁ । ଏହା ଫଳରେ ଯେଉଁ ଖର୍ଚ୍ଚ କମେ ତାହା ଅନ୍ୟାନ୍ୟ ପୁସ୍ତକ କିଣିବାରେ ବ୍ୟୟିତ ହୁଏ । ବିଦ୍ୟାଳୟରେ ପାଠାଗାର ଥିଲେ ଆଉ କେତେଗୁଡ଼ିଏ ଅଧିକ ସୁବିଧା ମିଳେ, କାରଣ ପାଠାଗାରରେ ପିଲାମାନେ ସମ୍ବାଦପତ୍ର ପତ୍ରପତ୍ରିକା ଓ ଅନ୍ୟାନ୍ୟ ତଥ୍ୟ ସମ୍ବଳିତ ପୁସ୍ତକ (Reference Books) ମଧ୍ୟ ପଢ଼ିବାକୁ ସୁଯୋଗ ପାଆନ୍ତି ବିଦ୍ୟାଳୟରେ ପାଠାଗାର ବ୍ୟବସ୍ଥା ସଙ୍ଗେ ସଙ୍ଗେ ଶ୍ରେଣୀ ପୁସ୍ତକାଗାର ବ୍ୟବସ୍ଥା ମଧ୍ୟ କରାଯାଇପାରେ । ମାତ୍ର ଏହା ଏକ ଅର୍ଥ ସାପେକ୍ଷ ବ୍ୟବସ୍ଥା । ଛାତ୍ରମାନଙ୍କ ପାଇଁ ଉଦ୍ଦିଷ୍ଟ ପୁସ୍ତକାଗାରରେ ସର୍ବଦା ପୁସ୍ତକଗୁଡ଼ିକ ଶ୍ରେଣୀ ଅନୁସାରେ ସଜ୍ଜିତ ହୋଇ ରହିବା ଆବଶ୍ୟକ ।

ପୁସ୍ତକାଗାର ପାଇଁ ଦୁଇଟି ରେଜିଷ୍ଟର ରହିବା ଉଚିତ । ପ୍ରଥମ ରେଜିଷ୍ଟରରେ କ୍ରମିକ ନମ୍ବର ସହ ପୁସ୍ତକର ନାମ, ଲେଖକଙ୍କନାମ, କ୍ରୟ ତାରିଖ ଓ ମୂଲ୍ୟ ଲିପିବଦ୍ଧ ହେବା ଆବଶ୍ୟକ । ପୁସ୍ତକାଗାରରୁ ପୁସ୍ତକ ନେଉଥିବା ବ୍ୟକ୍ତିମାନଙ୍କପାଇଁ ଦ୍ୱିତୀୟ ରେଜିଷ୍ଟର ରଖାଯିବା ଉଚିତ । ଏଥିରେ ପୁସ୍ତକଟି ଫେରାଇବା ବେଳେ ସେଠାରେ ପୁସ୍ତକାଗାର ତତ୍ତ୍ୱାବଧାରକଙ୍କର ଦସ୍ତଖତ ଓ ତାରିଖ ରହିବା ଆବଶ୍ୟକ । ଯେଉଁ ବିଦ୍ୟାଳୟର ଶ୍ରେଣୀ ପୁସ୍ତକାଗାର ବ୍ୟବସ୍ଥା ଅଛି ସେଠାରେ ପ୍ରତି ଶ୍ରେଣୀ ପୁସ୍ତକାଗାର ପାଇଁ ଏହିପରି ଦୁଇଟି ଲେଖାଏଁ ରେଜିଷ୍ଟର ରଖାଯିବା ଉଚିତ । ଯଦି କୌଣସି ବିଷୟ ପାଇଁ ସ୍ୱତନ୍ତ୍ର ପୁସ୍ତକାଗାର ଥାଏ ତେବେ ସେ କ୍ଷେତ୍ରରେ ମଧ୍ୟ ଦୁଇଟି ରେଜିଷ୍ଟର ରହିବା ଆବଶ୍ୟକ । ଶିକ୍ଷକମାନଙ୍କ ପାଇଁ ଉଦ୍ଦିଷ୍ଟ ପୁସ୍ତକାଗାରରେ ପୁସ୍ତକଗୁଡ଼ିକ କ୍ରମ ଅନୁସାରେ ସଜ୍ଜିତ ନ ହୋଇ ବିଭିନ୍ନ ବିଷୟ ଅନୁସାରେ ଅସଜ୍ଜିତ ହେବା ଆବଶ୍ୟକ । ଏହି ଶ୍ରେଣୀ ବିଭାଗ ଅନୁସାରେ ପ୍ରସ୍ତୁତ ହୋଇଥିବା ପୁସ୍ତକର ତାଲିକା ଶିକ୍ଷକମାନଙ୍କ ବିଶ୍ରାମ ଗୃହରେ ରଖାଗଲେ ଯେଉଁ ଶିକ୍ଷକ ଯେଉଁ ବିଷୟର ପୁସ୍ତକ ଖୁଣ୍ଡିବେ ସେ ତାହା ଖୋଜି ପାଇବା କଷ୍ଟକର ହେବନାହିଁ । ସମସ୍ତ ଇତିହାସ ପୁସ୍ତକ ଗୋଟିଏ ସ୍ଥାନରେ ଶିକ୍ଷାଦାନ ପଦ୍ଧତି ସମ୍ବନ୍ଧୀୟ ପୁସ୍ତକ ଗୋଟିଏ ସ୍ଥାନରେ—ଏପରି ଶ୍ରେଣୀ ବିଭାଗ କରାଯାଇପାରେ । ଶିକ୍ଷକମାନଙ୍କ ପାଇଁ ଉଦ୍ଦିଷ୍ଟ ପୁସ୍ତକାଗାର ଓ ଶ୍ରେଣୀ ପୁସ୍ତକାଗାରରେ ରହୁଥିବା ପୁସ୍ତକଗୁଡ଼ିକର କ୍ରମିକ ନମ୍ବର ମଧ୍ୟ ରହିବା ଆବଶ୍ୟକ । ସମସ୍ତ ପୁସ୍ତକ ଗୋଟିଏ ରେଜିଷ୍ଟରରେ ତାଲିକାଭୁକ୍ତ ହେବାପରେ ଶିକ୍ଷକ ତଥା ଛାତ୍ରମାନଙ୍କର ସ୍ୱତନ୍ତ୍ର ପୁସ୍ତକାଗାରକୁ ପଠାଯାଇପାରେ । ତେଣୁ ମୂଳ ରେଜିଷ୍ଟରର ନମ୍ବର ଏହି ରେଜିଷ୍ଟରରେ ରଖାଯିବା ଉଚିତ ।

ଶିକ୍ଷକ ଓ ଛାତ୍ରମାନଙ୍କ ପାଇଁ ପୃଥକ୍ ପୁସ୍ତକାଗାର ରଖିବାର ବ୍ୟବସ୍ଥା କରାଗଲେ ମଧ୍ୟ ଶିକ୍ଷକମାନେ ଛାତ୍ରମାନଙ୍କ ପୁସ୍ତକାଗାରରୁ ବା ଛାତ୍ରମାନେ ଶିକ୍ଷକମାନଙ୍କ

ପୁସ୍ତକାଗାରରୁ ପୁସ୍ତକ ଆଣିବାରେ କୌଣସି ପ୍ରତିବନ୍ଧକ ରହିବା ଉଚିତ ନୁହେଁ । ପଠନାଗାରର ପରିବେଷ୍ଟନୀ ଉତ୍ସାହପ୍ରଦ ହେବା ଆବଶ୍ୟକ । ସମସ୍ତ ବ୍ୟବସ୍ଥା ସତ୍ତ୍ୱେ ପୁସ୍ତକାଗାର ଉଭୟ ଛାତ୍ର ଓ ଶିକ୍ଷକଙ୍କ ଦ୍ୱାରା ବ୍ୟାପକ ଭାବରେ ବ୍ୟବହୃତ ନ ହେଲେ ସମସ୍ତ ସାଂଗଠନିକ ବ୍ୟବସ୍ଥା ଅର୍ଥହୀନ ହୋଇପଡ଼ିବ । ବିଦ୍ୟାଳୟ ଜୀବନ ଗୋଷ୍ଠୀର ପ୍ରାଣକେନ୍ଦ୍ର ହେବ ଏବଂ ତଦନୁଯାୟୀ ପୁସ୍ତକାଗାର ମଧ୍ୟ ବିଦ୍ୟାଳୟ ସହିତ ଗୋଷ୍ଠୀର ସମ୍ପର୍କ ସ୍ଥାପନରେ କିପରି ସହାୟକ ହେବ ତାହା ପୂର୍ବବର୍ତ୍ତୀ ଏକ ଅଧ୍ୟାୟରେ ଆଲୋଚିତ ହୋଇଅଛି ।

## ପ୍ରଶ୍ନାବଳୀ

୧ । ସମୟ ନିର୍ଘଣ୍ଟ ପରିକଳ୍ପନା ସମୟରେ କେଉଁ କେଉଁ ବିଷୟ ବିଚାରକୁ ନିଆଯିବା ଉଚିତ ତାହାର ଏକ ବିବରଣୀ ଦିଅ ।

୨ । ବିଦ୍ୟାଳୟରେ ପାଠ୍ୟ-ପ୍ରକଳ୍ପ ପ୍ରସ୍ତୁତ କରିବାର ଅବଶ୍ୟକତା ବୁଝାଇଦିଅ ।

୩ । ପାଠ୍ୟ ଟିପ୍ପଣୀ ନିୟମିତ ପ୍ରସ୍ତୁତ କରାଗଲେ ତାହା କି ପ୍ରକାରେ ଉନ୍ନତ ଶିକ୍ଷା-ଦାନର ସହାୟକ ହେବ ।

୪ । ଲିଖିତ କାର୍ଯ୍ୟ ସଂଶୋଧନର ଆବଶ୍ୟକତା ବୁଝାଇଦିଅ । ନିୟମିତ ଭାବରେ ଲିଖିତ କାର୍ଯ୍ୟର ସଂଶୋଧନ ଲାଗି ଶିକ୍ଷକ କି ପଦକ୍ଷେପ ନେବା ଆବଶ୍ୟକ ।

୫ । ବିଦ୍ୟାଳୟରେ ଉଭୟ ଛାତ୍ର ଓ ଶିକ୍ଷକ ପାଠାଗାରର ସଦୁପଯୋଗ କରିବା ପାଇଁ ପାଠାଗାରଟି କି ପ୍ରକାରରେ ସଂଗଠନ କରାଯାଇପାରେ ?

---

# REFERENCES


1. Bhatia, Hans Raj. — A New Deal in Secondary Education. 1959, Orient Longmans Private Ltd.

2. Gupta, L. D. — A New Venture in Education, 1970, Arya Book Depot, New Delhi.

3. Havighurst, R. J. — Society and Education, 1962, Boston and Bacon Inc.

4. Jones, Arthur, J. — Principles of Guidance, Fifth Edition, 1963, Mc. Graw-Hill Book Company, Inc.—New York.

5. Kandel, I. L. — Conflicting Theories of Education, 1938, The Macmillan., Co. New York.

6. Kripal, Prem. — A Decade of Education in India, 1968, Indian Book Campany.

7. Neill, A. S. — That Dreadful School, 1948, Herbert Jenkins Limited, London.

8. Raymont, T. — Modern Education, 1960, Longmans London.

9. Ryburn, W. M. — The Organisation of Schools, Fourth Edition, Seventh Impression, 1970, Oxford University Press, London.

10. Ruburn, W. M. — The Progressive School, 1934, Oxford University Press, London.

11. Saiyidain, K. G. — Education, Culture and Social order, 1963, Asia Publishing House.

12. Saiyidain, K. G. — Problems of Educational Reconstruction, 1963, Asia Publishing House.

13. Saiyidain, K. G. — Facets of India Education, 1970, National Council of Educational Research and Training.

14. Shrimali, K. L. — Education in changing India, 1965, Asia Publishing House.

15. Stanley, Julian C — Measurement in To day's Schools. Fourth Edition-1965 Prentic-Hall Inc. Engelwood Chiffs. N. J.

16. Washburne, C. — What is progressive Education 1952, The John Day Co. New York.

17. Ministry of Education, Government of India. — Report of the Education Commission 1964-66.

18. Ministry of Education, Government of India. — Report of the Secondary Education Commission 1952-53.

19. DEPSE, Ministry of Education, Government of India. — The concept of Evaluation in Education—1960.

20. National Council of Educational Research and Training. — Educational Evaluation and Assessment—1972.

21. NCERT. — Reading in Population Education—1970.

22. NCERT. — The Concept of work Experience, 1970.

23. NCERT. — Wastage and Stagnation in the Primary and Middle Schools—1971.


---

## ଏହି ସଂସ୍ଥାଦ୍ୱାରା ପ୍ରକାଶିତ ଶିକ୍ଷା ସମ୍ବନ୍ଧୀୟ ଅନ୍ୟାନ୍ୟ ପୁସ୍ତକ

### ଇଣ୍ଟରମିଡ଼ିଏଟ୍

୧। ଶିକ୍ଷାନୀତି ପ୍ରବେଶ—ଡକ୍ଟର ମୋହନଚନ୍ଦ୍ର ନାୟକ ଟ ୭-୦୦

୨। ମହାବିଦ୍ୟାଳୟ ଶିକ୍ଷାଦାନ ପଦ୍ଧତି—ଅଧ୍ୟାପକ ଜଗନ୍ନାଥ ମହାନ୍ତି··· ଟ ୫-୦୦

### ବି. ଏ.

୧। ଭାରତୀୟ ଶିକ୍ଷାର ଇତିହାସ—ଡକ୍ଟର କାଳୀକୁମାର ଦାସ ଟ ୭-୫୦

୨। ଶୈକ୍ଷିକ ପରିସଂଖ୍ୟାନ—ଅଧ୍ୟାପକ ଏସ୍. ସାମଲ ଟ ୬-୫୦

୩। ମାତୃଭାଷା ଶିକ୍ଷାଦାନ ପଦ୍ଧତି—ଅଧ୍ୟାପକ ଭଗୀରଥି ନାୟକ ଟ ୬-୦୦

୪। ଶୈକ୍ଷିକ ପରିମାପ—ଅଧ୍ୟାପକ ଘନଶ୍ୟାମ ପଟ୍ଟନାୟକ ଟ ୧୧-୦୦

୫। ଗଣିତ ଶିକ୍ଷଣ ପଦ୍ଧତି—ଅଧ୍ୟାପକ କେ. ପରିଡ଼ା ଟ ୫-୦୦

୬। ଶିକ୍ଷା ମନୋବିଜ୍ଞାନ—ଅଧ୍ୟାପକ ଭୋଳାନାଥ ମିଶ୍ର ଟ ୧୨-୦୦

୭। ଭୂଗୋଳ ଶିକ୍ଷାଦାନ ପଦ୍ଧତି—ଶ୍ରୀ ଡି. ରାଉତ ଟ ୬-୦୦

୮। ଇତିହାସ ଶିକ୍ଷାଦାନ ପଦ୍ଧତି—ଶ୍ରୀ କ୍ଷେତ୍ରମୋହନ ଶତପଥି ଟ ୮-୫୦

୯। ବିଦ୍ୟାଳୟ ସଂଗଠନ—ଶ୍ରୀ ରମାନାଥ ପ୍ରହରାଜ ଟ ୬-୫୦

୧୦। ଆଧୁନିକ ଶିକ୍ଷାଦର୍ଶନ—ଅନୁବାଦ—ଅଧ୍ୟାପକ ଶତ୍ରୁଘ୍ନ ନାଥ ଟ ୧୭-୦୦

୧୧। ପାଶ୍ଚାତ୍ୟ ଶିକ୍ଷାର ସାଂସ୍କୃତିକ ଇତିହାସ—ଅନୁବାଦ—
ଶ୍ରୀ ଶରତଚନ୍ଦ୍ର ପ୍ରଧାନ···· ଟ ୩୭-୦୦

୧୨। ସାଧାରଣ ବିଜ୍ଞାନ ଶିକ୍ଷାଦାନ ପଦ୍ଧତି—
ଶ୍ରୀ ଜଗନ୍ମୋହନ ରାଉତରା ···· ଟ ୧୦-୦୦

୧୩। ଶିକ୍ଷା ସମସ୍ୟାର ଇତିବୃତ୍ତ—ପ୍ରଫେସର ଭୋଳାନାଥ ମିଶ୍ର ଟ ୨୦-୦୦